*ବିବିଧ ପୁସ୍ତକମାଳା*

# ସେଇ ସାହସିନୀମାନେ

ସଂପାଦନା

ରୀତୁ ମେନନ

ଅନୁବାଦ

ସବିତା ପ୍ରଧାନ




ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ISBN 978-81-237-7643-9

ପ୍ରଥମ ସଂସ୍କରଣ 2015 (ଶକାବ୍ଦ 1937)



Original : Women Who Dared (*English*)

Translation : Sei Sahasineemane (*Odia*)

**₹ 290.00**

ନିର୍ଦ୍ଦେଶକ, ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ
ନେହେରୁ ଭବନ, 5, ଇନ୍‌ଷ୍ଟିଚ୍ୟୁସନାଲ ଏରିଆ, ଫେଜ୍- II
ବସନ୍ତ କୁଞ୍ଜ, ନୂଆଦିଲ୍ଲୀ - 110070 କର୍ତ୍ତୃକ ପ୍ରକାଶିତ ।
Website : www.nbtindia.gov.in

# ସୂଚୀପତ୍ର

# ମୋ ମା'ପାଇଁ ପଦେ

ସା ଉଷା

ମା'ଲୋ, କରନା, କମାରୁ କରନା
ତୋ ପଣତକୁ ଆକାଶ ସାରା ବିଛେଇ ଦେଇ
ଖରାକୁ ଆଢୁଆଳ କରନା
ଶେଥା ପଡ଼ିଯିବ ଜୀବନର ସବୁଜିମା

କହନା, ତତେ ସତର ହେଲାଣି
ରାସ୍ତାରେ ଆଉ ପଣତ ଲୋଟାନି
ବାଟୋଇ ଆଖିରେ ଆଖି ମିଶାନି
ଫୁଲେଇ ହେଇ ପବନ ସାଙ୍ଗରେ ମାତନି

ବାରବାର ତୋର ସେଇ ଏକା କଥା ଶୁଣାନି
ଯାହା, ତୋ ମା,
ତାଙ୍କ ମା ଆଉ ତାଙ୍କ ମା'ଙ୍କ ମା
ସାପୁଆ କେଳାର ନାଗେଶ୍ୱର ଫୁଙ୍କିଥିଲେ
ମୋ ପରି ନିରୀହା ଝିଅଙ୍କ କାନରେ

ମୁଁ ତ ବାସ୍ ମୋ ଫଣା ବିସ୍ତାରୁଛି
କାହାକୁ ଦଂଶନ କରିବ ମୋ ବିଷଦନ୍ତ
ଛାଡ଼ିଯିବ ସୁନୀଳ ଜହର
ଯିବାକୁ ଦିଅ ମା, ବାଟ ଛାଡ଼ ।

ତୁଳସୀ ଚଉଁରା ଚାରିପଟେ ଘୂରିଥାନ୍ତି
ଅଗଣାରେ, ଝୋଟି ପକେଇଥାନ୍ତି
ଦେଖିବାକୁ ଦେବଲୋକ, ଅକସ୍ମାତ୍ ଅକଳ୍ପିତ ମୃତ
ବିନା ଆଲୋକ ଆଉ ମରୁତ୍‌ରେ

ଭଗବାନଙ୍କ ରାଣ ମା, ଏମିତି କରିପାରିବିନି
ଭାଙ୍ଗିଦେଇ ତୁ ନିର୍ମାଣିଥିବା ବନ୍ଧକୁ
ଶତ ସହସ୍ର ସ୍ଫୀତ ତରଙ୍ଗର ରୂପନେଇ
ଲଂଘିଯିବି ସସାଗରା ଧରା
ହେ ମା, ତୋ ଜୀବନଠୁଁ ଭିନ୍ନ ଧାରାରେ
ମୋ ପରି ମତେ ବଞ୍ଚିବାକୁ ଦେ
ଯିବାକୁ ଦେ, ବାଟ ଛାଡ଼ ।

(ଏ. କେ. ରାମାନୁଜଙ୍କ ଇଂରାଜୀ ଅନୁବାଦ ଆଧାରିତ)

# ମୁଖବନ୍ଧ

ପ୍ରାୟ ଦେଢ଼ଶହ ବର୍ଷଧରି ଭାରତୀୟ ସାମାଜିକ ଜୀବନରେ ମହିଳାମାନଙ୍କ ଉପସ୍ଥିତି ଲକ୍ଷ୍ୟ କରାଯାଉଛି । ଯଦିଓ ସେମାନଙ୍କର ଏ ଉପସ୍ଥିତି କାଁ ଭାଁ ଓ ବିକ୍ଷିପ୍ତ ତା'ପୁଣି ଯଥୋଚିତ ସ୍ୱୀକୃତି ପାଇନାହିଁ । ଅଧିକାଂଶ ଲୋକଙ୍କୁ ପଚାରିଲେ ସେମାନେ ସ୍ୱାଧୀନତା ଆନ୍ଦୋଳନରେ ମହିଳାମାନଙ୍କ ଯୋଗଦାନ, ବ୍ରିଟିଶ ଶାସନ ବିରୁଦ୍ଧରେ ଗାନ୍ଧିଜୀଙ୍କ ଆନ୍ଦୋଳନ ପ୍ରଚାର, ଲବଣ ସତ୍ୟାଗ୍ରହ, ଆଇନ ଅମାନ୍ୟ ଆନ୍ଦୋଳନ ଏବଂ ଅସହଯୋଗ ଆନ୍ଦୋଳନରେ ହଜାର ହଜାର ସଂଖ୍ୟାରେ ସେମାନଙ୍କର ଅବଦାନ ସ୍ମରଣ କରିବେ । ଅନ୍ୟ କେତେକ ବଙ୍ଗଳା, ମହାରାଷ୍ଟ୍ର, ତାମିଲନାଡୁ, ଉତ୍ତର ପ୍ରଦେଶ, ପଞ୍ଜାବ ଏବଂ ଅବିଭାଜିତ ଭାରତର ଅନ୍ୟ ଭାଗରେ ସମାଜ ସଂସ୍କାରରେ ସେମାନଙ୍କର ସକ୍ରିୟ ଭୂମିକା ସ୍ମରଣ କରିବେ । ଯେଉଁମାନଙ୍କର ରାଜନୈତିକ ସଂପୃକ୍ତି ଅଛି ସେମାନେ ଚିଟାଗଙ୍ଗ ଅସ୍ତ୍ରାଗାର ଲୁଟ, ତେଲଙ୍ଗାନାର ସଶସ୍ତ୍ର ସଂଘର୍ଷ, ଭଗତ ସିଂହ, ଭଗବତୀ ଚରଣ ତଥା ଅନ୍ୟମାନଙ୍କର ଅଣ୍ଡର ଗ୍ରାଉଣ୍ଡ ହେଇଯିବା ପରି ବଡ଼ ବଡ଼ ଘଟଣାରେ ମହିଳାମାନଙ୍କର ଭୂମିକାକୁ ଗୁରୁତ୍ୱ ଦେବେ । ଭାରତୀୟ ଜାତୀୟ କଂଗ୍ରେସ, ଭାରତୀୟ ସାମ୍ୟବାଦୀ ପାର୍ଟି ଏବଂ ଅନ୍ୟ ବିବିଧ ସାମାଜିକ ଓ ରାଜନୈତିକ ସଙ୍ଗଠନରେ ସେମାନଙ୍କର ଭୂମିକା ଉଲ୍ଲେଖନୀୟ । କିଛି ମହିଳା ଯେପରି ପ୍ରୀତିଲତା, କଳ୍ପନା ଯୋଶୀ, ସତ୍ୟଓ୍ୱତୀ, ଅଛମମ୍ମା, ଦୁର୍ଗା ବେହେନ, ମୃଦୁଲା ସାରାଭାଇ, ସରୋଜିନୀ ନାଇଡୁ, ଅରୁଣା ଆସଫ ଅଲ୍ଲୀ, କସ୍ତୁରବା ଗାନ୍ଧୀ, ବିଜୟଲକ୍ଷ୍ମୀ ପଣ୍ଡିତ, ଅମ୍ମୁ ସ୍ୱାମୀନାଥନ, ଲକ୍ଷ୍ମୀ ସହଗଲ୍, ମଣିକୁନ୍ତଳା ସେନ୍, ଅଶୋକା ଗୁପ୍ତା, ମ୍ୟାଡ଼ାମ୍ ଭିକାଜୀ କାମା, କମିଲା ତ୍ୟାବ୍‌ଜି, ଭୋପାଳର ବେଗମ, ମହାଦେବୀ ବର୍ମା, ବାଲାମଣି ଆମ୍ମା, ମୁଥୁ ଲକ୍ଷ୍ମୀ ରେଢ୍ଡୀ, ପଣ୍ଡିତା ରମାବାଇ, ସାରଳାଦେବୀ ଘୋଷାଲ, ଆନନ୍ଦୀ ବାଇ ଯୋଶୀ, ଶିଷ୍ଟର ନିବେଦିତା, ମୀରାବୈନ୍, ଆନି ବେଶାନ୍ତଙ୍କ ପରି ଅନେକ ନାଁ ମନକୁ ଆସୁଛି – ମହିଳାମାନେ ସାଧାରଣତଃ ଜୀବନ ଯେମିତି ବଞ୍ଚିବା ଉଚିତ୍ ବୋଲି ମନେକରାଯାଏ ଅର୍ଥାତ୍ – କନ୍ୟା, ଜାୟା, ଜନନୀ ଏବଂ ଭଗିନୀ – ତା' ବିରୁଦ୍ଧରେ ବିଦ୍ରୋହ କରିଥିଲେ । ବରଂ ସେମାନେ ନାରୀଭାବରେ ସେମାନଙ୍କ ଦେଶପ୍ରତି, ସମାଜ ପ୍ରତି, ଜନସାଧାରଣଙ୍କପ୍ରତି ତଥା ସେମାନଙ୍କର ସଂଗ୍ରାମ – ସେ ସଂଗ୍ରାମ ଯେଉଁ ପ୍ରକାରର ହେଉନା କାହିଁକି ତା'ପ୍ରତି ତାଙ୍କର ଅବଦାନ ରହୁ ବୋଲି ଚାହିଁଲେ । ଏ ଦୁନିଆଁ ସେମାନଙ୍କୁ କ'ଣ କହିବ ସେଥିପ୍ରତି ଭ୍ରୂକ୍ଷେପ କରିନାହାନ୍ତି, ସେମାନେ କାହାର ସମର୍ଥନ ପାଇଁ ଅପେକ୍ଷା କରିନାହାନ୍ତି କି କାହାଠୁଁ ଅନୁମତି ଲୋଡ଼ିନାହାନ୍ତି –

ସେମାନେ କେବଳ ଆଗକୁ ମାଡ଼ି ଚାଲିଲେ । ସେମାନେ ଭାରତର ଜଣେ ଜଣେ ଦାୟିତ୍ୱ ସଂପନ୍ନ ଓ ସମାଜ ସଚେତନ ବ୍ୟକ୍ତି ଯାହା କରିବା କଥା ତା'ନିର୍ବିକାର ଚିତ୍ତରେ ନିର୍ବାହ କରିଛନ୍ତି । ଏହାଦ୍ୱାରା ଭାରତୀୟ ଜୀବନକୁ ସେମାନେ ସମୃଦ୍ଧି ସଂପନ୍ନ କରିଛନ୍ତି । ଏସବୁ ସତ୍ତ୍ୱେ ମହିଳାମାନେ ସାଧାରଣତଃ ଭାରତୀୟ ଇତିହାସରେ ଉପେକ୍ଷିତ ଓ ବ୍ୟକ୍ତିତ୍ୱ ମୂଲ୍ୟାୟନ ସମୟରେ ତାଙ୍କର ଉପସ୍ଥିତିକୁ ଗଣନା ହିଁ କରାଯାଇନାହିଁ ।

୧୯୪୭ ମସିହାରେ ଯେତେବେଳେ ଭାରତ ସ୍ୱାଧୀନତା ପ୍ରାପ୍ତହେଲା ସେତେବେଳେ ସ୍ୱାଧୀନତାର ଅନ୍ତତଃ ଗୋଟିଏ ଲକ୍ଷ୍ୟ ପୂର୍ଣ୍ଣ ହେଲା । ଯେଉଁ ଗୋଟିଏ ଲକ୍ଷ୍ୟପାଇଁ ଏ ସମସ୍ତ ମହିଳା ବିଭିନ୍ନ ପଥରେ, ଭିନ୍ନଭିନ୍ନ ଉପାୟରେ ସାଧ୍ୟମତେ ଲଢ଼ିଥିଲେ, ତା' ସଫଳ ହେଲା । ଏ ଲକ୍ଷ୍ୟ ହେଲା ମହିଳାମାନଙ୍କର ଔପଚାରିକ ମୁକ୍ତି ଏବଂ ସେମାନଙ୍କୁ ତାଙ୍କ ନିଜସ୍ୱ ବାସ୍ତବିକ ମତାଧିକାର ଦେବା । ଏହା ସହିତ ଉଦ୍‌ଘୋଷିତ ହେଲା ଭାରତୀୟ ସମ୍ବିଧାନଦ୍ୱାରା ସମସ୍ତ ଭାରତୀୟ ନାଗରିକଙ୍କ ନିମନ୍ତେ ଏକ ଉଲ୍ଲେଖନୀୟ ସୁବିନ୍ୟସ୍ତ ଅଧିକାର ଓ ସୁରକ୍ଷା । ଏହା ବିଶ୍ୱର ସର୍ବାଧିକ ମୌଳିକ ଏବଂ ପ୍ରଗତିବାଦୀ ଦସ୍ତାବିଜ ମଧ୍ୟରୁ ଅନ୍ୟତମ। ଏହା ତା'ର ସମସ୍ତ ନାଗରିକଙ୍କର ମୌଳିକ ଅଧିକାର – ଶିକ୍ଷା, ବାସସ୍ଥାନ, ଆତ୍ମସମ୍ମାନ, ସ୍ୱାସ୍ଥ୍ୟ, ଖାଦ୍ୟ ଓ କାମ କରିବାର ଅଧିକାରକୁ ମାନ୍ୟତାଦିଏ, ସେ ଯେକୌଣସି ଜାତି ବା ସଂପ୍ରଦାୟ, ଯେକୌଣସି ବଂଶ ବା ବର୍ଣ୍ଣ, ଧର୍ମ ଅଥବା ଧର୍ମମତ ବା ଲିଙ୍ଗର ହେଉନା କାହିଁକି ? ଏହା ସମସ୍ତ ଜନସାଧାରଣଙ୍କର ସମାନତାକୁ ସ୍ୱୀକାର କରେ। ମାତ୍ର ବାସ୍ତବ ଜୀବନରେ ଆମ ସମସ୍ତଙ୍କୁ ସମାନତା ମିଳୁନଥିବାରୁ, ସମ୍ବିଧାନ ପ୍ରତ୍ୟେକ ରାଜ୍ୟକୁ ଏଥିପାଇଁ ଆବଶ୍ୟକୀୟ ଯେକୌଣସି ପଦକ୍ଷେପ ନେବାପାଇଁ ଯଥା ସମ୍ଭବ ପ୍ରୟାସ କରିବାକୁ କହିଛି । ଯାହାଫଳରେ ସମାନତା ପ୍ରତ୍ୟେକଙ୍କ ନିମନ୍ତେ ଏକ ବାସ୍ତବ ବିଷୟ ହେବ । ଦୁର୍ଭାଗ୍ୟବଶତଃ ଆମେ ସ୍ୱାଧୀନତାର ପ୍ରାରମ୍ଭିକ ଦିନରେ ନେଇଥିବା ପ୍ରତିଜ୍ଞା ଆଂଶିକ ଭାବରେ ପୂର୍ଣ୍ଣ ହୋଇଛି । ସ୍ୱାଧୀନତାର ୫୦ ବର୍ଷ ପରେ ମଧ୍ୟ ଭାରତର ମହିଳାଗଣ ତଥାପି ବୈଷମ୍ୟର ଶିକାର ହେଉଛନ୍ତି । ପ୍ରାୟ ୧୦୦ ବର୍ଷତଳେ ସେଇ ମହିଳାମାନଙ୍କ ସଂଘର୍ଷ ଓ ବଳିଦାନ ସତ୍ତ୍ୱେ ଅଧିକାଂଶ ମହିଳା ପରାଧୀନ ।

ଏହି ବିଷୟକୁ ଅଧିକ ବିସ୍ତୃତ ଭାବେ ସ୍ପଷ୍ଟ କରିବାପାଇଁ ଏଠାରେ ମୁଁ କିଛି ତଥ୍ୟ ଉପସ୍ଥାପନ କରିବାକୁ ଚାହୁଁଛି ।

ବିଶ୍ୱର ଅନ୍ୟଭାଗ ବିସଦୃଶ ଭାରତର ପୁରୁଷଙ୍କ ସଂଖ୍ୟା ମହିଳାଙ୍କଠାରୁ ଅଧିକ – ୧୦୦୦ ପୁରୁଷରେ ୯୩୩ ନାରୀ । ଏହାର କାରଣ ହେଉଛି ଯେ ବହୁ ଝିଅ ବୟସ୍କ ହେବା ପୂର୍ବରୁ ମୃତ୍ୟୁବରଣ କରନ୍ତି । ବହୁ ମହିଳା ଏବଂ ଝିଅ ତାଙ୍କ ଜୀବନର ଅଧିକାଂଶ ସମୟ ଆବଶ୍ୟକତାଠାରୁ କମ୍ ଖାଦ୍ୟ ଖାଆନ୍ତି । ବିଶେଷଜ୍ଞମାନେ ଏ ପ୍ରକାର ଅବସ୍ଥାକୁ 'ପୌଷ୍ଟିକ ଆହାର ଜନିତ ଚାପ' କହିଥାନ୍ତି କାରଣ ସେମାନେ ଶେଷରେ ଖାଆନ୍ତି ଓ କମ୍ ଖାଆନ୍ତି । ଭାରତରେ ମାତ୍ର ଶତକଡ଼ା ୫୪ ଭାଗ ମହିଳା ସାକ୍ଷର । ପୁରୁଷଙ୍କ ତୁଳନାରେ ମାତ୍ର ଅଧା ମହିଳା ସ୍କୁଲରେ ନାମ ଲେଖାନ୍ତି ଏବଂ ତା'ମଧ୍ୟରୁ ଅନେକ ଶିକ୍ଷା ଶେଷ

ହେବାପୂର୍ବରୁ ଅଧାରୁ ଛାଡ଼ି ଦିଅନ୍ତି କାରଣ ଘର କାମରେ ସାହାଯ୍ୟ କରିବାପାଇଁ ଓ ଛୋଟ ଛୁଆଙ୍କର ଦେଖାଶୁଣା କରିବାପାଇଁ ପରିବାର ସେମାନଙ୍କୁ ଦରକାର କରେ । ଭାରତୀୟ ମହିଳାଙ୍କର ଏକ ବୃହତ୍ ଅଂଶ ପ୍ରାୟ ୧୭ ବର୍ଷ ବେଳକୁ ବାହା ହେଇସାରିଥାନ୍ତି ଏବଂ ସେମାନେ ୨୨ ବର୍ଷର ହେବାବେଳକୁ ତାଙ୍କ ମଧ୍ୟରୁ ଅଧିକାଂଶଙ୍କର ବେଶି ନହେଲେ ବି ଦୁଇଟି ସନ୍ତାନ ହେଇସାରିଥାଏ ।

ଯଦିଓ ମହିଳାମାନେ ସବୁବେଳେ କାମ କରୁଥାନ୍ତି ଏବଂ ପୁରୁଷଙ୍କଠାରୁ ଅଧିକ କରିଥାନ୍ତି । ତେବେ କେବଳ ଶତକଡ଼ା ୨୦ଭାଗ ମହିଳା ପାରିଶ୍ରମିକ ମିଳୁଥିବା କାମ କରିଥାନ୍ତି । ସେହି କାମପାଇଁ ତାଙ୍କୁ ପୁରୁଷଙ୍କ ଅପେକ୍ଷା ଯଥେଷ୍ଟ କମ୍ ପଇସା ମିଳେ । ଯଦିଓ ଭାରତୀୟ କାନୁନ୍ ବ୍ୟବସ୍ଥାର ଏକ ନିୟମ ଅନୁସାରେ ସମପ୍ରକାର କାର୍ଯ୍ୟପାଇଁ ସମପରିମାଣ ପାରିଶ୍ରମିକ ମିଳିବା କଥା ।

୧୯୬୦ ଏବଂ ସତୁରୀ ଦଶକର ଉତ୍ତରାର୍ଦ୍ଧରେ ଦେଶରେ ମହିଳା ସକ୍ରିୟ ଆନ୍ଦୋଳନର ପୁନର୍ଜାଗରଣ ଦେଖାଦେଲା । ଯାହାକୁ ଭାରତୀୟ ମହିଳା ଆନ୍ଦୋଳନର ଦ୍ୱିତୀୟ ଉଚ୍ଛ୍ୱାସ କୁହାଯାଏ । ଛୋଟବଡ଼ ଅନେକଗୁଡ଼ିଏ ସଂଘର୍ଷ – ଉତ୍ତରାଖଣ୍ଡରେ ସାରଲା ବେନ୍ ଓ ମୀରା ବେନ୍‌ଙ୍କ ନେତୃତ୍ୱରେ ମଦ–ବିରୋଧ ଆନ୍ଦୋଳନ, ପଶ୍ଚିମ ବଙ୍ଗରେ ନକ୍‌ସାଲ୍ ବାଡ଼ି, ମହାରାଷ୍ଟ୍ରରେ ଦରବୃଦ୍ଧି ବିରୋଧୀ ଶୋଭାଯାତ୍ରା, ଗୁଜରାଟରେ ନବ ନିର୍ମାଣ ଆନ୍ଦୋଳନ, ହାଇଦ୍ରାବାଦରେ ମହିଳା ପ୍ରଗତିବାଦୀ ସଂଗଠନ; ଅହମଦାବାଦରେ ସ୍ୱନିୟୋଜିତ ମହିଳା ସଂଘ, ଯାହାକି ଏ ଦେଶର ପ୍ରଥମ ମହିଳା ଶ୍ରମିକ ସଂଘ, ଏହି ଆନ୍ଦୋଳନକୁ ପ୍ରଜ୍ୱଳିତ କରି ପୁନର୍ଜୀବନ ଦେଲା । ସେଇ ସମୟରେ ଦୁଇ–ଚାରୋଟି ଅନ୍ୟ ଅନ୍ତରାଷ୍ଟ୍ରୀୟ ଓ ରାଷ୍ଟ୍ରୀୟ ଘଟଣା ଏହି ଆନ୍ଦୋଳନକୁ ତ୍ୱରାନ୍ୱିତ କରିବାରେ କାଟାଲିଷ୍ଟ ସଦୃଶ କାର୍ଯ୍ୟକଲା । ଏଗୁଡ଼ିକ ହେଲା – ୧୯୭୫ରେ ମିଳିତ ଜାତିସଂଘ ଦ୍ୱାରା ୧୯୭୫ରୁ ୧୯୮୫ ପର୍ଯ୍ୟନ୍ତ ସମୟ ଖଣ୍ଡକୁ 'ଜାତିସଂଘ ମହିଳା ଦଶକ' ଘୋଷଣା କରାଯିବା ଏବଂ କେନ୍ଦ୍ର ସରକାର ଦ୍ୱାରା ଭାରତୀୟ ମହିଳାଙ୍କ ଅବସ୍ଥା ଉପରେ ଏକ ସମିତି ଗଠନ । ଏହା ଅଞ୍ଚଳ, ଶ୍ରେଣୀ ତଥା ସଂପ୍ରଦାୟ ନିର୍ବିଶେଷରେ ମହିଳାମାନଙ୍କ ଅବସ୍ଥାର ଏକ ଶୃଙ୍ଖଳିତ ଏବଂ ବ୍ୟାପକ ମୂଲ୍ୟାଙ୍କନ କରିବାର ଉତ୍ସାହୀ ପଦକ୍ଷେପ ଥିଲା । ସି ଏସ୍‌ଡବ୍ଲ୍ୟୁ ଆଇ ଦ୍ୱାରା ପ୍ରସ୍ତୁତ ଐତିହାସିକ ରିପୋର୍ଟ 'ଟୁ ଓ୍ୱାର୍ଡ଼ସ୍ ଇକ୍ୱାଲିଟି' ସରକାରଙ୍କ ନୀତିନିର୍ମାତାମାନଙ୍କ ନିମନ୍ତେ ଏକ ନିର୍ଣ୍ଣାୟକ ରୂପେ ଅବତୀର୍ଣ୍ଣ ହେଲା । କିନ୍ତୁ ତା'ଠାରୁ ମହତ୍ତ୍ୱପୂର୍ଣ୍ଣ କଥା ହେଲା ଯେ ଏହା ମହିଳାମାନଙ୍କର ବିବିଧ ଦୃଷ୍ଟିକୋଣରୁ ଘଟୁଥିବା ଚରମ ଦୁର୍ଦ୍ଦଶା ଏବଂ କ୍ରମଶଃ ବୃଦ୍ଧି ପାଉଥିବା ଦାସତ୍ୱ ଉପରେ ଗୁରୁତ୍ୱ ଆରୋପ କଲା । ଏହା ସଂରଚନାତ୍ମକ ଓ ସାଂଗଠନିକ ସ୍ତରରେ ମହିଳାମାନଙ୍କପ୍ରତି ପ୍ରଦର୍ଶିତ ହେଉଥିବା ବୈଷମ୍ୟଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କଲା । କମ୍ ସେ କମ୍ ଅଧା ନାଗରିକଙ୍କୁ ସାମ୍ବିଧାନିକ ସୁରକ୍ଷା ଦେବାରେ ରାଜ୍ୟ ସରକାର ଅସଫଳ ବୋଲି ପ୍ରଚାରିତ ହେଲା ।

ଟୁଓ୍ୱାର୍ଡ଼ସ୍ ଇକ୍ୱାଲିଟି' ପରେ ୧୯୮୮ ମସିହାରେ ଏକ ଅସାଧାରଣ, ବ୍ୟତିକ୍ରାନ୍ତ ରିପୋର୍ଟ 'ଶ୍ରମ ଶକ୍ତି' ପ୍ରକାଶ ପାଇଲା । ଏହା ଭାରତର ଅନଔପଚାରିକ ବା ଅସଂଗଠିତ କ୍ଷେତ୍ରରେ କର୍ମରତ ମହିଳାମାନଙ୍କର ଏକ ବିସ୍ତାରିତ ପ୍ରାମାଣ୍ୟ ଦଲିଲ ଏବଂ ଏ କ୍ଷେତ୍ରରେ ପ୍ରାୟ ଶତକଡ଼ା ୯୦ ଭାଗ ମହିଳା କାମ କରନ୍ତି । ଏହି ଦୁଇ ରିପୋର୍ଟର ପ୍ରକାଶନ ଓ ନିଷ୍କର୍ଷ ଉଭୟ ମହିଳା ଆନ୍ଦୋଳନ ଏବଂ ନୂଆକରି ଜନ୍ମ ହେଉଥିବା ମହିଳା ଅଧ୍ୟୟନ ବିଭାଗକୁ ଆକସ୍ମିକ ଭାବରେ ଉଦ୍ଦୀପିତ କଲା । ବାସ୍ତବକ୍ଷେତ୍ର ଓ ତା'ର ପରିସ୍ଥିତି ଅଧ୍ୟୟନରେ ସହାୟକ ହେବା ନିମନ୍ତେ ନାରୀବାଦୀମାନଙ୍କର ଜୀବନ୍ତ ଅନୁଭୂତି ଓ ପରିସଂଖ୍ୟାନ ଲବ୍ଧ ତଥ୍ୟ ଉପରେ ଭିତ୍ତି କରି ତୁଳନାତ୍ମକ ଅଧ୍ୟୟନ, ବିଶ୍ଳେଷଣ ତଥା ଏହାକୁ ତତ୍ତ୍ୱୀଭୂତ କରିବାର ଗୁରୁତ୍ୱ ହୃଦୟଙ୍ଗମ କଲେ ଗବେଷକ ଓ ଶିକ୍ଷାବିଦ୍‌ଗଣ । ସମସ୍ତ ଶିକ୍ଷାବିଦ୍ ଏବଂ ନାରୀବାଦୀମାନଙ୍କର ସକ୍ରିୟ ସମ୍ମିଳନ ସରକାର ଏବଂ ନୀତିନିର୍ମାତାମାନଙ୍କୁ ମହିଳାମାନଙ୍କ ପ୍ରତି ହେଉଥିବା ସୁପରିକଳ୍ପିତ ଓ ସୁଶୃଙ୍ଖଳିତ ବୈଷମ୍ୟକୁ ସ୍ୱୀକାର କରିବାକୁ ବାଧ କଲା । ମହିଳାମାନଙ୍କର ଦେଶର ସାମାଜିକ, ଆର୍ଥନୀତିକ ଏବଂ ରାଜନୀତିକ ଜୀବନରେ ଯଥୋଚିତ ସ୍ଥାନ ନେବାରେ ଓ ସେମାନଙ୍କୁ ପ୍ରକୃତରେ ସମର୍ଥ ଓ ସଶକ୍ତ କରିବା ପାଇଁ ନୀତିନିୟମ ଓ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବାପାଇଁ ସରକାରଙ୍କୁ ବାଧକଲା । ଏଠାରେ ଏହି ଆନ୍ଦୋଳନର ତାତ୍ପର୍ଯ୍ୟପୂର୍ଣ୍ଣ ଅବଦାନ ଏବଂ ଏହାର ସୁଦୂରପ୍ରସାରୀ ପ୍ରଭାବର ସବିଶେଷ ବିବରଣୀ ଦେବାର ପ୍ରୟୋଜନ ନାହିଁ । ଏତିକି କହିଲେ ଯଥେଷ୍ଟ ହେବ ଯେ ବିଂଶ ଶତାବ୍ଦୀର ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ ସାମାଜିକ, ରାଜନୀତିକ ଆନ୍ଦୋଳନ ମଧ୍ୟରୁ ଏହା ଅନ୍ୟତମ ଥିଲା ।

ବିଶ୍ୱବିଦ୍ୟାଳୟର ସେଇ ନାରୀବାଦୀ ଶିକ୍ଷକ ଏବଂ ଗବେଷକଗଣ ଗୌରବର ପାତ୍ର ଯେଉଁମାନେ ସୀମା ଲଙ୍ଘନ କରିବାର ଦୁଃସାହସ କରି ମୂଳପାଠରେ ଏକ ବ୍ୟାପକ ସଂରଚନାତ୍ମକ ପରିବର୍ତ୍ତନ ଆଣିଲେ ଏବଂ ସବୁ ବିଷୟରେ ଶିକ୍ଷା ସଂସ୍ଥାନଗୁଡ଼ିକରେ ଲୈଙ୍ଗିକ ବୈଷମ୍ୟ ରହିତ ସ୍ଥାନ ସୃଷ୍ଟିପାଇଁ ସଂଘର୍ଷ କଲେ । ଅନେକ ସମୟରେ ସେମାନେ ଭର୍ତ୍ସିତ ହେଇଛନ୍ତି ଓ ତାଙ୍କ କାର୍ଯ୍ୟପାଇଁ ଦଣ୍ଡିତ ହେଇଛନ୍ତି । ସମ୍ଭବତଃ ଏଇ ସକ୍ରିୟତା ତାଙ୍କୁ ପ୍ରଥମତଃ ଗବେଷଣା ଓ ଶିକ୍ଷା ପ୍ରଣାଳୀରେ ପୁନର୍ବିଚାର ପାଇଁ ଉଦ୍ୟତ କରିଥିବ । ସେମାନେ ନିଜର ବୃତ୍ତିକୁ ଆଗେଇନେବା ସହିତ ଯୌତୁକ ବିରୋଧରେ ଏବଂ ଧର୍ଷଣ ନିୟମରେ ପରିବର୍ତ୍ତନ ପାଇଁ ସଂଘର୍ଷ ଚାଲୁ ରଖିଥିଲେ । ଗଣମାଧ୍ୟମରେ ମହିଳାମାନଙ୍କର ନକାରାତ୍ମକ ଚିତ୍ରଣକୁ ବିରୋଧ କଲେ ଓ ସରକାରୀ ନୀତିନିୟମରେ ହସ୍ତକ୍ଷେପ କଲେ । ସେମାନେ ଭାରତୀୟ ମହିଳାମାନଙ୍କର ଅବସ୍ଥା ଅଧ୍ୟୟନ କଲେ, ସୁପାରିଶ୍ ପତ୍ର ଲେଖିଲେ, ଆବେଦନ ପତ୍ର ଦସ୍ତଖତ କଲେ, ସିଦ୍ଧାନ୍ତ ଗ୍ରହଣ କଲେ ଏବଂ ଲୈଙ୍ଗିକ ନ୍ୟାୟ ବିଷୟ ଉପରେ ନ୍ୟାୟାଳୟରେ ଆଲୋଡ଼ନ ସୃଷ୍ଟି କଲେ ।

## ୨

'ଓ୍ୱମେନ୍ ହୁ ଡେଆରଡ୍' ଏକ ବିନମ୍ର କିନ୍ତୁ ଆନ୍ତରିକ ପ୍ରୟାସ । ବିଗତ ୫୦ ବର୍ଷ ମଧ୍ୟରେ ଆମ ଦେଶର ସାମାଜିକ ଏବଂ ସାଂସ୍କୃତିକ ପରିବର୍ତ୍ତନରେ ସ୍ୱଚ୍ଛ କେତେଜଣ ମହିଳା

ପ୍ରତିନିଧିଙ୍କର ଅବଦାନ ରହିଛି, ଏହା ତାହାର ସ୍ୱୀକୃତି ମାତ୍ର । ଏହା ସେମାନଙ୍କ କାର୍ଯ୍ୟକଳାପର କେବଳ ସେମାନଙ୍କ ଶବ୍ଦରେ ନୁହେଁ ବରଂ ସେମାନଙ୍କ ରାଜନୀତିକ, ଆର୍ଥିକ ପରିପ୍ରେକ୍ଷୀରେ ଉପସ୍ଥାପିତ । ସେମାନଙ୍କ କାର୍ଯ୍ୟ, ସେମାନଙ୍କ ଜୀବନ ତଥା ସମାଜରେ ସେମାନେ ଯେଉଁ ପ୍ରକାର ଭୂମିକା ନିର୍ବାହ କରିଛନ୍ତି ତାହା ଭାରତର ରାଜନୀତିକ, ଆର୍ଥନୀତିକ, ସାମାଜିକ ଓ ସାଂସ୍କୃତିକ ଜୀବନ ସହିତ ସଂପୃକ୍ତ । ଆମର ବିଶ୍ୱାସ ତାଙ୍କର ସଂକ୍ଷିପ୍ତ ମୂଲ୍ୟବାନ ଆତ୍ମଜୀବନୀରୁ ପାଠକମାନେ ନିଜ ଉଦୀୟମାନ ରାଷ୍ଟ୍ରର ଜୀବନ ବୃତ୍ତାନ୍ତର ଝଲକ ପାଇପାରିବେ କାରଣ ବାସ୍ତବରେ ଏହା ମହିଳାମାନଙ୍କ ଜୀବନରେ ହିଁ ପ୍ରତିବିମ୍ବିତ ହୋଇଥାଏ ।

ଏହି ପୁସ୍ତକରେ ସ୍ଥାନିତ ୨୧ ଜଣ ମହିଳା ନିଜେ ସୁଦୃଢ଼ ଏବଂ ଏମାନେ ଅନ୍ୟକୁ ଶକ୍ତିଶାଳୀ କରୁଛନ୍ତି । ମାତ୍ର କ'ଣ ସେମାନଙ୍କୁ ପ୍ରରୋଚିତ କଲା ? ସେମାନେ ଯାହା କଲେ ତା'କରିବାପାଇଁ କାହିଁକି ଭାବିଲେ ? ଚାଲେଞ୍ଜ କରିବାକୁ, ନୂତନ କିଛି ପ୍ରବର୍ତ୍ତନ କରିବାକୁ, ସଂସ୍କାର, ବିରୋଧ, ସଂରକ୍ଷଣ, ସର୍ବୋତ୍କୃଷ୍ଟ ହେବାକୁ, ପରିବର୍ତ୍ତନ ପାଇଁ ଲଢ଼ିବାକୁ, କିଛି ଗୋଟେ ଅଲଗା କରିବାକୁ ତାଙ୍କ ମନରେ ପ୍ରେରଣା କେଉଁଠୁ ଆସିଲା ? ସେମାନେ କେବଳ ନିଜ ଜୀବନରେ ନୁହେଁ ଅନେକଙ୍କ ଜୀବନରେ ତାଙ୍କ ସାମାଜିକ ବା ରାଜନୀତିକ ସଂପୃକ୍ତି ମାଧ୍ୟମରେ, ତାଙ୍କ କଳା ମାଧ୍ୟରେ ଏବଂ ତାଙ୍କର ଦୁର୍ଜୟ ସ୍ପୃହା ମାଧ୍ୟମରେ ଏହା କରିବାକୁ ଚାହିଁଛନ୍ତି । କେତେକ ସମୟରେ ତାଙ୍କ ସ୍ପଷ୍ଟବାଦିତା ତ କେତେକ ସମୟରେ ସତର୍କ ଉକ୍ତି କିନ୍ତୁ ସର୍ବଦା ଏକ କେଲିଡୋସ୍କୋପିକ ଚିତ୍ର ମଧ୍ୟରେ ଭୂଗୋଳ ଓ ଇତିହାସକୁ ସଂଯୋଜିତ କରୁଥିବା ଚିତ୍ରପଟ୍ଟ, ବ୍ୟକ୍ତିଗତ କାହାଣୀ ଉପରେ ସାମୂହିକ ଇତିହାସର ଆସ୍ତରଣ ଦେଖାଯାଏ; ବ୍ୟକ୍ତିର ଦୃଷ୍ଟି ଓ ପ୍ରତିବଦ୍ଧତା ଅନୁପ୍ରେରିତ ହୋଇ ଏହା ଘଟେ ।

ଛୋଟରୁ ଆରମ୍ଭ – ଫେରିବାଲା, ମଇଳା କାଗଜ ଗୋଟାଳି, ମୂଲ ଲାଗୁଥିବା ଚାଷୀ, ଜମିହୀନ ଶ୍ରମିକ ବା ଦଳିତ ଆଡ଼କୁ ମୁହଁଉ ମୁହଁଉ ଏହା ବିରାଟ ଆକାର ଧାରଣ କଲା । ଭାବ–ଭଙ୍ଗିମା, ଶବ୍ଦ, ଗତିଶୀଳତା, ତୂଳୀ ଚାଳନା, ଛାଞ୍ଚରେ ପରିବର୍ତ୍ତନ ଆଦି ନିଶ୍ଚିତ ଭାବରେ ଆମ ନୃତ୍ୟ, ଚିତ୍ରକଳା, ମୂର୍ତ୍ତିକଳା, ସଙ୍ଗୀତ, ବହିପତ୍ର ଏବଂ ଧାରଣାକୁ ଉନ୍ନତ କରିଛି । କ୍ରୀଡ଼ା ଏବଂ ପର୍ଯ୍ୟଟନ ଆଦିରେ ସାହସିକ ଓ ରୋମାଞ୍ଚକର କାର୍ଯ୍ୟକଳାପ; ଆଦର୍ଶଦ୍ୱାରା ପ୍ରଭାବିତ ଗବେଷଣା ଓ ଶିକ୍ଷାବୃତ୍ତିର ପରିବର୍ତ୍ତନକାରୀ ଅନ୍ତର୍ନିହିତ ଶକ୍ତି ଅଛି । ଏକାକୀ ମହିଳା, ସରକାରଙ୍କ କ୍ଷମତାକୁ ଚାଲେଞ୍ଜ କରିବା, ଆଇନ୍‌ର ଅକ୍ଷରକୁ ଓଲଟେଇଦେବା କମ୍ କଥା ନୁହେଁ । ନିଶ୍ଚିତଭାବରେ ଏହା କୌଣସି ବ୍ୟକ୍ତି ବିଶେଷ ମହିଳାଙ୍କୁ ଅନୁଚିତ ଭାବରେ ଗୁରୁତ୍ୱ ଦେବା ନୁହେଁ । ଏହି ସଂକଳନର ଅଧିକାଂଶ ମହିଳା ତାଙ୍କର ଏହି ବୀରତ୍ୱ ବୋଧକୁ ହୁଏତ ଗ୍ରହଣ କରିବେ ନାହିଁ । କାରଣ ତାଙ୍କ ସହିତ ପରିବର୍ତ୍ତନ ପାଇଁ କାର୍ଯ୍ୟ କରୁଥିବା ଅନ୍ୟାନ୍ୟ ଗୋଷ୍ଠୀ ଓ ସଂପ୍ରଦାୟକୁ ସେମାନେ ଗୁରୁତ୍ୱଦେବାକୁ ଚାହାଁନ୍ତି ।

ସେମାନଙ୍କ ସାଧନାର ପରିଣାମ ସ୍ୱରୂପ କିଛି ସକାରାତ୍ମକ ପରିବର୍ତ୍ତନ ସଂଘଟିତ ହୋଇଛି । ବିଗତ ଦଶବର୍ଷରେ ମହିଳା ସାକ୍ଷରତା ହାର ଶତକଡ଼ା ୧୫ଭାଗ ବୃଦ୍ଧିପାଇଛି,

ଶତକଡ଼ା ୩୩ ଭାଗ ପଞ୍ଚାୟତର ସ୍ଥାନ ବର୍ତ୍ତମାନ ମହିଳାଙ୍କ ପାଇଁ ସଂରକ୍ଷିତ, ଯାହାକି ରାଜନୀତିକ ସଶକ୍ତୀକରଣ ଦିଗରେ ଏକ ବିରାଟ ପଦକ୍ଷେପ । ମହିଳା ସମାନତା ନିମନ୍ତେ ଶିକ୍ଷା, ସଂପୂର୍ଣ୍ଣ ସାକ୍ଷରତା ଅଭିଯାନ ଏବଂ ମହିଳା ବିକାଶ କାର୍ଯ୍ୟକ୍ରମ (ରାଜସ୍ଥାନ) ବିଶେଷ କରି ଦରିଦ୍ର ମହିଳାଙ୍କ ଜୀବନରେ ଏକ ବିରାଟ ପରିବର୍ତ୍ତନ ଆଣିପାରିଛି । ଯୌତୁକ ବିରୋଧୀ ଆଇନ୍ ଏବଂ ଘରୋଇ ଅତ୍ୟାଚାରରୁ ରକ୍ଷା କରିବା ପାଇଁ ଏହି ବିଶେଷ ପଦକ୍ଷେପ ଏ ଜାତୀୟ ସର୍ବବ୍ୟାପୀ କୁପ୍ରଥାକୁ ଜନସାଧାରଣ, ପୋଲିସ୍ ଏବଂ ନ୍ୟାୟାଳୟର ଦୃଷ୍ଟି ଆକର୍ଷଣ କରିଛି ।

## ୩

କିନ୍ତୁ ଅନେକ ମହିଳା ଏଥିରେ ସ୍ଥାନ ପାଇ ନାହାନ୍ତି । ଆମକୁ ସେହି ମହିଳାଙ୍କ ସଂପର୍କରେ ଜଣାନାହିଁ । ବହୁତ ଏବେ ବି ଅଜ୍ଞାତ ଅବସ୍ଥାରେ ଅଛନ୍ତି । ଅନେକ ମହିଳା ନିଜ ଜୀବନୀ ଲେଖି ସାରିଛନ୍ତି ଅଥବା କେହି ଅନ୍ୟ ଜୀବନୀ ଲେଖିଛନ୍ତି; ଏମିତି ଅନେକ ଅଛନ୍ତି ଯାହାଙ୍କ ପାଖରେ ଆମେ ପହଞ୍ଚିପାରିନୁ । ଏମିତି ବି ଅନେକ ଅଛନ୍ତି ଯେଉଁମାନେ ଏଥିରେ ସ୍ଥାନ ପାଇବା ଉଚିତ୍ – ଯେମିତି ମେଧା ପାଟ୍‌କର, ପି.ଟି.ଉଷା, ଅପର୍ଣ୍ଣାସେନ୍ ଏବଂ ଡାୟନା ଇଦ୍‌ଲୁଜୀଙ୍କର ଦୃଷ୍ଟାନ୍ତ ନିଆଯାଇପାରେ । କିନ୍ତୁ ସେମାନଙ୍କୁ ସ୍ଥାନିତ କରାଯାଇନାହିଁ କାରଣ ଆମର ସମସ୍ତ ଚେଷ୍ଟା ସତ୍ତ୍ୱେ ବି ସେମାନଙ୍କ ଜୀବନୀ ପାଇବାକୁ ଆମେ ସମର୍ଥ ହେଲୁ ନାହିଁ । ଏମିତି ମହିଳା ବି ଅଛନ୍ତି ଯେଉଁମାନଙ୍କୁ ସ୍ଥାନ ଦିଆଯାଇଥାନ୍ତା ଯଦି ସେମାନେ ତାଙ୍କ କାହାଣୀ କହିବାକୁ ଜୀବିତ ଥାନ୍ତେ । ଲେଖିକା ଏବଂ ରାଜନୀତିଜ୍ଞ ଏ ଦୁଇ ଦଳ ମହିଳା ଏଥିରେ ଅନୁପସ୍ଥିତ କାରଣ ସେମାନଙ୍କ ସଂପର୍କରେ ବିରାଟ ପୁସ୍ତକ ରଚିତ ହେଇପାରିବ । ଏ ଅବଶ୍ୟମ୍ଭାବୀ ଅଭାବ ତ ଏଥିରେ ରହିଛି, ଯା ସହିତ ଅନ୍ୟ ନୈରାଶ୍ୟଜନକ ଦିଗ ବି ରହିଛି । ଉଦାହରଣ ସ୍ୱରୂପ ହସ୍ତଶିଳ୍ପ ଏବଂ ବ୍ୟବସାୟର ନାଁ ଉଲ୍ଲେଖ କରାଯାଇପାରେ – ଏ ସବୁ ଆମର ପାରୁପର୍ଯ୍ୟନ୍ତ ଚେଷ୍ଟାସତ୍ତ୍ୱେ ପୂର୍ଣ୍ଣ କରାଯାଇପାରିନି । ଏମିତି ଅନେକ ପେଶା ଅଛି ଯେଉଁଥିରେ ମହିଳାମାନଙ୍କର ବିରାଟ ଅବଦାନ ରହିଛି ମାତ୍ର ସେମାନେ ସମସ୍ତେ ସାଧାରଣତଃ ଅଜ୍ଞାତ । ଏ ସବୁ ସଂପର୍କରେ ଆମେ ଗଭୀର ନିଷ୍ଠାର ସହିତ ଏତିକି କହିପାରୁଁ ଯେ ଆମେ ପୂର୍ଣ୍ଣପ୍ରାଣରେ ସାଧ୍ୟମତେ ଚେଷ୍ଟା କରିଛୁ । କିନ୍ତୁ ଭାରତପରି ବିଶାଳ ଓ ବୈଚିତ୍ର୍ୟପୂର୍ଣ୍ଣ ଦେଶ ନିମନ୍ତେ ଏହିପରି ଏକ ଔଦ୍ୟୋଗିକ ବିଷୟ ନିମନ୍ତେ ଗୋଟିଏ ଖଣ୍ଡ ଆଦୌ ଯଥେଷ୍ଟ ନୁହେଁ । ଏଥିପାଇଁ ଅନ୍ତତଃ ବାରଖଣ୍ଡ ଆବଶ୍ୟକ ।

ପରିଶେଷରେ, ମନରେ ପ୍ରଶ୍ନ ଉଠେ, କାହିଁକି ଏମାନଙ୍କ ଜୀବନ କାହାଣୀ ଲିପିବଦ୍ଧ ହେବ ? ପୁନଶ୍ଚ ହାତଗଣତି କେଇ ଜଣଙ୍କର ଜୀବନୀ କାହିଁକି ? ପୂର୍ବରୁ ଉଲ୍ଲିଖିତ ଯେ ଆଂଶିକ ଭାବରେ ସେମାନଙ୍କର କାର୍ଯ୍ୟକୁ ଚିହ୍ନିବା ସହିତ ତା'ର ମହତ୍ତ୍ୱକୁ ସ୍ୱୀକୃତି ଦେବା ଏହାର ଉଦ୍ଦେଶ୍ୟ । ମହିଳାମାନଙ୍କର ଏକ ନିର୍ମାଣ ମଧ୍ୟ ସମପରିମାଣରେ ଗୁରୁତ୍ୱପୂର୍ଣ୍ଣ । ସେ ଦିଗରେ ଏହା ଏକ କ୍ଷୁଦ୍ର ପ୍ରୟାସ ଯାହାଫଳରେ ସେମାନେ ଇତିହାସର ଗର୍ଭରେ

ବିସ୍ମୃତ ହେଇନଯିବେ । ମହିଳାମାନେ ତାଙ୍କର ବିବିଧ ପ୍ରଚେଷ୍ଟା ଫଳରେ କେବଳ ନିଜ ବ୍ୟକ୍ତିତ୍ୱର ଛାପ ଛାଡ଼ି ଯାଇ ନାହାନ୍ତି ବରଂ ବୃହତ୍ତର ମହିଳା ସଂପ୍ରଦାୟର ସଂଘର୍ଷ ଏବଂ ଆକାଂକ୍ଷାର କୌଣସି ନା କୌଣସି ଏକ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ ଉପାୟରେ ପ୍ରତିନିଧିତ୍ୱ କରିଛନ୍ତି । ଏହି ମହିଳାମାନେ ପରଂପରାକୁ ଲଙ୍ଘନ କରି ପରିବର୍ତ୍ତନ ଆଣିବାରେ ସହାୟକ ହୋଇଛନ୍ତି । ଏମାନେ ଭୟଙ୍କର ପ୍ରତିବନ୍ଧକର ସମ୍ମୁଖୀନ ହେଇ ଶ୍ରେଷ୍ଠତା ପ୍ରତିପାଦନ କରିଛନ୍ତି, ନିଜେ ଲଢ଼ିଛନ୍ତି, ଅନ୍ୟମାନଙ୍କ ସଂଘର୍ଷରେ ସାମିଲ୍ ହୋଇଛନ୍ତି । ମହିଳାମାନଙ୍କର ଏତାଦୃଶ ଅଭିଜ୍ଞତା, ପୃଷ୍ଠଭୂମି ଏବଂ ଦକ୍ଷତା ଏହି ପୁସ୍ତକକୁ ବହୁମୁଖୀ କରିପାରିଛି । ଏବଂ ଶେଷରେ ଏ ପୁସ୍ତକର ଉଦ୍ଦେଶ୍ୟ ହେଲା ସେହି ମହିଳାମାନଙ୍କୁ ସମ୍ମାନ ଜ୍ଞାପନ କରିବା ଯେଉଁମାନେ ଶହେ ବର୍ଷ ପୂର୍ବର ତାଙ୍କ ପୂର୍ବଜଙ୍କ ପରି ପୃଥକ ହେବାର ସାହସ କରିପାରିଛନ୍ତି ।

ମୁଁ ଅତ୍ୟନ୍ତ ଆନନ୍ଦିତ ଯେ ସ୍ୱୟଂ ନ୍ୟାସନାଲ ବୁକ୍ ଟ୍ରଷ୍ଟ ଏହି ଅଭିଲେଖାଗାର ନିର୍ମାଣ ପାଇଁ ପଥିକୃତ୍ ଉଦ୍ୟମ କରିଆସୁଛନ୍ତି ଏବଂ ଆଶା ଏହି ପୁସ୍ତକ ଆହୁରି ଏହିପରି ଅନେକ ପୁସ୍ତକ ନିମନ୍ତେ ପ୍ରେରଣାର ଉତ୍ସ ହେବ ।

ରୀତୁ ମେନନ

*ଶୀଲା ସଂଧୁ (ଜନ୍ମ:୧୯୨୪) ହିନ୍ଦୀ ପ୍ରକାଶନ ଜଗତର ଜଣେ କିମ୍ବଦନ୍ତୀ ବ୍ୟକ୍ତିତ୍ୱ । ଦେଶର କୌଣସି ପ୍ରକାଶନ ସଂସ୍ଥାର ମୁଖ୍ୟ ପରିଚାଳିକା ହୋଇଥିବା ପ୍ରଥମ ମହିଳାମାନଙ୍କ ମଧ୍ୟରୁ ଅନ୍ୟତମ । ସେ ଭାରତୀୟ ପ୍ରକାଶକ ସଂଘର ପ୍ରଥମ ଏବଂ ଦୀର୍ଘକାଳଧରି ଏକମାତ୍ର ମହିଳା ସଦସ୍ୟ ଥିଲେ । ସେ ମେନସ୍ଟ୍ରିମ୍‌ର ସହ ସଂସ୍ଥାପକ ଏବଂ ଅରୁଣା ଅସଫ ଅଲ୍ଲୀଙ୍କ ଦ୍ୱାରା ସ୍ଥାପିତ ଏକ ସୁନ୍ଦର ସାହିତ୍ୟିକ ପ୍ରକାଶନ ସଂସ୍ଥା 'ରାଜକମ୍‌ଲ ପ୍ରକାଶନ'ର ପରିଚାଳନା ନିର୍ଦ୍ଦେଶିକା ଥିଲେ । ସେ ଆଇ.ସି ଟ୍ରଷ୍ଟର ପ୍ରତିଷ୍ଠାତା ଟ୍ରଷ୍ଟି । ଏହି ଟ୍ରଷ୍ଟ ସେସବୁ ବ୍ୟକ୍ତି ବା ସଂସ୍ଥାକୁ ଚିହ୍ନଟ କରେ ଯାହା କଲ୍ୟାଣକାରୀ ଅନୁଦାନ ଦୃଷ୍ଟିକୋଣରୁ ବେସରକାରୀ ସଂସ୍ଥାର ପରିସୀମା ବାହାରେ । ବାତ୍ୟା ଏବଂ ଭୂମିକମ୍ପ ପ୍ରପୀଡ଼ିତ ଅଞ୍ଚଳର କୌଣସି ବି ଗ୍ରାମ ଏହା ଅନ୍ତର୍ଭୁକ୍ତ ହୋଇପାରେ ଯେଉଁଠିକି କୌଣସି ସହଯୋଗୀ ସଂସ୍ଥା, ରିଲିଫ୍ ଚିକିତ୍ସକ ସଂଗଠନ ଏପରିକି କୌଣସି ସଂସ୍ଥାର ଓ ସାଧାରଣ  ଶିକ୍ଷକଟିଏର ସାହାଯ୍ୟ ବି ପହଞ୍ଚି ନଥିବ ।*

# ୧

# ଚଉମୁହାଁଣି ପରେ ଚଉମୁହାଁଣି...

## ଶୀଲା ସଂଧୁ

### ଏକ

୧୯୪୦ ମସିହା ବେଳକୁ ଷୋଳ ବର୍ଷ ବୟସରେ ମୁଁ ଗଭୀର ଆତ୍ମବିଶ୍ୱାସର ସହିତ ଭାବୁଥିଲି ଯେ ମୁଁ ମୋର ଅତି ସାଧାରଣ ପରିସ୍ଥିତିକୁ ଭଲ ଭାବରେ ବୁଝିପାରିଛି । ମୁଁ ଯଥା ମଧ୍ୟ ବୁଝିପାରିଥିଲି ଯେ ନିଜର ପରିବର୍ତ୍ତୀ ଜୀବନରେ କିପରି ବ୍ୟକ୍ତିତ୍ୱର ମଣିଷ ହେବି । ମୋ ପୃଥିବୀ କହିଲେ ନୀତିବାଦୀ, ଅତ୍ୟନ୍ତ ଦୟନୀୟଭାବେ ସରଳ ଦିଶୁଥିବା ପିତା ପ୍ରଫେସର ରାଜିନ୍ଦର ସିଂହ ଏବଂ ତାଙ୍କର ଅତ୍ୟନ୍ତ ସୁନ୍ଦରୀ, ଚଞ୍ଚଳା ପତ୍ନୀ ଅଜିତ କଉର ଥିଲେ । ସେମାନଙ୍କର ନୈଷ୍ଠିକ ସଂପୂର୍ଣ୍ଣ ଗାନ୍ଧୀବାଦୀ ପରିବାରରେ ମୋ ପରେ ଆଉ ଚାରୋଟି ସନ୍ତାନ ଥିଲେ । ଏହା ଏମିତି ଏକ ଘର ଥିଲା ଯେଉଁଠି ମୋଟାମୋଟି କୌଣସି ମତେ ସମସ୍ତେ ଚଳି ଯାଉଥିଲେ । ସେ ଘରର ବଡ଼ଭାବରେ ମୁଁ ମୋ ଦାୟିତ୍ୱ ବୁଝି ପାରିଥିଲି । ମୁଁ ଗୁରୁବାଣୀ ଆବୃତ୍ତି କରିପାରୁଥିଲି, ଚରଖାରେ ବୁଣିପାରୁଥିଲି, ଧଳା ଖଦି ପିନ୍ଧୁଥିଲି, ପନ୍ଦର ମିନିଟ୍ ସାଇକେଲ୍ ଚଳେଇ ସରକାରୀ ବାଳିକା ବିଦ୍ୟାଳୟ ଯାଉଥିଲି । ପରୀକ୍ଷାରେ ମତେ ମୋଟାମୋଟି ଚଳିଲାଭଳି ନମ୍ବର ମିଳୁଥିଲା ଯାହା ମୋ ବାପାଙ୍କୁ ସବୁବେଳେ ହତାଶ କରୁଥିଲା । ସାଇକେଲ୍ ଚଢ଼ି ଯିବା ସମୟତକ ମୋ ପାଇଁ ଦିନର ସବୁଠାରୁ ସୁଖଦ ସମୟ ଥିଲା । ଲାହୋରର ପ୍ରବଳ ଶୀତରେ ନିଜ ମୁହଁଉପରେ ସୂର୍ଯ୍ୟକିରଣର ଉଷ୍ମତା ଉପଭୋଗ କରିବାବେଳେ ମୋ କେଶ ଓ ଓଢ଼ଣିରେ ଛନ୍ଦି ହୋଇ ଯାଉଥିବା ପବନର ସର୍‌ସର୍ ଶବ୍ଦକୁ କେବଳ ଶୁଣୁଥିଲି ।

ମୋ ବାପା କ୍ୱଚିତ୍ ତଲଓ୍ୱଣ୍ଡୀର ଗୋଟିଏ ଗୁରୁଦ୍ୱାରରେ ଉପଦେଶକ ଥିବା ନିଜ ବୁଢ଼ାବାପା ଘୁଡ଼ାସିଂହ ଓ ଗୁଜରାଓ୍ୱାଲାର ବାଳିକା ମିଶନ୍ ସ୍କୁଲରେ ପ୍ରଧାନ ଅଧ୍ୟାପକ ଥିବା ନିଜ ପିତା ଛତ୍ତର ସିଂହଙ୍କ କଥା କହୁଥିଲେ । ଶିକ୍ଷାର ଏଇ ଛୋଟ ପରମ୍ପରା ସହିତ ମୋ ବାପା ସଂଯୁକ୍ତ ଥିଲେ । ଗାନ୍ଧୀବାଦୀ ଏବଂ ଅକାଳୀ ରାଜନୀତି ଭିତରେ ସୃଷ୍ଟି ହେଇଥିବା ଫାଟ ଯୋଗୁଁ ସେ ଇସ୍ତଫା ଦେବାକୁ ବାଧ୍ୟ ହେଲେ । ତାପରେ ଲାହୋରକୁ ଯାଇ ପାଞ୍ଚ ଛଅ

ଜଣ ଅନ୍ୟ ଲୋକଙ୍କ ସହିତ ମିଶି ଶିଖ୍ ନ୍ୟାସନାଲ କଲେଜ ସ୍ଥାପନାରେ ସାହାଯ୍ୟ କଲେ । ମୋ ଅନୁଚ୍ଛାକାଂକ୍ଷୀ ପିତାଙ୍କ ଉଦାରତା ମଧ୍ୟରେ ତପଶ୍ଚର୍ଯ୍ୟାର ଅନ୍ତଃପ୍ରବାହ, ଧର୍ମନିରପେକ୍ଷତା ଓ ଯୁକ୍ତିନିଷ୍ଠତାର ଅପୂର୍ବ ସଙ୍ଗମ କୌଣସି ନିଷ୍ଠାପର ଧାର୍ମିକ ଲୋକଙ୍କ ନିକଟରେ ହିଁ କେବଳ ସମ୍ଭବ । ତାଙ୍କ ନିମିତ୍ତ ଜ୍ୟୋତିଷ ଶାସ୍ତ୍ର, କାବ୍ୟକବିତା ଏବଂ ସଂଗୀତ ଧର୍ମର ନାମାନ୍ତର ଥିଲା । ସେ କବୀର, ଗାଲିବ, ନାନକ, ଟାଗୋର ଏବଂ ଇକ୍‌ବାଲ୍‌ଙ୍କ ଉପରେ ଆମ ଘରେ ଚର୍ଚ୍ଚା କରାଉଥିଲେ ଏବଂ ସେମାନଙ୍କ ସହିତ ମତେ ପରିଚିତ କରେଇଥିଲେ । ସମ୍ଭବତଃ ଶବ୍ଦ ସହିତ ମୋର ଆଜୀବନ ରୋମାନ୍ସର ଭିତ୍ତିଭୂମି ଏଇଠୁ ଆରମ୍ଭ ହୋଇଥିଲା ଓ ଭବିଷ୍ୟତରେ ଏ ଶବ୍ଦ ଶିଳ୍ପୀମାନଙ୍କୁ ଅଧ୍ୟୟନ କରିବାରେ ମୋ ଭୂମିକା ନିମିତ୍ତ ମତେ ପ୍ରସ୍ତୁତ କରିଥିଲା ।

ଗାନ୍ଧିଜୀ ଯେତେବେଳେ ଅସ୍ପୃଶ୍ୟତା ବିରୁଦ୍ଧରେ ସଂଗ୍ରାମ ଘୋଷଣା କଲେ ଭାପାଜୀ (ବାପା) ବଚ୍ଛନକୁ ଆମ ରୋଷେଇ ଘରେ ରାତିର ରୁଟି ତିଆରି କରିବାପାଇଁ କହିଲେ । ତାଙ୍କ ସ୍ତ୍ରୀ ନୀରବରେ ଏହା ସହିଲେ । ମାତ୍ର ଯେତେବେଳେ ସେ ସ୍ୱଦେଶୀ ହେଲେ ସେତେବେଳେ ତାଙ୍କର ଧୈର୍ଯ୍ୟର ବନ୍ଧ ଭାଙ୍ଗିଗଲା । ସେ ଛୋଟିଆ ବାରଣ୍ଡାରେ ନିଜ ଲୁଗାପଟାକୁ କୁହୁଳି କୁହୁଳି ପାଉଁଶଗଦାରେ ପରିଣତ ହେଉଥିବା ଦେଖି ସହି ପାରିଲେନି । ବାପା ମାଙ୍କ ମଧ୍ୟରେ ଥିବା ତିକ୍ତ ସମ୍ପର୍କର କଳାବାଦଲ ମୋର କିଶୋର ଅବସ୍ଥାକୁ ଆଚ୍ଛନ୍ନ କରି ପକାଇଥିଲା । ଏବଂ କିଛି ଅଶୁଭ ସଂକେତ ତାକୁ ଅଧିକ ଘନୀଭୂତ କରିଥିଲା । ଟାଗୋର ଗାର୍ଡ଼େନ୍ସର ଏଇ ଛୋଟ ପରିବାରକୁ ଧ୍ୱଂସବିଧ୍ୱଂସ କରିବାପାଇଁ ଏକ ବିନାଶୀ ଝଡ଼ର ଆଗମନ ସମ୍ପର୍କରେ ମୁଁ ସାମାନ୍ୟ ଆଭାସ ବି ପାଇନଥିଲି । ଗୋଟିଏ ଦୁଃଖଦ ଓ ଦ୍ୱନ୍ଦ୍ୱପୂର୍ଣ୍ଣ କୁହେଳିକା ମଧ୍ୟରୁ ମୁଁ କେବଳ ଏତିକି ଜାଣିପାରିଲି ଯେ ମୋ ପିତା, ଦୁଇ ଛୋଟ ଭାଇ ଓ ଭଉଣୀଙ୍କୁ ସେ ଆସନ୍ନ ପରିତ୍ୟାଗର ସର୍ବନାଶୀ ପରିଣାମରୁ ରକ୍ଷା କରିବା ମୋ ଭାଗ୍ୟରେ ଥିଲା । ମୋ ମାଙ୍କର ଗୃହତ୍ୟାଗ, ପଶ୍ଚାତାପସହିତ ପ୍ରତ୍ୟାବର୍ତ୍ତନ ଏବଂ ଶେଷରେ ସବୁଦିନ ପାଇଁ ଚାଲିଯିବା ଥିଲା ସେ ସର୍ବନାଶୀ ବିପଦ । ସେ ଏକ ଭିନ୍ନ ସମ୍ଭବତଃ କମ୍ କଷ୍ଟକର ଜୀବନ ମୋ ବାପାଙ୍କ ବନ୍ଧୁ ସହିତ ବାଛି ନେଇଥିଲେ । ତାଙ୍କ ନୂତନ ଜୀବନରେ ଆମ ଛଅ ଜଣଙ୍କର ସ୍ଥାନ ନଥିଲା ।

ଭାପାଜୀ ତାଙ୍କର ଅନ୍ତରର ଦୁଃଖ ମୋ ସହିତ ବାଣ୍ଟୁଥିଲେ ଏବଂ ମୁଁ ଆନ୍ତରିକ ଶ୍ରଦ୍ଧାର ସହିତ ସହାନୁଭୂତି ଜଣାଉଥିଲି । ଆଜି ମୁଁ ତାଙ୍କର ସ୍ୱାଭାବିକ ସୀମିତତା ଦେଖିପାରୁଛି । ତଥାପି ତାଙ୍କୁ ଦୋଷୀ ସାବ୍ୟସ୍ତ କରିବା କଠିନ ହୋଇପଡୁଛି । ମୋ ମାଙ୍କୁ ମୁଁ କେବେ କ୍ଷମା କରିପାରିନି । ସେ ଛାଡ଼ି ଚାଲିଯିବାପରେ ଦୁଃଖର ଏକ ମୋଟା ପର୍ଦ୍ଦା ଆମ ଚାରିପାଖରେ ଏପରି ଘେରି ରହୁଥିଲା ଯେ ମୁଁ ସେଥିରେ ବନ୍ଦୀ ଥିବାପରି ଅନୁଭବ କରୁଥିଲି । ହତାଶାରେ ମୁଁ ଅଖିଳ ଭାରତୀୟ ଛାତ୍ର ସଂଘକୁ ଲେଖିଲି ଓ ଯୁଦ୍ଧରେ ଯୋଗଦାନ ସ୍ୱରୂପ ଏକ ରେଶନ ଦୋକାନରେ ସ୍ୱେଚ୍ଛାରେ କାର୍ଯ୍ୟକରି ସାହାଯ୍ୟ କଲି । ୧୯୪୬ ମସିହା ବେଳକୁ ମୁଁ ବି.ଟି. ପାଶ କରିସାରିଥିଲି । ଲାହୋର ମହିଳା ମହାବିଦ୍ୟାଳୟରୁ ଏମ୍.ଏ. ପରୀକ୍ଷାରେ ସମଗ୍ର

ବିଶ୍ୱବିଦ୍ୟାଳୟରେ ମୁଁ ପ୍ରଥମ ହୋଇଥିଲି । ୟା ପରେ ହିଁ ମୋ ବାପା ହରଦେବଙ୍କ ସହିତ ମୋ ପ୍ରେମ ସମ୍ପର୍କକୁ ଅନନ୍ୟୋପାୟ ହୋଇ ସ୍ୱୀକୃତି ଦେଲେ । ଏକ କ୍ଷୀଣ ଶରୀର ବିଶିଷ୍ଟ ଇଂରାଜୀ ସାହିତ୍ୟର ଗ୍ରାଜୁଏଟ୍ ଥିଲେ ସେ, ଯାହାର ପକେଟ୍ ତ ଖାଲି ଥିଲା ମାତ୍ର ମସ୍ତିଷ୍କ ଭର୍ତ୍ତି ରୋମାନ୍ସ, କ୍ରିକେଟ୍ ଓ ବିପ୍ଳବ ଥିଲା । ୧୯୪୩ରେ ଥରେ ମୁଁ ମୋର ଧଡ଼ଡ଼ା ସାଇକେଲ୍‌ରେ ଯାଉଥିବାବେଳେ ହଠାତ୍ ତାଙ୍କ ସହିତ ଧକ୍କା ହେଲା – ଆଉ ସେ ମୋର ବହି ପତ୍ର ସହିତ ମୋ ଆବେଗକୁ ସାଉଁଟିବାରେ ସାହାଯ୍ୟ କଲେ । ଯେଉଁଥିରୁ ମୋ ମନରେ ତିଳେ ମାତ୍ର ସନ୍ଦେହ ରହିଲାନି ଯେ ଏଇ ସେ ବ୍ୟକ୍ତି ଯାହାଙ୍କ ସହିତ ମୁଁ ମୋ ଜୀବନର ସୁନ୍ଦର ଅର୍ଦ୍ଧଶତାବ୍ଦୀରୁ ଅଧିକ ସମୟ ବିତେଇବି । ପରବର୍ତ୍ତୀ ସମୟରେ ଶୀଲା ଭାଟିଆଙ୍କ ରଚିତ ବ୍ରିଟିଶ ବିରୋଧୀ ଗୀତ ଗାଇବା ଅପରାଧରେ ମୁଁ ପ୍ରୀତ ନଗରର ବିପ୍ଳବୀ ନବତେଜ ଓ ଉମାଙ୍କ ସହିତ ବନ୍ଦୀ ଥିବା ସମୟରେ ସେ ମତେ ଦେଖା କରିବା ପାଇଁ ଜେଲ୍ ଆସିଥିଲେ । ୧୯ବର୍ଷ ବୟସ ବେଳକୁ ସେ କମ୍ୟୁନିଷ୍ଟ ପାର୍ଟିରେ ଯୋଗ ଦେଇ ସାରିଥିଲେ । ପାଶ୍ଚାତ୍ୟ ସଭ୍ୟତା ପ୍ରଭାବିତ ତାଙ୍କ ସିଭିଲ୍ ଇଞ୍ଜିନିୟର୍ ପିତାଙ୍କ ମୃତ୍ୟୁର ତିନିବର୍ଷ ପରେ ସେ କଲେଜ ଓ ଘରୁ ତଡ଼ା ଖାଇଥିଲେ । ୪୨ ବର୍ଷୀୟା ବିଧବା ମା ତାଙ୍କର ସନ୍ତାନଙ୍କ ସହିତ ମଡ଼େଲ୍ ଟାଉନ୍‌ର ୮୧–ଜି ଘରେ ଦାରିଦ୍ର୍ୟର ଜୀବନ ବିତଉଥିଲେ ।

ମୋ ବାପା, ମୁଁ ଦରପନ୍ତରିଆ ଭାବେ ରାଜନୀତିରେ ସାମିଲ ହେବା ବିଷୟ ଜାଣିଥିଲେ କିନ୍ତୁ ତାଙ୍କର ପ୍ରକୃତ ବିରୋଧ ଥିଲା ଦୁଃଖୀ ଦେଖାଯାଉଥିବା ସେ କମ୍ୟୁନିଷ୍ଟ ହରଦେବ ପ୍ରତି ଯାହା ନିମନ୍ତେ ଲକ୍ଷ୍ୟସାଧନ ପାଇଁ ଯେକୌଣସି ପନ୍ଥା ଗ୍ରହଣୀୟ । ମୁଁ କୌଣସିପ୍ରକାରେ ବାପାଙ୍କୁ ଜଣେଇଦେଲି ଯେ ମୁଁ ଆଉ ଭାବିପତିମାନଙ୍କୁ ଦେଖି ପାରିବି ନାହିଁ କି ତାଙ୍କ ପରିବାର ଦ୍ୱାରା ନିରୀକ୍ଷିତ ହୋଇପାରିବି ନାହିଁ । ସାନ ଭଉଣୀର ବିବାହ ସରିବା ପର୍ଯ୍ୟନ୍ତ ମୁଁ ଅଡ଼ି ବସିଲି । ଯେତେବେଳେ ଏହି କାରଣରୁ ବାପାଙ୍କର ଏଥିପ୍ରତି ପ୍ରତିରୋଧ କମିଆସିଲା ଆମେ ବାହା ହେଲୁ । ଯଦିଓ ରାଜନୈତିକ, ନୈତିକ ଓ ଆବେଗାତ୍ମକ ସ୍ତରରେ ଏଇ ଅଯୋଗ୍ୟ ପାତ୍ରଟି ନିମନ୍ତେ ତାଙ୍କ ମନରେ ଏକ କୁଣ୍ଠାଭାବ ରହିଗଲା । ତାଙ୍କ ଦୃଷ୍ଟିରେ ହରଦେବ କୌଣସି ବ୍ୟକ୍ତିର ଝିଅପାଇଁ ସମ୍ପୂର୍ଣ୍ଣ ପ୍ରତିଷ୍ଠାହୀନ ପାତ୍ର । ୧୯୪୭ ମସିହା ଅଗଷ୍ଟ ୩ରେ ମୁଁ ମୋର ମସ୍ତକ ଅବନତ କରି 'ଆନନ୍ଦ କରଜ' ସମ୍ପନ୍ନ କଲି ଏବଂ ଥରେ ମାତ୍ର ପଛକୁ ନଚାହିଁ ସବୁଦିନପାଇଁ ଘର ଛାଡ଼ିଲି ।

ଦ୍ୱିପ୍ରହରର ଆଖି ଝଲସି ଯାଉଥିବା ଧୂ ଧୂ ଖରାରେ ଲାହୋର ସହରର ଜାଲପରି ଛନ୍ଦାଛନ୍ଦି ରାସ୍ତା ଓ ଗଳି, ଆଗରୁ କେବେ ଶୁଣା ଯାଇନଥିବା ଛାତି ଥରେଇ ଦେବାପରି ଭୟଙ୍କର ଗର୍ଜନରେ ପ୍ରକମ୍ପିତ ହେବାକୁ ଲାଗିଲା । ସତେ ଯେପରି ଆତ୍ମଗୋପନ କରିଥିବା ପ୍ରାଗ୍ ଐତିହାସିକ ରାକ୍ଷସ ବର୍ତ୍ତମାନ ଏଠି ସବାର ହେଇଛି – ଚାରିଆଡ଼େ ହର ହର ମହାଦେବ–ଆଲ୍ଲା...ହୁ...ଆକବର୍ ! ବୋଲେ ସୋ ନିହାଲ ! ଡରେ ମୋ ଛାତି ଥରିବାକୁ ଲାଗିଲା । ପ୍ରତ୍ୟେକଦିନ ରେଡ଼ିଓରୁ ହିନ୍ଦୁ–ମୁସଲମାନ ହିଂସା ଏପରିକି ଶିଖ୍–ମୁସ୍‌ଲିମ୍ ଦଂଗାର

ଅଶୁଭ ଖବର ବଡ଼ ଭୟଙ୍କର ରୂପରେ ଶୁଣିବାକୁ ମିଳୁଥିଲା । ସ୍ୱାଧୀନତା ସମ୍ପର୍କରେ ଆଉ ଆମ ପ୍ରିୟ ସହର ଲାହୋରର ବିଭାଜନ ସମ୍ପର୍କରେ କଥା ଉଠୁଥିଲା । ମୋ ବାପା, ଯିଏ ମାଛିକୁ ମର୍ ବୋଲି କହିପାରନ୍ତିନି, ସେ ସାଂପ୍ରଦାୟିକ ଉତ୍ତେଜନା ସୃଷ୍ଟି କରିବା ଆରୋପରେ ଅନ୍ୟ କେତେକଙ୍କ ସହିତ ଗିରଫ ହେଲେ ଓ ଲାହୋରର କେନ୍ଦ୍ରୀୟ ଜେଲରେ ବନ୍ଦୀ ହେଲେ । ୧୯ ତାରିଖରେ ଲାହୋରର ଗଳି ଉପଗଳିରେ ଛପି ବସିଥିବା ଅବଶ୍ୟମ୍ଭାବୀ ବିପଦକୁ ବେଖାତିର କରି ହରଦେବ ଓ ମୁଁ ଗୋଟେ ଟାଙ୍ଗାରେ ତାଙ୍କୁ ଦେଖା କରିବାକୁ ଗଲୁ । ପିଲାମାନଙ୍କ ସମ୍ପର୍କରେ କିଛି ପରାମର୍ଶ ସହିତ ତାଙ୍କଠୁ ଘରର ଚାବି ଆଣିବାର ଥିଲା । ସେ ଖୁବ୍ କ୍ଳାନ୍ତ ଓ ଦୁଃଖୀ ଦେଖାଯାଉଥିଲେ ।

ମେକ୍‌ଲାଡ୍ ରୋଡ୍‌ରେ ଥିବା ପାର୍ଟି ଅଫିସ୍, ଲୋକ ଓ ଗୁଜବରେ ଗହ ଗହ ତାକୁଥିଲା । ସେଦିନ ରାତିରେ ଆମେ ଏଫ୍.ସି. କଲେଜରେ ଫ୍ରାଙ୍କ୍ ଠାକୁରଦାସଙ୍କ ଘରେ ରହିଲୁ । ସେ ଆତ୍ମୀୟତାର ସହିତ ବିପନ୍ନ ଲୋକଙ୍କ ପାଇଁ ତାଙ୍କ ଘରର ଦ୍ୱାର ଖୋଲିଦେଲେ । ମାତ୍ର ତାଙ୍କ ସ୍ତ୍ରୀ ଏଇ ବିଶୃଙ୍ଖଳା ଓ ଅବ୍ୟବସ୍ଥା ଦେଖି ଅତିଷ୍ଠ ହୋଇ ଉଠୁଥିଲେ । ପରଦିନ ସକାଳୁ ଆମେ ଡ. ଅମରିକ୍ ସିଂହଙ୍କ ସହିତ ଖାଲ୍‌ସା କଲେଜ ଚାଲିଗଲୁ । ସେ ସମୟରେ କଏଦୀ ଏବଂ ଶୁଣାଣି ହେବାକୁ ଥିବା ଲୋକଙ୍କର ଅବସ୍ଥା କହିବାକୁ ଗଲେ ଅତି ଶୋଚନୀୟ ଥିଲା । ଦିନେ ସେମାନେ ଦୋଷୀ ସାବ୍ୟସ୍ତ ହେଉଥିଲେ, ତା'ପରଦିନ ହିରୋ ହେଇ ଉଠୁଥିଲେ, ପୁନଶ୍ଚ ଦୋଷୀ ସାବ୍ୟସ୍ତ ହେଉଥିଲେ ପୁଣି ଖଲାସ ହେଉଥିଲେ । ଅରାଜକତା, ଦ୍ୱନ୍ଦ୍ୱ ଅନିଶ୍ଚିତତାର ଚରମ ରାଜତ୍ୱ ଚାଲିଥିଲା । ନ୍ୟାୟାଳୟଗୁଡ଼ିକୁ ଏକ ଅଦ୍‌ଭୁତ ଉଦାସୀନତା ଓ ଆତଙ୍କ ଆବୋରି ବସିଥିଲା ।

ସବୁକିଛି ଅନିଶ୍ଚିତ ଥିଲା । ୨୩ ତାରିଖର ଏକ ନୀରବ ନିସ୍ତବ୍ଧ ଅପରାହ୍ଣରେ ଆମେ ଗୋଟେ ମିଲିଟାରୀ ଟ୍ରକରେ ଲଦା ହେଇଥିବା ଦୁର୍ଗନ୍ଧଯୁକ୍ତ କୃଷିଜାତ ଦ୍ରବ୍ୟ ସହିତ ଅମୃତସର ସୀମା ପାରହେଲୁ । ସେଠି ପାର୍ଟି ଅଫିସରେ କମ୍ରେଡ୍‌ମାନଙ୍କର ଗହଳଚହଳ ଭିତରେ ମତେ ନିରାପଦ ଲାଗୁଥିଲା ଓ ଛୁଟି କାଟିବାକୁ ଆସିଥିବାପରି ମନେ ହେଉଥିଲା । ଅପ୍ରତ୍ୟାଶିତ ପରିସ୍ଥିତିର ଶିକାର ହୋଇଥିବା ଶହଶହ ଲୋକଙ୍କ ପରି ମୁଁ ମୋ ବାପାଙ୍କର ସେ ଅଶୁଭ ଘରର ଚାବି ପଡ଼ୋଶୀଙ୍କ ହାତରେ ଦେଇ ଆସିଥିଲି । ବାରମ୍ବାର ମୋର ସେଠିକି ଫେରିଯାଇ ସେଠି ବିତେଇଥିବା ଜୀବନର କିଛି ଅଂଶ ସାଉଁଟି ଆଣିବାକୁ ଇଚ୍ଛା ହେଉଥିଲା । ତା'ସହିତ ମୋ ଭିତରେ ଏକ ଆତଙ୍କଭାବ ଅଧିକରୁ ଅଧିକ ବଢ଼ିବାକୁ ଲାଗିଲା ଯେ ମୋର ଏ ପାଗଳାମି ବୋଧେ କେବେ ଶେଷ ହେବନି ।

ତିନିଦିନ ପରେ ସେଇ ଭୟଙ୍କର ବର୍ଷର ଗୋଟିଏ ଅଶ୍ୱସ୍ତିକର ଅପରାହ୍ଣରେ ଆମେ ଘରକୁ ଫେରୁଥିବା ସମୟରେ ଆମକୁ କୁହାଗଲା ଯେ କିଛି କଏଦୀ ନିର୍ଦ୍ଦୋଷରେ ଖଲାସ ହେଉଛନ୍ତି ଏବଂ କିଛି ହିଂସାତ୍ମକ କାଣ୍ଡ ବି ହେଇଛି । କାହା ପାଖରେ କିଛି ନିର୍ଦ୍ଦିଷ୍ଟ ଖବର ନଥିଲା । ଆମେ ଅନ୍ଧପରି ସେ ଘୂର୍ଣ୍ଣି ଭିତରକୁ ଲମ୍ଫ ଦେଲୁ ଆଉ ଏମିତି ଏକ ଭଉଁରୀରେ ପଡ଼ିଗଲୁ ଯେ ମନେହେଲା ସତେଯେପରି ଆକାଶ ଆମ ମୁଣ୍ଡ ଉପରେ ଭାଙ୍ଗି ପଡ଼ିଛି ।

ପ୍ରକୃତିସ୍ଥ ହେଲାବେଳକୁ ମତେ କୁହାଗଲା ଯେ ମୋ ବାପା, ତାଙ୍କ ସହିତ ଥିବା ଅନ୍ୟ କେତେଜଣଙ୍କ ପରି ଏକ ଅନିର୍ଦ୍ଧାରିତ ତାରିଖରେ ନିର୍ଦ୍ଦୋଷରେ ଖଲାସ ହୋଇଥିଲେ । କିନ୍ତୁ ଲାହୋରରେ କୋର୍ଟ ବାହାରେ ଥିବା ଶିଢ଼ି ଉପରେ ଦଙ୍ଗାପରି ଏକ ପରିସ୍ଥିତିରେ ତାଙ୍କୁ ମାରି ଦିଆଗଲା ।

ଅନେକ ପରେ ୧୯୪୮ ମସିହା ନଭେମ୍ବରରେ ମୁଁ ଶେଷଥର ପାଇଁ ରଣଧୀର ସିଂହ ଓ ଡ.ଇନ୍ଦ୍ରଜିତ ସିଂହଙ୍କ ସହିତ ଲାହୋର ଯାତ୍ରା କଲି । ମୁଁ ଗୋଟେ ଆବେଗପୂର୍ଣ୍ଣ ଯାତ୍ରା କରୁଥିଲି – ଯାହାର ଉଦ୍ଦେଶ୍ୟ ଥିଲା ମୋ ବୁଢ଼ୀ ମା ମତେ ଦେଇଥିବା ସାଧାରଣ ଗହଣାକୁ ଉଦ୍ଧାର କରିବା । ଏ ଗହଣା ବ୍ୟାଙ୍କରେ ମୋ ବାପାଙ୍କ ଲକ୍‌ରରେ ଏମିତି ପରିତ୍ୟକ୍ତ ଓ ସୁରକ୍ଷିତ ଅବସ୍ଥାରେ ପଡ଼ିରହିଥିଲା । ମୁଁ ଶେଷଥରପାଇଁ ଦୁଃଖରେ ଜର୍ଜରିତ ହୋଇ ନିଜ ଶୈଶବ ଅତିବାହିତ କରିଥିବା ଘରଆଡ଼କୁ ଚାହିଁ ରହିଥିଲି । ଆମର ପଡ଼ୋଶୀଙ୍କ ନବମ ଯୁବତୀ ପତ୍ନୀ କୁଲ୍‌ସୁମ୍ ବାନୋ ଆତଙ୍କିତ ଓ ଲଜ୍ଜିତ ସ୍ୱରରେ ସେଠିକି ଆଉ କେବେ ନ ଫେରିବାକୁ ଅନୁରୋଧ କଲେ । ସେ ତାଙ୍କ ଘରର ପୁରୁଷଲୋକଙ୍କ ବ୍ୟବହାର ଉପରେ ଆଦୌ ଆସ୍ଥାବାନ ନ ଥିଲେ । ମୋର ଏ ଯାତ୍ରା ଅତ୍ୟନ୍ତ ନିରାଶାଜନକ, ନିରର୍ଥକ, ବିପଦସଙ୍କୁଳ ଓ ବିଫଳ ଥିଲା । ରେଳଗାଡ଼ି, ରିଫ୍ୟୁଜି କ୍ୟାମ୍ପ, ଗାଁ ଗାଁ, ସହର ସହରରେ ମାତଲାମି ସତେଯେପରି ସବାର ହୋଇଥିଲା ।

ବାହାହେବାର କୋଡ଼ିଏ ଦିନ ମଧ୍ୟରେ, ମୁଁ ମୋ ମା'ଙ୍କର ସମସ୍ତ ପିଲାଙ୍କୁ ଉତ୍ତରାଧିକାର ସୂତ୍ରରେ ପାଇଲି । କେହି ଅଜିତ୍ କଉର୍‌ର ଖବର କହିପାରିଲେନି କି ତାଙ୍କ ବିଷୟରେ ଆଉ କେହି କୌଣସି କଥା ଉଠେଇଲେନି । ୪୫ ବର୍ଷ ପରେ, ଯେତେବେଳେ ସେ ମରଣ ଶଯ୍ୟାରେ ସେତେବେଳେ ମୋର ତାଙ୍କ ସହିତ ଦେଖା ହେଇଥିଲା । ବାସ୍ ତାପରେ ଆଉ କେବେ ଦେଖାହେଇନି ।

## ଦୁଇ

ବିଭିନ୍ନ ବୟସ ଓ ରୂପର ଭାଇଭଉଣୀଙ୍କର ଗୋଟିଏ ଦଳସହିତ ମୁଁ ଓ ହରଦେବ ପାର୍ଟି ଅଫିସର ମୁଖ୍ୟ କାର୍ଯ୍ୟାଳୟକୁ ଚାଲିଗଲୁ । ସେଠାକାର ବର୍ଦ୍ଧିତ ପରିବାର ଆମକୁ ନିର୍ଭରଯୋଗ୍ୟ ଆଶ୍ରୟ ଓ ସୁରକ୍ଷା ଦେବାସହିତ ଆପଣେଇ ନେଲା । ବିପ୍ଳବ ଉଦ୍ଦେଶ୍ୟରେ ସମ୍ପୂର୍ଣ୍ଣ ଉତ୍ସର୍ଗୀକୃତ କର୍ମୀ ହେଇଥିବାରୁ ହରଦେବଙ୍କୁ ମାଗଣା ଖୋରାକ ପୋଷାକ ସହିତ ମାସକୁ ରାଜକୀୟ ଦରମା ବାବଦରେ ୨୫ଟଙ୍କା ମିଳୁଥିଲା । ତାଙ୍କ ରୋଜଗାର ପରବର୍ତ୍ତୀ ପ୍ରାୟ ଡଜନେ କି ତାଠୁଁ ଅଧିକ ବର୍ଷ ପର୍ଯ୍ୟନ୍ତ ଏଇଆ ହିଁ ଥିଲା । ସଙ୍କଟର ସେସବୁ ଘଡ଼ିସନ୍ଧି ସମୟରେ ମୁଖ୍ୟ ପାର୍ଟି ଅଫିସ ପକ୍ଷରେ ସେଠୁ ଚାଲି ଆସିଥିବା କମ୍ରେଡ଼ମାନଙ୍କ ପରିବାରକୁ ଅନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ବାସସ୍ଥଳ ଓ ଖାଦ୍ୟ ଯୋଗାଇଦେବା ଅସମ୍ଭବ ଥିଲା । ପ୍ରତ୍ୟେକଙ୍କର କ୍ଷୟକ୍ଷତି ଓ ଗୃହହୀନ ହେବାର କାହାଣୀ ପୃଥକ ଓ ଭୟଙ୍କର ଥିଲା । ଜଳନ୍ଧରର ରୈନାକ୍ ବଜାରରେ ସାଇକେଲ୍ ଚଳେଇ ଯାଉଥିବା ସମୟରେ ହରଦେବ ସେ ଭୟଙ୍କର ସମ୍ବାଦ ଶୁଣି ପାର୍ଟି

ଅଫିସକୁ ଧାଇଁ ଆସି ଆମକୁ ଜଣେଇଲେ । ମୁଁ ମୋ ଅନ୍ଧ ବୟସ୍କ ପିତାଙ୍କ ହତ୍ୟା ଖବରରେ ଯେତେ ମ୍ରିୟମାଣ ହୋଇନଥିଲି ତାଠୁଁ ଅଧିକ ଶୋକାଭିଭୂତ ହେଇପଡ଼ିଲି ଗାନ୍ଧିଜୀଙ୍କ ଖବରରେ । ହଠାତ୍ ମୋ ହୃଦୟ ଭିତରେ ଉଠିଥିବା ଉଷ୍ଣପ୍ରବାହ ସତେ ଯେମିତି ସ୍ତବ୍ଧ ହୋଇଗଲା । ମୋ ମନରେ ଏପରି ଏକ ଶୂନ୍ୟତା ସୃଷ୍ଟି ହେଲା ଯାହା ଅପୂରଣୀୟ ରହିଗଲା ।

ଯେହେତୁ ଆମ ଭିତରେ ମୁଁ ଏକମାତ୍ର ଚାକିରି ଯୋଗ୍ୟ ବ୍ୟକ୍ତି ଥିଲି, ତେଣୁ ଯେତେ ଶୀଘ୍ର ସମ୍ଭବ ମୁଁ ଚାକିରି ପାଇଁ ଆବେଦନ କରିବା ବିଷୟରେ ନିଷ୍ପତ୍ତି ନିଆଗଲା । ମାତ୍ର ମୁଁ କେବେ ବି ଭାବୁନଥିଲି ଯେ ମୁଁ କୌଣସି ଚାକିରି ପାଇଁ ଯୋଗ୍ୟ ! ଜଣେ ତେଇଶି ବର୍ଷର ବ୍ୟକ୍ତିଭାବରେ ମୁଁ ଯେତେବେଳେ ଦୃଢ଼ ବ୍ୟକ୍ତିତ୍ୱ ସମ୍ପନ୍ନ, ସାହସୀ ଓ ଆତ୍ମବିଶ୍ୱାସୀ ହେବା ଦରକାର ଥିଲା ସେତେବେଳେ ମୁଁ ଥିଲି ଭୀରୁ, ଲାଜୁଆ, ନିଷ୍ପତ୍ତି ନେଇ ପାରୁନଥିବା, କିଂକର୍ତ୍ତବ୍ୟବିମୂଢ଼ ବ୍ୟକ୍ତି । ଚାରିପାଖରେ ଘଟୁଥିବା ଦଙ୍ଗା ଓ ଉନ୍ମତ୍ତକାଣ୍ଡ ଯାହା ସଦାସର୍ବଦା ଆମକୁ ଭୟଭୀତ କରି ରଖିଥିଲା, ସେଥିରୁ ରକ୍ଷାପାଇବାପାଇଁ ମୁଁ ମୋର ପ୍ରକୃତ ବିବି ସୁଶୀଲ କାଉର୍‌କୁ ମୋ ନିଜଠୁଁ ବି ଜୋରଜବରଦସ୍ତ ଦୂରେଇ, ଲୁଚେଇ ରଖୁଥିଲି । ପଞ୍ଜାବର ଶିକ୍ଷା ନିର୍ଦ୍ଦେଶକ ଜି.ସି. ଚାଟାର୍ଜୀ ମୋ ବାପାଙ୍କ ବିଷୟରେ ସବୁ ଶୁଣିଥିଲେ, ସେ ମତେ ମୋର ପ୍ରଥମ ଚାକିରିପାଇଁ ଆବେଦନ କରିବାକୁ କହିଲେ । ସତରେ କ'ଣ ମୁଁ ସେଇ ଲୋକ ଯାହାକୁ ଲୁଧିଆନାର ସରକାରୀ ମହିଳା ମହାବିଦ୍ୟାଳୟରେ ଅଧ୍ୟାପିକା ଚାକିରି ମିଳିଲା ? ଯେତେବେଳେ ଆମ ଚତୁର୍ପାର୍ଶ୍ୱର ଜଗତ ଖଣ୍ଡ ଖଣ୍ଡ ହେଇ ଭାଙ୍ଗିପଡୁଥିଲା ସେତେବେଳେ ସତରେ କ'ଣ କେହି ଜଣେ ବି ମୋଠୁଁ ଭୂଗୋଳ ପଢ଼ିବାକୁ ଆଗ୍ରହୀ ଥିଲେ ?

ଯାହାହେଉ ପ୍ରତ୍ୟେକ ମାସରେ ୨୧୦ ଟଙ୍କାର ନିୟମିତ ଆମଦାନିର ସମ୍ଭାବନା ଗୋଟେ ବଡ଼ ଆଶ୍ୱାସନାର ବିଷୟ ଥିଲା । ମୁଁ ହରଦେବଙ୍କୁ ବହୁତ ବୁଝେଇଲି ନିଜ ମାଙ୍କ ସହିତ ଭଲ ସମ୍ପର୍କ କରିନେବା ସହିତ ଦୁଇ ଭାଇଙ୍କ ପ୍ରତି ତାଙ୍କର କର୍ତ୍ତବ୍ୟ କରିବାକୁ । ଯାହାଫଳରେ ସେମାନେ ଦୁହେଁ ଆମ ସହିତ ରହିଲେ । କେମିତି ଏ ଦରମା ଗଣ୍ଡାକରେ ଆଠଜଣ ପ୍ରାପ୍ତବୟସ୍କ ଲୋକ ପୋଷି ହେଉଥିଲେ, ମୁଁ ନିଜେ ଜାଣେନା । ଏବେ ବି ଛୋଟ ଶିଶୁକୁ ଡହଳ ବିକଳ ହେଇ କାନ୍ଦୁଥିବା ମା'ର ଛାତିରୁ ଟାଣି ଟ୍ରେନ୍ ବାହାରକୁ ରାତ୍ରିର ଶୀତଳ ଅନ୍ଧକାର ଭିତରକୁ ଫୋପାଡ଼ି ଦିଆଯାଉଥିବାର ଦୃଶ୍ୟରୁ ମୁଁ ନିସ୍ତାର ପାଇନାହିଁ, ଭୁଲିପାରିନାହିଁ ସେ ନବଜାତ ମୃତ ଶିଶୁର ଯୁବତୀ ମା'ର ଦୁଃଖ, ଯାହାକୁ ମୁଁ କୌଣସି ଅଜଣା ଅଚିହ୍ନା ଷ୍ଟେସନ ପ୍ଲାଟଫର୍ମରେ ଜନ୍ମ ନେବାରେ ସାହାଯ୍ୟ କରିଥିଲି । କାଲ୍‌କାଜୀ ଶରଣାର୍ଥୀ ଶିବିରରେ ମୋର ଗର୍ଭପାତକୁ ମୁଁ ଅଦୃଷ୍ଟର ଲେଖାବୋଲି ମାନି ନେଇଥିଲି, ତା' ଆମପାଇଁ ମଙ୍ଗଳକର ହିଁ ଥିଲା । ବହୁପରେ ୧୯୫୦ ମସିହା ଏପ୍ରିଲ ମାସରେ ଆମ ଲୁଧିଆନା ଘରେ ଜଣେ ଧାଈ ସାହାଯ୍ୟରେ ଗୋଟିଏ ସୁନ୍ଦର ଝିଅକୁ ଜନ୍ମ ଦେବାବେଳେ ମୋର ସେକଥା ମନେ ପଡ଼ିଲା । ବଲ୍‌ଶେଭିକ୍ ବିପ୍ଳବରେ ଶହୀଦ୍ ହୋଇଥିବା ବିପ୍ଳବିନୀଙ୍କ ନାମାନୁସାରେ ଆମ ଝିଅର ନାଁ ରଖିଲୁ ଜୋୟା ।

୧୯୪୯ ମସିହାରେ ନେହେରୁଙ୍କ ନେତୃତ୍ୱରେ ଥିବା ଅଭିଜ୍ଞତାହୀନ ସରକାର କମ୍ୟୁନିଷ୍ଟ ପାର୍ଟିକୁ ତାର ମିଥ୍ୟା ସ୍ୱାଧୀନତା (ଝୁଟି ଆଜାଦି) ସ୍ଲୋଗାନ ପାଇଁ ନିଷିଦ୍ଧ କରିଦେଲା । ଆମେ ସମସ୍ତେ ସମସ୍ୱରରେ ବଡ଼ ଉତ୍ସାହର ସହିତ ଗାଉଥିଲୁ 'ବଦଳିଗଲା ତାଲା, କିନ୍ତୁ ବଦଳି ନାହିଁ ଚାବି'' ! (ବଦଲ୍ ଗୟା ହୈ ତାଲା, ପର୍ ବଦ୍‌ଲି ନହିଁ, ହୈ ଚାବି'') । ହରଦେବ ଆତ୍ମଗୋପନ କରିବାକୁ ବାଧ୍ୟହେଲେ । ସେ ମଇଳା ପଗଡ଼ି ବାନ୍ଧି ଅସ୍ତବ୍ୟସ୍ତ ହୋଇଯାଇଥିବା ଦାଢ଼ି କାଟି ଏକ ନୂଆ ଅବତାର ଗ୍ରହଣ କରି ମୋହନ ରୂପରେ ଜନ୍ମ ନେଲେ । ବାରମ୍ବାର ତାଙ୍କୁ ପୋଲିସଠୁଁ ଲୁଚିବାକୁ ଓ ଧାଇଁବାକୁ ପଡୁଥିଲା । ଅନେକଙ୍କପରି ତାଙ୍କ ସ୍ତ୍ରୀଙ୍କ ପଛରେ ବି ସି.ଆଇ.ଡ଼ି ପଡ଼ିଥିଲା ଏବଂ ତାଙ୍କ ସରକାରୀ ଚାକିରିର ଅବସ୍ଥା ବି ବିପନ୍ନ ଥିଲା । ଆସନ୍ନ ବିପ୍ଳବ ପାଇଁ ଏତିକି ମୂଲ୍ୟଦେବା ବି ସ୍ୱାଭାବିକ କଥା । କ'ଣ ଏ ସର୍ବସାଧାରଣ ଧର୍ମଘଟ ବୁର୍ଜୁଆ ସରକାରୀ କଳକୁ ଅଚଳ କରି ଦେଇନଥାନ୍ତା ନା ପୁଞ୍ଜିବାଦକୁ ତାସ୍‌ର ମହଲ ପରି ଧସେଇ ପକେଇ ନଥାନ୍ତା । ଆମେ ଅପେକ୍ଷା କରିଥିଲୁ ।

ବିପ୍ଳବ ତାଙ୍କ ଅବସ୍ଥା ଏମିତି ତଳିତଳାନ୍ତ କରି ଦେଇଥିଲା ଯେ ଜେଲ୍‌ସବୁ କମ୍ରେଡ଼ ପୂର୍ଣ୍ଣ ହେଇଗଲା । କିନ୍ତୁ ମୋହନ ନିଜ ଚାଲାଖିରୁ ଧରାନପଡ଼ି ରହିପାରିଥିଲେ । ସେ ଚାରିବର୍ଷଧରି ଅଣ୍ଡରଗ୍ରାଉଣ୍ଡରେ ରହିଲେ, ମାତ୍ର ତାଙ୍କ ମଜାଳିଆ ସ୍ୱଭାବ ସେମିତି ଅତୁଟ ଥିଲା । ଏପରିକି ଜଣେ କମ୍ୟୁନିଷ୍ଟର ସ୍ତ୍ରୀ ହେଇଥିବା ଯୋଗୁଁ ମୁଁ ଚାକିରି ହରେଇବା ବେଳେ ମଧ୍ୟ ।

ରାଷ୍ଟ୍ରୀୟ ଲୋକସେବା ଆୟୋଗ (ୟୁ.ପି.ଏସ୍.ସି) ଦ୍ୱାରା ଖବର କାଗଜରେ ବାହାରିଥିବା ଏକ ବିଜ୍ଞାପନ ଅନୁସାରେ ମୁଁ ଆବେଦନ କଲି ଏବଂ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ଗୋଟିଏ ଗେଜେଟେଡ୍ ପଦ ପାଇଁ ମନୋନୀତ ହେଲି । ମତେ କେନ୍ଦ୍ରୀୟ ଶିକ୍ଷା ସଂସ୍ଥାନରେ ଛାତ୍ରଙ୍କୁ ଭୂଗୋଳ ପଢ଼ାଇବାପାଇଁ ନିଯୁକ୍ତି ଦିଆଗଲା । ୧୯୫୦ ମସିହା ଶୀତଦିନରେ ତିମାରପୁର ପାଖରେ ଆମେ ଗୋଟେ ଛୋଟ ବାରାକ୍ ମାସିକ ୩୦ ଟଙ୍କା ଭଡ଼ାରେ ନେଲୁ । ସେ ଛୋଟ ବାସସ୍ଥାନଟି ଖୁବ୍ ଶୀଘ୍ର ବନ୍ଧୁବାନ୍ଧବ, କମ୍ରେଡ଼, ଆତ୍ମୀୟସ୍ୱଜନ ଓ ଛିନ୍ନବିଛିନ୍ନ ହେଇ ଯାଇଥିବା ଖଣ୍ଡିତ ଜୀବନଗୁଡ଼ିକୁ କୋଳେଇ ନେଇ ପୂର୍ଣ୍ଣ ହୋଇଉଠିଥିଲା । ସେ ଘରଟି ଥିଲା ସମଗ୍ର ପୃଥିବୀର ଅପୂର୍ଣ୍ଣ ଇଚ୍ଛା ଓ ସ୍ୱପ୍ନର ଏକ ବିରାଟ ବିଶ୍ୱ ।

ହରଦେବ ପ୍ରତ୍ୟେକ ଦିନ ଅନେକ ଦୂରରେ ଥିବା ଫିରୋଜ ଶାହ ରୋଡ଼ରେ ଥିବା ପାର୍ଟି ଅଫିସକୁ ସାଇକେଲ୍ ଚଳେଇ ଯାଉଥିଲେ । ମୁଁ କଲେଜକୁ ଚାଲି ଚାଲି ଯାଉଥିଲି । ସେହି କେନ୍ଦ୍ରୀୟ ଶିକ୍ଷା ସଂସ୍ଥାନରେ ପଢ଼େଇବା ସହିତ ସେଠାରେ ଅଧ୍ୟକ୍ଷ ପିତୃ ପ୍ରତିମ ଢ ବାସୁଙ୍କ ପ୍ରେରଣାରେ ଏମ୍.ଏଡ଼ରେ ଆଡ଼୍‌ମିଶନ ନେଲି ଓ ପୁନର୍ବାର ପ୍ରଥମ ହେଇ ବିସ୍ମିତ ହେଲି ଆଉ ଏଥର ଲାହୋରରୁ ମାଇଲ୍ ମାଇଲ୍ ଦୂରରେ ଥିବା ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ । ହରଦେବ ବିହ୍ୱଳ ହୋଇଉଠିଥିଲେ । ଏହା ସତେଯେପରି ମୋ ମୃତ ବାପାଙ୍କର ଆନନ୍ଦର ପ୍ରତିଧ୍ୱନି ଥିଲା । ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ପ୍ରଥମ ହେବା ସତ୍ତ୍ୱେ ମୋ ଚାକିରିକୁ ରକ୍ଷା କରାଯାଇ ପାରିଲା ନାହିଁ । କାରଣ ସି.ଆଇ.ଡ଼ି ମୋ ବିରୁଦ୍ଧରେ ପ୍ରତିକୂଳ ରିପୋର୍ଟ

ଗୃହମନ୍ତ୍ରଣାଳୟରେ ଦାଖଲ କରିଥିଲା । ଡ. ବାସୁ ମତେ ପଂଜାବ ଶିକ୍ଷାବିଭାଗକୁ ପୁନର୍ବାର ଫେରିଯିବାକୁ ପଡ଼ିପାରେ ଜାଣି ମର୍ମାହତ ହେଲେ । ମୁଁ ବୃଥାଟାରେ ବହୁ ରାଜନୀତିଜ୍ଞଙ୍କ ଦ୍ୱାରସ୍ଥ ହେଲି । ଏପରିକି ଉପରାଷ୍ଟ୍ରପତି ଡ.ଏମ୍. ରାଧାକ୍ରିଷ୍ଣନ୍‌ଙ୍କ ନିକଟରେ ଅନ୍ୟାୟ ବିରୁଦ୍ଧରେ ଆବେଦନ କଲି । ତାଙ୍କ ଚାହାଣିରେ ଏକ ଚମକ ଫୁଟିଉଠିଲା ଆଉ ସେ ବେଶ୍ ମଜାର ସହିତ ମତେ ପଚାରିଲେ ଯେ ମୋ ହୃଦୟରେ କ'ଣ ବିପ୍ଳବର ଅଗ୍ନି ଜଳୁଛି ! କଥା ବାଆଁରେଇ ତାଙ୍କୁ ଦୃଢ଼ତା ସହକାରେ କହିଲି ଯେ ମୁଁ ଭୂଗୋଳର ଜଣେ ଦକ୍ଷ ଶିକ୍ଷୟିତ୍ରୀ । ସେ ସହାନୁଭୂତିର ସହିତ ଶୁଣିଲେ ଏବଂ ଗୃହମନ୍ତ୍ରୀଙ୍କ ନିକଟକୁ ଯିବାକୁ ନିର୍ଦ୍ଦେଶ ଦେଇ ଯା ବି କହିଲେ ଯେ "ଡ. କାଟ୍‌ଜୁ କିଛି ଶୁଣନ୍ତିନି, ସତେ ଯେମିତି ବଧିର । ସେ ତୁମକୁ ନିର୍ଦ୍ଦୋଷ ବୋଲି ଗ୍ରହଣ କରିବେନି ।"

ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ମୋ ଚାକିରି ଗଲାବେଳକୁ ମୋର ବୟସ ୩୦ । ମତେ ପଞ୍ଜାବକୁ ଫେରାଇ ଦିଆଗଲା ଆଉ ଜାଣିଶୁଣି ସିମଲାର ମହିଳା ମହାବିଦ୍ୟାଳୟରେ ନିଯୁକ୍ତି ଦିଆଗଲା । ମୁଁ ଏକାକିନୀ ମହିଳାମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ଛାତ୍ରାବାସରେ ରହିଲି ଆଉ ମୋର ରୋଜଗାର ବଢ଼େଇବାପାଇଁ ଷଷ୍ଠ ସପ୍ତମ ଓ ଅଷ୍ଟମ ଶ୍ରେଣୀପାଇଁ ଇଂରାଜୀରେ ଭୂଗୋଳ ପାଠ୍ୟପୁସ୍ତକ ଲେଖିଲି । ଅମୃତସରର ଗୋବର୍ଦ୍ଧନ କପୁର ଏଣ୍ଡ ସନ୍‌ସ ଦ୍ୱାରା ଏହା ପ୍ରକାଶିତ ହୋଇଥିଲା । ମୁଁ କେବେ ବି ଜାଣିପାରିଲିନି କେତେଖଣ୍ଡ ବହି ଛପା ହେଇଥିଲା ଓ ବିକ୍ରି ହେଲା । ମୋର ଥରକର ଚୁକ୍ତି କଥା ମନେପଡ଼ୁଛି, ଥରେ ଦିଥର କିଛି ମୋଟା ଟଙ୍କା ମିଳିଛି । କିନ୍ତୁ ଅଭାବୀ ଦିନଗୁଡ଼ିକରେ ସେ ଟଙ୍କା ସବୁ କୁଆଡ଼େ ଗଲା କିଛି ମନେ ପଡୁନି । ପ୍ରତ୍ୟେକଟି ଜିନିଷ ମୋ ପ୍ରତ୍ୟାଶାଠୁଁ ବେଶି ଓ ଆବଶ୍ୟକତାଠୁଁ କମ୍ ବୋଲି ମନେହେଉଥିଲା । ବର୍ତ୍ତମାନ ପରି ସେତେବେଳେ ବି ପାଠ୍ୟପୁସ୍ତକରେ ପ୍ରଚୁର ଅର୍ଥଲାଭ ହେଉଥିଲା, ଲେଖକମାନେ ଶୋଷିତ ହେଉଥିଲେ କାରଣ ପ୍ରକାଶକମାନେ ତ ଆଉ ଦେବଦୂତ ନଥିଲେ !

୧୯୫୪ରେ ପାର୍ଟି କିଛି ସଂପୂର୍ଣ୍ଣ ସମର୍ପିତ କର୍ମକର୍ତ୍ତାଙ୍କୁ ଅନ୍ୟଆଡ଼େ ଚାକିରି ଖୋଜିବାକୁ କହିଲା କାରଣ ସେମାନଙ୍କ ଖର୍ଚ୍ଚ ବହନ କରିବାକୁ ଆଉ ତାଙ୍କର ସାମର୍ଥ୍ୟ ନଥିଲା । ମତେ ଲାଗିଲା ପାର୍ଟି ମଞ୍ଚରେ ଅଟଳ ଭାବରେ କହିପାରୁଥିବା ଜଣେ ବିରୋଧୀ ବକ୍ତାଠୁଁ ମୁକ୍ତି ପାଇବା ପାଇଁ ଏହା ଏକ ଚାଲ୍ ଥିଲା । ଦିଲ୍ଲୀରେ ଥିବା ପାର୍ଟି ଅଫିସ୍ ହରଦେବଙ୍କୁ କହିଦେଲା ଯେ ସେଠି ତାଙ୍କ ପାଇଁ କୌଣସି କାମ ନାହିଁ । ସେ ଚାହିଁଲେ ଅନ୍ୟ ଚାକିରି ଖୋଜି ପାରନ୍ତି । ଯାହାର ମୂଳରୁ ଚାକିରି ହିଁ ନ ଥିଲା ପାର୍ଟି ତାଙ୍କୁ ଚାକିରିରୁ ବରଖାସ୍ତ କରିବା ଚେଷ୍ଟାରେ ଲାଗିଥିଲା । ଏ ମଜାକଥା ତାଙ୍କୁ ବି ମଜାର ଲାଗିଥିଲା । ସବୁବେଳେ ହରଦେବ ଯାହାକୁ ନିଜ ଦାୟିତ୍ୱ ମନେକରନ୍ତି ସେଥିରେ ସେ ତାଙ୍କର ସମସ୍ତ ବୁଦ୍ଧି ଓ ଅସୀମ ସ୍ଫୂର୍ତ୍ତି ବିନିଯୋଗ କରନ୍ତି । କେତେବେଳେ ସେ ଜଣେ ସାମ୍ବାଦିକ ତ କେତେବେଳେ ବୀମା ବା ପର୍ଯ୍ୟଟକ (ଟ୍ରାଭେଲ୍) ଏଜେଣ୍ଟ ଭାବରେ କମିଶନ ରୋଜଗାର କରୁଥିଲେ । ୧୯୫୫ରେ ଆମେ ଦୁଇଟି ଶୋଇବା ଘର ଥିବା ଭଡ଼ାଘରକୁ ଉଠିଗଲୁ ।

ଜୋର ବାଗ୍‌ର ସହରତଳି ଅଞ୍ଚଳରେ ତଳମହଲା ଘର । ଘର ଆଗରେ ପୁଣି ଥିଲା ଗୋଟେ ବଗିଚା – ଯାହା ଘରର ଗର୍ବ । ଏହା ଥିଲା ମୋ କର୍ମକ୍ଷେତ୍ର ତଥା ଆମ ପରିଚିତ ଜଗତ ଓ ବନ୍ଧୁବାନ୍ଧବଙ୍କଠୁଁ ମାଇଲ୍ ମାଇଲ୍ ଦୂରରେ । ହରଦେବ ଡେରି ରାତିଯାଏଁ କାମ କରିବା ଆରମ୍ଭ କରି ଦେଇଥିଲେ ଓ ନିଦ ବଟିକା ଛଡ଼ା ଶୋଇ ପାରୁ ନ ଥିଲେ । ମର୍କୁରୀ ଟ୍ରାଭେଲ୍‌ସରୁ ସେ ଏତେ ପରିମାଣର କମିଶନ୍ ଘରକୁ ଆଣିଲେ ଯେ ଖୁବ୍ ଶୀଘ୍ର ନିଜର ଗୋଟେ ଏଜେନ୍ସି ଖୋଲିବା ସିଦ୍ଧାନ୍ତ ନେଲେ । ସ୍ୱଭାବତଃ ମୁଁ ଟିକେ ହୁସିଆର ଗୋଷ୍ଠୀର, ତେଣୁ ତାଙ୍କୁ ଅଟକେଇବାକୁ ଚେଷ୍ଟାକଲି । ସେ କ'ଣ ମାନିବା ଲୋକ ? ସେ ଶେଷଥର ପାଇଁ ଯଦି କାହାକଥା ମାନିଥିଲେ ସେ ହେଉଛନ୍ତି ତାଙ୍କ ବାପା, ଯିଏ ହରଦେବଙ୍କୁ ଷୋହଳ ବର୍ଷ ହେଇଥିବା ବେଳେ ଇହଲୀଳା ସମ୍ବରଣ କରିଥିଲେ ।

ମୁଁ କେବେ କଳ୍ପନା ବି କରିପାରିନଥିଲି ଯେ ଲାହୋର ଛାଡ଼ିବାକୁ ବାଧ୍ୟ ହେବାର ଦଶବର୍ଷ ପରେ ମୁଁ ମୋ ଚୁଟି ଛୋଟ କରିଦେବି ଓ କାର ଚଲେଇବା ଶିଖିଯିବି । ବର୍ତ୍ତମାନ ମତେ ଅଶି ହେବାକୁ ଯାଉଛି, ମୋର ଏ ନୂଆ ରୂପ ପଛରେ ଥିବା ମୋର ସ୍ପର୍ଦ୍ଧା କଥା ଭାବିଲେ ମୁଁ ହତବାକ୍ ହେଇଯାଏଁ ।

## ତିନି

୧୯୫୮ ମସିହା ଜନ୍ମାଷ୍ଟମୀ ଦିନ ଦରିୟାଗଞ୍ଜରେ ଗୋଟେ ଛୋଟ ଘରେ ଡ. ଓ୍ୱର୍ସଲେଙ୍କ ଏକ ସାଧାରଣ କ୍ଲିନିକ୍‌ରେ ଦଶ ପାଉଣ୍ଡ ଓଜନର ଟିଟୁର ଜନ୍ମ ହେଇଥିଲା । ବିଜିଙ୍କର ଖୁସିର ସୀମା ନ ଥିଲା । ୟା ପରେ ଇଣ୍ଡିୟାନ୍ ସ୍କୁଲ୍ ଫର୍ ଇଣ୍ଟରନେସନାଲ୍ ଷ୍ଟଡିଜ୍‌ରେ ମୁଁ ପି. ଏଚ୍.ଡି. ପାଇଁ "ଚୀନ ଉପରେ ପାଶ୍ଚାତ୍ୟ ଶିକ୍ଷାର ପ୍ରଭାବ" ବିଷୟ ଉପରେ ରେଜିଷ୍ଟ୍ରୀ କଲି । ଜୋୟା ସାପ୍ରୁ ପାଖରେ ଥିବା ସ୍କୁଲରେ ପଢୁଥିଲା ଓ ତାନି ବ୍ଲୁ ବେଲ୍‌ସ ଗଲା । ଏ ସ୍କୁଲଟି ମୋର ଘନିଷ୍ଠ ବାନ୍ଧବୀ, ସହଯାତ୍ରୀ, ପଡ଼ୋଶୀରେ ରହୁଥିବା ହଙ୍ଗେରୀର ଇହୁଦୀ ମେରୀଗୁହାଙ୍କ ଦ୍ୱାରା ସ୍ଥାପିତ ହେଇଥିଲା । ମତେ ସେତେବେଳକୁ ଚଉତିରିଶ ବର୍ଷ ବୟସ, ଆଉ ଆମ ଜୀବନ ସୁମିତ୍ରା, ଲୀଳା, କାର୍ଲୀ, ପାର୍ବତୀ, ଯୁଧିଷ୍ଠିର, ଜନକ ଓ ସୀତା ଆଦି ସହପାଠୀମାନଙ୍କ ଗହଣରେ ପରିପୂର୍ଣ୍ଣ ଥିଲା । ଟିକୁଲିଆ ଓ ଫଡ୍‌ନିସ୍ ତ ଆମ ପରିବାରର ନିଜ ଲୋକ ହେଇଯାଇଥିଲେ । ଆମ ସଂପର୍କ ଜେଜେଜେଜୀ ହେଇଯିବା ପରେ ମଧ୍ୟ ଥିଲା । କିନ୍ତୁ ହରଦେବଙ୍କର ବ୍ୟବସାୟୀ ସହକର୍ମୀ ପ୍ରାୟତଃ କେହି ଆସୁନଥିଲେ ।

ଗବେଷଣା ସଂକ୍ରାନ୍ତରେ ମତେ ଯେତେବେଳେ ଟୋକିଓର ଇମ୍ପେରିଆଲ୍ ଲାଇବ୍ରେରୀ ଓ ପେକିଂ ବିଶ୍ୱବିଦ୍ୟାଳୟ ଯିବାକୁ ପଡ଼ିଲା, ଚାରିଆଡୁ ମୋ ବନ୍ଧୁମାନେ ସାହାଯ୍ୟ କଲେ । କମ୍ରେଡ୍ ଜୋୟା, ଛଅ ମାସର ପୁଅ ଓ ତିନି ତଥା ଆଠବର୍ଷର ଦୁଇଝିଅଙ୍କର ଦେଖାଶୁଣା କରିବା ପାଇଁ ଆଗେଇ ଆସିଲା । ମୁଁ ଯେତେବେଳେ ଚୀନ ଯିବାପାଇଁ ପ୍ରସ୍ତୁତ ହେଲି ସେତେବେଳେ କାଙ୍ଗଡ଼ାର ଗୋଟେ ଦମ୍ପତ୍ତି ସ୍ୱାତି ଓ ଚେତରାମ ଘର ଚଲେଇବାର ଜିମା ବହନ କରିଲେ । କେମିତି ଯେ କମ୍ରେଡ୍ ଜୋୟା ଓ ହରଦେବ, ମୋ ଅନୁପସ୍ଥିତିରେ ଟିଟୁ,

ତାନି ଓ ଜୋୟାଙ୍କୁ ସମ୍ଭାଳି ପାରିବେ ବୋଲି ମୁଁ ଭାବିଲି ମୁଁ ଜାଣେନା । ମୁଁ ଏବେ ବି ଭାବି ପାରେନା, ଡରଲାଗେ । ମୁଁ ଚୀନ ଭାଷା ଲେଖିବା ଓ ପଢ଼ିବା ଶିଖିଗଲି, ପେକିଂ ବିଶ୍ୱ ବିଦ୍ୟାଳୟର ରହଣି ମତେ ଭଲଲାଗୁଥିଲା । ତେବେ ମୋ ହୃଦୟ ଭାରତ, ହରଦେବ ଓ ପିଲାମାନଙ୍କ ପାଇଁ ବ୍ୟାକୁଳ ହେଇଉଠୁଥିଲା । ଚମତ୍କାର ଚୀନୀ ଛୁଆମାନଙ୍କୁ କୋଳରେ ଧରିଥବା ଛୋଟ ସୁନ୍ଦରିଆ ଚିକିମିକିଆ ଫଟୋ ମୋ ପାଖରେ ଅଛି । ସେଠି ବିତେଇଥିବା ସୁଖଦ ଦିନର ସେଇ ସ୍ମୃତି ଟିକକ ହିଁ ମୋ ପାଖରେ ଅଛି ।

ଭାରତ–ଚୀନ କୂଟନୈତିକ ସଂପର୍କ ତିକ୍ତ ହେବାର ଯଥେଷ୍ଟ ପୂର୍ବରୁ ଚୀନରେ ରହୁଥିବା ଭାରତୀୟମାନେ ଜାଣିସାରିଥିଲେ ଯେ "ହିନ୍ଦୀ–ଚୀନୀ ଭାଇ ଭାଇ ଫମ୍ପା ସ୍ଲୋଗାନ୍‌ରେ ପରିଣତ ହୋଇସାରିଲାଣି । ମୋ ସୁପରଭାଇଜର ଦୟା ପରବଶ ହେଇ ମତେ ଗୋଟେ ପାଖକୁ ଡାକିନେଇ କହିଲେ ଯେ ଆଗକୁ କୌଣସି ଭାରତୀୟ ଛାତ୍ରଙ୍କୁ ପୁସ୍ତକାଳୟରେ ପ୍ରବେଶ କରିବାକୁ ଦିଆଯିବ ନାହିଁ – ଏଥିରେ ତାଙ୍କର ତିଳେ ମାତ୍ର ସନ୍ଦେହ ନାହିଁ । ତେଣୁ ମୋ ଗବେଷଣା କାର୍ଯ୍ୟ ପାଇଁ କୌଣସି ବିକଳ୍ପ ପନ୍ଥା ବିଷୟରେ ଭାବିବାକୁ ସେ ପରାମର୍ଶ ଦେଲେ । ମୁଁ ଆଦୌ ଏ କଥା ବିଶ୍ୱାସ କରିପାରିଲିନି କିନ୍ତୁ ମୋର କ୍ଷେତ୍ର ଅଧ୍ୟୟନ କାର୍ଯ୍ୟ ତ୍ୱରାନ୍ୱିତ କରିଦେଲି । ଶହ ଶହ କାଟାଲଗ୍ କାର୍ଡ଼ ଗୁଡ଼ିକରେ ପରିଷ୍କାର ପରିଚ୍ଛନ୍ନ ଭାବେ ଲେଖି ଜୋତା ବାକ୍ସ ଗୁଡ଼ିକରେ ସଜେଇ ରଖୁଥାଏ । ଏଇ ଆଲୋଚନାର ଠିକ୍ ପରେ ପରେ ହିଁ ବେଶୀଭାଗ ଭାରତୀୟ ଛାତ୍ରଙ୍କର ଗୋଟେ ଅଦ୍ଭୁତ ଅନୁଭୂତି ହେଉଥିଲା । ଆମର ଚୀନୀ ବନ୍ଧୁମାନେ ଆମଠୁ ଦୂରେଇ ଯାଉଥିଲେ । ଆମ ଦରକାରୀ ବହିଗୁଡ଼ିକ ଯାଦୁପରି ଅଦୃଶ୍ୟ ହେଇଗଲା, ପ୍ରଶାସନ ବର୍ତ୍ତମାନ ଆମର ଉଚ୍ଚାରଣ ବି ବୁଝିବାକୁ ଅକ୍ଷମ ହେଇଗଲେ । ଆମର ସୁପରଭାଇଜରଙ୍କ ପାଖରେ ଆମ ପାଇଁ ଆଉ ସମୟ ନଥିଲା । କ୍ୟାଣ୍ଟିନ୍ ଓ ଛାତ୍ରାବାସର କର୍ମଚାରୀଗଣ ବେଖାତିରଭାବେ ମୁଣ୍ଡ ହଲଉ ଥିଲେ ।

ମୁଁ ଯେତେବେଳେ ଭାରତକୁ ଫେରି ଚାଇନାର ଏଇ ଅଶ୍ୱସ୍ତିକର ଘଟଣା ସଂପର୍କରେ କହିଲି ମୁଁ ଜାଣେ ଯେ ମୋ ପରିଚିତମାନଙ୍କ ମଧ୍ୟରୁ ଜଣେ ହେଲେ ବି କେହି ବିଶ୍ୱାସ କଲେ ନାହିଁ । ଆମର ଅନେକ ବନ୍ଧୁ, ଏପରିକି ହରଦେବ ବି ମୋ କଥା ଶୁଣି ହତଭମ୍ବ ହେଇଗଲେ । କେତେଜଣଙ୍କୁ ଛାଡ଼ି କିଛି ଲୋକ ୟା ବି କହିଲେ ଯେ ମୁଁ ଡକ୍ଟରେଟ୍ ସଂପୂର୍ଣ୍ଣ କରିପାରିଲିନି ବୋଲି ମୋ ଭିତରଟା ତିକ୍ତତା ଓ ବିରକ୍ତିରେ ପୂର୍ଣ୍ଣ ହେଇଯାଇଛି । କମ୍ରେଡ୍ ଯୋଶୀ କେବଳ ଅନୁମାନ କରିପାରିଲେ ଯେ ମୋର ଏ କଥାର ମଞ୍ଜରେ ଯଥେଷ୍ଟ ତିକ୍ତ ଅନୁଭୂତି ଅଛି ନିଶ୍ଚୟ । ଯେତେବେଳେ ପାର୍ଟି ବିଭାଜନ ଘଟିଲା ସେତେବେଳେ ତାହା ଆମ ପାଇଁ ପୁନର୍ବାର ଦେଶ ବିଭାଜନ ସଦୃଶ ଥିଲା । ପୁଣିଥରେ ଭାଇର ପ୍ରାଣ ନେବା ପାଇଁ ଭାଇ ପଛେଇଲା ନାହିଁ । ପୁଣିଥରେ ଛୁରୀର ଖେଳ ଚାଲିଲା । ମୁଁ ଖୁସିଥିଲି ଯେ ଯା'ହେଉ ହରଦେବ ସି.ପି.ଆଇରେ ରହିଲେ । ଯେଉଁମାନେ ପାର୍ଟି ବା ଏ ଆଇ ପି ଏସ୍ ଓ, ଏନ୍ ଏଫ୍ ଆଇ ଡବ୍ଲ୍ୟୁ, ଏ ଆଇଟିୟୁସି ବା ଇପ୍ଟା ପରି ସଂଗଠନ ସହିତ ଯୁକ୍ତ ରହିଲେ ସେମାନେ କୌଣସି ପ୍ରକାରେ ଏକ ନୂଆ କୁତ୍ସିତ ପୃଥିବୀରେ ବଞ୍ଚିରହିଲେ । କିନ୍ତୁ ପାର୍ଟି ଓ ହରଦେବ

ପରି ଲୋକଙ୍କ ଭିତରର ସଂପର୍କ, ପରସ୍ପରକୁ ଉପଯୋଗ କରିବାର ଏକ ବିଚିତ୍ର ପ୍ରକାରର ପ୍ରବୃତ୍ତି ଯୋଗୁଁ କର୍ଦ୍ଦମାକ୍ତ ହେଇଉଠିଥିଲା । ଚୀନରେ ମୋର ସେ ଅନୁଭୂତି ପରେ ଯେତେବେଳେ ହଙ୍ଗେରୀର ଘଟଣା ଘଟିଲା ସେତେବେଳେ ମୁଁ ମୋର କାର୍ଡର ନବୀକରଣ କଲିନି । ହରଦେବ ଓ ମୋ ଭିତରର ଦୃଷ୍ଟିକୋଣ ମଧ୍ୟରେ ଦୂରତ୍ୱ ବଢ଼ିଚାଲିଲା କାରଣ ସେ ତାଙ୍କ ସ୍ୱପ୍ନର ତିକ୍ତ ପରିଣତି ପର୍ଯ୍ୟନ୍ତ ତା' ପ୍ରତି ଅନୁଗତ ରହିବା ପାଇଁ ଦୃଢ଼ ପରିକର ଥିଲେ ।

ମୋ ପରି ଅନେକ ଧାରରେ ଥିଲେ ଯେଉଁମାନଙ୍କର ପାର୍ଟି ପ୍ରତି ଉଭୟ ଆକର୍ଷଣ ଓ ବିକର୍ଷଣ ଭାବ ଥିଲା ।

ଯେଉଁମାନେ ପତାକା ଧରି ସବୁବେଳେ ଆଗରେ ଥା'ନ୍ତି ଦୁନିଆ ଯାକର ବଦନାମ୍ ତାଙ୍କ ପାଇଁ ଥୁଆ । କାରଣ ଦୁନିଆଁ ଆଖିରେ ସେମାନେ ଛାପାମରା କମ୍ୟୁନିଷ୍ଟ, ଯେତେବେଳେ କି ତାଙ୍କ ନିଜ ଦଳ ତାଙ୍କୁ ନିଜର ବୋଲି ସ୍ୱୀକାର କରନ୍ତିନି । 'ମେନ୍‌ଷ୍ଟ୍ରିମ୍' ପ୍ରକାଶ କରିବା ଲୋକଙ୍କ ଭିତରେ ଅଧିକାଂଶ ଏଇ ପ୍ରକାରର ଥିଲେ । ୧୯୬୨ ମସିହା ବେଳକୁ ମୋର ଡକ୍ଟରେଟ୍ କରିବାର ସ୍ୱପ୍ନ ଭାଙ୍ଗି ଯାଇଥିଲା ଆଉ ମୁଁ ସେମାନଙ୍କ ସହିତ କାମ କରୁଥିଲି । ସେତେବେଳେ ମୋର ସାମାନ୍ୟତମ ଧାରଣା ନଥିଲା ଯେ ଭବିଷ୍ୟତ ପାଇଁ ଏହା ମୋର ଏକ କଠୋର ପ୍ରଶିକ୍ଷଣର ସମୟ ଥିଲା ।

ମିଦାସଙ୍କ ସ୍ପର୍ଶରେ ପ୍ରତ୍ୟେକ ବସ୍ତୁ ସୁନାରେ ପରିଣତ ହେବା ପରି ହରଦେବ ଯେଉଁ କାମରେ ହାତ ଦେଉଥିଲେ ତାହା ସଫଳ ହେଉଥିଲା । ୟା ଭିତରେ ସେ ଏଥିରେ ଓସ୍ତାଦ ହେଇଯାଇଥିଲେ । ଲ୍ୟାଣ୍ଡମାଷ୍ଟର ଯାଗାରେ ଫିଆଟ୍ କିଣା ସରିଥିଲା । ରଂଗା ଯାଇଥିବା ଆଇସ୍ ବକ୍ସ ସ୍ଥାନରେ ଚିକ୍ ଚିକ୍ ଧଳା ଫ୍ରିଜଡ୍ରେୟର ଏବଂ ପାଣି ଝରୁଥିବା ଗୁଲମାର୍ଗ ଏଆର୍ କୁଲର୍ ସ୍ଥାନରେ ଝରକାରେ ଶୋଭା ପାଇଲା ଏଆର୍ କଣ୍ଡିସନର୍ । ମୁଁ ଦକ୍ଷିଣ ଦିଲ୍ଲୀର ଜଙ୍ଗଲିଆ ଯାଗାକୁ ଚାଲିଆସିଲି, ଯେଉଁଠି ଆମେ କାହାକୁ ବି ଚିହ୍ନି ନ ଥିଲୁ । ହରଦେବ ଗୋଟେ ଦୁଇ ମହଲା ବିଶିଷ୍ଟ ଘର ତିଆରି କଲେ ଯାହାର ଭୂତଳ ମହଲା ବେଶ୍ ବିରାଟ ଥିଲା, ବଗିଚା ବି ଥିଲା । ଏ ଆଧୁନିକ ଘରଟି କିନ୍ତୁ ଲାହୋରରେ ତାଙ୍କ ବାପା କରିଥିବା ବିରାଟ ମଜବୁତ୍ ଘରର ନକଲ । ଘରଟି ବେଶ୍ ସଂଭ୍ରାନ୍ତ ଓ ଚମତ୍କାର । ମୋର ପୂର୍ବ ଅନୁଭୂତିରୁ ମୁଁ ଜାଣିଛି, କିଛି ବି ଚିରନ୍ତନ ନୁହେଁ । ଅର୍ଥ ଉପାର୍ଜନ ବଢ଼ିବା ସହିତ ମୋର ଚିନ୍ତା ବି ବଢ଼ିଲା । ହରଦେବ ମତେ ଯେତେ ଆଶ୍ୱାସନା ଦେବାର ଲାଗିଲେ ମୁଁ ନିଜକୁ ସେତିକି ନିରାପତ୍ତାହୀନ ମନେକଲି । ଜୀବନ ନଦୀରେ ଆମେ କୁଆଡ଼େ ଭାସି ଚାଲିଛୁ, କେଉଁଠି ଲାଗିବୁ ଏ ଆଶଙ୍କା ମନକୁ ଚିନ୍ତାଗ୍ରସ୍ତ କରୁଥିଲା । ମନ ଭିତରେ ପରସ୍ତ ପରସ୍ତ ଦୋଷୀଭାବ ଜମିବାରେ ଲାଗିଥିଲା । ଆମର ନିଜସ୍ୱ ପରିଚିତ ଜଗତଠୁଁ ବହୁତ ଦୂରରେ ତିଆରି କରିଥିବା ସେ ନୂଆଘରେ ପୁରୁଣା ଫାଟ ସବୁ ଦେଖାଦେଲା । ପାର୍ଟି ଇତ୍ୟାଦିରେ ଏକତ୍ରିତ ହେଲେ ତିର୍ଯକ କଟାକ୍ଷ, ରୁଚିହୀନ, କ୍ଷତିକାରକ ତା'ଠୁଁ ବି ଅବିଶ୍ୱାସ୍ୟ ଖରାପ ମନ୍ତବ୍ୟ ଶୁଣି ଖୁବ୍ କଷ୍ଟ ପାଉଥିଲି । ମୋ ଭିତରେ ଏକ ପ୍ରତି ଆକ୍ରମଣାତ୍ମକ ଭାବ

ଦେଖାଦେଲା ଓ ମୁଁ ସମସ୍ତଙ୍କଠୁଁ ଦୂରେଇ ରହିଲି । ମୁଁ ମୋ କେଶ ସଜ୍ଜାକୁ ଏକ ସ୍ଥାୟୀ ରୂପ ଦେବା ସହିତ ଗାଢ଼ କଳା ରଙ୍ଗ କଲି ଏବଂ ମୋର କାର୍ଯ୍ୟ ଦକ୍ଷତାକୁ ଏକ ଅମୋଘ ଅସ୍ତ୍ରଭାବେ ବ୍ୟବହାର କଲି । ମୋ ହୃଦୟ ଏକ ଶୀତଳ ଆକ୍ରୋଶର ଆସ୍ତରଣ ମଧ୍ୟରେ ନିବୁଜ ହୋଇ ରହିଲା ।

ହରଦେବ ଅନ୍ୟ ପୂର୍ବ କମ୍ରେଡମାନଙ୍କ ସହିତ ମିଶି ଯେଉଁ ରପ୍ତାନି କଂପାନି ଆରମ୍ଭ କରିଥିଲେ ତାହା ବୃହତ୍ତମ ଟ୍ରେଡିଂ ହାଉସ୍ ମଧ୍ୟରୁ ଗୋଟିଏରେ ପରିଣତ ହୋଇଯାଇଥିଲା । ଦିନେ ସେ ଅରୁଣା ଆସଫ ଅଲ୍ଲୀଙ୍କ ସହିତ ଦେଖାକରି ଫେରିଲେ ଓ ସେ ତାଙ୍କ ପ୍ରକାଶନ ସଂସ୍ଥା ନେଇ ଅସୁବିଧାରେ ପଡ଼ିଥିବା ଖବର ଦେବା ସହିତ ତାଙ୍କୁ ସାହାଯ୍ୟ କରିବାର ପ୍ରତିଶ୍ରୁତି ଦେଇଛନ୍ତି ବୋଲି ଜଣେଇଲେ । ମୁଁ କିଛି ଜାଣିବା ପୂର୍ବରୁ ହରଦେବ ରାଜକମଲ ପ୍ରକାଶନର ଅଧିକାଂଶ ଅଂଶ ଅରୁଣାଙ୍କଠାରୁ କିଣି ସାରିଥିଲେ । ସେଠାକାର ପରିଚାଳନା ନିର୍ଦ୍ଦେଶକଙ୍କ ପାଖରେ ଥିଲା ହାତ ଗଣତି କିଛି (ସେଆର୍) ଅଂଶ ଆଉ ତାଙ୍କର ନିଜସ୍ୱ ଅନେକ ବେଶି ଉଚ୍ଚକାଂକ୍ଷା । ତାଙ୍କ ସହିତ ବେଶ୍ ଭଲ ରକମ ଝାମେଲା ହୋଇଗଲା ହରଦେବଙ୍କର । ଲେଖକମାନଙ୍କ ସହିତ ତାଙ୍କର ଖୁବ୍ ଭଲ ସଂପର୍କ ଥିଲା । ସେତେବେଳକୁ ଆମେ ସେମାନଙ୍କୁ ଜାଣି ନ ଥିଲୁ କିମ୍ବା ଏ ବିଷୟ ପ୍ରତି ଆମର ଖାତିର ନଥିଲା ।

ଯେହେତୁ କିଛି ଅଂଶ ମୋ ନାଁ ରେ କିଣାଯାଇଥିଲା ସ୍ୱାଭାବିକ ଭାବରେ ବୋର୍ଡ ମିଟିଂରେ ମୋ ଉପସ୍ଥିତି ଆବଶ୍ୟକ ଥିଲା । ଏସବୁ ମିଟିଂରେ ପାଟିତୁଣ୍ଡ ଅତି ଉଗ୍ର ଓ ଅସହ୍ୟ ଥିଲା । ମୋ ଜୀବନରେ ପ୍ରଥମଥର ପାଇଁ ହରଦେବଙ୍କୁ ଥତମତ ହେବାର ଦେଖିଲି – ପ୍ରକୃତରେ ସେ ଆମ କ୍ଷମତାଠୁଁ ଅଧିକ ବୋଝ ମୁଣ୍ଡ ଉପରକୁ ଉଠେଇ ନେଇଥିଲେ । ଦୁଇ ମାସ ବିତିଗଲା । ଥରେ ଘଟଣାକ୍ରମେ ନିର୍ଦ୍ଦେଶକ ମହାଶୟ ହରଦେବଙ୍କୁ ହଇରାଣ କରିବା ପାଇଁ ପୁଣି ଥରେ ଇସ୍ତଫା ଦେବାର ଧମକ ଦେଲେ । ମୁଁ ତାଙ୍କ ହାତକୁ ସାଧା କାଗଜ ଖଣ୍ଡେ ବଢ଼େଇ ଦେଇ ଲିଖିତ ଇସ୍ତଫା ଦେବା ପାଇଁ କହିଦେଲି । ଅରୁଣା ଦେବୀ ସ୍ତମ୍ଭୀଭୂତ ହୋଇଗଲେ ଓ ହରଦେବ ବି ସ୍ତବ୍ଧ ରହିଗଲେ । ଯାହେ଼ ଚିତ୍କାର ଓ ପ୍ରତିଚିତ୍କାର ଆରମ୍ଭ ହୋଇଗଲା । ହରଦେବ ଉଚ୍ଚ ସ୍ୱରରେ କହିଲେ, ''ତୁମେ ଏ କଣ କରୁଛ ଶୀଲା ? ଏ ସଂସ୍ଥାକୁ କିଏ ଚଳେଇବ ? ତୁମେ ତ ହିନ୍ଦୀ ପଢ଼ି ବି ଜାଣନା ...'' ସେ ତାଙ୍କୁ ଖୋସାମତ କରିବା ପାଇଁ ପ୍ରସ୍ତୁତ ଥିଲେ, ଏପରିକି ତାଙ୍କ ଇସ୍ତଫା ପତ୍ର ଉପରେ ପୁନର୍ବିଚାର ପାଇଁ ଅନୁରୋଧ କଲେ । ମାତ୍ର ମୁଁ ଏସବୁ କିଛି ଭାବୁ ନ ଥିଲି । ପରିସ୍ଥିତି ସୃଷ୍ଟ ଏ ଅନ୍ୟାୟ ମୋର କ୍ରୋଧ ଓ ଦୃଢ଼ତାକୁ ଯେମିତି ଦ୍ୱିଗୁଣିତ କରି ଦେଇଥିଲା । ସେ କିଛି କର୍ମକର୍ତ୍ତା, କିଛି ଲେଖକ ଓ ହୃଦୟରେ ପ୍ରତିଶୋଧରେ ବହ୍ନି ନେଇ ସ୍ଥାନ ପରିତ୍ୟାଗ କରି ଚାଲିଗଲେ । ସେ ତାଙ୍କର ନିଜସ୍ୱ ପ୍ରକାଶନ ସଂସ୍ଥା ସ୍ଥାପିତ କଲେ । ଆଉ ଏମିତି ଏ ଖେଳର ସୂତ୍ରପାତ ହେଲା ।

ମୁଁ ଏମିତି ଏକ ଅଫିସରେ ବାର ବାର ଘଣ୍ଟା କାମ କରୁଥିଲି ଯେଉଁଠି ଏପରି ଭାଷାରେ ପ୍ରକାଶନ ହେଉଥିଲା ଯାହା ମୁଁ ଜାଣିନଥିଲି, ଯାହାର ଲିପି ମୁଁ କଷ୍ଟେ ମଷ୍ଟେ

କୌଣସି ମତେ ପଢ଼ିପାରୁଥିଲି । ତେଣୁ ପ୍ରତ୍ୟେକ ଦିନ ଘରେ ଏକ ଅଭୂତପୂର୍ବ ଅଶାନ୍ତକର ପରିବେଶ ରାଜତ୍ୱ କରୁଥିଲା । ୪୫ ବର୍ଷ ବୟସ ପାର କରୁକରୁ ମୁଁ ଦେବନାଗରୀ ଲିପିରେ ଅଭ୍ୟସ୍ତ ହେଇ ସାରିଥିଲି ଆଉ ମୋ ଆଖି ସ୍ୱଭାବବଶତଃ ଦେବନାଗରୀ 'ମ'କୁ ଗୁରୁମୁଖୀ 'ସ' ଭାବରେ ନ ପଢ଼ିବାକୁ ଶିଖି ସାରିଥିଲେ । ମୁଁ କି ଅଠାକାଠିରେ ପଡ଼ିଲି ?

## ଚାରି

ହିନ୍ଦୀବାଲାଙ୍କର ଏଇ ଅପରିଚିତ ପୃଥିବୀରେ ମୁଁ ସାମୟିକ ଭାବେ ପାଦ ରଖୁରଖୁ, ମତେ ସମସ୍ତେ ଅସ୍ୱୀକାର କଲେ । ସମ୍ଭବତଃ 'ଚଞ୍ଚଳ ଓ ଦୃଢ଼ମନା', 'ଛିନ୍ନ ପକ୍ଷ' ପଞ୍ଜାବୁଣୀ ଯାହାର ସାହିତ୍ୟ ସଂପର୍କରେ କିଛି ଧ୍ୟାନଧାରଣା ନାହିଁ ତାକୁ ଗ୍ରହଣ କରି ପାରିଲେ ନାହିଁ । ମୁଁ ଜାଣେ ଯେ ମୋର ବାଳ ଛୋଟ, ମୋର ସ୍ୱାମୀ ସେ ପ୍ରକାଶନ ସଂସ୍ଥାର ପ୍ରକୃତ ମାଲିକ । ଗୋଟିଏ ନିର୍ଦ୍ଦିଷ୍ଟ ଦୃଷ୍ଟିକୋଣରୁ ମୁଁ ଖୁବ୍ ଉଗ୍ର ଓ ଭୟଙ୍କର ଦିଶୁଥାଇପାରେ ମାତ୍ର ମୁଁ ତାଙ୍କ ଭାବଭଙ୍ଗୀ ଓ ଚେହେରାରୁ ଲକ୍ଷ୍ୟକଲି ସେମାନେ ଖୁବ୍ ଅନାୟାସରେ ଧରିନେଉଛନ୍ତି ଯେ ମୁଁ ଅମାର୍ଜିତ, ଅସଂସ୍କୃତ, ପ୍ରତିଆକ୍ରମଣାତ୍ମକ ଓ କ୍ରୋଧୀ । ସେମାନେ ମତେ ବିସ୍ମୟ ମିଶ୍ରିତ ଘୃଣା ଦୃଷ୍ଟିରେ ଦେଖୁଥିଲେ । ମୁଁ ବି ସେମାନଙ୍କୁ ଘୃଣା ମିଶ୍ରିତ ବିସ୍ମୟ ଦୃଷ୍ଟିରେ ଦେଖୁଥିଲି । ସମ୍ଭବତଃ ଏମିତି ଦୁଇଟି ପରସ୍ପର ବିରୋଧୀ ସାଂସ୍କୃତିକ ବିଷମତାପୂର୍ଣ୍ଣ ଲୋକ ଏକାଠି ରହିବା, ପୂର୍ବରୁ କେବେ ଘଟିନଥିବ । ମୁଁ ହିନ୍ଦୀଭାଷୀ ଅଞ୍ଚଳର ନହେଇଥିବାରୁ ସେମାନେ କ'ଣ କେବେ ମତେ ଗ୍ରହଣ କରିବେନି ? ରାଗରେ ମତେ ଲାଗୁଥିଲା ପାନଚୋବଉଥିବା ଏ ଅପରିଚିତ ଲୋକଙ୍କୁ ଦୁନିଆଦାରୀ ବିଷୟରେ ଦିପଦ ଶିଖାନ୍ତି । ଯା'ହେଲେ ବି ମୁଁ ଯଥେଷ୍ଟ ଲେଖାପଢ଼ା ଜାଣିଥିବା, ବହୁ ସ୍ଥାନ ଭ୍ରମଣ କରିଥିବା ଜଣେ ଉଚ୍ଚଶିକ୍ଷିତା ମହିଳା । ମୁଁ ଯେଉଁ ସ୍ତରରୁ ଆସିଛି ପୃଥିବୀର କେହି ଜଣେ ହେଲେ ବି ଏହାକୁ ଏତେ ସହଜରେ ଓ ଦୃଢ଼ତା ସହକାରେ ଅଗ୍ରାହ୍ୟ କରିପାରିବନି ।

ଯେଉଁ କ୍ଷୁଦ୍ରଗଳ୍ପଗୁଡ଼ିକ ମତେ ପରିଚିତ ଓ ପଢ଼ିପାରିବା ଭଳି ଲାଗିଲା ସେଗୁଡ଼ିକ ମୁଁ ପଢ଼ିଲି । 'ନୟୀ କାହାନିଆଁ' ମାଧ୍ୟମରେ ମୁଁ ହିନ୍ଦୀ ସାହିତ୍ୟର ଜଟିଳ ଜଗତ ସହିତ ପରିଚିତ ହେଲି । ମୁଁ ଅନ୍ଧାରରେ ଅଣ୍ଡାଳି ଅଣ୍ଡାଳି ନିଜ ରାସ୍ତା ଠିକ୍ କଲି ଏବଂ ଯେଉଁଠୁ ବାହାରିଥିଲି ପୁଣି ସେଠିକି ଫେରିଆସିଲି । ମୁଁ ସେ ଭାଷା, ତା'ର ଲେଖକ କିମ୍ବା ତାଙ୍କର ସାମାଜିକ ପ୍ରଥା ପରଂପରା ଜାଣିନଥିଲି । ଏମିତିକି ମୋଠୁଁ କ'ଣ ଆଶା କରାଯାଏ, ଗୋଟେ ଭାଷାର ବରିଷ୍ଠ ଲେଖକମାନଙ୍କ ସହିତ, ଉଦୀୟମାନ ଲେଖକଙ୍କ ସହିତ କିପରି ବ୍ୟବହାର କରିବାକୁ ହୁଏ – ଏହା ସଂପର୍କରେ କିଛି ଧାରଣ କରିପାରୁ ନ ଥିଲି । କାରଣ ସେ ଭାଷା ନା ମୁଁ ପଢ଼ିଜାଣିଥିଲି, ନା ଲେଖିଜାଣିଥିଲି ନା ଠିକ୍‌ରେ କହିପାରୁଥିଲି । ଈଶ୍ୱରଙ୍କ କୃପାରୁ ଏଭଳି ବିତର୍କିତ ପରିବେଶ ଭିତରେ ବି ଦ୍ୱିବେଦୀଙ୍କ ସଦୃଶ ଜ୍ଞାନୀ ଓ ସାଧୁ ବ୍ୟକ୍ତି ଥିଲେ ଯିଏ ମୋ ମୁଣ୍ଡ ଉପରେ ଆଶ୍ୱାସନାର ହାତ ରଖିଲେ ଓ ମୋ ଭିତରର ଦୁଃଖୀ, ଉଦାସୀନ ବିବି

ସୁଶୀଲ୍ କାଉର ସହିତ ଦିପଦ କଥା ହେଲେ – ଏ ଋଣ ମୁଁ କେବେ ଶୁଝିପାରିଲିନି । ପିପୁଲ୍ସ ପବ୍ଲିଶିଂ ହାଉସ୍, ପ୍ରଗତିଶୀଳ ଲେଖକ ସଂଘର କିଛି ବନ୍ଧୁ, ଉର୍ଦ୍ଦୁର କିଛି କବି, ପଞ୍ଜାବୀ ଭାଷାର କିଛି ଗାଳ୍ପିକଙ୍କ ଯୋଗୁ ମୁଁ ମୁଣ୍ଡ ଉପରକୁ ଉଠେଇ ଚାଲିବାରେ ସମର୍ଥ ହୋଇଥିଲି । ଏଭଳି ଗୋଟେ ଘଡ଼ିସନ୍ଧି ମୁହୂର୍ତ୍ତରେ ଚମତ୍କାର ଯୁବବକ୍ତା ଓ ଅଧ୍ୟାପକ ନାମବର ସିଂହଙ୍କ ପରାମର୍ଶଦାତାର ଭୂମିକା ନିର୍ବାହ କରିବା ରାଜକମଲ ସଂସ୍ଥାପାଇଁ ଯେତିକି ଆବଶ୍ୟକ ଥିଲା ସେତିକି ମୋ ପାଇଁ । କିନ୍ତୁ ଏଇ କାରଣରୁ ଅଚାନକ ସାହିତ୍ୟରେ ଦଳଗତ ଓ ବ୍ୟକ୍ତିଗତ ରାଜନୀତି ଓ ସମସ୍ୟା ଦେଖାଦେଲା ।

ରାଜକମଲର ପୁରାତନ ସହଯୋଗୀମାନେ ଆଶଙ୍କା କଲେ ଯେ ଖୁବ୍ ଶୀଘ୍ର ଏ ସଂସ୍ଥା ଆଉ ଏକ ପିପୁଲ୍ସ ପବ୍ଲିଶିଂ ହାଉସ୍‌ରେ ପରିଣତ ହେବ । ଆମର ପୁରୁଣା କମ୍ରେଡ଼ମାନେ ପ୍ରଚାର କଲେ ଯେ ସନ୍ଧୁମାନେ ତାଙ୍କ ସାମ୍ରାଜ୍ୟ ବିସ୍ତାର କରୁଛନ୍ତି । ଉଭୟ ନିଶ୍ଚିତ ଥିଲେ ଯେ ରାଜକମଲ ପ୍ରକାଶନ ଧରାଶାୟୀ ହେବାକୁ ଯାଉଛି । ମୁଁ ଏସବୁ କଥାକୁ କାନବନ୍ଦ କରିଦେଲି, ଆଖି ଖୋଲା ରଖି ମୁଁ ଯେଉଁଥିରେ ଦକ୍ଷ ଅର୍ଥାତ ପ୍ରଶାସନ ତା' ଆରମ୍ଭ କରିଦେଲି । ମୁଁ କାର୍ଯ୍ୟ ପ୍ରଣାଳୀକୁ ସୁବ୍ୟବସ୍ଥିତ କଲି, ପ୍ରକାଶନ କାର୍ଯ୍ୟକୁ ଶୃଙ୍ଖଳିତ କଲି ଆଉ ଯେଉଁ ଲେଖକମାନେ ଖୋଲା ଖୋଲି ଶତ୍ରୁତା କରୁନଥିଲେ ସେମାନଙ୍କୁ ସାକ୍ଷାତ କରିବା ଆରମ୍ଭ କରିଦେଲି । ରାଜକମଲ ତା'ର ସମସ୍ତ ପୁସ୍ତକ ନବୀନ ପ୍ରେସ୍‌ରେ ଛପଉଥିଲା, ଯାହାକି ତା'ନିଜର ଥିଲା । ପରିଚାଳନା କମିଟି ଓ କର୍ମଚାରୀମାନଙ୍କ ମଧ୍ୟରେ ପୂର୍ବରୁ ଝାମେଲା ଥିଲା । ମାତ୍ର ଭୁଲ୍‌ରେ ବି ମୁଁ ଆଶଙ୍କା କରିନଥିଲି ଯେ ମତେ ବି ଗୋଟେ ଦୁର୍ନାମ ସହ୍ୟକରିବାକୁ ହେବ । ମୋ ଘର ସମ୍ମୁଖରେ "ହାଏ ହାଏ, ରାଣ୍ଡୀ ହେଇଗଲା, ଶୀଲା ସନ୍ଧୁ ମୂର୍ଦ୍ଦାବାଦ" ଆଦି ଚିତ୍କାର ଶୁଣାଯିବ । ମୋ ଦୁନିଆ ସତେ ଯେମିତି ଓଲଟ ପାଲଟ ହେଇଗଲା । ମୁଁ ବିଚଳିତ ହେଇ ହରଦେବଙ୍କୁ ଏ ଅବସ୍ଥାପାଇଁ ଦାୟୀ କଲି ଆଉ ଯଦି ସମ୍ଭବ ହୁଏ କାଲି ଭିତରେ ନବୀନ ପ୍ରେସ୍‌କୁ ବିକ୍ରୀ କରିଦେବାପାଇଁ ଅନୁରୋଧ କଲି । ହରଦେବ ବି ମତେ ଏତେ ଦୃଢ଼ତା ଓ ଏପରି ପରିସ୍ଥିତିର ମୁକାବିଲା କରିବାପରି ଯୋଗ୍ୟ ଲୋକର ଇସ୍ତଫା ପତ୍ର ତତ୍‌କ୍ଷଣାତ ମାଗିବାର ଜିଦି ପାଇଁ ଦାୟୀ କଲେ । ମତେ ଲାଗୁଥିଲା ସତେ ଯେପରି ମୁଁ ବନ୍ଦୀ, ପଳାୟନର ସବୁ ରାସ୍ତା ବନ୍ଦ । କମ୍ରେଡ୍ ଯୋଶୀ କେବଳ ମୋ ପ୍ରତି ସେହିପରି ସହାନୁଭୂତିଶୀଳ ଥିଲେ ଓ ସେ କହିଲେ, ତୁମର ରାଜନୈତିକ ଓ ସାଂସ୍କୃତିକ ପ୍ରବୃତ୍ତି ସ୍ୱାଭାବତଃ ଉନ୍ନତ । କେବଳ ତାକୁ ହିଁ ଗୁରୁତ୍ୱ ଦେଇ ନିଜର ମହତ କାର୍ଯ୍ୟରେ ମନ ଦିଅ ।

ମୁଁ ବହୁତ ସ୍ଥାନକୁ ଗଲି ଯାହା ମତେ ଚୀନଠୁଁ ବି ସୁଦୂର ଓ ବିଚିତ୍ର ମନେହେଲା – ଯେପରିକି ବନାରସ, ଲକ୍ଷ୍ନୌ, ଆହ୍ଲାବାଦ ଏବଂ ପାଟନା । ଯେତେବେଳେ ମୁଁ ଲେଖକମାନଙ୍କୁ ଭେଟେଁ ସେତେବେଳେ ଆଗେ ମୁଁ ମୋର ବ୍ୟବସାୟ ଚଳାଇବାର ଏବଂ ହିନ୍ଦୀରେ ଅନଭିଜ୍ଞତା ସ୍ୱୀକାର କରିନିଏଁ । ତେବେ ମୁଁ ସେମାନଙ୍କୁ କହେଁ ଯେ ମୁଁ ଯଦି ଚୀନା ଭାଷା ଆୟତ୍ତ କରିପାରିଲି, ହିନ୍ଦୀଭାଷା ଖୁବ୍ ଶୀଘ୍ର ଶିଖିଯିବି । ମୁଁ ସେମାନଙ୍କୁ ପଇସାପତ୍ରରେ ସ୍ୱଚ୍ଛତା

ସମ୍ପର୍କରେ ଓ ରାଜକମଲ ସଂସ୍ଥାର ପରମ୍ପରାକୁ ସମୃଦ୍ଧ କରିବାରେ ମୋ ପ୍ରତିବଦ୍ଧତା ସଂପର୍କରେ ପ୍ରତିଶ୍ରୁତି ଦେଉଥିଲି । ମୁଁ କେବଳ ସେମାନଙ୍କଠୁଁ ସମୟ ଚାହୁଁଥିଲି ନିଜର ଉଦ୍ଦେଶ୍ୟ ପ୍ରମାଣ କରି ଦେଖେଇବାପାଇଁ । ମୁଁ ହିନ୍ଦୀ ସାହିତ୍ୟର ପ୍ରବାଦ ପୁରୁଷମାନଙ୍କୁ ଭେଟି ଆଶ୍ୱାସନା ଦେଲି ଯେ ମୁଁ ରାଜକମଲ ପ୍ରକାଶନ ବନ୍ଦ କରି ସେଠି ଏକ ଅଧିକ ଲାଭଜନକ ମୋଟର ପାର୍ଟସ୍ ଦୋକାନ ଖୋଲିବାକୁ ଯାଉନି ! ମୋର ଅନେକ ବରିଷ୍ଠ ଲେଖକଙ୍କୁ ଜାଣିବାର ଓ ଭେଟିବାର ସୌଭାଗ୍ୟ ହେଲା – ପନ୍ତଜୀ, ଭଗବ୍ତୀବାବୁ, ବଚ୍ଚନଜୀ, ନିରାଲା ଜୀ, ସୁମନ ଜୀ, ବାବା ନାଗାର୍ଜ୍ଜୁନ ଏବଂ ଫଣୀଶ୍ୱର ନାଥ ରେଣୁ ଇତ୍ୟାଦି । ମୁଁ ମହାଦେବୀ ଓ ଦୀନକାରଜୀଙ୍କୁ ବି ସାକ୍ଷାତ କଲି । ମୁଁ ପକେଟ୍ ବୁକ୍ ରୋମାନ୍ସ, ଗୋଇନ୍ଦା ଉପନ୍ୟାସ ବା ପାଠ୍ୟ ପୁସ୍ତକ ପ୍ରକାଶନ – ଯେଉଁଥିରେ ଯେତେ ସଂସ୍କରଣ ସେତେ ବେଶି ଫାଇଦାର ଲୋଭର ଶୀକାର ନ ହେଇ ରାଜକମଲ ପ୍ରକାଶନର ପ୍ରତିଷ୍ଠିତ ସୁନାମକୁ ଆଉରି ସମୃଦ୍ଧ କଲି । ମୁଁ କେବେ ବି ଉନ୍ନତମାନର ସାହିତ୍ୟ ପ୍ରକାଶନରେ ସମୟାନୁବର୍ତ୍ତିତା ଓ ନିୟମିତତା ରକ୍ଷା କରିବାରେ ପଛଘୁଞ୍ଚା ଦେଇନାହିଁ କି ଅଧିକ ଲାଭଜନକ ଇଂରାଜୀ ପ୍ରକାଶନ ଆଡ଼କୁ ମନ ଦେଇନାହିଁ । ସମୟକ୍ରମେ ମୁଁ ଯାହା ଥିଲି ତାକୁ ଲୋକେ କ୍ଷମା କରିଦେଲେ ।

ଧୀରେ ଧୀରେ ମୋ ସମବୟସ୍କ ଯୁବଲେଖକମାନଙ୍କର ଆସ୍ଥା ଓ ଭରସା ବଢ଼ିଲା । ମୁଁ ହୃଦୟଙ୍ଗମ କଲି ଯେ ସେମାନଙ୍କ ମଧ୍ୟରୁ ବନ୍ଧୁ ଖୋଜାଯାଇପାରେ । ରାଜୀନ୍ଦର ସିଂ ବେଦୀ, ଅସ୍କ, ନେମିଜୀ, ଭୀଷ୍ମ ସାହାଣୀ, ଭାରତ ଭୂଷଣ ଅଗ୍ରଓ୍ୱାଲ, ନିର୍ମଳା, ସୁରେଶ ଅବ୍ସ୍ଥି, ସର୍ବେଶ୍ୱର, ନିର୍ମଲ, କୁଓଁର ନାରାୟଣ, ପ୍ରୟାଗ, ରଘୁବୀର ସହାୟ, ଲୀଲାଧର ଜଗୁଡ଼ୀ, ମନୋହର ଶ୍ୟାମ ଯୋଶୀ, ଅବଦୁଲ ବିସ୍ମିଲ୍ଲାହ ଏବଂ ଆଉରି ଅନେକ । ତେବେ ଅନ୍ତତଃ ଶ୍ରୀଲାଲ ଶୁକ୍ଲାଙ୍କ ନାଁ ଉଲ୍ଲେଖ ନ କରି ରହିପାରିବିନି । ମୋର ସେସବୁ ଦିନ ମନେଅଛି ଯେତେବେଳେ ମୁଁ ନାମବର ସିଂହଜୀଙ୍କ ସାଙ୍ଗରେ ଗୋଟେ ଟାଙ୍ଗାରେ ରାହୀ ମାସୁମ୍ ରାଜାଙ୍କ ନିକାହରେ ସାମିଲ୍ ହେବାପାଇଁ ସାଂସଦ ପଛରେ ଥିବା ହରୀ ମସଜିଦ୍ ଯାଇଥିଲି । ଚଉମୁହାଁଣିରେ ମାର୍ଗପ୍ରଦର୍ଶକ ସାଇନ୍ ପୋଷ୍ଟପରି ମୋର କୃଷ୍ଣା ସୋବତୀଙ୍କ ପ୍ରତି ଗୋଟେ ଅନୁରକ୍ତି ଥିଲା ଯିଏ କି ହିନ୍ଦୀରେ ଲେଖୁଥିଲେ ବି ତାଙ୍କ ଲେଖାରେ ଉର୍ଦ୍ଦୁର ନମନୀୟତା, ଲାଳିତ୍ୟ ଓ ପଞ୍ଜାବୀ ହୋଇଥିବା ଦୃଷ୍ଟିରୁ ଏକ ଦୃଢ଼ତା ପରିଲକ୍ଷିତ ହେଉଥିଲା । ଆମ ସମୟର ଲେଖକମାନଙ୍କ ଭିତରେ ଯେଉଁ ସୂକ୍ଷ୍ମ, କ୍ଷତିଗ୍ରସ୍ତ ନ କରିବା ପରି ସ୍ତର ବିଭାଜନ ଥିଲା ତାକୁ ଉଦୀୟମାନ ତରୁଣ ଲେଖକମାନେ ପ୍ରତିରୋଧ କରୁଥିଲେ – ଏହାକୁ ମୁଁ ଠିକ୍ ଭାବେ ବୁଝି ପାରୁନଥିଲି । ସେଥିରେ ଆଂଶିକ ସଫଳତା ମିଳିଲା । ୟାକୁ କ'ଣ ସେଇ ଭୟଙ୍କର ଜେନେରେସନ୍ ଗ୍ୟାପ୍ କୁହାଯିବ ? ଯାହା ଅଶୋକ ବାଜପେୟୀ, ମୃଣାଳ ପାଣ୍ଡେ ଆଉ ମୋ ପରି ଲେଖକଙ୍କ ମଧ୍ୟରେ କ୍ରମବିସ୍ତୃତ ହେଉଥିଲା ? ମୁଁ ତ ସେମାନଙ୍କ ମନ କିଣିନେଇଥିଲି ଆଉ ସେମାନଙ୍କଠାରୁ ତରୁଣତର ଲେଖକଙ୍କ ଶ୍ରଦ୍ଧା ମତେ ମିଳିଲା – ଯେମିତି ସତ୍ୟେନ୍ କୁମାର, ମଂଜୁର ଏହତେଶାମ୍, ପଦ୍ମା ସଚଦେବ, ସ୍ୱଦେଶ ଦୀପକ, ଗୀତାଞ୍ଜଳି, ପଙ୍କଜ ବିଷ୍ଟ ଏବଂ ଆଉରି ଅନେକ । ଆନ୍ଦ୍ରେଡିଉସ୍ ଡାଏନା ଏଟ୍‌ହିଲ୍

ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି ଯେ ଲେଖକ ଏବଂ ପ୍ରକାଶକ ମଧ୍ୟରେ ବନ୍ଧୁତ୍ୱ ବିରଳ ହୋଇପାରେ ମାତ୍ର ଅସମ୍ଭବ ନୁହେଁ । ମୁଁ ଭାଗ୍ୟବାନ୍ ଯେ ଶ୍ରଦ୍ଧା ଓ ଘୃଣାର ବହୁ ଉତ୍‌ଥାନ ପତନ ଭିତର ଦେଇ ଏ ବନ୍ଧୁତ୍ୱର ସଂପର୍କ ଦୀର୍ଘସ୍ଥାୟୀ ହୋଇପାରିଛି ।

ଆମଘର ପୁଣିଥରେ କବିତା, ଗୀତ, ମଜାକଥା, ଝଗଡ଼ା, ତର୍କବିତର୍କର କୋଳାହଳ ଭିତରେ ଜୀବନ୍ତ ହୋଇଉଠିଲା । ଗୋଟିଏ ବି ମାସ ଏମିତି କଟିନି ଯେଉଁ ମାସରେ କବିତା ଆସର (ମୁଶାୟରା) ବା ସାହିତ୍ୟ ଏକାଡ଼େମୀ ପୁରସ୍କାରର ଆଉ ଏକ ଉତ୍ସବ ପାଳନ ହୋଇନି । ୨୦ରୁ ଅଧିକ ଥର ରାଜକମଲ ଲେଖକମାନେ ଏ ପୁରସ୍କାରରେ ସମ୍ମାନିତ ହୋଇଛନ୍ତି । ଏକାଠି ହେବାପାଇଁ କୌଣସି ଆଳର ଆବଶ୍ୟକତା ନ ଥିଲା । ପଞ୍ଜାବୀ, ଉର୍ଦ୍ଦୁ ଏବଂ ହିନ୍ଦୀ ଲେଖକମାନେ ଏକତ୍ର ବସାଉଠା ଆରମ୍ଭ କରିଦେଇଥିଲେ । ପ୍ରଥମେ ତ ଏମାନେ ସୌଜନ୍ୟ ବଶତଃ ଅସ୍ୱସ୍ତି ସହ ଏକାଠି ବସୁଥିଲେ – ସତେ ଯେମିତି ଦୂର ସଂପର୍କୀୟ ଭାଇ ଆଉ ପରସ୍ପର ଭିତରେ ଅବିଶ୍ୱାସର ଯଥେଷ୍ଟ କାରଣ ଅଛି । ତା'ପରେ ସେମାନେ କଥାବାର୍ତ୍ତା ଆରମ୍ଭ କଲେ, କଥାବାର୍ତ୍ତା ନୁହେଁ, ଏପରିକି ଗପସପ କଲେ ବୋଲି ମୁଁ ଦୃଢ଼ତାର ସହିତ କହିବି । ଯଦିଓ ସେମାନେ ପରସ୍ପରର ସାହଚର୍ଯ୍ୟ ଓ କାର୍ଯ୍ୟ ପସନ୍ଦ କରୁନଥିଲେ । ଭାରତରୁ ଉର୍ଦ୍ଦୁ କବିମାନଙ୍କର ଟୀକା ସଂସ୍କରଣ ପ୍ରକାଶ କରିବାରେ ରାଜକମଲ ପ୍ରକାଶନ ହିଁ ପ୍ରଥମ ଥିଲା । ଆମର ନିଜ ସହର ଲାହୋରର ଫୈଜ୍‌ଙ୍କର ରଚନା ଉଭୟ ଦେବନାଗରୀ ଓ ଉର୍ଦ୍ଦୁ ଲିପିରେ ଆମେ ହିଁ ପ୍ରକାଶ କରିଥିଲୁ । ଏ ସଂସ୍କରଣଟି ଚମତ୍କାର ସୁନ୍ଦର ଓ ଆଖିଦୃଶିଆଭାବେ ଭିନ୍ନ ଥିଲା – ଦୁଇଟିଯାକ ଲିପିର ରଚନା ସାମ୍‌ନା ସାମ୍‌ନି ରଖି ବନ୍ଧା ହୋଇଥିଲା – ଯେମିତି ହେବା କଥା । ଆଗରୁ ନାଗରୀ ପ୍ରଚାରଣୀ ସଭା ଭିତରେ ଚାଲିଥିବା ରାଜନୈତିକ ଉତ୍ଥାନ ପତନ ବିଷୟକ କଥାରେ ଲୋକ ମସ୍‌ଗୁଲ ଥିବାବେଳେ ହରଦେବ ବାରମ୍ବାର ଚୁପ୍‌କି ଯାଇ ଶୋଇ ପଡୁଥିଲେ । ବ୍ୟକ୍ତିଗତ ଭାବେ ଏହା ମୋ ପାଇଁ ଗଭୀର ଆଶ୍ୱାସନାର ବିଷୟ ଯେ ହରଦେବ ଶୋଇବା ପରିବର୍ତ୍ତେ ବର୍ତ୍ତମାନ ଏ ସମସ୍ତ ସନ୍ଧ୍ୟାରେ ଭାଗ ନେଉଥିଲେ ।

ସାହିତ୍ୟର ବିଶିଷ୍ଟ ଲେଖକମାନଙ୍କର ରଚନା ସଂଗ୍ରହକୁ ସୁନ୍ଦର ବା ଆକର୍ଷଣୀୟ ଗ୍ରନ୍ଥାବଳୀ ରୂପରେ ପ୍ରକାଶ କରିବାର ଯେଉଁ ପ୍ରୟାସ ରାଜକମଲ କଲା ତାହା ଧାର୍ମିକ ପୋଥି ପ୍ରକାଶନର ପ୍ରାଚୀନ ପରମ୍ପରାର ଧର୍ମନିରପେକ୍ଷ ପ୍ରତ୍ୟାବର୍ତ୍ତନ ଥିଲା ବୋଲି କୁହାଯାଇପାରେ । ଉଦ୍ଦେଶ୍ୟ ଥିଲା ହିନ୍ଦୀ ସାହିତ୍ୟର ଭାଗ୍ୟାକାଶରେ ଯେଉଁ ଜୀବିତ ଲେଖକମାନଙ୍କର ଉଲ୍ଲେଖନୀୟ ଅବଦାନ ରହିଛି ସେମାନଙ୍କ ରଚନାର ଏକ ସଂରକ୍ଷଣାଳୟ କରିବା । ତା'ର ପ୍ରଥମ ପ୍ରକାଶନଟି ହଜାରୀ ପ୍ରସାଦ ଦ୍ୱିବେଦୀଙ୍କର ପ୍ରାଣୋଚ୍ଛ୍ୱଳତା ଓ ସହଜାତ ସୃଜନୀ କ୍ଷମତାପ୍ରତି ଶ୍ରଦ୍ଧାଞ୍ଜଳି ଥିଲା । ଏହା ତାଙ୍କର ପୁତ୍ର ମୁକୁନ୍ଦଙ୍କ ଦ୍ୱାରା ସଂପାଦିତ, ବହିଟି ବହୁତ ପରେ ପ୍ରକାଶିତ ହେଲା ଓ ଲକ୍ଷ୍ନୌରେ ଏକ ସାଧାରଣ ନିରାଡ଼ମ୍ବର ସମାରୋହରେ ଭି.ପି. ସିଂହଙ୍କ ଦ୍ୱାରା ଉନ୍ମୋଚିତ ହେଲା । ପନ୍ତ ରଚନାବଳୀ ସର୍ବପ୍ରଥମେ ପ୍ରକାଶ ପାଇଲା । ମୁଁ ଏହାର ପ୍ରକାଶନ ପୂର୍ବରୁ ବହିପାଇଁ ଅର୍ଡ଼ର ଓ ଅଗ୍ରୀମ ପାଇଲି ।

ସେତେବେଳେ ଏ ସବୁ ଘଟଣା ଶୁଣା ବି ଯାଉନଥିଲା । ଏହା ଏକ ଅଭୂତପୂର୍ବ ସଫଳତା ଥିଲା । ପୁସ୍ତକାଳୟ ଗୁଡ଼ିକ ଦ୍ୱାରା ଏହି ବହୁମୂଲ୍ୟ ଗ୍ରନ୍ଥାବଳୀଗୁଡ଼ିକ କିଣାଯିବାଦ୍ୱାରା ଗୋଟିଏ ଗ୍ରନ୍ଥାବଳୀ ପରେ ଆଉ ଏକ ଗ୍ରନ୍ଥାବଳୀ ପ୍ରକାଶନ ମୋ ଦ୍ୱାରା ସମ୍ଭବ ହେଲା । ପର୍‌ସାଇ, ମୁକ୍ତିବୋଧ, ରେଣୁ, ବଚ୍ଚନଜୀଙ୍କ ପରେ ବ୍ୟକ୍ତିଗତ ଭାବରେ ଏହା ମୋ ପାଇଁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ଥିଲା ସଆଦତ ହସନ ମଣ୍ଟୋଙ୍କ ରଚନାର ସଂକଳନ ପ୍ରକାଶନ । ମୁଁ ଯେବେ ଅବସର ନେଲି ସେତେବେଳକୁ ଇସମତ୍ ଚୁଗତାଇଙ୍କର ରଚନାକୁ କ୍ରମାନୁସାରେ ସଜାହେଉଥିଲା ।

ରାଜକମଲ ପ୍ରକାଶନ ସମକାଳୀନ ସାହିତ୍ୟର ସୁନିର୍ବାଚିତ ସଂଗ୍ରହର ସିରିଜ୍ ସୁଲଭ ମୂଲ୍ୟରେ ପ୍ରକାଶ କଲା । ଆମ ନିଷ୍ପତ୍ତିର ବିଜୟଧ୍ୱଜା ଉଡୁଥିଲା – ପ୍ରକୃତରେ ଖୁବ୍ ଆନନ୍ଦର ସମୟ ଥିଲା । 'ନଈ କାହାନୀୟାଁ' ସବୁବେଳେ ରାଜକମଲରୁ ପ୍ରକାଶିତ ହେଉଥିଲା । ବର୍ତ୍ତମାନର ବହୁ ବିଖ୍ୟାତ ଲେଖକଙ୍କର ପ୍ରଥମ ଗଳ୍ପ ଏ ପତ୍ରିକାରେ ସ୍ଥାନ ପାଇଛି । ଏ କଥା ମନେ ରଖିବାକୁ ହେବ ଯେ ମୁଁ ସେଇ ସମୟର କଥା କହୁଛି ଯେତେବେଳେ ସତୁରୀ ଦଶକରେ ପତ୍ରିକା ବିପ୍ଳବ ପୂର୍ବରୁ ହିନ୍ଦୀରେ ଧର୍ମଯୁଗ, ସାପ୍ତାହିକ ହିନ୍ଦୁସ୍ତାନ, ହଂସ, ଦିନମାନ ଏବଂ ସମ୍ଭବତଃ ଗୃହଲକ୍ଷ୍ମୀ ବ୍ୟତୀତ ଅନ୍ୟ କୌଣସି ପତ୍ରିକାର ଅସ୍ତିତ୍ୱ ନ ଥିଲା ।

ଆମେ ନୋବେଲ୍ ପୁରସ୍କାର ପ୍ରାପ୍ତ ଲେଖକ ଏବଂ ଅସ୍ତିତ୍ୱବାଦୀ ସାହିତ୍ୟ ଅନୁବାଦର ସିରିଜ୍ ବାହାର କରିବାରେ ଲାଗିଗଲୁ । ଏବେ ହିନ୍ଦୀ ପାଠକମାନେ ଖୁବ୍ ଶସ୍ତା ଓ ସୁଲଭ ମୂଲ୍ୟ ମାତ୍ର ଆଠ ଟଙ୍କାରେ କେମ୍‌ସ (ଏକ ପ୍ରସିଦ୍ଧ ରଚନା) ପାଇପାରିବେ । ଆମ ପାଖରେ ସମାଜ ବିଜ୍ଞାନ ଶାସ୍ତ୍ର ବହିର ତାଲିକା ଯଥେଷ୍ଟ ପରିମାଣରେ କେବେ ବି ନ ଥିଲା ତଥାପି ଏ କ୍ଷେତ୍ରରେ ବି ଉନ୍ନତମାନ ଆମର ଲକ୍ଷ୍ୟ ଥିଲା । ମୁଁ ଯଦି ଭୁଲ୍ କହୁନଥାଏ ତେବେ ରାଜ କମଲ ହିଁ ସର୍ବପ୍ରଥମେ କୋଶାମ୍ବୀ, ରୋମିଲା ଥାପର, ଇରଫାନ୍ ହବୀବ, ସୁମିତ ସରକାର, ଆର୍, ଏସ୍, ଶର୍ମା ଏବଂ ଆଉରି ଅନେକ ଇତିହାସକାରଙ୍କର ହିନ୍ଦୀ ଅନୁବାଦ ପ୍ରକାଶ କରିଲା । ପୂର୍ବରୁ ଇଂରାଜୀରେ ପ୍ରକାଶିତ ଏ ବହିଗୁଡ଼ିକୁ ପଢ଼ିବା ପାଇଁ ଲାଳାୟିତ ହିନ୍ଦୀପାଠକମାନେ ଚଟାପଟ କିଣିନେଲେ ।

ବର୍ତ୍ତମାନ ଉପଯୁକ୍ତ ସମୟ ଉପସ୍ଥିତି ଯେତେବେଳେ କି ମୁଁ ଯେଉଁକଥା ସବୁବେଳେ କହିଥାଏଁ ତା' ପୁଣି ଦୋହରାଇପାରେ ଯେ ହିନ୍ଦୀ ପ୍ରକାଶନ ଜଗତରେ ମୋର ଯଦି କିଛି ଅବଦାନ ଅଛି ତା' ସୀମିତ । ରାଜକମଲର ପୂର୍ବମାଲିକ ଦେବରାଜ ଓ ଓମ୍ ପ୍ରକାଶକଙ୍କ ଦ୍ୱାରା ପ୍ରତିଷ୍ଠିତ ଉତ୍କୃଷ୍ଟ ଓ ଗୁଣାତ୍ମକମାନର ପରମ୍ପରାକୁ ମୁଁ କେବଳ ଆଗେଇ ନେଇଛି । ରାଜକମଲର ସମୃଦ୍ଧି ବା ବିସ୍ତାର ସଙ୍ଗେ ସଙ୍ଗେ ଦେବଜୀ ଅମୃତସରରେ ଥିବା ତାଙ୍କ କପଡ଼ା ବ୍ୟବସାୟୀ ଭାଇଙ୍କୁ ଦୋକାନ ବନ୍ଦକରି ଦିଲ୍ଲୀ ଚାଲି ଆସିବାକୁ କହିଲେ । ଦୂରଦୃଷ୍ଟି ସମ୍ପନ୍ନ, ସୃଜନଶୀଳ, ଦୁଃସାହସିକ ପଦକ୍ଷେପ ନେବାକୁ ପଛଘୁଞ୍ଚା ଦେଉନଥିବା ଓମ୍ ପ୍ରକାଶ କେତେଗୁଡ଼ିଏ ସିରିଜ୍ ଆରମ୍ଭ କଲେ । ସେ ରାଜକମଲ ପ୍ରକାଶନକୁ ଏକ ସାଲିସ୍‌ହୀନ ଉତ୍କୃଷ୍ଟ ଗୁଣବତ୍ତାର ଛାପ ଦେଇଗଲେ, ଯାହା ଆଜି ବି ସେ ସଂସ୍ଥାର ପରିଚୟ । ଯଦିଓ

ଏହାର କିଛି କିଛି ଅଂଶ ସଙ୍କୁଚିତ ହୋଇଯାଇଛି । ଆବଶ୍ୟକ ମୁତାବକ ମୁଁ ସେଥିରେ ଯେତେବେଳେ ଯାହା ଯୁକ୍ତ କରିଛି, ମାତ୍ର ତାଙ୍କ ପ୍ରଦର୍ଶିତ ମାର୍ଗରୁ କେବେ ବିଚ୍ୟୁତ ହୋଇନି । ଦୁର୍ଭାଗ୍ୟବଶତଃ ସେହି ବ୍ୟକ୍ତି ହିଁ ସେତେବେଳେ ଦାୟିତ୍ୱରେ ଥିଲେ ଯେତେବେଳେ ଆମେରିକୀୟ ପିଏଲ୍ - ୪୮୦ ପାଣ୍ଠିର ଉପଯୋଗକୁ ନେଇ ଅରୁଣାଜୀଙ୍କ ସହିତ ତାଙ୍କର ଦ୍ୱନ୍ଦ ସୃଷ୍ଟିହେଲା ଏବଂ ହରଦେବ ସେଥିରେ ମୁଣ୍ଡ ଗଳେଇଲେ ।

ମୋର ଅବଶୋଷ ରହିଗଲା ଯେ ମୋହନ ରାକେଶଙ୍କର ଖଣ୍ଡିଏ ମାତ୍ର ରଚନା ପ୍ରକାଶ କରିପାରିଲି । ଆମ ଭିତରେ ବନ୍ଧୁତା ତ ହେଇଗଲା ମାତ୍ର ସେ ତାଙ୍କର ପୁରୁଣା ବନ୍ଧୁତ୍ୱ ପ୍ରତି କିମ୍ୱା ବାତ୍ସାୟନଜୀଙ୍କ ପ୍ରତି ଅନୁଗତ ରହିଲେ । ସେ ରାଜକମଲ ପ୍ରକାଶନ ସହିତ ସଂଯୁକ୍ତ କିଛି ପରାମର୍ଶଦାତାଙ୍କ ଯୋଗୁଁ ଏକ ଆଦର୍ଶଗତ ବ୍ୟବଧାନ ରଖିଲେ ।

କିନ୍ତୁ ମୁଁ କହିବି ନାହିଁ ଯେ ନୀଲ୍ କମଲ ଓ କଟୀପତଙ୍ଗ ପ୍ରକାଶ କରିବାପାଇଁ ମୋ ପାଖକୁ ଲୋକ ପଠାହେଇନଥିଲେ ଓ ମୁଁ ସେମାନଙ୍କୁ ପ୍ରତ୍ୟାଖ୍ୟାନ କରି ଆନନ୍ଦିତ ହୋଇନାହିଁ । ଯୁବ ଫିଲ୍ମ ନିର୍ମାତା ଅଧିକାଂଶ ସମୟରେ ରାଜକମଲ ଆସୁଥିଲେ । ସେମାନେ ବ୍ୟାଗ ଭର୍ତ୍ତି ରାଗଦରବାରୀ, ମିତ୍ରୋ ମରଜାନୀ, ତମସ, ନେତାଜୀ କହୀନ ଆଉ ଅନେକ ବହି ନେଇଯାଉଥିଲେ ।

ବାମପନ୍ଥୀମାନଙ୍କର ସର୍ବଦା ବୁଦ୍ଧିଜୀବୀମାନଙ୍କ ସହିତ ଏକ ବିଚିତ୍ର ସଂପର୍କ ଥାଏ । ସେମାନେ ଉତ୍କୃଷ୍ଟତମ ବୁଦ୍ଧିଜୀବୀଙ୍କୁ ଗ୍ରହଣ କରିନିଅନ୍ତି ଏବଂ ତାଙ୍କରି ଆଦର୍ଶକୁ ପାଥେୟ କରି ବସିଯାନ୍ତି ପରିଣାମତଃ କେବଳ ତାଙ୍କ ଦ୍ୱାରା ପ୍ରଭାବିତ ଲୋକଙ୍କ ଛଡ଼ା ସେମାନେ ଆଉ କାହାରିକୁ ଗ୍ରହଣ କରିପାରନ୍ତି ନାହିଁ । ସେମାନେ ସର୍ବଦା ବିଧିବଦ୍ଧ ମେଡ଼ିଓକ୍ରୀଟ୍ ବା ମଧ୍ୟମ ଶ୍ରେଣୀର ବ୍ୟକ୍ତିଙ୍କୁ ପ୍ରୋତ୍ସାହିତ କରୁଥିବା ଦଳଭାବରେ ପରିଚିତ । ଗୋଟେ ଭଙ୍ଗୁର, ଅପ୍ରାସଙ୍ଗିକ ପୁନଶ୍ଚ କୌଣସି ପ୍ରଶଂସାଯୋଗ୍ୟ କାରଣଠୁଁ ଯଥେଷ୍ଟ ଦୂରରେ ଏମାନେ ଜୀବିକା ଉପାର୍ଜନ ନାଁରେ ବାସ୍ତବରେ ସ୍ୱାର୍ଥସାଧନ କରିଥାନ୍ତି । ସମ୍ଭବତଃ ମୋର ଏଇ ଦୃଷ୍ଟିକୋଣ ପାଇଁ ମତେ ବି ଦୋଷୀ ସାବ୍ୟସ୍ତ କରାଯାଇପାରେ । ମାତ୍ର ଏହା ନିଶ୍ଚିତ ଯେ ବାମପନ୍ଥୀମାନଙ୍କ ନିମନ୍ତେ ଅରୁଣାଜୀ ଯେଉଁ ସଂଘର୍ଷ ଚଳେଇଥିଲେ ତା' ବାମପନ୍ଥୀମାନେ କେବେ ବି ବୁଝିପାରିଲେ ନାହିଁ । ବସ୍ତୁତଃ ମୋ ସଂଘର୍ଷକୁ ବି ନୁହେଁ । ସାହିତ୍ୟ ଓ କଳା ଜଗତରେ ସେମାନଙ୍କର ରାଜନୀତି ବିଶେଷଭାବରେ ରାଜନୀତିକୁ ଯାହା ଗଠନ କରେ ତା' ପ୍ରତି ଦୃଷ୍ଟିକୋଣ ଅତ୍ୟନ୍ତ ଦୟନୀୟ ଭାବରେ ମର୍ମାନ୍ତକ । ଭଗବାନ ଜାଣନ୍ତି ଯେ ବର୍ତ୍ତମାନ ଏ ବାମପନ୍ଥୀମାନେ ପ୍ରଗତିଶୀଳ ସାହିତ୍ୟ ପ୍ରକାଶକଙ୍କ ସହିତ କିପରି ବ୍ୟବହାର କରନ୍ତି । ବାମପନ୍ଥୀ ଦ୍ୱାରା ସ୍ଥାପିତ ଦଳଦ୍ୱାରା ଅବଶ୍ୟମ୍ଭାବୀ ଆଘାତକୁ ପ୍ରତିରୋଧ କଲାଭଳି ସାମର୍ଥ୍ୟ ଏଇ ପ୍ରକାଶକମାନଙ୍କର ସତରେ ଅଛି କି ? ସେମାନେ କ'ଣ ଏବେ ବି ଏଇ ବାମପନ୍ଥୀ ବନ୍ଧୁମାନଙ୍କୁ କୋଳାଗ୍ରତ କରିବା ପରିବର୍ତ୍ତେ ହତାଦର କରୁଛନ୍ତି ! କମ୍ରେଡ୍ ଯୋଶୀ ଯଦି କମ୍ ବିଶୁଦ୍ଧବାଦୀ (ପ୍ୟୁରିଟାନିକାଲ୍) ଓ ବେଶି ଲୋକପ୍ରିୟ ହେଇଥାନ୍ତେ ତେବେ କ'ଣ ପରିସ୍ଥିତି ଭିନ୍ନ ପ୍ରକାରର ହେଇଥାନ୍ତା ?

ସେ ଯା'ହେଉ ସୁସ୍ଥ ସାହିତ୍ୟ ଓ ସାହିତ୍ୟିକ ଆଲୋଚନା ପ୍ରତି ରାଜକମଲର ସଫଳ ଓ ଅବିଚଳିତ ଅଙ୍ଗୀକାରବଦ୍ଧତା ଦୃଢ଼ଭାବରେ କାଏମ ରହିଲା । ଏହାର ସାହିତ୍ୟ ଆଲୋଚନା ମୂଳକ ପତ୍ରିକା 'ଆଲୋଚନା' ପ୍ରାୟ ୪୦ ବର୍ଷ ପର୍ଯ୍ୟନ୍ତ ମଝିରେ ମଝିରେ ପ୍ରକାଶ ପାଉଥିଲା । ପତ୍ରିକାର ପ୍ରକାଶକ, ସଂପାଦକ ତଥା ଲେଖକଙ୍କ ମିଳିତ ଉପେକ୍ଷାକୁ ଆଖିରେ ରଖିଲେ ଏହାକୁ କମ୍ ବଡ଼ ସଫଳତା କୁହାଯିବ ନାହିଁ ! ଶୁଣିବାକୁ ପାଉଛୁ ଯେ ଏହାକୁ ସଂପ୍ରତି ପୁର୍ନଜୀବିତ କରାଯାଇଛି । ଅନ୍ୟଭାଷାର ବୁକ୍-କ୍ଲବ ପରମ୍ପରାର ଅନୁକରଣରେ ଗଠିତ 'ଆଲୋଚନା ପୁସ୍ତକ ପରିବାର' ଏକ ଅର୍ଦ୍ଧ ସଫଳ ପ୍ରୟାସ ଥିଲା । ବଙ୍ଗାଳୀ, ମରାଠୀ ବା ମାଲୟଲୀ ପାଠକଙ୍କଠାରୁ ହିନ୍ଦୀ ପାଠକଙ୍କ ଅଭ୍ୟାସ ଉଲ୍ଲେଖନୀୟ ଭାବେ ପୃଥକ ଥିଲା । ସଂସ୍ଥାର ମାସିକ ପତ୍ରିକା 'ପ୍ରକାଶନ ସମାଚାର'ରେ ବିଜ୍ଞାପିତ ପୁସ୍ତକପାଇଁ ପ୍ରକାଶ ପୂର୍ବର ଗ୍ରାହକତା ନିମନ୍ତେ ୩୫% ରିହାତି ଦେଇଥିଲୁ । ଏ ଛାଡ଼ ଆମର ବୋର୍ଡ଼ ବନ୍ଧେଇ ବହିତାଲିକା ପାଇଁ ବି ଥିଲା, ଯାହା ସେଇ ପାଠକଙ୍କୁ ପେପର ବ୍ୟାକ୍ ବନ୍ଧେଇରେ ଦିଆଯାଉଥିଲା । ଏଥିରେ ରାଜସ୍ଥାନ, ବିହାର, ମଧ୍ୟପ୍ରଦେଶ, ଉତ୍ତର ପ୍ରଦେଶର ଅତ୍ୟନ୍ତ ଆଭ୍ୟନ୍ତରୀଣ ଗ୍ରାମାଞ୍ଚଳରୁ ଆସିଥିବା ବରାଦ ଅନୁସାରେ ଭୀଷଣ କ୍ଳାନ୍ତିକର ବିଲ୍ ଓ ଛୋଟ ଛୋଟ ଭି.ପି.ପି. ପ୍ୟାକେଟ କରିବାକୁ ଓ ପଠେଇବାକୁ ପଡୁଥିଲା । ଏଥିପାଇଁ ଡାକ ଓ ରେଳ ବିଭାଗର କିରାଣୀମାନଙ୍କ ଝାମେଲା ସହିବାକୁ ପଡୁଥିଲା । ପ୍ରତ୍ୟେକଥର ଆମେ ବିରକ୍ତ ହେଇ ଅଯଥା ହଇରାଣ ହେବାକୁ ପଡୁଥିବା ଏଇ ଯୋଜନାକୁ ବନ୍ଦକରିବାକୁ ଚାହିଁବାବେଳେ ଅସଂଖ୍ୟ ପାଠକଙ୍କର ଅଜସ୍ର ଧନ୍ୟବାଦ ପତ୍ର ମନେପଡ଼େ । ରାମଗୋପାଲଜୀ ଯିଏ ଏସବୁ ଆଦାନ ପ୍ରଦାନ ଓ ପଠାଇବା ବିଭାଗରେ ଥିଲେ ସେ ପ୍ରତ୍ୟେକଥର ବନ୍ଦ କରିବା ମୂଳକ ଯେକୌଣସି ପଦକ୍ଷେପକୁ ବିରୋଧ କରନ୍ତି । ଗୋଟେଥର ସର୍ବୋଚ୍ଚ ହଜାରରୁ ଅଧିକ ପରିବାର ଏହାର ସଦସ୍ୟ ହୋଇଥିଲେ । ନୂଆ ପରିଚାଳନା ସମିତିର ପ୍ରଥମ ଶିକାର 'ଆଲୋଚନା ପୁସ୍ତକ ପରିବାର' ହୋଇଥିଲା । ଲାଭ ପାଇଁ ତ ଏହା କେବେ ହୋଇ ନ ଥିଲା । ଏମିତିଗୋଟେ ଢିଲମଢିଲା, ଝାବଡ଼ା କାର୍ଯ୍ୟଟିଏ କରିବା ପାଇଁ ରାଜକମଲ ଅଙ୍ଗୀକାରବଦ୍ଧ ଥିଲା ।

ଯେତେବେଳେ ଯେଉଁଠି ବି ସରକାର ଗୋଟେ ବଡ଼ ଅର୍ଡ଼ର ଦିଅନ୍ତି ଭଗବାନ ଜାଣନ୍ତି ଏ ଦଲାଲ ଦଳ କୁଆଡୁ ଧସେଇ ପଶନ୍ତି ଓ ଲୋକଙ୍କ ପକେଟ୍ ଗରମ ହେଇଯାଏ । ରାଜୀବ ଗାନ୍ଧୀ ସରକାରଙ୍କ ଦ୍ୱାରା ଚାଲୁହୋଇଥିବା ତଥାକଥିତ 'ବ୍ଲାକ୍‌ବୋର୍ଡ଼ ଅପରେସନ' ସମୟରେ ମୋର ମନେଅଛି ଗୋଟେ ପ୍ରସ୍ତାବ ମତେ ଦିଆଯାଇଥିଲା, ଯେଉଁଥିରେ ପରସ୍ପର ମଧ୍ୟରେ ବୁଝାମଣା ହେଇ ଯାଇଥିଲେ ରାଜକମଲକୁ ପ୍ରଚୁର ଲାଭ ମିଳିଥାନ୍ତା । ଆମକୁ ସେଇସବୁ ବହି ପଠାଇବା ବାବଦରେ ଅର୍ଥ ପ୍ରାପ୍ତି ହୋଇଥାନ୍ତା । ଯାହା ଛପା ହେବାର ଆବଶ୍ୟକତା ନଥିଲା, ଏ ବହି ସେ ସବୁ ଛାତ୍ରଙ୍କ ପାଇଁ ଉଦିଷ୍ଟ ଥିଲା ଯେଉଁମାନଙ୍କର ଅସ୍ତିତ୍ୱ ହିଁ ନାହିଁ ପୁଣି ସେ ସବୁ ବିଦ୍ୟାଳୟପାଇଁ ଯାହାକେବେ ତିଆରି ହିଁ ହୋଇନାହିଁ । ମୁଁ ଭୀଷଣ କ୍ଷୁବ୍ଧ ହେଇ, ଶାନ୍ତ ସ୍ୱଭାବର ବ୍ୟକ୍ତି କାନ୍ତିଜୀଙ୍କୁ ଡକେଇଲି ଆଉ ମୋ ସାମ୍ନାରେ ବସିଥିବା

ବ୍ୟକ୍ତିଙ୍କୁ ରାଜକମଲ୍ ପରିସୀମା ବାହାରକୁ ବାହାର କରିଦେବାପାଇଁ ଆଦେଶ ଦେଲି । ହତଭମ୍ଭ ଓ ହତାଶ ହୋଇ ସେ ବ୍ୟକ୍ତିଜଣକ ଉଠିପଡ଼ିଲେ । ନିଜକୁ ଓ ଧୋତିକୁ ଚଟାପଟ୍ ସଜାଡ଼ିନେଇ ସେ ବଡ଼ବଡ଼ ହୋଇ କହିଲେ, ''ଆପଣ କ'ଣ ପାଇଁ ଏତେ ବିରକ୍ତ ହେଉଛନ୍ତି ଶୀଲାଜୀ ? ଆପଣ ଠିକ୍ ଭାବରେ ବୁଝିପାରୁନାହାନ୍ତି, କହିଲେ ମୁଁ ସତ୍ୟପ୍ରକାଶଜୀଙ୍କ ସହିତ ଦେଖା କରନ୍ତି ? ରାଜକମଲପରି ଅଗ୍ରଣୀ ସଂସ୍ଥାର ଯଦି ମୋ ଆବଶ୍ୟକତା ନ ଥାଏ ତ ମୁଁ ଅନ୍ୟଠିକି ଯାଉଛି...'' ଯିବା ସମୟରେ ସେ ମୋ ଦୁଆର ମୁହଁରେ ଛେପ ପକେଇବାକୁ ଭୁଲିଲେ ନାହିଁ । ମୁଁ ପ୍ରଧାନମନ୍ତ୍ରୀଙ୍କ ସହିତ ସାକ୍ଷାତ କରିବାପାଇଁ ସମୟ ନେଲି, ଯାହାଫଳରେ ତାଙ୍କ ଯୋଜନା ଅନ୍ତରାଳରେ ହେଉଥିବା ଷଡ଼ଯନ୍ତ୍ର ସଂପର୍କରେ ତାଙ୍କୁ ଅବଗତ କରାଇପାରିବି । ସାଧାରଣତଃ ସବୁକଥାରେ ସେ ଯାହା କରିଥାନ୍ତି ସେମିତି ସୁନ୍ଦରଭାବରେ ଉତ୍ତେଜିତ ନହୋଇ ହସିଲେ ।

ଗୋଟେ ଭୀଷଣ ଆବେଗ ଓ ଗଭୀର ଉଦ୍‌ବେଗର ସହିତ ମୁଁ ବଲ୍‌ପେନ୍, ଡିଜିଟାଲ୍ ଘଡ଼ି, ଫୁଡ୍ ଓ ୱାର୍ଡ ପ୍ରୋସେସରକୁ ବିରୋଧ କଲି । ମୁଁ ସେଇ ଆଧୁନିକତାକୁ ପ୍ରତିରୋଧ କରିବାକୁ ଚେଷ୍ଟାକରୁଥିଲି ଯାହା ଜେଷ୍ଟରଟନ୍ ସାଇକ୍ଲୋଷ୍ଟାଇଲ୍ ପରିବର୍ତ୍ତେ ଜେରକ୍ସ, ରେମିଙ୍ଗଟନ୍‌ରେ ଦ୍ୱିଭାଷୀ ଟାଇପ୍ ରାଇଟର୍‌ର ଟକ୍‌ଟକ୍ ଶବ୍ଦ ପରିବର୍ତ୍ତେ କମ୍ପ୍ୟୁଟରର ମୃତ ନୀରବତାର ସଙ୍କେତ ଥିଲା । (ସତେଯେମିତି ମୂଳରୁ ହାତ ବ୍ୟବହୃତ ନହୋଇ ଇଲେକ୍ଟ୍ରୋନିକ୍‌ସ ଦ୍ୱାରା ଲେଖାହେଇଯିବ !) ଆମେ ହସ୍ତଲିଖିତ ପାଣ୍ଡୁଲିପି ଗ୍ରହଣ ଓ ସଂରକ୍ଷଣ କରୁଥିଲୁ । ଅଜିତଜୀ ତାକୁ ପରିଶ୍ରମ କରି ଟାଇପ୍ କରୁଥିଲେ । ତାପରେ ଲେଟର୍ ପ୍ରେସ୍‌ରେ ତା'ର ପ୍ରୁଫ୍ ପ୍ରସ୍ତୁତ କରାଯାଉଥିଲା ଏବଂ ତା'ପରେ ଲେଖକଙ୍କ ଦ୍ୱାରା ଅନୁମୋଦିତ ହେଉଥିଲା । ଲେଖାର ମୁଖ୍ୟାଂଶ, ବିଜ୍ଞାପନ ଓ କଭରପାଇଁ ତାଙ୍କର ପରାମର୍ଶ ନିଆଯାଉଥିଲା । ଆମେ ପୁସ୍ତକ ପ୍ରକାଶନର ପ୍ରତ୍ୟେକ ସ୍ତରରେ ଯଦିଓ ଲେଖକଙ୍କୁ ପରାମର୍ଶ କରିବାରେ ଅସମର୍ଥ ହେଉଥିଲୁ, ତେବେ ମୁଁ କେବେ ବି ସେମାନଙ୍କୁ ସେମାନଙ୍କ ବହି ପ୍ରକାଶନରେ ଆଗ୍ରହ ପ୍ରକାଶରେ ନିରୁତ୍ସାହିତ କରୁନଥିଲି । ଫେଡ଼େରେଶନ୍ ଅଫ୍ ଇଣ୍ଡିଆନ୍ ପବ୍ଲିଶର୍ସଙ୍କ ବୈଠକରେ (ଯେଉଁଠି ମୁଁ ଦୀର୍ଘଦିନ ଧରି ଏକମାତ୍ର ମହିଳା ସଦସ୍ୟ ଥିଲି) ମୁଁ ବୃଥାଟାରେ ପ୍ରମାଣ କରିବାକୁ ଚେଷ୍ଟା କରୁଥିଲି ଯେ ରୟାଲ୍ଟି ଆକାଉଣ୍ଟସକୁ ସ୍ୱଚ୍ଛ ଓ ସଠିକ୍‌ଭାବରେ ଲେଖକମାନଙ୍କୁ ଦେଲେ ତାଙ୍କ ସହିତ ସଂପର୍କ ଅଧିକ ଘନିଷ୍ଠ ହେଇପାରନ୍ତା । ଏଇଟା ସତକଥା ଯେ ପବ୍ଲିଶର୍ସମାନଙ୍କ ଫୋରମ୍‌ରେ ଏ ପ୍ରସ୍ତାବ ଯଥେଷ୍ଟ ଗ୍ରହଣୀୟ ହେଲାନି ।

ଆମେ ଇଲେକ୍ଟ୍ରୋନିକ୍ ମାଧ୍ୟମଠୁଁ ଯଥେଷ୍ଟ ଦୂରରେ ରହି ବି ବହି ଛପେଇଲୁ । ସେଗୁଡ଼ିକ ବି ବହି, ଡିସ୍କ ପରିବର୍ତ୍ତେ ରିମ୍ ରିମ୍ କାଗଜରେ, ଭଡ଼ା ଗୋଦାମର ମାଇଲ ମାଇଲ୍ ଦୀର୍ଘ ଥାକରେ ସୁରକ୍ଷିତ । ଏଥିପାଇଁ ଛ'ମାସକୁ ଛ'ମାସ ଷ୍ଟକ୍ ଟେକିଂ, ପ୍ରାଥମିକ ତାଲିକା ତିଆରି କରିବା, ବହିର ସ୍ପାଇନ୍‌ର ଅଠାକୁ ମୂଷା କାଟିବାରୁ ରକ୍ଷାକରିବା ପାଇଁ ନିୟମିତ କୀଟନାଶକ ଔଷଧ ପକେଇବାକୁ ହେଉଥିଲା । ଏବେ ଏ ପ୍ରକ୍ରିୟା ଅଦ୍‌ଭୁତ ଓ ମଜାକଥା ଭଳି ଶୁଣାଯାଉଥିବ ମାତ୍ର ଯେତେବେଳେ ଏ ଜଟିଳ କାର୍ଯ୍ୟ ଚାଲିଥାଏ ମିଶ୍ରଜୀ

ପୂରା ଭୂମିକମ୍ପଗ୍ରସ୍ତ ଅସହାୟ ବ୍ୟକ୍ତିପରି ଧୂଳିରେ ଗୋଟାପରି ଗାଧେଇ, କାଶି, ଛିଙ୍କି ଗୋଦାମରୁ ବାହାରନ୍ତି । ସଦାସ୍ଥିର ଅବିଚଳିତ ହୃଦୟର ସତ୍ତଜୀଙ୍କ ନିର୍ବିକାର ଉପସ୍ଥିତିଯୋଗୁଁ ୩୦ରୁ ଊର୍ଦ୍ଧ୍ୱ କର୍ମଚାରୀ କାମକରୁଥିବା ଅଫିସ୍‌ରେ ଗଣ୍ଡଗୋଳ ହେବାପୂର୍ବରୁ ସମାଧାନ ହେଇଯାଉଥିଲା । କଲିକତାରୁ ଆସିଥିବା ମୋହନଗୁପ୍ତ ଧୀରେ ଧୀରେ ସଂପାଦନ କାର୍ଯ୍ୟ ସମ୍ଭାଳି ନେଲେ ଏବଂ ହିନ୍ଦୀ ପ୍ରକାଶନ ଜଗତର ଜଣେ ଶ୍ରେଷ୍ଠ ସଂପାଦକ ତଥା ମ୍ୟାନେଜର ଭାବେ ପରିଗଣିତ ହେଲେ । ତାଙ୍କୁ ପ୍ରତ୍ୟେକ ବିଷୟପାଇଁ ଦାୟୀ କରାଯାଇପାରେ ମାତ୍ର ଉତ୍ସାହର ଅଭାବ ପାଇଁ କଦାପି ନୁହେଁ । ତାଙ୍କ କାମ ବାହାରେ ବି ସେ ବହୁତ କଠିନ କାମ କରୁଥିଲେ । ବିକ୍ରି ବିଭାଗର ଲୋକଙ୍କ ସହିତ ତାଙ୍କର ସବୁବେଳେ ଝାମେଲା ହେଉଥିଲା । ଅସଲରେ ସେ ବିଭାଗର ଲୋକମାନେ ସବୁବେଳେ ପ୍ରତ୍ୟେକଟି ସଂପାଦକୀୟକୁ ବିକ୍ରିପାଇଁ ଏକବାରେ ଅନୁପଯୁକ୍ତ କହି ବାତିଲ୍ କରିଦେଉଥିଲେ – କହୁଥିଲେ ‘‘ବୋତଲ ଭିତରେ ଏ ତ ପଥରର ଆଚାର’’ ।

ମୋର ସବୁଠୁଁ ବଡ଼ ଦୁଃଖ ରହିଗଲା ଯେ ଉତ୍ତର ଭାରତର ମଧ୍ୟବିତ୍ତ ଶ୍ରେଣୀର ଲୋକଙ୍କ ନିକଟରେ ହିନ୍ଦୀ ଭାଷାର ସାହିତ୍ୟ–ସଂପତ୍ତି ଅପହଞ୍ଚ ହେଇ ରହିଗଲା ବା ସେମାନେ ଉପଭୋଗ କରିପାରିଲେ ନାହିଁ । ମୋର ତିନୋଟିଯାକ ପିଲା ଏଥିରୁ ବାଦ୍ ଯାଇନାହାନ୍ତି, ସେମାନେ ଏ ବିରାଟ ଶୂନ୍ୟତା ବିଷୟରେ ମଧ୍ୟ ଅନଭିଜ୍ଞ ଯାହା ତାଙ୍କର ବୌଦ୍ଧିକ ଓ ଆବେଗିକ ଜୀବନରେ ମଧ୍ୟ ପ୍ରତିଫଳିତ । ଯେକୌଣସି କାରଣରୁ ହେଉନା କାହିଁକି ସେମାନଙ୍କ ମଧ୍ୟରୁ ଜଣେ ହେଲେ କେହି ହିନ୍ଦୀ ପ୍ରତି ମୋର ମମତ୍ୱବୋଧକୁ ବୁଝିପାରିଲେନି । ଆମେ ଆମର ଦ୍ୱିତୀୟ ଝିଅକୁ ଜୋରକରି ବୁଝେଇଛୁ ଯେ ଗୋଟାକ ପରେ ଗୋଟେ ଡିଗ୍ରୀ ହାସଲ ପାଇଁ ତା’ସ୍ୱାମୀର ଅନ୍ତହୀନ ପ୍ରୋତ୍ସାହନକୁ ବନ୍ଦକରି କୌଣସି ଆତ୍ମସମ୍ମାନ ବୋଧ ଥିବା ମହିଳା ପରି ଏକ ଜୀବିକା ବା ବୃତ୍ତି ପ୍ରତି ସେ ଦୃଷ୍ଟିଦେବା ଆବଶ୍ୟକ । ସେ ଏବେ ଦିଲ୍ଲୀରେ । ଛୁଆବେଳୁ ସେ ଏକଦମ୍ ମୁଖରା, ସ୍ପଷ୍ଟବାଦୀ, ଉଗ୍ର ଓ ଅତ୍ୟଧିକ ଆତ୍ମବିଶ୍ୱାସ ପୂର୍ଣ୍ଣ ଥିଲା, ତାକୁ ହଜମ କରିବାକୁ ମତେ କଷ୍ଟ ହେଉଥିଲା । ବହୁତ ଶୀଘ୍ର ମୁଁ ବୁଝିପାରିଲି ଯେ ଆମ ଦୁହିଁଙ୍କ ସ୍ୱଭାବ ମଧ୍ୟରେ ଆକାଶ ପାତାଳ ପାର୍ଥକ୍ୟ । ମତେ ପୁଣି ଦରିୟାଗଞ୍ଜ ଅଫିସ୍‌ର ରାଜନୀତିକୁ ବି ସମ୍ଭାଳିବାକୁ ପଡୁଥିଲା । ଆମ ଦୁହିଁଙ୍କ ଭିତରେ ଝାମେଲା ହେବାର ପ୍ରବଳ ସମ୍ଭାବନା ଥିଲା । ମୁଁ ଆଦୌ ଚାହୁଁନଥିଲି ଯେ ଡଙ୍ଗାଟି ବୁଡ଼ିଯାଉ । ସେ ନୂଆ ପେପର୍ ବ୍ୟାକ୍ ବିଭାଗରେ ମନଦେଇ କାମ ଶିଖିଲା, ବହୁତ ଆଗ୍ରହର ସହିତ ରାଜକମଲର ପେପର୍ ବେକ୍‌ର କଭର ଡିଜାଇନ୍ କରିବାର ଦାୟିତ୍ୱ ଗ୍ରହଣ କଲା । ଏସବୁ ବହୁତ ଲୋକପ୍ରିୟ ପେଙ୍ଗୁଇନ୍ କ୍ଲାସିକ୍‌ର ମଡେଲ ଅନୁସରଣରେ ତିଆରି ହେଇଥିଲା । ସେ ହିନ୍ଦୀ ପ୍ରକାଶନ ଜଗତ ସମ୍ମୁଖରେ ସମକାଳୀନ କଳାକାରଙ୍କ ଛବିଗୁଡ଼ିକୁ ସଜେଇଦେଲା : ମକ୍‌ବୁଲ୍ ଫିଦା ହୁସେନ୍, ରାମ କୁମାର, ସ୍ୱାମୀନାଥନ୍, ଅବକର ପଦମ୍‌ସୀ, ତେୟବ ମେହତା, ଏଫ୍.ଏନ୍. ସୁଜା, କୃଷ୍ଣ ଖାନ୍ନା ଏବଂ ଭାରତର କିଛି ଶ୍ରେଷ୍ଠତମ ନୂଆ କଳାକାର ଯିଏ

ସେତେବେଳେ ଅପେକ୍ଷାକୃତ କମ୍ ପ୍ରସିଦ୍ଧ ଥିଲେ – ମସଲନ ମଞ୍ଜିତ, ଅର୍ପିତା, ଗୁଲାମ, ଜୋଗେନ୍, ନୀଲିମା, ଶମଶାଦ, ପରମଜିତ, ଅମିତାଭ, ଭିଭାନ ଏବଂ ମୃଣାଳିନୀ ।

ରାଜକମଲ ସହିତ ମୋର ସଂପର୍କ ମତେ ପ୍ରଚୁର ପରିମାଣରେ ସମୃଦ୍ଧ କରିଛି ଓ ବ୍ୟକ୍ତିଗତ ଭାବରେ ମୁଁ ଲାଭବାନ ହୋଇଛି । ମୋର ଶିକ୍ଷାରେ ଯାହା ତ୍ରୁଟିଥିଲା ତାହା ଯା ଯୋଗୁଁ ସଂଶୋଧିତ ହୋଇପାରିଛି । ମୁଁ ମୋର ତିରିଶ ବର୍ଷ ପଛକୁ ଫେରି ଚାହିଁଲେ ମତେ ସନ୍ତୋଷ ଓ ଆନନ୍ଦ ଲାଗେ – ମୋର ପ୍ରାୟ କିଛି ପଶ୍ଚାତ୍ତାପ କରିବାର ନାହିଁ । ମୁଁ ଯଦି ପୁଣିଥରେ ସେ ଅବସ୍ଥାକୁ ଯାଆନ୍ତି ପ୍ରାୟ ସେଇମିତି ହିଁ କରନ୍ତି । ପ୍ରାରମ୍ଭିକ ଅବସ୍ଥାରେ ଅପେକ୍ଷାକୃତ ପୁରାତନ ପରମ୍ପରାରେ ଯେଉଁ ବାଧା ଥିଲା – ପୁରୁଷ ପ୍ରଧାନ କ୍ଷେତ୍ରରେ ଜଣେ ନାରୀ ସେ ପୁଣି ଆଧୁନିକ ଓ ପାଶ୍ଚାତ୍ୟ ସଭ୍ୟତାରେ ରଞ୍ଜିତ – ହୁଏତ ଏହା ହିଁ ମତେ ଅନନ୍ୟା ଓ ଜିଜ୍ଞାସାର ପ୍ରତୀକ ଭାବରେ ପ୍ରତିଷ୍ଠା ଦେବାରେ ସାହାଯ୍ୟ କଲା ।

*ଡାନି.ଏସ୍. ଭାର୍ଗବଙ୍କ ସାକ୍ଷାତ୍‌କାର ଉପରେ ଆଧାରିତ*

ବୀଣା ମଜୁମଦାର (ଜନ୍ମ ୧୯୨୭) ଭାରତରେ ମହିଳା ବିଷୟକ ଅଧ୍ୟୟନରେ ଅଗ୍ରଗଣ୍ୟ । ମହିଳା ଆନ୍ଦୋଳନ ନେତୃତ୍ୱରେ ଏକ ଦେଦୀପ୍ୟମାନ ବ୍ୟକ୍ତିତ୍ୱ । ଭାରତରେ ମହିଳାମାନଙ୍କ ଅବସ୍ଥା ଅଧ୍ୟୟନ ପାଇଁ ଗଠିତ ସରକାରୀ ସମିତିର ସଦସ୍ୟ-ସଚିବ ଭାବରେ ବୀଣା ମଜୁମଦାର 'ଟୁଓ୍ୱାର୍ଡସ ଇକ୍ୱାଲିଟି (୧୯୭୫) ନାମକ ପ୍ରାରମ୍ଭିକ ରିପୋର୍ଟ ପ୍ରସ୍ତୁତ କରିଥିଲେ । ସେ ଭାରତୀୟ ମହିଳା ଅଧ୍ୟୟନ ସଂଘ ଓ ମହିଳା ବିକାଶ ଅଧ୍ୟୟନ (ଦିଲ୍ଲୀ) କେନ୍ଦ୍ରର ପ୍ରତିଷ୍ଠାତା ସଦସ୍ୟ ଥିଲେ । ସେ ମଧ୍ୟ ଭାରତୀୟ ସମାଜ ବିଜ୍ଞାନ ଗବେଷଣା ପରିଷଦର ମହିଳା ଅଧ୍ୟୟନ କେନ୍ଦ୍ରର ନିର୍ଦ୍ଦେଶିକା ଥିଲେ । ବୀଣା ମଜୁମଦାର ସମସ୍ତ ମହିଳା ସମାଜ ତରଫରୁ ବିଶେଷ ଭାବରେ ଦରିଦ୍ର ଏବଂ କୃଷିଜୀବୀ ମହିଳା ତଥା ମହିଳା ଅଧ୍ୟୟନ ତରଫରୁ ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ନିକଟରେ ଅକ୍ଲାନ୍ତ ଆଲୋଚନା କରିବା ସହିତ ସେମାନଙ୍କୁ ପ୍ରଭାବିତ କରିବାପାଇଁ ପ୍ରୟାସ କରିଛନ୍ତି । ସେ ଭାରତୀୟ ମହିଳାଙ୍କ ଉପରେ ଅନେକ ଲେଖା ଲେଖିଛନ୍ତି ଓ ବ୍ୟାପକଭାବରେ ପ୍ରକାଶ କରିଛନ୍ତି । ସେ ତାଙ୍କର ଏହି ଅବଦାନ ନିମନ୍ତେ କେବଳ ମହିଳା ଆନ୍ଦୋଳନ ଦ୍ୱାରା ନୁହଁ ୟୁନିଫେମ୍, ଓ୍ୱାଇ ଡବ୍ଲ୍ୟୁ ସିଏ ଏବଂ ଆସୋସିଏସନ୍ ଅଫ ଉମେନ୍ ଇନ୍ ଇଣ୍ଟରନ୍ୟାସ୍‌ନାଲ ଡେଭେଲପ୍‌ମେଣ୍ଟ ଦ୍ୱାରା ସ୍ୱୀକୃତି ପାଇଛନ୍ତି ।

## ୨

# ଏକ ଗତିଶୀଳ ଜୀବନର ଡାଏରୀରୁ କେତୋଟି ପୃଷ୍ଠା

## ବୀଣା ମଜୁମଦାର

ପ୍ରକାଶକ ଓ ସଂପାଦକଙ୍କ ଇଚ୍ଛା ଯେ ମୁଁ "ମୋ କାର୍ଯ୍ୟ ଓ ଜୀବନର ସମସ୍ତ ଦିଗ ଉପରେ ଗୋଟେ ପ୍ରବନ୍ଧ ଲେଖେଁ ଯାହା ବିଶେଷଭାବେ ମୋର କାର୍ଯ୍ୟକ୍ଷେତ୍ର ଉପରେ ହେଇଥିବ ଓ ସେଥିରେ ମୋର ସ୍ଥାନର ପରିଚୟ ପ୍ରକାଶ ପାଉଥିବ । ମୋର ସାମାଜିକ, ଐତିହାସିକ ପୃଷ୍ଠଭୂମି ପ୍ରସଙ୍ଗ ପୂର୍ବକ ଉତ୍‌ଥାପନ କରି ସେଥିରେ ମୋର ସଂଘର୍ଷ ଓ ସଫଳତାର ବିଷୟ ଆଲୋଚନା କରେ ।" ଦୁର୍ଭାର୍ଗ୍ୟବଶତଃ ଏସମସ୍ତରୁ କୌଣସି ଗୋଟିକର ସଂଜ୍ଞା ନିର୍ଦ୍ଧାରଣ କରିବା କଠିନ । ମୋର ପାସପୋର୍ଟରେ ମୁଁ ଜଣେ ସମାଜ ବିଜ୍ଞାନୀ ବୋଲି ଲେଖାଯାଇଛି, ମାତ୍ର ବହୁତ କମ୍ ଲୋକ ମୋତେ ଏଇଭାବରେ ମନେ ରଖିଛନ୍ତି । ମୁଁ ଜଣେ ମହିଳା ଆନ୍ଦୋଳନ କର୍ମୀ, ଜଣେ ନାରୀବାଦୀ, ସମସ୍ୟା ସୃଷ୍ଟିକାରୀ ତଥା ଜଣେ ଲିଙ୍ଗ ବିଶେଷଜ୍ଞ (gender specialist) ରୂପେ ବେସରକାରୀ ଭାବେ ପରିଚିତ । ବ୍ୟକ୍ତିଗତ ଭାବେ ମୁଁ ଭାରତୀୟ ମହିଳା ଆନ୍ଦୋଳନର ରେକର୍ଡ଼ର ବା ଇତିହାସକାର ଭାବେ ଏବଂ ଦକ୍ଷିଣ ଏସିଆର ମହିଳା ଅଧ୍ୟୟନର ମାତାମହୀ ଭାବେ ପରିଚିତ ହେବାକୁ ଅଧିକ ପସନ୍ଦ କରେ ।

ମୁଁ ରାଜନୀତି ବିଜ୍ଞାନର ଶିକ୍ଷୟିତ୍ରୀ ଥିଲି । ମୋର ଶିକ୍ଷା କ୍ଷେତ୍ରରେ ସଂସ୍କାର ଆଣିବାରେ ଅଦମ୍ୟ ଆଗ୍ରହ ଥିଲା । ତେଣୁ ମୁଁ ମୋ ପସନ୍ଦର ବୃତ୍ତି ଛାଡ଼ି ବ୍ୟୁରୋକ୍ରାଟ ହେଇଗଲି । ଶିକ୍ଷାଗତ ସଂସ୍କାର ଓ ସଂସ୍ଥାଗତ ଅସଂଗତିକୁ ଦୂର କରିବା ପାଇଁ ଅନୁରୂପ ପ୍ରଶାସନିକ ଅନୁଦାନ ଓ ଯୋଜନା ଇତ୍ୟାଦି ସହ ସଂଯୁକ୍ତ ହେଲି । ଯଦିଓ ମୁଁ କେବେ ସ୍ୱର୍ଗତ ପ୍ରଫେସର ଡି.ଏସ୍. କୋଠାରୀ ଏବଂ ପ୍ରଫେସର ଜେ.ପି. ନାୟକଙ୍କ ନାମ ମୋର ଗୁରୁଭାବେ ଉଚ୍ଚାରଣ କରିବାକୁ ଭୁଲେନାହିଁ, ତେବେ ମତେ କେହି ବି ଆଜି ଶିକ୍ଷାବିତ୍ ଭାବନ୍ତି ନି । ଦ ଇଣ୍ଡିଆନ୍ ଆସୋସିଏସନ୍ ଫର୍ ଉମେନ୍‌ସ ଷ୍ଟଡ଼ିଜ୍ ସ୍ଥାପନାରେ ମୁଁ ସହାୟକ ଥିଲି ଆଉ ତାହା ଶିକ୍ଷାନୁଷ୍ଠାନର ଆଫିସିକ ସ୍ୱୀକୃତି ପାଇଛି । କିନ୍ତୁ ସେଣ୍ଟର ଫର୍ ଉମେନ୍‌ସ ଡେଭଲପ୍‌ମେଣ୍ଟ ଅରଗାନାଇଜେସନ୍‌ର ମୁଁ ସ୍ଥାପିକା ଓ ନିର୍ଦ୍ଦେଶିକା ଥିଲି, ତାହା ବର୍ତ୍ତମାନ ବି ସ୍ୱୀକୃତି ଅପେକ୍ଷାରେ । ଆଇ ଏ ଡବ୍ଲ୍ୟୁ ଏସ୍ ଏବଂ ସିଡବ୍ଲ୍ୟୁ ଡି ଏସ୍ ସଂପୂର୍ଣ୍ଣ ମହିଳା ସଙ୍ଗଠନ ନୁହେଁ କିନ୍ତୁ ପ୍ରଶାସନକଳ ଗଣମାଧ୍ୟମ ଏବଂ ଆହୁରି ଅନେକ ଏହାକୁ ମହିଳା ସଙ୍ଗଠନ ଭାବେ ଚିହ୍ନିତ କଲେ ।

ମୋର ଏକମାତ୍ର ଭଉଣୀ, ମୋର ଭବିଷ୍ୟତ ନିରାପତ୍ତାନେଇ ଖୁବ୍ ଚିନ୍ତିତ ହୁଏ, ମୋର ଏଇ ଚଞ୍ଚଳ ସ୍ୱଭାବ ପାଇଁ ମତେ ଗାଳିଦେଉଥିଲା । ମୋର ୧୪ ବର୍ଷ ଭିତରେ ୭ଟି ଚାକିରି ବଦଳେଇବା, ୫୩ ବର୍ଷ ବୟସ ବେଳକୁ ସରକାରୀ ଅର୍ଥପ୍ରାପ୍ତ ପବ୍ଲିକ ସଂସ୍ଥାରେ ଲଗାତାର ୩୦ବର୍ଷ କାର୍ଯ୍ୟ କରିବାର ରେକର୍ଡ଼ ରହିଛି । ମୋର ତିନୋଟିଯାକ ପିଲା ସେତେବେଳେ ଛାତ୍ରାବସ୍ଥାରେ – ସେ ସମୟରେ ମୁଁ କୌଣସି ନିଶ୍ଚିତ ଆର୍ଥିକ ସାହାଯ୍ୟର ଭରସା ନ ଥାଇ ମଧ୍ୟ ସି ଡବ୍ଲ୍ୟୁ ଡିଏସ୍ ଆରମ୍ଭ କଲି । ତା' ଦୃଷ୍ଟିରେ ଏଇଟା ଗୋଟାଏ ଜୁଆଖେଳ ଥିଲା ଓ ତାକୁ ଚଳେଇବାପାଇଁ ମୋ ନିକଟରେ ପ୍ରଶିକ୍ଷଣ ମଧ୍ୟ ନ ଥିଲା । ସୌଭାଗ୍ୟବଶତଃ ଏ ଜୁଆଖେଳରେ ଜିତିବା ପର୍ଯ୍ୟନ୍ତ ସେ ଜୀବିତ ଥିଲା ।

## ପ୍ରଥମ ୨୫ ବର୍ଷ (୧୯୨୭–୫୨)

ଗୋଟେ ମଧ୍ୟବିତ୍ତ ପରିବାରରେ କଲିକତାରେ ମୋର ଜନ୍ମ । ଶୈଶବ କୈଶୋର ଅବସ୍ଥାରେ ମୁଁ କୌଣସି ଅସୁବିଧାର ସମ୍ମୁଖୀନ ହେଇଥିବା ମୋର ମନେ ପଡୁନି । ଗୋଟେ ବିରାଟ ଯୌଥ ପରିବାରର ସବୁଠୁଁ ଛୋଟ ସଦସ୍ୟ ଭାବେ ଯେଉଁ ନିରାପତ୍ତା, ସୁରକ୍ଷା ଓ ସ୍ନେହ ପାଉଥିଲି ତାହା ମତେ ଅତିମାତ୍ରାରେ ନିର୍ଭରଶୀଳ କରିଦେଇଥିଲା । ପାରିବାରିକ ସାମ୍ରାଜ୍ୟ ମୋର ସାମାଜିକ ଅସ୍ତିତ୍ୱର ପରିଚୟ ଥିଲା, ସେଥିରେ ମୁଁ ଦୁଃଖୀ ନ ଥିଲି । ଏକ ବିରାଟ ପରିବାର ଭିତରେ ନାନା ପ୍ରକାର ବ୍ୟକ୍ତିତ୍ୱର ଲୋକ କାହାର ସ୍ପଷ୍ଟବାଦିତା, କାହାର କଥା କହିବାର ଶୈଳୀ ତ କାହାର ସଉକ (ଥିଏଟର, ସଙ୍ଗୀତ, କବିତା, ଖେଳ, ଇତିହାସ ତଥା ତା'ସହିତ ରାଜନୀତି ତ ନିଶ୍ଚୟ) ଯୋଗୁଁ ଥିଲେ ଉଲ୍ଲେଖନୀୟ । ଏସବୁ ତର୍କବିତର୍କ ସାରାଂଶ ଓ ମୁଖ୍ୟାଂଶକୁ ଶୁଣିବାର, ପର୍ଯ୍ୟବେକ୍ଷଣ କରିବାର ତଥା ମନେ ରଖିବାର ଅପୂର୍ବ ସୁଯୋଗ ମୋପରି ଏକ ସ୍ୱେଚ୍ଛାରେ ପୁସ୍ତକକୀଟ ହୋଇଥିବା ଲୋକକୁ ଯୋଗେଇ ଦେଉଥିଲା । ତାଙ୍କ ଭିତରୁ କେତେଜଣ ଖୁବ୍ ସୁନ୍ଦର ଗପ କହିପାରୁଥିଲେ – ସେମାନଙ୍କ ଯୁବକ ସମୟର ସଂଘର୍ଷ ଓ ଦୁଃସାହସିକ ଅଭିଯାନର କଥା । ମୋ ମାମୁ, ଜଣେ ଇତିହାସବିତ୍, ଜୀବନରେ ଜଣେ ସୁଛାତ୍ରର ଭୂମିକା ବିଷୟରେ ବୁଝେଇଥିଲେ । ପୂର୍ବବଙ୍ଗର ଗ୍ରାମାଞ୍ଚଳରେ ଗୋଟିଏ ବହୁତ ଦରିଦ୍ର ପରିବାରରେ ତିନି ଭାଇଙ୍କ ଜୀବନ, ଦାୟିତ୍ୱ, ସାମାଜିକ ବିଶ୍ୱାସ, ସେମାନଙ୍କୁ ଆଡ଼ମ୍ବର ବିହୀନ ଜୀବନଯାପନ, ନିରାଡ଼ମ୍ବତାର ମୂଲ୍ୟ, ହାତରେ ସିଲେଇ ହୋଇଥିବା ଲୁଗା ନିଜସୃଷ୍ଟ ଘରୋଇ ମନୋରଞ୍ଜନ ଉପରେ ଗୁରୁତ୍ୱଦେବାକୁ ଶିଖାଇଥିଲା । ବହିକୁ ଆଦୌ ଗୁରୁତ୍ୱ ଦିଆଯାଉନଥିଲା । ମୋ ମା'ଙ୍କର ପାଠପଢ଼ି ଶିକ୍ଷିତ ହେବାର ପ୍ରୟାସ ପଛରେ ବାପାଙ୍କ ସହଯୋଗ ଥିଲା । ସେ ଘରୋଇ ଖର୍ଚ୍ଚରୁ ସଞ୍ଚୟକରି ବହିପତ୍ର କିଣୁଥିଲେ । ଯାହାଫଳରେ ୧୯୩୫ରେ ସ୍କୁଲଯିବା ଆରମ୍ଭ କରିବାର ଯଥେଷ୍ଟ ପୂର୍ବରୁ ମୁଁ ପ୍ରଚୁର ପଢ଼ିବାର ସୁଯୋଗ ପାଇଥିଲି । ଡାୟୋସିଅନ୍ ଗାର୍ଲସ୍ ସ୍କୁଲର ନିଜସ୍ୱ ଏକ ଦର୍ଶନ ଥିଲା । ସେ ଇଂରାଜୀରାଜ ବା ମିଶନାରୀଙ୍କ ଧର୍ମାନ୍ତରଣକୁ ଗ୍ରହଣ କରୁନଥିଲା । ମୁଁ ମୋର ପିଉସୀମାନଙ୍କୁ ଓ ଭଉଣୀକୁ ଅନୁସରଣ କଲି । ସେତେବେଳେ ବାର୍ଷିକ ବା ଷାଣ୍ମାସିକ ପରୀକ୍ଷା ହେଉନଥିଲା ।

କ୍ଲାସ୍ ପ୍ରମୋସନ୍, ଶ୍ରେଣୀରେ କରାଯାଉଥିବା କାର୍ଯ୍ୟର ମାନ ତଥା ସାପ୍ତାହିକ ପରୀକ୍ଷାଉପରେ ନିର୍ଭର କରୁଥିଲା । ବର୍ଷଶେଷରେ ଶତକଡ଼ା ୭୫ ଭାଗ ନମ୍ବରରୁ ଅଧିକ ଯେଉଁ ବିଷୟରେ ରହୁଥିଲା ସେଥିପାଇଁ ପୁରସ୍କୃତ କରାଯାଉଥିଲା । ବୁଝିବାଉପରେ ଗୁରୁତ୍ୱ ଦିଆଯାଉଥିଲା ଓ ବହି ଭାଷାରେ ପୁନର୍ଲିଖନକୁ ନିରୁତ୍ସାହିତ କରାଯାଉଥିଲା । ଶୃଙ୍ଖଳାରକ୍ଷା ଅନିର୍ବାର୍ଯ୍ୟ ଥିଲା । ପରୀକ୍ଷା ଶେଷରେ ଛାତ୍ରମାନଙ୍କ ଦ୍ୱାରା ଉତ୍ସବ ଆୟୋଜନ ପାଇଁ ନିଆଯାଉଥିବା ସ୍ୱତଃସ୍ଫୂର୍ତ୍ତ ପଦକ୍ଷେପକୁ ନିରୁତ୍ସାହିତ କରାଯାଉନଥିଲା ।

ଛାତ୍ର ଓ ସହକର୍ମୀମାନଙ୍କ ପ୍ରତି ମୋର ଅପାରମ୍ପରିକ ବ୍ୟବହାର ନିଶ୍ଚିତଭାବେ ମୋ ସ୍କୁଲର ଅବଦାନ । ଏଥିନିମନ୍ତେ ମୁଁ ମୋ କନିଷ୍ଠ ସହକର୍ମୀଙ୍କଠୁଁ ପ୍ରଶାସନିକ ସ୍ତରରେ ଅକୁଣ୍ଠିତ ସାହାଯ୍ୟ, ସହଯୋଗ, ପରାମର୍ଶ ତଥା ଆନୁଗତ୍ୟ ପାଇଛି । ପରିବାର ଭିତରେ ତର୍କ-ବିତର୍କ, ଆଲୋଚନା ପ୍ରତି ଅନୁରକ୍ତିର ଯେଉଁ ଅଙ୍କୁରୋଦଗମ ହେଇଥିଲା ସ୍କୁଲରେ ତା'ର ଉତ୍ତରୋତ୍ତର ବୃଦ୍ଧି ହେଲା ।

ତୁଳନାତ୍ମକଭାବେ ମୋର କଲେଜ ଶିକ୍ଷାନୁଭୂତି ସଂପୂର୍ଣ୍ଣ ଭିନ୍ନ ଥିଲା । ବିଶ୍ୱଯୁଦ୍ଧ ଆମର ପାରିବାରିକ ଜୀବନକୁ ବିପର୍ଯ୍ୟସ୍ତ କରିଦେଇଥିଲା । କଲିକତାରେ ଏକ ଛୋଟମୋଟ ବୋମା ବିସ୍ଫୋରଣ କାରଣରୁ ମହିଳା ଓ ଶିଶୁମାନଙ୍କୁ ସ୍ଥାନାନ୍ତରିତ କରିଦିଆଗଲା । କଲିକତା ବିଶ୍ୱବିଦ୍ୟାଳୟ ସ୍ଥାନାନ୍ତରିତ ପରୀକ୍ଷାର୍ଥୀଙ୍କ ଉଦ୍ଦେଶ୍ୟରେ ମାଟ୍ରିକୁଲେସନ୍ ପରୀକ୍ଷାପାଇଁ ବଙ୍ଗ ବାହାରେ ଅଧିକ କେନ୍ଦ୍ର ଖୋଲିଥିଲା । ମୁଁ ବନାରସ୍‌ରେ ପରୀକ୍ଷା ଦେଲି । ମୋ କଲେଜ ଜୀବନ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ମହିଳା ମହାବିଦ୍ୟାଳୟରେ ଆରମ୍ଭ ହେଲା । ଯା ପଛରେ ଏକ ପ୍ରମୁଖ କାରଣ ଥିଲା । ମୋ ବାପା ଅବସର ତାରିଖର ଯଥେଷ୍ଟ ପୂର୍ବରୁ ହଠାତ୍ ସରକାରୀ ଚାକିରି ଛାଡ଼ିବାର ନିଷ୍ପତ୍ତି ନେଲେ । ଜଳସେଚନ ବିଭାଗ (ଯେଉଁ ବିଭାଗର ସେ ଚିଫ୍ ଇଞ୍ଜିନିଅର ଥିଲେ)କୁ ଆଦେଶ ଦିଆଗଲା ଯେ ସେ ସୈନ୍ୟ ବିଭାଗ ସହଯୋଗରେ ପୂର୍ବବଙ୍ଗର ସମସ୍ତ ବନ୍ଧ ଓ ନଦୀବନ୍ଧରେ ମାଇନ୍‌ସ ବିଛାଇ ଦେଉ । ଅଗ୍ରସର ହେଉଥିବା ଜାପାନୀ ସେନାର ଫଉଜକୁ ଦୃଷ୍ଟିରେ ରଖି ଏହା ଏକ 'ରଣନୈତିକ ପଳାୟନ'ର ପ୍ରସ୍ତୁତି ଥିଲା । ଏକ ବିନାଶକାରୀ କାର୍ଯ୍ୟ କରିବା ପରିବର୍ତ୍ତେ ଜାମସେଦପୁରର ଗୋଟିଏ ପ୍ରଲମ୍ବିତ ଜଳ ଯୋଗାଣ ପ୍ରକଳ୍ପର ଦାୟିତ୍ୱ ନେବାକୁ ସେ ଅଧିକ ସୃଜନାତ୍ମକ ବିଚାର କରି ଗ୍ରହଣ କଲେ । ମୋ ମା'ଙ୍କୁ ବିଭିନ୍ନ ଜରୁରୀ ପାରିବାରିକ କାର୍ଯ୍ୟ ଉପଲକ୍ଷେ ବିଶେଷକରି ନାତିନାତୁଣୀଙ୍କ ଯତ୍ନ ଓ ସୁରକ୍ଷା ନିମନ୍ତେ ବାରମ୍ବାର ବନାରସ, ଜାମସେଦପୁର ଓ କଲିକତାକୁ ଯିବା ଆସିବା କରିବାକୁ ପଡୁଥିଲା ।

୧୯୪୪ ମସିହା ମଧ୍ୟଭାଗବେଳକୁ ଯୁଦ୍ଧ ପରିସ୍ଥିତିରେ ପରିବର୍ତ୍ତନ ଦେଖାଦେଲା ଆଉ ମୁଁ କଲିକତାର ଆଶୁତୋଷ କଲେଜରେ ବି.ଏ. ଅନର୍ସରେ ନାଁ ଲେଖେଇଲି । ମୋ ବାପା ଶେଷକୁ ତାଙ୍କ ଅବସର ଜୀବନ କଟେଇବାପାଇଁ କଲିକତା ଆସିଲେ କିନ୍ତୁ ତାଙ୍କପରି କର୍ମଯୋଗୀଙ୍କ ଭାଗ୍ୟରେ (ଅର୍ଦ୍ଧ ଶତାବ୍ଦୀପରେ ମୋ ଜୀବନରେ ବି) ଅବସର ଲେଖାନଥିଲା । ବର୍ଷପୂରିବା ଆଗରୁ ସେ ବହୁମୁଖୀ-ନଦୀ ଉପତ୍ୟକା ପ୍ରକଳ୍ପନର ଯୋଜନା

ଉଦ୍ଦେଶ୍ୟରେ ଦିଲ୍ଲୀ ଚାଲିଗଲେ । ମୋ ବଡ଼ ଭାଇ, ମୁଁ କଲିକତାରେ ରହି ପଢ଼େଁ ବୋଲି ଜୋରଦେଇ କହିବା ପରେ ସମସ୍ତ ସନ୍ଦେହ ଦୂରୀଭୂତ ହେଇ ମୋ ଭାଗ୍ୟ ନିର୍ଦ୍ଧାରିତ ହେଲା । ଗଭୀର ଆତ୍ମବିଶ୍ୱାସପୂର୍ଣ୍ଣ ଭଙ୍ଗୀରେ ସେ କହିଲେ ଯେ ମୁଁ ଘର ଚଳେଇବାର ଦାୟିତ୍ୱ ନେଇ କିଛି ବ୍ୟାବହାରିକ ଅଭିଜ୍ଞତା ହାସଲ କରେ କାରଣ "ଖୁକୁ ଖୁବ୍ ଥଣ୍ଡା ମସ୍ତିଷ୍କର ପିଲା" । ତାଙ୍କର ବକ୍ତବ୍ୟ ମୋ ସ୍ୱାଭିମାନକୁ ସୁହେଇଲା ଓ ପ୍ରଥମ ଥର ପାଇଁ କୌଣସି ଗୁରୁଜନଙ୍କ ବିନା ପରାମର୍ଶରେ ମୁଁ ମୋ ଜୀବନକୁ ପୂରାପୂରି ଉପଭୋଗ କରିବାରେ ଲାଗିଲି ।

ବନାରସ ଓ କଲିକତାର କଲେଜ ଜୀବନ ମୋର ମାନସିକ ବିକାଶକୁ ଖୁବ୍ ଗୋଟେ ସମୃଦ୍ଧ କରିନଥିଲା । କିନ୍ତୁ ଦେଶରେ, ତଥା ୧୯୪୦ରେ କଲିକତାରେ ଖୁବ୍ ଦ୍ରୁତଗତିରେ ଘଟୁଥିବା ସାମାଜିକ ଓ ରାଜନୈତିକ ପରିବର୍ତ୍ତନ ମୋର ସାମାଜିକ ଓ ରାଜନୀତିକ ଶିକ୍ଷାକୁ ପୁଷ୍ଟ କରିଥିଲା । ମୋ ବାପାଙ୍କର ସରକାରୀ ଚାକିରି ଛାଡ଼ିବା ସିଦ୍ଧାନ୍ତ ପରେ ପରେ ଭାରତଛାଡ଼ ଆନ୍ଦୋଳନ ଆରମ୍ଭ ହେଇଗଲା । ତା'ପରେ ୧୯୪୩ରେ ଦୁର୍ଭିକ୍ଷ ଓ ସେଇ ସୂତ୍ରରେ ମା'ଙ୍କର କଠୋର ନିଷ୍ପତ୍ତିର ପ୍ରଭାବ ଆମ ଜୀବନଶୈଳୀରେ ପରିବର୍ତ୍ତନ ପାଇଁ ଦାୟୀ । ଘରେ ଖାଦ୍ୟପଦାର୍ଥ ସଞ୍ଚୟ କରିବା ଉପରେ କଟକଣା, କ୍ଷୀର ଓ ଚିନି କେବଳ ନାତିନାତୁଣୀଙ୍କ ପାଇଁ ରଖାଗଲା, ବଡ଼ମାନଙ୍କର ଚା ଓ କଫି ପିଆ ଉପରେ କଡ଼ା କାଟଛାଣ୍ଟ, ଖାଇବା ସମୟରେ ଚାକରଙ୍କ ପରିବର୍ତ୍ତେ ନିଜେ ବାଢ଼ିବା, ଖାଇବା ଜିନିଷ ଛାଡ଼ିବା ଉପରେ ନିଷେଧାଜ୍ଞା ଜାରି କରାଗଲା । ତାଙ୍କର ଯୁକ୍ତି ଆଜି ବି ମତେ ପ୍ରଭାବିତ କରେ । "ଗୋଟେ କ୍ଷୁଧାର୍ତ୍ତ ଲୋକକୁ ଅଇଣ୍ଠା ଦେବାକୁ ମୋତେ ବାଧେ । ସେମାନଙ୍କୁ ଭଲ ଖାଦ୍ୟ ଦେବାର ସାମର୍ଥ୍ୟ ମୋର ଥିବା ଦରକାର ଯାହା ଫଳରେ ସେମାନଙ୍କର ସ୍ୱାଭିମାନରେ ଆଞ୍ଚ ଆସିବନି ।"

ଅନ୍ୟ ଅନେକ ରାଜନୈତିକ ଘଟଣା ଘଟିଚାଲିଥାଏ – କ୍ରିପ୍ସ ମିଶନ, ଯୁଦ୍ଧର ଅବସାନ, ଇଂଲଣ୍ଡରେ ଲେବର ପାର୍ଟିର ସରକାର, ତା ସହିତ ସ୍ୱାଧୀନତା ପ୍ରାପ୍ତିର ଆଶା ଚରମରେ ଥାଏ । ଇଣ୍ଡିଆନ୍ ନ୍ୟାସନାଲ ଆର୍ମିର ଶୁଣାଣି, ମହାତ୍ମା ଗାନ୍ଧୀଙ୍କର ଆଗମନ ଏବଂ ଅଲ ଇଣ୍ଡିଆ କଂଗ୍ରେସ୍ କମିଟିର କଲିକତା ଅଧିବେଶନ ଛାତ୍ରମାନଙ୍କର ରାଜନୈତିକ ବିକ୍ଷୋଭରେ ଅଂଶ ନେବା, ବିରାଟ ରାଜନୈତିକ ସଭାରେ ସ୍ୱେଚ୍ଛାସେବୀ ଭାବେ କାର୍ଯ୍ୟକରିବା – ପୋଲିସର ଗୁଳି ଚାଳନାରେ ଆହତ ବ୍ୟକ୍ତିମାନଙ୍କ ଚିକିତ୍ସା ଓ ସେବା କରିବାପାଇଁ ପ୍ରଚୁର ସୁଯୋଗ ଦେଇଥିଲା । କଲେଜ ଛାତ୍ରୀ ସମ୍ମିଳନୀର ସଂପାଦିକା ଭାବରେ ମୁଁ କେତେକ ସାଙ୍ଗଠନିକ ଦାୟିତ୍ୱ ବହନ କରିଥିଲି । ତେଣୁ ମୋର ଶିକ୍ଷକମାନେ ମାର୍ଚ୍ଚ, ୧୯୪୬ରେ ହେବାକୁ ଥିବା ଶେଷ ପରୀକ୍ଷାରେ ପ୍ରସ୍ତୁତି ଅଭାବ ଲକ୍ଷ୍ୟକରି ଅଭିଯୋଗ କରିଥିଲେ ।

ମୋର ଅକ୍ସଫୋର୍ଡରେ ପଢ଼ିବାର ପ୍ରବଳ ଇଚ୍ଛାଥିବା କଥା କିଛିଦିନ ଆଗରୁ ମା' ଜାଣିଥିଲେ । ଶେଷରେ ସେ ମୋ ବାପାଙ୍କୁ ରାଜି କରେଇ ପାରିଥିଲେ ଯେ ମୁଁ ପ୍ରଥମ ଶ୍ରେଣୀରେ ବି.ଏ. ପାଶ୍ କଲେ ସେ ମୋ କଥା ବିଚାର କରିବେ । ଯେତେବେଳେ ମୁଁ ଚାରି ନମ୍ବର ପାଇଁ ପ୍ରଥମ ଶ୍ରେଣୀ ପାଇଲିନି ବାପାଙ୍କୁ କହିବାପାଇଁ ମୋର ଆଉ ମୁହଁ ରହିଲାନି । ଚୁପଚାପ୍ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ଏମ୍.ଏ.ରେ ନାଁ ଲେଖେଇଲି । ମାତ୍ର ଦିଲ୍ଲୀ ନିଃସନ୍ଦେହରେ ରାଜନୈତିକ କ୍ରିୟା ପ୍ରତିକ୍ରିୟା ଦୃଷ୍ଟିରୁ ଶୀର୍ଷରେ ଥିଲା । ଜବାହରଲାଲ

ନେହେରୁଙ୍କ ନେତୃତ୍ୱରେ ମଧ୍ୟବର୍ତ୍ତୀକାଳୀନ ସରକାର ଗଠିତ ହେଇସାରିଥିଲା । ସମ୍ବିଧାନ ଗଠନ ସମିତି ଚାଲିଥିଲା । ସେତେବେଳେ ଦର୍ଶକ ଗ୍ୟାଲେରୀରେ ବସିବାର କଦବା କ୍ୱଚିତ ସୁଯୋଗ ମିଳୁଥିଲା, ଯେଉଁ ନେତାମାନଙ୍କ ସଂପର୍କରେ ମୁଁ କେବଳ ଶୁଣିଥିଲି ଓ ପଢ଼ିଥିଲି ସେମାନଙ୍କୁ ଶୁଣିବାବେଳେ ଅତିମାତ୍ରାରେ ଉତ୍ତେଜିତ ହେଇଯାଉଥିଲି । ଏହାଦ୍ୱାରା ଅକ୍ସଫୋର୍ଡ଼ରେ ପଢ଼ିନପାରିବାର ଅବଶୋଷ ଏବଂ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ଅନୁଭୂତ ସାଂସ୍କୃତିକ ଧକ୍କା – ଉଭୟର ଭରଣା ହେଇଗଲା ।

ମୋର କଲିକତା ଓ ବନାରସର ଛାତ୍ରୀ ଜୀବନରେ ମୁଁ କେବେବି ଛାତ୍ରମାନଙ୍କୁ ସୁଟ୍ ପିନ୍ଧିବାର ଦେଖିନଥିଲି । ଅବଶ୍ୟ ଯୁଦ୍ଧ ସମୟରେ ଛାତ୍ରମାନେ ଧୋତି ପଞ୍ଜାବୀ ଛାଡ଼ି ପ୍ୟାଣ୍ଟ ପିନ୍ଧିବା ଆରମ୍ଭ କରିଦେଲେ । କିନ୍ତୁ ଝିଅମାନେ ସେତେବେଳେ ବି ସାଧାରଣ ସୂତାଶାଢ଼ୀ ଓ କମ୍ ଉଚ୍ଚତାଥିବା ଚପଲ ବା ସାଣ୍ଡାଲ୍ ପିନ୍ଧୁଥିଲେ । ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ମୁଁ ଦେଖିଲି ଛାତ୍ରମାନେ ବେଶ୍ ସଜେଇ ଗୁଜେଇ ହେଇ ଆସୁଥିଲେ, ଛାତ୍ରୀମାନେ ସିଲ୍କ ସାଲୱାର ଓ ଉଚ୍ଚ ହିଲ୍‌ବାଲା ଜୋତା ପିନ୍ଧୁଥିଲେ । କିନ୍ତୁ ସବୁଠୁଁ ବଡ଼ ବିସ୍ମୟର କଥା ଥିଲା ଯେ ଇତିହାସର ଛାତ୍ରମାନେ ଚୈତନ୍ୟଙ୍କ ନାଁ ବି ଶୁଣିନଥିଲେ ! ମୋର ଭାରତୀୟ ଇତିହାସ ଉପରେ ଖୁବ୍ ଗୋଟେ ଦଖଲ ନ ଥିଲା କିନ୍ତୁ ସେଣ୍ଟ ଷ୍ଟିଫେନ୍ସ କଲେଜର ଯେଉଁ ଛାତ୍ରୀମାନଙ୍କୁ ମୁଁ ଦେଖିଥିଲି ସେମାନଙ୍କଠୁଁ ଭଲ ଥିଲା । ମୋ ବାପାଙ୍କର ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷା ଦେବାପାଇଁ ସ୍ୱୀକୃତି ମତେ ଭୀଷଣ ଆଶ୍ୱସ୍ତ କଲା ଯଦିଓ ସେମାନେ ଅନୁବାଦ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପାଇଁ ଫ୍ରେଞ୍ଚ ଶିକ୍ଷୟିତ୍ରୀକୁ ଯୋଡ଼ିଥିଲେ । ୬ ସପ୍ତାହ ମଧ୍ୟରେ ମତେ ପରୀକ୍ଷା ଦେବାକୁ ହେବ ଜାଣି ମୋ ଶିକ୍ଷୟିତ୍ରୀ ବ୍ୟାକରଣ ଶିଖେଇବାର ପ୍ରାଥମିକ ଯୋଜନା ପରିତ୍ୟାଗ କଲେ । ତା'ପରିବର୍ତ୍ତେ ସେ ମୋତେ ସିଧାସଳଖ ଫ୍ରେଞ୍ଚ କବିତା ଓ ପ୍ରବନ୍ଧ ଅନୁବାଦ କରିବାକୁ ଦେଲେ ଯାହା କେବେ ବି ନୂଆ ଶିକ୍ଷାର୍ଥୀକୁ ଦିଆଯାଏ ନାହିଁ । ମୋର ଇଂରାଜୀ ଭାଷାରେ ଦକ୍ଷତା ଏବଂ ସାହିତ୍ୟ ଓ କବିତାପ୍ରତି ଅନୁରାଗ ଦେଖି ସେ ଏହା କଲେ । ପ୍ରାୟ ଚତୁର୍ଥ ସପ୍ତାହବେଳକୁ ମୁଁ ଲା ମାର୍ଟିନଙ୍କ ଫ୍ରେଞ୍ଚ ବିପ୍ଲବ ଉପରେ ରଚିତ କବିତାର କବିତ୍ୱପୂର୍ଣ୍ଣ ଅନୁବାଦ କରିପାରିଲି । ସେଇ ପ୍ରଥମ ପରୀକ୍ଷା ଭିତ୍ତିରେ ମତେ ସେଣ୍ଟହ୍ୟୁଜ୍ କଲେଜରେ ନାଁ ଲେଖେଇବାର ସୁଯୋଗ ମିଳିଗଲା ।

ଏତେବେଳକୁ ଦିଲ୍ଲୀରେ ସାଂପ୍ରଦାୟିକ ଉତ୍ତେଜନା ଏତେ ବୃଦ୍ଧି ପାଇଥିଲା ଯେ ମୁଁ ଜାଣିଥିଲି ଯେ ମୋର ବିଶ୍ୱବିଦ୍ୟାଳୟ ଯାତାୟାତକୁ ନେଇ ବାପା ଚିନ୍ତିତ ଥିଲେ । ବାରମ୍ବାର ଟାଙ୍ଗିରେ ସେଇ ସବୁ ସମ୍ବେଦନଶୀଳ ସ୍ଥାନଦେଇ ମତେ ଯିବାକୁ ପଡୁଥିଲା । ଦିଲ୍ଲୀ ବିଶ୍ୱବିଦ୍ୟାଳୟ ଛାଡ଼ି ଅକ୍ସଫୋର୍ଡ଼ ଯାଇ ପଢ଼ିବାର ନିଷ୍ପତ୍ତିକୁ ସେ 'ଯଥାର୍ଥ' କହି ସ୍ୱାଗତ କଲେ ।

ଦିଲ୍ଲୀ ରହଣି ଯୋଗୁଁ ମୁଁ ୧୯୪୬ରେ କଲିକତାରେ ଘଟିଥିବା ନାରକୀୟ ହତ୍ୟାର ମହାବିଭୀଷିକା ଦେଖିବାରୁ ରକ୍ଷାପାଇଗଲି । ୧୯୪୭ ମସିହା ଅଗଷ୍ଟ ୧୪ ଏବଂ ୧୫ ତାରିଖରେ ଦିଲ୍ଲୀରେ ଥିଲି ଯେତେବେଳେ ଐତିହାସିକ ଅର୍ଦ୍ଧରାତ୍ରି ସେସନ୍‌ରେ ଜୱାହରଲାଲ ଟ୍ରିଷ୍ଟ ଉଇଥ ଡେଷ୍ଟିନି ଉପରେ ଭାଷଣ ଦେଲେ । ପରଦିନ ପାର୍ଲାମେଣ୍ଟରେ ବୈଠକ ସହିତ

ଦିଲ୍ଲୀବାସୀମାନଙ୍କର ଅସାଧାରଣ ଆନନ୍ଦର ପ୍ରଦର୍ଶନ ଓ ମୁକ୍ତିର ପ୍ରଭାତକୁ ସ୍ୱାଗତ କରିବାର ଅପୂର୍ବ ଦୃଶ୍ୟର ସାକ୍ଷୀ ଥିଲି । ପୁନଶ୍ଚ ସୌଭାଗ୍ୟବଶତଃ ଆମେ କଲିକତା ଉଦ୍ଦେଶ୍ୟରେ ସଙ୍ଗେ ସଙ୍ଗେ ବାହାରିଗଲୁ ଆଉ ପରିବର୍ତ୍ତରେ ଦେଶ ବିଭାଜନର ପରବର୍ତ୍ତୀ ଦଙ୍ଗା ଦେଖିବାରୁ ରକ୍ଷା ପାଇଗଲୁ । ଯା ପରିବର୍ତ୍ତେ ମୋ ସ୍ମୃତିପଟ୍ଟରେ ଭାରତର ଶେଷସ୍ମୃତି ଭାବରେ ମହାତ୍ମାଗାନ୍ଧୀଙ୍କର ସେ ଅସାଧାରଣ ଭାଷଣ ଅଛି, ଯାହା ପୂର୍ବ ସୀମାର ଉଭୟ ପାର୍ଶ୍ୱରେ ପୁଣିଥରେ ଚେଇଁ ଉଠିଥିବା ଦଙ୍ଗାକୁ ପ୍ରଶମିତ କରିବା ଉଦ୍ଦେଶ୍ୟରେ ଦେଇଥିଲେ ।

ପେଡ଼ିଙ୍ଗଟନ୍ ଷ୍ଟେସନ୍‌ରେ ଅକ୍ସଫୋର୍ଡ଼କୁ ଯିବାପାଇଁ ଟ୍ରେନ୍‌ର ଅପେକ୍ଷାରେ ଥିବାବେଳେ ମୋର ସମସ୍ତ ଆତ୍ମବିଶ୍ୱାସ କୁଆଡ଼େ ଉଭେଇଗଲା । ମୁଁ ଗୋଟେ ସଂପୂର୍ଣ୍ଣ ଅପରିଚିତ ସ୍ଥାନରେ ଯେଉଁଠିକି ମୁଁ କାହାରିକି ଚିହ୍ନିନି କି ଜାଣିନି ପୁଣି ଜୀବନରେ କେବେ ବି ଏକା ଯାତ୍ରା କରିନି । କିନ୍ତୁ ଅକ୍ସଫୋର୍ଡ଼ରେ ୩ବର୍ଷର ଶିକ୍ଷା ପଦ୍ଧତି ମୋ ମନରୁ ବାକିତକ ଭୟ ଦୂର କରିଦେଲା । ମୁଁ ନିଜେ ନିଜପାଇଁ ଭାବିପାରୁଚି ଜାଣି ବିହ୍ୱଳିତ ହେଇଗଲି, ବହିର ଛାପା ଲେଖା ମୋ ପାଇଁ ଆଉ ବେଦବାକ୍ୟ ହେଇ ରହିଲାନି । ଶିକ୍ଷକମାନେ ମୋ ପ୍ରଶ୍ନର ଉତ୍ତର ଦେଇନପାରି ନିଜର ଅଜ୍ଞତା ସ୍ୱୀକାର କରିବାକୁ ଆତ୍ମସମ୍ମାନ ହାନିକାରକ ମନେ କଲେନି ।

କଲେଜର ଶିକ୍ଷୟିତ୍ରୀ ବେଟୀ କେମ୍ପ ମୋ ଭିତରେ ସ୍ଫୁର୍ତ୍ତି ଓ ସାହସ ଜାଗ୍ରତ କରିବାରେ ପ୍ରଥମ ବ୍ୟକ୍ତି ଥିଲେ ଏବଂ ଜଣେ ଶିକ୍ଷକର ଭୂମିକା ବିଷୟରେ ମତେ ସେ ହିଁ ଶିଖାଇଥିଲେ । ତାଙ୍କର ବକ୍ତବ୍ୟ ଥିଲା ''ମୋର କର୍ତ୍ତବ୍ୟ ହେଲା ଜଣେ ସ୍ନାତକକୁ, ସେ କିପରି ନିଜେ ଅଧ୍ୟୟନ କରିଶିଖିବ ତା ଶିଖେଇବା ।'' ୪୧ ବର୍ଷ ପରେ ନାସନାଲ୍ କାଉନ୍‌ସିଲ୍ ଫର୍ ଏଡୁକାସ୍‌ନାଲ୍ ରିସର୍ଚ୍ଚ ଆଣ୍ଡ ଟ୍ରେନିଂ ଉପରେ ଅଧ୍ୟୟନ ଶେଷ କରି ତା'ର ଗୋଟେ କପି ତାଙ୍କୁ ଦେଲାବେଳେ ସେଥିରେ ମୁଁ ଏ ବାକ୍ୟଟି ନିଜ ହାତରେ ଲେଖିଥିଲି । ସେ ବିସ୍ମୟ ବିମୁଗ୍ଧ ହେଲେ ଯେ ମୁଁ ତାଙ୍କର ବକ୍ତବ୍ୟକୁ ଅବିକଳଭାବେ ମନେରଖିଛି !

୧୯୫୦ରେ ଫେରିବାବେଳକୁ ମୁଁ ଚାକିରି କରିବା କଥା ଭାବୁଥିଲି କିନ୍ତୁ ମୋ ବାପା ଯଦି କହନ୍ତି ଏହା ଆମ ପରିବାରର ପରମ୍ପରାର ବିରୋଧାଚରଣ କରୁଛି ତେବେ ମୁଁ କ'ଣ କରିବି ଭାବିପାରୁନଥିଲି । ମୁଁ ସ୍ୱପ୍ନରେ ସୁଦ୍ଧା ଭାବିନଥିଲି ଯେ ମୋ ବାପା ମୋର ଅଧ୍ୟାପନା ଚାକିରି ପ୍ରତି ଆଗ୍ରହକୁ ସମ୍ମତି ଦେବେ । ମୋର ବିସ୍ମୟକୁ ଲକ୍ଷ୍ୟକରି ସେ କହିଲେ ଯେ ଏଭଳି ଏକ ଯୌକ୍ତିକ ଘଟଣାପାଇଁ ସେ ପୂରାପୂରି ପ୍ରସ୍ତୁତ ଥିଲେ । ''ଯା ଭିତରେ କିନ୍ତୁ ପରିସ୍ଥିତି ବଦଳିଯାଇଛି । ତୁ ବାହାରେ ଥିବାବେଳେ ଦେଶର ନୂଆ ସମ୍ବିଧାନ ପ୍ରଣୟନ ହେଲା, ଯାହା ମତେ କହୁଛି ଯେ ମୁଁ, ତୁ ଓ ତୋ ଭାଇ ମଧ୍ୟରେ କୌଣସି ପକ୍ଷପାତିତା କରିବି ନାହିଁ । ମୁଁ ସବୁବେଳେ ତୋ ଭାଇମାନଙ୍କୁ କହିଆଏଁ ଯେ ମୋ ଦାୟିତ୍ୱ ହେଲା ସେମାନଙ୍କୁ ନିଜ ଗୋଡ଼ରେ ଠିଆ ହେବାପାଇଁ ଯୋଗ୍ୟ କରିବା । ବର୍ତ୍ତମାନ ମୁଁ ମଧ୍ୟ ସେଇ ନିୟମ ତୋ ପ୍ରତି ଲାଗୁକରିବା କଥା । ତୁ ଏତେ ଆଶ୍ଚର୍ଯ୍ୟାନ୍ୱିତ ହେବାର କାରଣ କ'ଣ ? ତୁ କ'ଣ ଜାଣିନୁ ଯେ ମୁଁ ସବୁବେଳେ ନିୟମ ମାନି ଚଳିବା ଲୋକ ? ଯେତେବେଳେ ନିୟମ ପରିବର୍ତ୍ତିତ ହେଲା ମୁଁ ମଧ୍ୟ ଆବଶ୍ୟକତା ଅନୁସାରେ ନିଜକୁ ମନେଇନେବା ଉଚିତ୍ ।''

ଏକଥା ଉପଲବ୍ଧି କରିବାକୁ ମତେ ପାଖାପାଖି ୨୫ ବର୍ଷ ଲାଗିଗଲା ଯେ ବହୁତ କମ୍ ଭାରତୀୟ ବାପା, ଭାଇ ବା ସ୍ୱାମୀ ଅଛନ୍ତି ଯେଉଁମାନଙ୍କର ନିୟମ ପ୍ରତି ଏଇ ପ୍ରକାର ସମ୍ମାନବୋଧ ଅଛି । ୧୯୫୧ ମସିହା ଜୁଲାଇ ମାସରେ ମୁଁ ପାଟନା ବିଶ୍ୱ ବିଦ୍ୟାଳୟରେ ରାଜନୀତି ବିଜ୍ଞାନର ଅଧ୍ୟାପିକା ଭାବରେ ମୋ ପସନ୍ଦର ବୃତ୍ତି ଆରମ୍ଭ କଲି ।

ବର୍ଷେ ପରେ, ପାଟନାରେ, ମୋର ନୂଆକରି ଆଗ୍ରହ ସୃଷ୍ଟିହେଇଥିବା ଶାସ୍ତ୍ରୀୟ ସଙ୍ଗୀତ ସମାରୋହରେ ମୁଁ ଜଣକୁ ଭେଟିଲି ଓ ତାଙ୍କୁ ବାହାହେଲି । ମୋର ସଂପୂର୍ଣ୍ଣ ବିପରୀତ ପ୍ରକୃତିର ଅର୍ଥାତ ପିଲାଦିନରୁ ସେ ବିଦ୍ରୋହ ମନୋବୃତ୍ତିର ଥିଲେ । ତାଙ୍କର କଳା ପଢ଼ିବାର ଇଚ୍ଛା ଥିଲା, ତାଙ୍କ ବାପା ବିଜ୍ଞାନ ପଢ଼ିବାକୁ ବାଧ କରିବାରୁ ସେ ମୂଳରୁ କଲେଜ ପଢ଼ା ବନ୍ଦ କରିଦେଲେ । ତାଙ୍କର କୌଣସି ଡିଗ୍ରୀ ନ ଥିଲା । ତେଣୁ ଆମର ବିବାହ ପାଟନାରେ ତଥା କଲିକତାରେ ଥିବା ଆମ ପରିବାରରେ ଏକ ତୁମୁଳ ଆଲୋଡ଼ନ ସୃଷ୍ଟି କରିଥିଲା । ତେବେ ଆମେ ତାଙ୍କ ବିଧବା ମା' ଓ ମୋ ବାପାମାଙ୍କର ଆଶୀର୍ବାଦ ଓ ପୂର୍ଣ୍ଣ ସମର୍ଥନ ପାଇଥିଲୁ । ଯେତେବେଳେ ମୁଁ ମୋର ବିଭାଗୀୟ ମୁଖ୍ୟ ପ୍ରଫେସର ଭି.କେ.ଏନ୍. ମେନ୍‌ନଙ୍କୁ ମୋର ଆଗାମୀ ବିବାହ ବିଷୟରେ ସୂଚନା ଦେଲି ସେ ହତଚକିତ ହୋଇ ପଚାରିଲେ, "ୟା ମାନେ ତୁମେ କ'ଣ ଆମକୁ ଛାଡ଼ି ଚାଲିଯିବ ?" ଯେତେବେଳେ ମୁଁ କହିଲି ମୋର ସେମିତି କୌଣସି ଉଦ୍ଦେଶ୍ୟ ନାହିଁ । ସେ ସଙ୍ଗେ ସଙ୍ଗେ ବିଭାଗରେ ଏକ ଉତ୍ସବ ଆୟୋଜନ କରିବାକୁ ଆଦେଶ ଦେଲେ ।

## ପରବର୍ତ୍ତୀ ୨୫ ବର୍ଷ (୧୯୫୨–୭୭)

ଅନେକ ପରେ ମୁଁ ମୋ ସମସାମୟିକ ପ୍ରଫେସନାଲ ମହିଳାମାନଙ୍କୁ ସମ୍ବିଧାନର ସମାନତା ଅନୁଚ୍ଛେଦଦ୍ୱାରା ଲାଭାନ୍ୱିତ ହୋଇଥିବା ପ୍ରଥମ ପିଢ଼ିବୋଲି କହିବା ଆରମ୍ଭ କଲି । ବହୁ ଆତ୍ମୀୟ ଗୁରୁଜନମାନେ ମତେ ସତର୍କ କରିଦେଇଥିଲେ ଯେ ପାଟନାରେ ମୋର ରହଣି ସହଜ ନ ହୋଇପାରେ କାରଣ ମୁଁ ଜଣେ ମହିଳା, ଯୁବତୀ ପୁଣି ବଙ୍ଗାଳୀ । ସେମାନଙ୍କର ସମସ୍ତ ଭବିଷ୍ୟତବାଣୀ ଭୁଲ୍ ଥିଲା । ସେ ବିଶ୍ୱବିଦ୍ୟାଳୟରେ ୧୪ବର୍ଷ ରହଣି ମଧ୍ୟରେ ମୋର ଛାତ୍ର କିମ୍ବା ସହକର୍ମୀଙ୍କଠାରୁ ମୁଁ କେବେ ବି ସେ ପ୍ରକାର ଉଦାସୀନ ବ୍ୟବହାର ପାଇନାହିଁ । ଆମ ବିଭାଗ ବହୁ ମେଧାବୀ ଛାତ୍ରଙ୍କୁ ଆକର୍ଷିତ କରୁଥିଲା ଯେଉଁମାନଙ୍କୁ ମୋର ଅଣପାରମ୍ପରିକ ଶୈଳୀର ପଢ଼ା ଭଲଲାଗୁଥିଲା । ସେମାନେ ଭଲଭାବରେ ଜାଣିଥିଲେ ଯେ ଏହି ପଢ଼ାପଦ୍ଧତି ତାଙ୍କୁ ପରୀକ୍ଷାରେ ଭଲ ନମ୍ବର ଆଣିବାରେ ସାହାଯ୍ୟ କରିବନି ଏହା ଜାଣିବା ସତ୍ତ୍ୱେ ସେମାନେ ପଢୁଥିଲେ ।

ଜଣେ କନିଷ୍ଠ ଅଧ୍ୟାପିକାଭାବରେ ପାଠ୍ୟକ୍ରମ ବା ପରୀକ୍ଷା ପ୍ରଣାଳୀ ଉପରେ ମୋର କୌଣସି କ୍ଷମତା ନ ଥିଲା । କିନ୍ତୁ ପାଟନା ବିଶ୍ୱବିଦ୍ୟାଳୟ ଶିକ୍ଷକ ସଂଘ (୧୯୫୬)ର ପ୍ରଥମ ସଂପାଦକ ଭାବରେ ମୁଁ କିଛି ପରିବର୍ତ୍ତନ ଆଣିଲି । ଆମେ ଗୋଟେ ଦଳ ବସି ବିଭିନ୍ନ ସମାଜ–ବିଜ୍ଞାନ ଅନ୍ତର୍ଗତ ସଂଗଠନ ପାଇଁ ସହଯୋଗିତା ଭିତ୍ତିରେ ଗୋଟେ ବିଚାର ସଙ୍ଗତ ଯୋଜନା କଲୁ । ଗବେଷଣାମୂଳକ ପ୍ରଶିକ୍ଷଣରେ ସ୍ପେସିଆଲାଇଜେସନ୍ ଓ ବିଭିନ୍ନ

ସମାଜ ବିଜ୍ଞାନ ବିଭାଗର ଅଧ୍ୟାପକ ଓ ଛାତ୍ରମାନଙ୍କ ମଧ୍ୟରେ ପାରସ୍ପରିକ କ୍ରିୟା ପ୍ରତିକ୍ରିୟାକୁ ବୃଦ୍ଧି କରେଇବା ଉଦ୍ଦେଶ୍ୟରେ ଏହା କରାଗଲା । ଆମମାନଙ୍କ ମଧ୍ୟରୁ କେତେକ ବିହାର ନାଗରିକ ଶିକ୍ଷା ସମିତିର ସଦସ୍ୟ ବି ହେଇଗଲେ ଏବଂ ସ୍କୁଲ ଓ ବିଶ୍ୱ ବିଦ୍ୟାଳୟର ଶିକ୍ଷା ପ୍ରଣାଳୀରେ ଉନ୍ନତି ଉଦ୍ଦେଶ୍ୟରେ ଗୁଡ଼ିଏ ସେମିନାର କଲେ । ମାତ୍ର ଦୁଇଝିଅଙ୍କ ଜନ୍ମ ଓ ଶାଶୁଙ୍କର ଦୁଃସାଧ୍ୟ ରୋଗଯୋଗୁଁ ମୋର ଗବେଷଣା କାର୍ଯ୍ୟ ମତେ ସ୍ଥଗିତ ରଖିବାକୁ ପଡ଼ିଲା । ୧୯୫୬ରୁ ୧୯୫୯ ଭିତରେ ମୁଁ ମୋ ବାପା, ମୋ ଶାଶୁ, ମୋ ମା'ଙ୍କୁ ହରେଇଲି । ରେଜିଷ୍ଟ୍ରାର ମତେ ଡକେଇ ପରାମର୍ଶ ଦେଲେ ଯେ ବର୍ଷେ ପୂର୍ବରୁ ସିଣ୍ଡିକେଟ୍, ଅକ୍ସଫୋର୍ଡ଼ରେ ଗବେଷଣା କରିବା ପାଇଁ ଯେଉଁ ଛୁଟି ମଞ୍ଜୁର କରିଥିଲା, ସେଇ ଛୁଟିନେଇ ମୁଁ ଦେଶ ବାହାରକୁ ଚାଲିଯାଏଁ କାରଣ ରାଜ୍ୟ ସରକାରଙ୍କ ଦୃଷ୍ଟିରେ ମୁଁ 'ବିଶୃଙ୍ଖଳାର ମଞ୍ଜି' ଓ ମତେ ପାଟନା ବାହାରକୁ ବଦଳି କରିଦେବାର ନିଷ୍ପତ୍ତି ସେମାନେ ନେଇ ପାରନ୍ତି । ଆଗରୁ ଭାଇଙ୍କର ଅକ୍ସଫୋର୍ଡ଼ରେ ଗବେଷଣା ଖର୍ଚ୍ଚ ବହନ କରିବାର ପ୍ରସ୍ତାବକୁ ମୁଁ ହସିକି ଆଡ଼େଇ ଦେଇଥିଲି । କିନ୍ତୁ ରେଜିଷ୍ଟ୍ରାରଙ୍କର ସତର୍କବାଣୀ ମତେ ଗୁରୁତ୍ୱପୂର୍ଣ୍ଣ ଲାଗିଲା ଓ ମୁଁ ସେପ୍ଟେମ୍ବର, ୧୯୬୦ରେ ମୋ ଦୁଇଝିଅଙ୍କ ସହିତ ଅକ୍ସଫୋର୍ଡ଼ ଚାଲିଗଲି । ସେଣ୍ଟ ହୁଜ୍ କଲେଜର ପ୍ରିନ୍ସିପାଲ୍ ଓ ବେଟୀ କେମ୍ପ ଉଭୟ ଝିଅ ଦୁହିଁଙ୍କୁ ନ ଆଣିବାକୁ ପରାମର୍ଶ ଦେଲେ ମାତ୍ର ମୋ ଶାଶୁ, ମୋ ମା'ଙ୍କ ମୃତ୍ୟୁ ଯୋଗୁଁ ମୋ ପାଖରେ ଅନ୍ୟ କୌଣସି ବିକଳ୍ପ ନ ଥିଲା । ମୁଁ ମୋଟାମୋଟି ଭାବେ ନିଶ୍ଚିତ ଥିଲି ଯେ ଅକ୍ସଫୋର୍ଡ଼ରେ ମତେ ଯଥେଷ୍ଟ ବନ୍ଧୁ ମିଳିଯିବେ ସାହାଯ୍ୟ କରିବାପାଇଁ – ତାହା ହିଁ ହେଲା । ତେବେ ସେ ଦି'ବର୍ଷ ମୋ ପାଇଁ ଖୁବ୍ କଷ୍ଟକର ଥିଲା – ପ୍ରଥମତଃ ପିଲାମାନେ ସ୍କୁଲରେ ଥିବାବେଳେ ପୁସ୍ତକାଗାରରେ ଦୀର୍ଘସମୟ ଧରି ଅଧ୍ୟୟନ କରିବାର ପୁରୁଣା ଅଭ୍ୟାସ ଆରମ୍ଭ କରିବା ଓ ପରେ ସେମାନଙ୍କୁ ଅକ୍ସଫୋର୍ଡ଼ ଲୋକଙ୍କ ପାଖରେ ଛାଡ଼ି (ଯେଉଁଠି ସେମାନଙ୍କର ପଢ଼ାପଢ଼ି ଅକ୍ଷୁଣ୍ଣ ରଖି ଠିକ୍‌ଭାବରେ ଯତ୍ନ ନିଆଯାଇପାରିବ) ମୋର ଲଣ୍ଡନ ଓ ଏଡ଼ିନବର୍ଗରେ ଗବେଷଣା କାମ ଚାଲୁ ରଖିବା ।

ପ୍ରଥମ ବର୍ଷପରେ, ଭାରତୀୟ ରିଜର୍ଭ ବ୍ୟାଙ୍କ, ବିଦେଶୀ ମୁଦ୍ରା ନିୟନ୍ତ୍ରଣ ନିୟମରେ ପରିବର୍ତ୍ତନ ହେବା କାରଣରୁ ମୋର ବିଦେଶୀ ମୁଦ୍ରା ଭତ୍ତା ୨୦୦ ପାଉଣ୍ଡ କମେଇଦେଲା । ଦୁର୍ଭାଗ୍ୟବଶତଃ ମୋର ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟକୁ ଆସିବାରେ ବିଳମ୍ବ ହେବା କାରଣରୁ, ସେଣ୍ଟ ହ୍ୟୁଜ କଲେଜରେ ପ୍ରାୟ ନିଶ୍ଚିତ ଭାବରେ ମିଳିବାକୁ ଥିବା ଫେଲୋସିପ୍‌ରୁ ବଞ୍ଚିତ ହେଲି । ପ୍ରିନ୍ସିପାଲ୍ ଏଡ଼ିନ୍‌ବର୍ଗ ଯାତାୟତର ଖର୍ଚ୍ଚ ବାବଦରେ ଗୋଟେ ଛୋଟ ରକମର ଅନୁଦାନ ଦେଲେ ଏବଂ ଅକ୍ସଫୋର୍ଡ଼ ସୋସାଇଟିରୁ କିଛି ସହାୟତା ଦେଲେ । କୌଣସି ପ୍ରକାରେ ରିଜର୍ଭ ବ୍ୟାଙ୍କର ନିଷ୍ପତ୍ତିରୁ ସୃଷ୍ଟି ହେଇଥିବା ସମସ୍ୟାର ଅର୍ଦ୍ଧେକ ସମାଧାନ ହେଲା । ମୋର ଜଣେ ପୁରାତନ ଶିକ୍ଷୟିତ୍ରୀ ମତେ ସାହାଯ୍ୟ କରିବାପାଇଁ ଜଣେ ବୃଦ୍ଧ ମହିଳାଙ୍କ ପୈତୃକ ସମ୍ପତ୍ତି ନେବାର ପ୍ରସ୍ତାବ ଦେଲେ । ପ୍ରକୃତରେ ସେ ମହିଳା ଜଣକ ମୋ ସାହାଯ୍ୟାର୍ଥେ ଏହା ଛାଡ଼ିଯାଇଥିଲେ – ତାଙ୍କର ସର୍ତ୍ତ ଥିଲା ଯେ ମୋର ଅତି ଜରୁରୀ ଆବଶ୍ୟକତାରେ ମୁଁ ଏ ସାହାଯ୍ୟ ନେବି । ଖର୍ଚ୍ଚ କାଣ୍ଟଛାଣ୍ଟ କରି ଜୀବନ ବଞ୍ଚିବାରେ ମୁଁ ଅନଭ୍ୟସ୍ତ ନ ଥିଲି । ଅକ୍ସଫୋର୍ଡ଼ର ସେ ଦୁଇବର୍ଷର ରହଣି ମୋର ନେଇଆଣି ଥୋଇ ପାରିବାର ସାମର୍ଥ୍ୟ ପ୍ରତି

ଥିବା ଆତ୍ମବିଶ୍ୱାସକୁ ପୁର୍ନଜାଗ୍ରତ କଲା । ପୁନଶ୍ଚ ମୁଁ ହୃଦୟଙ୍ଗମ କଲି ଯେ ମୋର ପୂର୍ବ ଶିକ୍ଷକଗଣ ମୋ ଭିତରେ ଯେଉଁ ଦୃଢ଼ତା ଦେଖିଥିଲେ ତା' ଏତେ ଦିନର ଅଧ୍ୟାପନା ଭିତରେ ଲୁପ୍ତ ହୋଇଯାଇ ନାହିଁ । ସେତେବେଳେ ପଢ଼ିବା ପାଇଁ ମୋ ପାଖରେ ସମୟ ହିଁ ନ ଥିଲା । ଯେଉଁଦିନ ଚୀନ-ଭାରତ ଯୁଦ୍ଧ ଆରମ୍ଭ ହେଲା ସେଇଦିନ ମୋର ନିବନ୍ଧ ଶେଷହେଲା । ମୁଁ ମୋ ଗବେଷଣାର ଦିଗଦର୍ଶକଙ୍କୁ ମୋର ଲିଖିତ ଓ ମୌଖିକ ପରୀକ୍ଷା ଶୀଘ୍ର କରେଇବାପାଇଁ ଅନୁରୋଧ କଲି ଯାହାଫଳରେ ଡିସେମ୍ବର ସୁଦ୍ଧା ମୁଁ ଫେରିପାରିବି ।

ମୋ ସ୍ୱାମୀ ଓ ମୋ ବଡ଼ ଦୁଇ ଝିଅଙ୍କର ସ୍ୱେଚ୍ଛାକୃତ ସାହାଯ୍ୟ ସତ୍ତ୍ୱେ ଆଉ ଦୁଇଟି ସାନ ଛୁଆଙ୍କର ଜନ୍ମ ମୋର ଦାୟିତ୍ୱ ବହୁତ ବଢ଼େଇ ଦେଇଥିଲା । ଇଂଲଣ୍ଡରେ ଦି'ବର୍ଷ ରହଣି ଭିତରେ ହିନ୍ଦୀ ଓ ବଙ୍ଗଳା ଉଭୟ ଭାଷା ଭୁଲିଯାଇଥିବାରୁ ସେମାନଙ୍କୁ ବି ତାଙ୍କ ନୂଆ ସ୍କୁଲରେ ସମସ୍ୟାର ସମ୍ମୁଖୀନ ହେବାକୁ ପଡୁଥିଲା । ପାଟନାର ଏକମାତ୍ର ଇଂରାଜୀ ମାଧ୍ୟମ କନଭେଣ୍ଟ ସ୍କୁଲରେ କେତେକ ଶିକ୍ଷକଙ୍କ କଠୋରତା ଓ ପଢ଼େଇ ପାରିବାର ଅସାମର୍ଥ୍ୟରେ ସେମାନେ ବହୁତ ଦୁଃଖୀ ଥିଲେ । ତେଣୁ ୟୁ.ଜି.ସି. (ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ)ରେ ଶିକ୍ଷା ପଦାଧିକାରୀ (ଏଡୁକେଶନ ଅଫିସର) ପଦରେ ମୋର ନିଯୁକ୍ତି ଖୁବ୍ ସ୍ୱାଗତ ଯୋଗ୍ୟ ଥିଲା ଯଦିଓ ମୁଁ ଜାଣିଥିଲି କି ପ୍ରକାର ସମସ୍ୟାର ସମ୍ମୁଖୀନ ହେବି । ମୋର କୁଳପତି ଅଧ୍ୟାପନାକୁ ଏତେ ଭଲପାଉଥିବା ସତ୍ତ୍ୱେ କାହିଁକି ଯାକୁ ଛାଡ଼ି ଦରମାରେ ବୃଦ୍ଧିନଥିବା ଗୋଟେ ଚାକିରିକୁ ମୁଁ ଗ୍ରହଣ କରିବାକୁ ଚାହୁଁଛି ବୋଲି ମତେ ପଚାରିଲେ । ମୁଁ କେବଳ ଏତିକି କହିପାରିଲି ଯେ ଶିକ୍ଷା ଆୟୋଗ ସଂଶୋଧନ କାର୍ଯ୍ୟକ୍ରମ ଚଳେଇଛନ୍ତି, ତେଣୁ ସେମାନଙ୍କଦ୍ୱାରା ଅନୁମୋଦିତ ସଂଶୋଧନ ବ୍ୟବସ୍ଥାକୁ ପ୍ରଚଳନ କରେଇବାରେ ମୋର ସକ୍ରିୟ ଭୂମିକା ପାଇଁ ମୁଁ ଆଗ୍ରହୀ । ଶିକ୍ଷା ସଂଶୋଧନ ଓ ଶିକ୍ଷାର ରାଜନୀତି ମଧ୍ୟରେ ଟଣାଟଣିକୁ ମୁଁ ତଥାପି ବି ବୁଝିପାରୁନଥିଲି ।

ପରବର୍ତ୍ତୀ ୫ବର୍ଷ ଭିତରେ ଯଦିଓ ମୋର ଆଖି ବିସ୍ଫାରିତ ହେବାଭଳି ସରଳତା ମୁଁ ହରେଇ ସାରିଥିଲି ତଥାପି ଅନେକ ଦୃଷ୍ଟିରୁ ଲାଭବାନ ହେଇଥିଲି । ୟୁ.ଜି.ସି.ରେ ଡି.ଏସ୍. କୋଠାରୀଙ୍କ ଦିଗ୍‌ଦର୍ଶନରେ ମୁଁ ଜାତୀୟ ବିଶ୍ୱବିଦ୍ୟାଳୟ ବ୍ୟବସ୍ଥାର ନାନା ବିଷୟ ତଥା ଭୂମିକା ସଂପର୍କରେ ବହୁତ କିଛି ଶିଖିବାକୁ ପାଇଲି । ୟୁ.ଜି.ସି. ମଧ୍ୟ ମତେ ଭାରତ ଦର୍ଶନର ସୁଯୋଗ ଦେଲା । ଶିକ୍ଷା ଆୟୋଗର ରିପୋର୍ଟ ତଥା ଶ୍ରୀଯୁକ୍ତ କୋଠାରୀଙ୍କ ପ୍ରେରଣା ଓ ଚାଲେଞ୍ଜ ଯୋଗୁଁ ନିଆଯାଇଥିବା ବହୁ ପଦକ୍ଷେପ ଓ ଆଲୋଚନା, ଗଣତନ୍ତ୍ର ଓ ଶିକ୍ଷା ବ୍ୟବସ୍ଥା ମଧ୍ୟରେ ଥିବା ଚିର ଗତିଶୀଳ ସଂପର୍କ ବିଷୟରେ ମୋର ଜ୍ଞାନକୁ ଅଧିକ ବ୍ୟାପ୍ତ କରିଲା । ଶିକ୍ଷା ଯୋଜନା ନିମନ୍ତେ ଦୂରଦୃଷ୍ଟି ଓ ଧୈର୍ଯ୍ୟ ଆବଶ୍ୟକ ଏବଂ ଅକ୍ସଫୋର୍ଡ଼ ମଡ଼େଲର ଶିକ୍ଷା ଯାହାକୁ ମୁଁ ବହୁତ ବେଶି ଉପଭୋଗ କରିଥିଲି ତାହା ଭାରତରେ ସର୍ବତ୍ର ଲାଗୁ କରାଯାଇ ପାରିବ ନାହିଁ । ରାଜସ୍ଥାନର ଆଭ୍ୟନ୍ତରୀଣ ଓ ପୂର୍ବୋତ୍ତର ଅଞ୍ଚଳର କେତେକ ରାଜ୍ୟର କଲେଜଗୁଡ଼ିକୁ ନିରୀକ୍ଷଣ ସମିତି ହାତକୁ ନେଇ ପର୍ଯ୍ୟବେକ୍ଷଣବେଳେ ସେ ସବୁର ଦୃଶ୍ୟ ମୋ ହୃଦୟ ବିଦୀର୍ଣ୍ଣ କରିଦେଲା । ଯେଉଁ ଭୟାବହ ଅବସ୍ଥାରେ ଛାତ୍ରମାନଙ୍କୁ ତାଙ୍କ ଜୀବନର କେତୋଟି ବର୍ଷ ବାସ କରିବାକୁ ଓ ପଢ଼ିବାକୁ ପଡୁଛି ତାହା ବଡ଼ ଦୁଃଖଦ ।

ଜୀବନର ମହତ୍ତ୍ୱପୂର୍ଣ୍ଣ ସମୟ ଯେତେବେଳେ ତାଙ୍କର ବିକାଶ ଓ ଉନ୍ମେଷ ହେବାକଥା ସେତେବେଳେ ସେମାନେ ଏ ପ୍ରକାର ଅଭିଶପ୍ତ ଜୀବନ ବିତଉଛନ୍ତି । କୋଠାରୀଜୀଙ୍କୁ ମୁଁ ମୋର ରିପୋର୍ଟ ଦାଖଲ କଲାବେଳେ କାନ୍ଦିପକାଇଲି । ସେ ସବୁ ସଂସ୍ଥାଗୁଡ଼ିକର ନିରୀକ୍ଷଣରେ ମୋର ସମାଜ ବିଜ୍ଞାନୀ ଦୃଷ୍ଟିକୋଣର ଉପଯୋଗିତା ଲକ୍ଷ୍ୟ କରିଲେ । ତାଙ୍କୁ ଏହା ଅଭିନବ ଓ ମହତ୍ତ୍ୱପୂର୍ଣ୍ଣ ଲାଗିଲା । ଅବିଳମ୍ବେ ଛାତ୍ର ସଂକ୍ରାନ୍ତରେ ଏକ ସ୍ଥାୟୀ ସମିତି ଗଠନ କରି ମତେ ତା'ର ସଂପାଦକ କରିଦେଲେ । ସେ ସମିତିର ସମସ୍ତ ସଦସ୍ୟ ବିଶିଷ୍ଟ ସମାଜ ବିଜ୍ଞାନୀ ଥିଲେ ।

କାମର ଅତ୍ୟଧିକ ଚାପଯୋଗୁଁ ସମୟ ଅଭାବରୁ ମୁଁ ପିଲାମାନଙ୍କର ଆବଶ୍ୟକତା ପ୍ରତି ନଜର ଦେଇପାରୁନଥିଲି । ମୋ ସ୍ୱାମୀଙ୍କର ବୃତ୍ତିଗତ ଆକାଂକ୍ଷା ଷାଠିଏ ଦଶକରେ ଦିଲ୍ଲୀରେ ବାରମ୍ବାର ପ୍ରତିରୋଧର ସମ୍ମୁଖୀନ ହେଉଥିଲା । ସେଥିପାଇଁ ଆମ ସମସ୍ତଙ୍କର ଜୀବନ ଦୁର୍ବିସହ ହେଇପଡୁଥିଲା । ୧୯୭୦ରେ ଇଣ୍ଡିଆନ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଆଡ୍‌ଭାନ୍ସ ଷ୍ଟଡ଼ି, ସିମଲାରୁ (ଦୁଇ ବର୍ଷିଆ ବୃତ୍ତିର) ଶିକ୍ଷା ଓ ସାମାଜିକ ପରିବର୍ତ୍ତନ ଉପରେ କାମ କରିବାର ଏକ ପ୍ରସ୍ତାବ ଆସିଲା । ମୁଁ ସ୍ୱସ୍ତିର ନିଃଶ୍ୱାସ ନେଲି । ମୋର ସବୁଠୁ ବଡ଼ ଝିଅ କଲେଜରେ ସେଇ ମାତ୍ର ନାଁ ଲେଖେଇ ଥାଏ । ୟୁଜିସି ମତେ ଷ୍ଟଡ଼ିଲିଭ୍ ଦେଲା ଯାହାଫଳରେ ମୁଁ ସରକାରୀ ଘରଟିକୁ ମୋ ସ୍ୱାମୀ ଓ ଝିଅଙ୍କ ପାଇଁ ରଖିପାରିଲି । ସିମ୍‌ଲା ଇନ୍‌ଷ୍ଟିଚ୍ୟୁଟ୍ ମତେ ଗୋଟିଏ ସୁନ୍ଦର ଘର ଦେଇଥିଲା ତା'ଛଡ଼ା ଅନ୍ୟ ସହକର୍ମୀମାନଙ୍କର (ସେମାନଙ୍କ ମଧ୍ୟରୁ କେତେକ ପୁରାତନ ବନ୍ଧୁ ଥିଲେ ।) ସୌହାର୍ଦ୍ଦ୍ୟପୂର୍ଣ୍ଣ ଓ ଉତ୍ସାହଜନକ ସଖ୍ୟ ମିଳିଲା । ତିନୋଟିଯାକ ପିଲାଙ୍କର ସିମ୍‌ଲାର ଏକ ବିଖ୍ୟାତ ପୁରାତନ ସ୍କୁଲରେ ନାଁ ଲେଖାହେଲା ଏବଂ ମୁଁ ମୋର ଶାରୀରିକ ଓ ବୌଦ୍ଧିକ ଭାରସାମ୍ୟ ଫେରି ପାଇଲି ।

ମୋ ଗ୍ରହ ପୁଣିଥରେ ବାଧାଦେଲା ଆଉ ବର୍ଷ ଶେଷବେଳକୁ ମୁଁ ଓଡ଼ିଶାର ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରେ ପଢ଼ଉଛି । ଗୋଟିଏ ନୂଆ ବିଶ୍ୱବିଦ୍ୟାଳୟର ରାଜନୀତି ବିଜ୍ଞାନର ବିଭାଗୀୟ ମୁଖ୍ୟଭାବରେ ମୁଁ ଯୁବ ଅଧ୍ୟାପକ ଓ ଛାତ୍ରମାନଙ୍କର ଗୋଟିଏ ଛୋଟ ଦଳ ଭିତରେ ବହୁତ ପରୀକ୍ଷାମୂଳକ ପ୍ରୟୋଗ କରିଛି । ମୁଁ ପାଠ୍ୟକ୍ରମ ଓ ଶିକ୍ଷା ପଦ୍ଧତିରେ ସଂସ୍କାର, ସେମିନାର୍ ଗୁଡ଼ିକରେ ଇଣ୍ଟର ଡିସିପ୍ଲିନାରୀ କୋଲାବରେସନ୍, ଗବେଷଣା କାର୍ଯ୍ୟବିଧିକୁ ଉତ୍ସାହିତ କରିବାରେ ଶିକ୍ଷକ ଓ ଛାତ୍ରମାନଙ୍କୁ ମଧ୍ୟ ସଂଯୁକ୍ତ କରୁଥିଲି । ଏହା ସହିତ ଶିକ୍ଷା ଆୟୋଗର ରିପୋର୍ଟରେ ଥିବା ଭାରତୀୟ ବିଶ୍ୱବିଦ୍ୟାଳୟଗୁଡ଼ିକର ବିଶେଷ ଭୂମିକା ସମ୍ବନ୍ଧୀୟ ମୌଳିକ ବିଚାରକୁ ସଂପ୍ରସାରିତ କରୁଥିଲି । ଛାତ୍ର ଓ ଅଧ୍ୟାପକମାନଙ୍କଠାରୁ ସକାରାତ୍ମକ ପ୍ରତିକ୍ରିୟା ବଡ଼ ଉତ୍ସାହଜନକ ଥିଲା । କିନ୍ତୁ ଘରର ଦାୟିତ୍ୱ ପୁଣି ଶ୍ରୀଯୁକ୍ତ କୋଠାରୀଙ୍କଠାରୁ ୟୁଜିସି ଫେରିଯିବାର ଡାକରା ଯୋଗୁଁ ମେ, ୧୯୭୨ରେ ଏହି କାର୍ଯ୍ୟକ୍ରମରେ ଯବନିକା ପଡ଼ିଲା । ଫେରିବାର ମାତ୍ର କିଛିଦିନ ପୂର୍ବରୁ ଶିକ୍ଷା ଓ ସମାଜ କଲ୍ୟାଣ ମନ୍ତ୍ରଣାଳୟ, (ଭାରତ ସରକାର) ମତେ ସୂଚନା ଦେଲେ ଯେ 'କମିଟି ଅନ୍ ଦ ଷ୍ଟାଟସ୍ ଅଫ୍ ଉମେନ୍ ଇନ୍ ଇଣ୍ଡିଆ' (ସି ଏସ୍ ଡବ୍ଲ୍ୟୁ ଆଇ)ର ଜଣେ ସଦସ୍ୟ ଭାବରେ ମତେ ନିଯୁକ୍ତି ଦିଆଗଲା । ୧୯୭୩ ବେଳକୁ ମୁଁ ପୁନର୍ଗଠିତ ସି ଏସ୍ ଡବ୍ଲ୍ୟୁ ଆଇର ସଦସ୍ୟ-ସଂପାଦିକା । ବର୍ଷକ ଭିତରେ ରିପୋର୍ଟ ପ୍ରସ୍ତୁତ କରିବାକୁ ମତେ ଆଦେଶ ଦିଆଗଲା ।

ଏ କାର୍ଯ୍ୟ-ନିଯୁକ୍ତି ମୋ ନିଜର ଓ ଅନେକ ଅନ୍ୟ ଲୋକଙ୍କର ଜୀବନର ଗତି ସଂପୂର୍ଣ୍ଣ ପରିବର୍ତ୍ତନ କରିବାପାଇଁ ଉଦ୍ଦିଷ୍ଟ ଥିଲା । ଭାରତର ବିବିଧ ସଂପ୍ରଦାୟ/ଅଞ୍ଚଳ/ବର୍ଗ/ ପ୍ରଥା-ପରମ୍ପରାର ବିଭିନ୍ନ ଶ୍ରେଣୀ ସହିତ ସଂପୃକ୍ତ କରି ସମାଜ-ବିଜ୍ଞାନଗତ ଜ୍ଞାନକୁ ଆଧାର କରି ଭୋଟ ନେଇ ଆମ ଯେଉଁ ନିଷ୍କର୍ଷରେ ଉପନୀତ ହେଲୁ, ତାହା ବଡ଼ ମର୍ମନ୍ତୁଦ ଥିଲା । ଅଧିକାଂଶ ରାଜ୍ୟ ଓ ସଂସ୍କୃତି ସଂପନ୍ନ ଅଞ୍ଚଳର ବିଭିନ୍ନ ପୃଷ୍ଠଭୂମିର ପ୍ରାୟ ଦଶହଜାରରୁ ଅଧିକ ମହିଳାଙ୍କସହିତ ବିସ୍ତୃତ ଆଲୋଚନା କରିବାପରେ ଆମ ନିକଟରେ ଆମ ନିଜର ଅଜ୍ଞତା ଉନ୍ମୋଚିତ ହେଲା । ଜଣେ ସମାଜ-ବିଜ୍ଞାନୀ, ଅଧ୍ୟାପିକା ବା ସ୍ୱାଧୀନ ଭାରତର ସନ୍ତତିଭାବେ ଥିବା ନିଜର ଭାବମୂର୍ତ୍ତି ଖଣ୍ଡବିଖଣ୍ଡିତ ହେଇଗଲା । ସାମୂହିକ ଭାବେ କରିଥିବା ଏ କାର୍ଯ୍ୟର ଅଭିଜ୍ଞତା ଉପରେ ଏକ ସୁଦୂର ପ୍ରସାରୀ ପ୍ରଭାବ ପଡ଼ିଲା । ପରିଣାମ ସ୍ୱରୂପ ଏକ 'ସାମୂହିକ ବିବେକବୋଧ'ର ଉଦୟ ହେଲା ଓ ଗୋଟିଏ ସକ୍ରିୟ ଦଳ ଓ ବିଚାର ଆଲୋଚନା ବିନିମୟ ନିମନ୍ତେ ଏକ ଫୋରମ ତିଆରି ହେଲା । ଯାହାକୁ ଆମ ଅପ୍ରତ୍ୟାଶିତ ଆବିଷ୍କାରର ବ୍ୟଥା ଓ ଆଘାତ ସହିବାକୁ ପଡୁଥିଲା । ଆମ ନିଷ୍କର୍ଷକୁ ପ୍ରକାଶ କରିବାପାଇଁ ଦରକାର ଥିଲା ଏକ ନିର୍ଦ୍ଦିଷ୍ଟ ପଦ୍ଧତି ଓ ଫ୍ରେମ୍ ୱାର୍କ ବା ପ୍ରାରୂପ । ସମୁଚିତ ମାନସିକ ଓ ବୌଦ୍ଧିକ ସାମର୍ଥ୍ୟ ବିକଶିତ କରିବା ଦରକାର ହେଲା ଯାହାଫଳରେ ଶିକ୍ଷିତ, ବୁଦ୍ଧିଜୀବୀ ପୁରୁଷ ଓ ମହିଳାଙ୍କ ଧାରଣା ତଥା ବିଶ୍ୱାସ ଓ ଭୂମିପୁତ୍ରୀମାନଙ୍କଠାରୁ ଆମେ ଯାହା ଶିଖିଥିଲୁ ତା' ମଧ୍ୟରେ ଥିବା ଆକାଶ-ପାତାଳ ପରସ୍ପର ବିରୋଧୀ ତଥ୍ୟକୁ ପ୍ରକାଶ କରାଯାଇପାରିବ । ବିରାଟ ଆକାରରେ କରାଯାଉଥିବା ସରକାରୀ ଜନସଂଖ୍ୟା ସମ୍ବନ୍ଧୀୟ ତଥା ଅନ୍ୟ ବିଷୟର ସାଂଖ୍ୟିକ ବିବରଣୀର ପୁନର୍ସଂରଚନାକୁ ଗୁରୁତ୍ୱ ନଦେବାକୁ ପ୍ରମାଣ କରିବା ପାଇଁ ସାଧାରଣୀକରଣ ଆବଶ୍ୟକ ଥିଲା । ଭାରତୀୟ ଶ୍ରମଜୀବୀ ମହିଳାଙ୍କର ଦାରିଦ୍ର୍ୟ ଓ ସାଂଖ୍ୟିକ ବିବରଣୀର ସଠିକ୍ ତଥ୍ୟ ଦେବାରେ ଯେଉଁ ଅବହେଳା କରାଯାଉଛି ତାକୁ ଉନ୍ମୋଚିତ କରିବା ଆଉ ଏକ ବିରାଟ କାର୍ଯ୍ୟ । ଏଥିପାଇଁ ଆମ ନିକଟରେ ଉପଯୁକ୍ତ କୌଶଳ ବା ସୈଦ୍ଧାନ୍ତିକ ପ୍ରାଥମିକ ରୂପରେଖ (ଫ୍ରେମ୍‌ୱର୍କ) ବି ନ ଥିଲା ।

ଆମେ ଗତ ୬ ମାସ ଧରି ଦିନରାତି ଚବିଶ ଘଣ୍ଟା କାମକରି ନିର୍ଦ୍ଧାରିତ ସମୟବେଳକୁ କାମ ଶେଷ କଲୁ । ଆମର ରିପୋର୍ଟ ରାଷ୍ଟ୍ରୀୟ ଓ ଅନ୍ତରାଷ୍ଟ୍ରୀୟ ଗଣମାଧ୍ୟମରେ ଏକ ତୁମୁଳ ଆଲୋଡ଼ନ ସୃଷ୍ଟି କଲା । ସଂଯୁକ୍ତ ରାଷ୍ଟ୍ର ତଥା ଅନ୍ତର୍ରାଷ୍ଟ୍ରୀୟ ଗବେଷକ, ମହିଳା ଏବଂ ବିକାଶ ସଂପର୍କିତ ବିଷୟ ଉପରେ ତର୍କବିତର୍କ କରିବାକୁ ଲାଗିଲେ । କିନ୍ତୁ ଯାର ପ୍ରଭାବ ଆମ ଉପରେ ବ୍ୟକ୍ତିଗତ ଭାବରେ ମୋ ଉପରେ ଅଲଗା ପ୍ରକାରର ଥିଲା । ମୋର ପୂର୍ବର ସଂଗ୍ରାମ ଜଣେ ବ୍ୟକ୍ତିଗତ ମହିଳାର ବୃତ୍ତିର ଦାବୀ ତଥା ପରିବାରର ଦାୟିତ୍ୱ ମଧ୍ୟରେ ଭାରସାମ୍ୟ ରକ୍ଷା କରିବାର ପ୍ରତିନିଧିତ୍ୱ କରୁଥିଲା । ଏ ନୂତନ ସଂଘର୍ଷ ଉତ୍ତରୋତ୍ତର ସାମୂହିକ ଓ ଆଦର୍ଶମୂଳକ ହେଇଉଠିଲା । ଭାରତର ଲୁକ୍କାୟିତ ଏବଂ ଅସ୍ୱୀକୃତ ଅସଂଖ୍ୟ ସହର ଏବଂ ଗ୍ରାମାଞ୍ଚଳର ଶ୍ରମଜୀବୀ ମହିଳାଙ୍କ ଦୃଷ୍ଟିରୁ ଏହା ଭାରତ, ବିଶ୍ୱ, ଅତୀତ, ବର୍ତ୍ତମାନ ଏବଂ ଭବିଷ୍ୟତର ପୁନର୍ଆବିଷ୍କାର । ଜଣେ ଶିକ୍ଷାବିଦ୍ ଏବଂ ଶିକ୍ଷାଯୋଜନାକାର

ଭାବରେ ଏହି ବୌଦ୍ଧିକ ପର୍ଦ୍ଦା ଉଠେଇବାରେ ମୋର ଅବଦାନ ମଧ ଥିଲା ଯାହା ଅଧିକାଂଶ ଭାରତୀୟ ମହିଳାଙ୍କ ଜୀବନ, ଶ୍ରମ, ମର୍ଯ୍ୟାଦା ତଥା ସେମାନଙ୍କ ସ୍ୱପ୍ନକୁ ଜନଗଣଙ୍କ ଦୃଷ୍ଟି ଅନ୍ତରାଳରେ ରଖିଥିଲା । ଶିକ୍ଷା ପ୍ରକ୍ରିୟା, ତା'ପ୍ରତି ମୋର ଶ୍ରଦ୍ଧା ଓ ଅଗ୍ରାଧିକାର ଏକ ଭୟାନକ ବୀଭତ୍ସ ରୂପ ନେଇସାରିଥିଲା । ଆମର ଗଣତାନ୍ତ୍ରିକ ଦେଶ (ଯେଉଁଥି ପାଇଁ ମୁଁ ଗର୍ବିତ ହେଉଥିଲି)କୁ ଅବଦମନ, ଅତ୍ୟାଚାର ଓ ଶୋଷଣ କରିବା ଅପରାଧରେ ଦୋଷୀ ସାବ୍ୟସ୍ତ କରାଯାଇପାରେ । ଏ ପଟରେ ହୃଦୟ ବିଦୀର୍ଣ୍ଣ କରିଦେବାପରି ସତ୍ୟ ତା'ଉପରେ ପୁଣି ପାରିବାରିକ କଳହ ବଡ଼ କଷ୍ଟକର ଥିଲା । ୟା ଭିତରେ ମୋର ବଡ଼ ହେଇଯାଇଥିବା ଝିଅମାନଙ୍କର ତାଙ୍କ ବାପାଙ୍କ ସହିତ ସେମାନଙ୍କୁ କେତେ ପରିମାଣରେ ସ୍ୱାଧୀନତା ଦିଆଯିବ ଓ ତତ୍‌ସଂପର୍କିତ କ୍ରିୟା ପ୍ରତିକ୍ରିୟାକୁ ନେଇ ମତ ପାର୍ଥକ୍ୟ ଗୁରୁତର ହେବାରୁ ତାଙ୍କ ବାପା ସ୍ୱେଚ୍ଛାରେ ସେମାନଙ୍କଠାରୁ ପ୍ରାୟ ୬ବର୍ଷ କାଳ ଅଲଗା ରହିଲେ । ତାଙ୍କ ଦେହ ଅସୁସ୍ଥ ହେବାରୁ ପୁଣି ସେଇ ଝିଅମାନେ ତାଙ୍କ ଦେଖାଶୁଣା କରିବାପାଇଁ ତାଙ୍କୁ ଘରକୁ ନେଇ ଆସିଲେ ଓ ଏମିତି ଏ ପରସ୍ଥିତିର ଅନ୍ତ ହେଲା ।

ପ୍ରଫେସର ଜେ.ପି. ନାୟକ ଏବଂ ଭାରତୀୟ ସମାଜ ବିଜ୍ଞାନ ଗବେଷଣା ପରିଷଦର ଭଗବାନ ସଦୃଶ ଅବତୀର୍ଣ୍ଣ ହୋଇ ମତେ ସାହାଯ୍ୟ କରିଲେ । ମୁଁ ଭାରତୀୟ ସମାଜ ବିଜ୍ଞାନ ଗବେଷଣା ପରିଷଦରେ କାମ ଆରମ୍ଭ କଲି । ସି ଏସ୍ ଡବ୍ଲ୍ୟୁ ଆଇ ଦ୍ୱାରା ନିର୍ଦ୍ଧାରିତ କାର୍ଯ୍ୟ ପରିଚାଳନା ଉଦ୍ଦେଶ୍ୟରେ ଆବଶ୍ୟକୀୟ ପ୍ରକାଶନ ତଥା ମହିଳାଙ୍କ ଉପରେ ଗବେଷଣା ଆରମ୍ଭ ହେଲା । ଭାରତରେ ମହିଳା ବିଷୟକ ଅଧ୍ୟୟନର ଜନ୍ମ ଜରୁରୀକାଳୀନ ବ୍ୟବସ୍ଥାର କଳାବାଦଲର ଛାୟାରେ । ସ୍ୱାଧୀନତା ଆନ୍ଦୋଳନର ଅଧିକାଂଶ ଆଦର୍ଶ, ମୂଲ୍ୟ ଯାହା ମୁଁ ସାରାଜୀବନ ପାଳନ କରିଆସିଥିଲି, ତାର ଅସ୍ତିତ୍ୱ ବିପନ୍ନ ଥିଲା । ମାତ୍ର ଯଥାର୍ଥରୂପେ ମୁଁ ଜଣେ ସକ୍ରିୟ ରାଜନୀତିକର୍ମୀ ହୋଇନଥିବାରୁ ପ୍ରତ୍ୟେକ ପରିସ୍ଥିତିର ସମ୍ମୁଖୀନ ହେବାପାଇଁ ମୋ ପାଖରେ କୌଣସି ରଣ କୌଶଳ ନ ଥିଲା । ନାୟକ ସାହେବ ଜଣେ ସକ୍ରିୟ ଗାନ୍ଧୀବାଦୀ ହୋଇଥିବାରୁ ଏଥିରେ ଓସ୍ତାଦ ଥିଲେ । ‘‘ଦରିଦ୍ର ମହିଳାମାନଙ୍କ ଉପରେ ପ୍ରାୟୋଜିତ ଏକ ଗବେଷଣା କାର୍ଯ୍ୟକ୍ରମର ରାଜନୈତିକ ପ୍ରଭାବ ପ୍ରତ୍ୟକ୍ଷଭାବରେ କ୍ଷମତାସୀନମାନଙ୍କ ଉପରେ ପଡ଼ିବ ନାହିଁ, ଆପାତତଃ ବର୍ତ୍ତମାନ ନୁହେଁ । ତେଣୁ ଆମେ ସେ ସବୁ ସମସ୍ୟା ଉପରେ ଆଲୋଚନା କରିବା ଯାହାକୁ ତୁମର କମିଟି ଉତ୍‌ଥାପନ କରିଛି ।’’ ସେ ମୋ ପାଇଁ ଏକ ପରାମର୍ଶଦାତା କମିଟି ଗଠନ କଲେ ଯେଉଁଥିରେ ଅଦ୍ୱିତୀୟ ପ୍ରସିଦ୍ଧ ସମାଜବିଜ୍ଞାନୀ, ନ୍ୟାୟବିଦ୍, ଲୋକନୀତି ବିଶେଷଜ୍ଞ ଥିଲେ । ଜରୁରୀକାଳୀନ ପରିସ୍ଥିତି ସଂପର୍କିତ ଆମର ଆଶଂକାରେ ସେମାନେ ଏକମତ ଥିଲେ । ଏହି କାର୍ଯ୍ୟକ୍ରମର ନୀତିପତ୍ର ମୁଁ ପ୍ରସ୍ତୁତ କଲି ଓ କମିଟି ଦ୍ୱାରା ଏହା ଅନୁମୋଦିତ ହେଲା । ଏହା ମୂଳରୁ ହିଁ କାର୍ଯ୍ୟମୁଖୀ ଥିଲା । ମାତ୍ର ଏହା ସମାଜବିଜ୍ଞାନ ଭାଷାରେ ଲିଖିତ ହୋଇଥିଲା ଯାହାଫଳରେ ଭାରତ ସରକାରଙ୍କର କୌଣସି ଆପତ୍ତି ରହିବ ନାହିଁ । ଏହାର ଲକ୍ଷ୍ୟ ଥିଲା (କ) ସାମାଜିକ ଏବଂ ଆର୍ଥିକ ସଙ୍ଗଠନ ଯାହା ମହିଳାମାନଙ୍କ ସ୍ଥିତିକୁ ଦୀର୍ଘସୂତ୍ରରେ ପ୍ରଭାବିତ କରୁଛି ତା'ର ଗୁରୁତ୍ୱପୂର୍ଣ୍ଣ ଲକ୍ଷଣର ତଥ୍ୟକୁ ବିଶ୍ଳେଷଣ କରି ଉନ୍ମୋଚିତ କରିବା । ସାମାଜିକ ଓ ଆର୍ଥିକ

ଉନ୍ନତି ପାଇଁ ନୀତି ନିୟମର ବିକାଶ କରିବା, ଜନ ସଚେତନତା ସୃଷ୍ଟି କରିବା ଓ ମହିଳା ବିକାଶ ଏବଂ କଲ୍ୟାଣ ନିମନ୍ତେ କାର୍ଯ୍ୟକ୍ରମର ଯୋଜନା କରିବା । (ଖ) ସମାଜରେ ମହିଳାମାନଙ୍କର ଅବଦାନକୁ ଉପେକ୍ଷା ଓ ଅବମୂଲ୍ୟାୟନକୁ ପ୍ରତିରୋଧ କରିବାର ଉପାୟ ଅନ୍ୱେଷଣ ନିମନ୍ତେ ସାମାଜିକ ଗବେଷଣାରେ ବ୍ୟବହୃତ ମୌଳିକ ଅବଧାରଣା, ପ୍ରାବିଧିକ ପ୍ରଣାଳୀ ଏବଂ ପରିକଳ୍ପନାର ସମୀକ୍ଷା କରି ସମାଜ ବିଜ୍ଞାନ କ୍ଷେତ୍ରରେ ନୂଆ ଦିଗନ୍ତ ବିକାଶ (ଗ) ସ୍ୱାଧୀନତା ସଂଗ୍ରାମ ସମୟରେ ଅତ୍ୟାଚାରିତ ମହିଳାମାନଙ୍କ ବିସ୍ମୃତ ପ୍ରଶ୍ନଉପରେ ସାମାଜିକ ତର୍କ-ବିତର୍କକୁ ପୁନର୍ଜାଗ୍ରତ କରିବା ।

ଆଇ ସି ଏସ୍ ଏସ୍ ଆର୍ ଗୋଟିଏ ଆର୍ଥିକ ସହାୟତା ଦେବାର ସଂସ୍ଥା ଥିଲା । ଆବଶ୍ୟକୀୟ ଅଧ୍ୟୟନ କରିବାପାଇଁ ଗବେଷକମାନଙ୍କ ମନରେ ଉତ୍ସାହ ସୃଷ୍ଟିକରିବା ମୋର ଦାୟିତ୍ୱ ଥିଲା । ନାୟକ ସାହେବ ମତେ ସବୁବେଳେ ଦଉଡ଼ଉଥିଲେ । ଦେଶ ବିଦେଶର ସଂସ୍ଥାନ ଓ ସଙ୍ଗଠନଗୁଡ଼ିକରେ ଭାଗନେବାପାଇଁ ମତେ ପଠଉଥିଲେ । ଭାରତ ଓ ଅନ୍ୟଦେଶର ପରିବର୍ତ୍ତନକୁ ପ୍ରଭାବିତ କରିବାଯୋଗ୍ୟ ବହୁବିଧ ପ୍ରକ୍ରିୟା ଭିତରେ ସାମଞ୍ଜସ୍ୟ ସ୍ଥାପନ କରିବାକୁ ଚେଷ୍ଟା କରୁଥିଲି ତଥା ମହିଳାଙ୍କ ଅବସ୍ଥା ଦୁର୍ଦ୍ଦଶା ଓ ଭୂମିକାକୁ ଜ୍ୱଳନ୍ତ ରଖିବାର ପ୍ରୟାସ କରୁଥିଲି । ସଂଯୁକ୍ତ ରାଷ୍ଟ୍ର ସଂଘ ବ୍ୟବସ୍ଥାରେ ଥିବା ନାୟକ ସାହେବଙ୍କ ବନ୍ଧୁଗଣ ତଥା ବିକାଶ ନିମନ୍ତେ ବିକଳ୍ପ ବ୍ୟବସ୍ଥା ଅନ୍ୱେଷଣ କରୁଥିବା ମୌଳବାଦୀ ଚିନ୍ତାନାୟକଙ୍କ ସହାୟତା ଓ ପ୍ରେରଣା ପାଇ ମୁଁ ଜଣେ ଖ୍ୟାତି ସଂପନ୍ନ ବ୍ୟକ୍ତିର ସମ୍ମାନ ଓ ପଦ ପାଇବାରେ ଲାଗିଲି । ମୋର ଆଶଙ୍କା ହେଲା ଯେ ଏତେ ସଫଳତା ଭିତରେ ମୁଁ ମୋର ଅସ୍ତିତ୍ୱ ହଜେଇ ଦେବିନି ତ ! ମୋ ବାପାଙ୍କ ସ୍ମୃତି, କୋଠାରୀଜୀ ଏବଂ ନାୟକ ସାହେବ ତଥା ମୋର ଦୁଇ ମା'ଙ୍କ ଠୁଁ ପାଇଥିବା ଶିକ୍ଷା ମତେ ସୁରକ୍ଷା ଦେଉଥିଲା ।

୧୯୭୭ ମସିହା ସାଧାରଣ ନିର୍ବାଚନରେ ଜରୁରୀକାଳୀନ ବ୍ୟବସ୍ଥାର ଯବନିକା ପାତ ହେଲା । ଏଥି ସହିତ ନାନା ଜନ ଆନ୍ଦୋଳନର ବିସ୍ଫୋରଣାତ୍ମକ ସୂତ୍ରପାତ ଘଟିଲା । ତନ୍ମଧ୍ୟରୁ ମହିଳା ଜନ ଆନ୍ଦୋଳନ, ଖୁବ୍ ଶୀଘ୍ର ସାମାଜିକ ଓ ରାଜନୈତିକ ରୂପାନ୍ତରଣ ନିମନ୍ତେ ଏକ ପ୍ରମୁଖ ମହତ୍ତ୍ୱପୂର୍ଣ୍ଣ ଶକ୍ତିଭାବେ ଦେଖାଦେଲା । ଏସବୁ ଚାଲିଥିବାବେଳେ ଯୋଜନା ଆୟୋଗ ଏବଂ ଅଫିସରମାନଙ୍କ (ବ୍ୟୁରେକ୍ରାସି) ମଧ୍ୟରେ ଥିବା ସମାଜ ବିଜ୍ଞାନୀ ବିଶେଷ ଭାବରେ ଗ୍ରାମାଞ୍ଚଳୀୟ ମହିଳାମାନଙ୍କର ଚାକିରି କରିବାର, ସ୍ୱାସ୍ଥ୍ୟ, ଶିକ୍ଷା ପାଇବାର ଅଧିକାର ଉପରେ ନିର୍ମିତ ନୀତିର ପୁନର୍ବିଶ୍ଳେଷଣ କରିଲେ । ମହିଳା ଅଧ୍ୟୟନ ଉପରେ ଗଠିତ ପରାମର୍ଶଦାତା କମିଟିର ଜଣେ ସଦସ୍ୟ ଏହାର ସଂଚାଳନ କରୁଥିଲେ । ୟୁ.ଜି.ସି, ସି.ଏସ୍. ଡବ୍ଲ୍ୟୁ ଏବଂ ଆଇ.ସି.ସି ଆର୍‌ରେ ମୁଁ ଯେଉଁ ପ୍ଲାନିଂ ଓ ଡ୍ରାଫ୍ଟିଂ କୌଶଳ ଶିଖିଥିଲି ତାହା ମୋ ପାଇଁ ଏକ ବରଦାନ ବା ସଂପତ୍ତି ସଦୃଶ ଥିଲା, ପ୍ରତ୍ୟେକ ସମୀକ୍ଷାରେ ଏହା ପ୍ରତିଫଳିତ ହେଉଥିଲା । ଏହା ସହିତ 'ମହିଳା ଉତ୍‌ଥାନ' ବିଷୟରେ ମୁଁ ସ୍ୱେଚ୍ଛାରେ ସେମାନଙ୍କ ପ୍ରତିନିଧି ହେଇଯାଇଥିଲି ଯାହା ମୋ ପାଇଁ ଏକ ଗୁରୁଦାୟିତ୍ୱର ବୋଝ ଥିଲା । ସେତେବେଳେ ପର୍ଯ୍ୟନ୍ତ ମହିଳା ସଂରକ୍ଷଣ ନିର୍ବାଚନୀ କ୍ଷେତ୍ର ଗଠିତ ହୋଇନଥିଲା ।

**ଶେଷ ୨୫ ବର୍ଷ**

ନାୟକ ସାହେବ ୧୯୭୮ରେ ଆଇ ସି ଏସ୍ ଏସ୍ ଆର୍‌ରୁ ଅବସର ନେଲେ । ଦଶମ ବିଶ୍ୱ କଂଗ୍ରେସ ଅଫ୍ ଆନ୍ଥ୍ରୋପୋଲୋଜିକାଲ ଆଣ୍ଡ ଏଥ୍‌ନୋଲୋଜିକାଲ୍ ସାଇନ୍ସର କାର୍ଯ୍ୟକର୍ତ୍ତା ରୂପେ ମୁଁ ଓ ଲୀଲା ଦୁବେ ୧୯୭୮ ମସିହା ଡିସେମ୍ବର ମାସରେ ଦିଲ୍ଲୀରେ ଖୁବ୍ ସଫଳତାର ସହିତ ମହିଳାମାନଙ୍କଉପରେ ବିଭିନ୍ନ ଆଲୋଚନା ଚକ୍ର ଆୟୋଜନ କରିଥିଲୁ । ମୁଁ ଅନୁଭବ କରୁଥିଲି ଯେ ଆମର ସମର୍ଥନର ଆଧାର କ୍ରମଶଃ ଦୁର୍ବଳ ହେଇପଡୁଛି । ପରାମର୍ଶଦାତା କମିଟି କାର୍ଯ୍ୟକ୍ରମର ସଫଳତାର ପୂର୍ଣ୍ଣ ସମୀକ୍ଷା କରିବାପରେ ଏକ ନିର୍ଣ୍ଣୟ ନେଲା । ଆଇ ସି ଏସ୍ ଏସ୍ ଆର୍ ଦ୍ୱାରା ଆରମ୍ଭ କରାଯାଇଥିବା 'ପ୍ରାରମ୍ଭିକ କାର୍ଯ୍ୟକୁ ସଫଳ କରିବାପାଇଁ ଏକ ସ୍ୱୟଂ ଶାସିତ ଯଥେଷ୍ଟ ଅର୍ଥ ସଂପନ୍ନ ସଂସ୍ଥା ଗଠନ ପାଇଁ ଅନୁମୋଦନ କରିଲା । ଏହି ଅନୁମୋଦନକୁ ଆଇ ସିଏସ୍ ଏସ୍ ଆର୍ ଭାରତ ସରକାରଙ୍କ ନିକଟକୁ ପଠାଇଦେଲା । ମହିଳା ବ୍ୟୁରୋ (ସଂଯୁକ୍ତ ରାଷ୍ଟ୍ର ସଂଘର ଅପିଲର ଉତ୍ତରରେ ୧୯୭୫ରେ ଭାରତ ସରକାରଙ୍କ ଦ୍ୱାରା ଗଠିତ ଏହି ରାଷ୍ଟ୍ରୀୟ ତନ୍ତ୍ର)ର ସମର୍ଥନ ମଧ୍ୟ ଏହା ପ୍ରତି ଥିଲା । ଉଚ୍ଚସ୍ତରର ପ୍ରାଶାସନିକ ଅଫିସରଙ୍କର ଏକ ଛୋଟ ଦଳର ସମର୍ଥନ ଥିବା ସତ୍ତ୍ୱେ ଯୋଜନା ଆୟୋଗରେ କାମ କରୁଥିବା ଆମର ଜଣେ ବନ୍ଧୁ ସୂଚନା ଦେଲେ ଯେ ଆମେ ଏ ଯୁଦ୍ଧ ହାରିବାକୁ ଯାଉଛୁ । ସେ ମତେ ପରାମର୍ଶ ଦେଲେ ଯେ ସଫଳତା ପାଇବାପାଇଁ ମୁଁ ମହିଳା ରାଜନୀତି କର୍ମଚାରୀମାନଙ୍କ ସହିତ କଥାବାର୍ତ୍ତା କରି ଏକ ମହିଳା ବିକ୍ଷୋଭ ପ୍ରଦର୍ଶନ କରେ ।

୧୯୮୦ ମସିହା ଜାନୁୟାରୀ ମାସରେ ପୁନଶ୍ଚ ଏକ ସାଧାରଣ ନିର୍ବାଚନରେ ଇନ୍ଦିରାଗାନ୍ଧୀ କ୍ଷମତାକୁ ଆସିଲେ । ଆଡ଼ଭାଇଜରୀ କମିଟି ମଧ୍ୟରୁ ଗୋଟିଏ ଛୋଟ ଦଳ ଗୋଟିଏ ସ୍ୱାଧୀନ ଗବେଷଣା କେନ୍ଦ୍ରଭାବରେ ସେଣ୍ଟର ଫର୍ ଉମେନ୍‌ସ ଡେଭେଲପ୍ ଷ୍ଟଡିଜ୍ (ମହିଳା ବିକାଶ ଅଧ୍ୟୟନ କେନ୍ଦ୍ର) ଗଠନ କରିବାର ନିଷ୍ପତ୍ତି ନେଲା । ଏହାର ବହୁମୁଖୀ ଲକ୍ଷ୍ୟ ରହିଥାନ୍ତା । ଯାହା ତିନିବର୍ଷ ପରେ ଆଇସିଏସ୍ ଏସ୍ ଆରରୁ ନିୟମିତ ଆର୍ଥିକ ସାହାଯ୍ୟ ଓ ସମର୍ଥନ ପାଇଥାନ୍ତା ଯେପରି ସୋସିଆଲ୍ ସାଇନ୍ସ ରିସର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍ ପାଇଁ ଆଇସିଏସ୍‌ଏସ୍ ଆର୍ କାର୍ଯ୍ୟକ୍ରମ ଅନ୍ତର୍ଗତ ଅନୁମୋଦନ ଥିଲା । ମୁଁ ମୋର ବଳିଥିବା ସମସ୍ତ ଛୁଟିନେଇ ନିର୍ଦ୍ଦେଶକଭାବରେ ୧୯୮୦ ମସିହା ମେ ମାସରୁ କାମ ଆରମ୍ଭ କରିଦେଲି । ମୋର ଆର୍ଥିକ ସମ୍ବଳଗତ ଆଶଙ୍କାକୁ ଦୃଷ୍ଟିରେ ରଖି ନାୟକ ସାହେବଙ୍କ ରୋକ୍‌ଠୋକ୍ ବାଣୀ "ଉତ୍ତମ କାର୍ଯ୍ୟ ଯାହା ହେବା ଉଚିତ୍ ତାହା ଅର୍ଥ ଅଭାବରୁ କେବେ ବନ୍ଦ ହେଇଯାଇନି, ବରଂ ଦୃଢ଼ ସଂକଳ୍ପ ବା ନିଷ୍ଠା ଅଭାବରୁ ଅଟକିଯାଏ ।" କହି ଆଡ଼େଇଗଲେ । ସେ ପ୍ରାଥମିକ ସହାୟତା ପାଇଁ ସମସ୍ତ ପ୍ରୟାସ କରିଥିଲେ କିନ୍ତୁ ୧୯୮୧ରେ ତାଙ୍କ ମୃତ୍ୟୁ ମତେ ଓ ମୋର ସହକର୍ମୀମାନଙ୍କୁ ଅନାଥ କରିଦେଲା ।

ଆବଶ୍ୟକତା ହିଁ ଆବିଷ୍କାରର ଜନନୀ । ପରବର୍ତ୍ତୀ କିଛି ବର୍ଷ ପର୍ଯ୍ୟନ୍ତ ମତେ ବିଭିନ୍ନ ସ୍ତରରେ – ଦେଶ ଭିତରେ ଓ ବାହାରେ, ସଂଯୁକ୍ତ ରାଷ୍ଟ୍ର ସଂଘ ଓ ମିଡ଼ିଆରେ, ପୃଥକ ଭାବେ ଓ ମିଳିତ ଭାବରେ ବିଭିନ୍ନ ବ୍ୟକ୍ତିଙ୍କୁ ମନେଇବାକୁ ଓ ଅର୍ଥ ସମ୍ବଳ ଯୋଗାଡ଼ କରିବାକୁ ବିବିଧ କୌଶଳ ଶିଖିବାକୁ ହେଲା । ବିଶ୍ୱବିଦ୍ୟାଳୟ ପଦ୍ଧତିରେ ମୋର ଦୀର୍ଘ

ଅଭିଜ୍ଞତା ମଧ୍ୟରେ ଯେଉଁ ନୂତନ ପ୍ରବର୍ତ୍ତିତ ଗବେଷଣା ଓ ଶିକ୍ଷା ପଦ୍ଧତି ଅସମ୍ଭବ ପ୍ରତୀୟମାନ ହେଉଥିଲା ତାକୁ ବର୍ତ୍ତମାନ ତୃଣମୂଳ ସ୍ତରରେ ଲାଗୁ କରାଯାଉଛି – ଏଥିପାଇଁ ଅଶିକ୍ଷିତ, ଦରିଦ୍ର ମହିଳା, କୃଷିକର୍ମୀ ମାନଙ୍କୁ ଏକତ୍ର କରାଗଲା । ସେମାନଙ୍କଠୁଁ ପାଇଥିବା ଶିକ୍ଷାକୁ ସରକାରରେ ଥିବା ବନ୍ଧୁମାନଙ୍କ ସମ୍ମୁଖରେ ଉପସ୍ଥାପନା କରାଗଲା । ଏହା ସହିତ ମହିଳାମାନଙ୍କ ଉପରେ ବୃଦ୍ଧି ପାଉଥିବା ଗବେଷକ ଏବଂ ରାଷ୍ଟ୍ରୀୟ ମହିଳା ସଙ୍ଗଠନ ଗୁଡ଼ିକୁ ଅବଗତ କରାଗଲା । ଏହି ସଙ୍ଗଠନ ଗୁଡ଼ିକ ୧୯୮୦ ମସିହାରେ ଗୋଟିଏ ସଂଘ ଗଠନ କରିଥିଲେ ଯାହାର ଉଦ୍ଦେଶ୍ୟ ଥିଲା ବିକାଶ ନିମିତ୍ତ ଅର୍ଥରେ ମହିଳାମାନଙ୍କର ନାଯ୍ୟ ପ୍ରାପ୍ୟ ପାଇଁ ରାଜ୍ୟ ସରକାରଙ୍କ ସହିତ ସଂଘର୍ଷ କରିବା । ଏହାର ଅନ୍ୟ ଉଦ୍ଦେଶ୍ୟ ଥିଲା – ବସ୍ତୁତଃ କେତେକ ପଲିସି ବା ନୀତି ଯାହା ମହିଳାମାନଙ୍କ ଅଧିକାର, ସେମାନଙ୍କର ମର୍ଯ୍ୟାଦା, ଆର୍ଥିକ ସ୍ୱାଧୀନତା ଉପରେ ପ୍ରତିକୂଳ ପ୍ରଭାବ ପକଉଥିଲା, ତା'ବିରୁଦ୍ଧରେ ଲଢ଼ି ପରିଣାମ ସ୍ୱରୂପ ଭାରତୀୟ ଗଣତନ୍ତ୍ରର ଭବିଷ୍ୟତ ସ୍ୱରୂପ ଓ ଚରିତ୍ର ନିର୍ମାଣରେ ସେମାନଙ୍କର ସ୍ୱର ଉତ୍ତୋଳନ କରିବାର ଅଧିକାର ମଧ୍ୟ ଦେବା ।

ସମାଜର ବିଭିନ୍ନ କ୍ଷେତ୍ରରେ ମହିଳାମାନଙ୍କ ପ୍ରତି ସଚେତନତାକୁ ଉତ୍ସାହିତ କରିବା ନିମନ୍ତେ ସି ଡବ୍ଲ୍ୟୁ ଡି ଏସ୍‌ର ଭୂମିକା ଉଲ୍ଲେଖନୀୟ । ଆଇ ସି ଏସ୍ ଏସ୍ ଆର୍ କାର୍ଯ୍ୟକ୍ରମ ମାଧ୍ୟମରେ ଉଚ୍ଚଶିକ୍ଷା ସଂସ୍ଥାଗୁଡ଼ିକୁ ପ୍ରଭାବିତ କରିବାରେ ବିଫଳ ହେବାରୁ ଏହା ଦେଶର ଅନ୍ୟ ଶୈକ୍ଷିକ ଅନୁଷ୍ଠାନ ସଦୃଶ ଏକ ମହିଳା ଅଧ୍ୟୟନ ସଂଘ ଗଠନ କରିବା କଥା ବିଚାର କଲା । ସମାଜ ବିଜ୍ଞାନକୁ 'ମୂଲ୍ୟ ମୁକ୍ତ' ମନେ କରିବା ଧାରଣାକୁ ଅଗ୍ରାହ୍ୟ କରି ଭାରତରେ ମହିଳା ଅଧ୍ୟୟନ ଏକ ସକ୍ରିୟତାବାଦୀ ବିଚାରଧାରା ଗ୍ରହଣ କଲା । ଲୈଙ୍ଗିକ ନ୍ୟାୟ ନିମନ୍ତେ ସଂଘର୍ଷରେ ଆମର ସକ୍ରିୟ ଭୂମିକାକୁ ଆମେ ଉତ୍ତରାଧିକାର ସତ୍ତ୍ୱେ ସାମାଜିକ ଦାୟିତ୍ୱ ଜ୍ଞାନ କଲୁ । ଲାଭର ପରିଣାମ ସ୍ୱରୂପ ସମ୍ବିଧାନର ସମାନ ଅଧିକାର ବିଶିଷ୍ଟ ଅନୁଚ୍ଛେଦ ପ୍ରାପ୍ତିହେଲା । ଶିକ୍ଷା ବ୍ୟବସ୍ଥାରେ ଦୀର୍ଘବର୍ଷର ଅଭିଜ୍ଞତା ଯୋଗୁଁ ଶିକ୍ଷା ଅନୁଷ୍ଠାନର ପରିବର୍ତ୍ତନର କ୍ଷମତାକୁ ଆମେ ଉପଲବ୍ଧ କରିପାରିଥିଲୁ । ସେମାନେ ଯଦି ଲୈଙ୍ଗିକ ନ୍ୟାୟର ସଂରଚନାତ୍ମକ, ବ୍ୟାବହାରିକ ଏବଂ ମୂଲ୍ୟବୋଧର ଜଗତ ଯାହା ଅତୀତରୁ, ବର୍ତ୍ତମାନ ପର୍ଯ୍ୟନ୍ତ ପରମ୍ପରାପରି ପ୍ରଲମ୍ବିତ ତାକୁ ବୁଝି ତଦ୍‌ଜନିତ ବାଧାକୁ ଦୂର କରିବାକୁ ଚେଷ୍ଟା କରିଥାନ୍ତେ ତେବେ ଏ କ୍ଷମତା ସଫଳ ହେଇଥାନ୍ତା । ଏ ପ୍ରତିବନ୍ଧକର ଉତ୍ପତ୍ତି ସ୍ଥଳ କେବଳ ଭାରତ ନୁହେଁ କ୍ରମବର୍ଦ୍ଧିଷ୍ଣୁ ଜଗତୀକରଣ ପ୍ରକ୍ରିୟାରୁ ଉତ୍ପନ୍ନ ହୋଇ ସମଜାତୀୟତା ଲାଭ କରୁଛି । ସମସ୍ତ ମହିଳାଙ୍କୁ ଗୋଟିଏ ବର୍ଗ ଅନ୍ତର୍ଭୁକ୍ତ କରିବାମାନେ ବାସ୍ତବତାଠୁ କୋଶେ ଦୂରରେ ରହିବା । ଭାରତ ସରକାରଙ୍କ ଉପରେ ଚାପ ପକେଇ ୧୯୮୬ ମସିହାରେ ସଂସଦ ଦ୍ୱାରା ଗ୍ରହଣ କରାଯାଇଥିବା ରାଷ୍ଟ୍ରୀୟ ଶିକ୍ଷା ନୀତି ଅନ୍ତର୍ଗତ ନାରୀସମାନତା ଶିକ୍ଷା ଉପରେ ଏକ ଅନୁଚ୍ଛେଦ ଅନ୍ତର୍ଭୁକ୍ତ କରେଇବାରେ ଆମେ ସଫଳ ହେଲୁ । ବିଦ୍ୟମାନ ଅନୁଷ୍ଠାନଗୁଡ଼ିକରେ ମହିଳା ଅଧ୍ୟୟନ ବିଷୟକୁ ପରିବର୍ତ୍ତନ ସୃଷ୍ଟି କରିବାର ଏକ ମାଧ୍ୟମ ବା

ଯନ୍ତ୍ରଭାବରେ ପ୍ରୋତ୍ସାହିତ କରାଯିବ – ଯାହାଫଳରେ ଏହି ଶିକ୍ଷାନୁଷ୍ଠାନଗୁଡ଼ିକ ମହିଳା ସଶକ୍ତୀକରଣରେ ଏକ ସକ୍ରିୟ ସଂରଚନାତ୍ମକ ଭୂମିକା ଗ୍ରହଣ କରିବାରେ ସମର୍ଥ ହେବେ ।

ନାରୀ ଆନ୍ଦୋଳନ ବହୁମୁଖୀ । ଭାରତୀୟ ରାଜନୀତି ଆଦର୍ଶର ବିବିଧତା ଦ୍ୱାରା ଏହା ବହୁଳଭାବରେ ପ୍ରଭାବିତ । ଏହା ଗଣତାନ୍ତ୍ରିକ ଭାରତର ରାଜନୈତିକ ବାସ୍ତବତାର ପରିଚୟ । କିନ୍ତୁ ମହିଳା ବିଷୟକ ଅଧ୍ୟୟନର ଆନୁଷ୍ଠାନିକ ଭିତ୍ତି ଅଧିକାଂଶତଃ ସେଇ ଲୋକଙ୍କ ମଧ୍ୟରେ ଅଛି ଯେଉଁମାନେ ପ୍ରଫେସନାଲ୍‌ଙ୍କ ପରି ଏକ ନିର୍ଦ୍ଦିଷ୍ଟ ଶୃଙ୍ଖଳାକୁ ମାନିଥାନ୍ତି । ଏ ପାର୍ଥକ୍ୟ ସତ୍ତ୍ୱେ ଏବଂ କଦବାକ୍ୱଚିତ ଉତ୍ତେଜନା ସତ୍ତ୍ୱେ ଉଭୟଙ୍କ ମଧ୍ୟରେ ସଂପର୍କ ସବୁବେଳେ ଥିଲା । ଏ ସଂପର୍କ ଘନିଷ୍ଠ, ଅବିଚ୍ଛିନ୍ନ ଓ ପରସ୍ପର ନିର୍ଭରଶୀଳ । ବିଂଶ ଶତାବ୍ଦୀର ଶେଷ ଚତୁର୍ଥାଂଶରେ ଭାରତୀୟ ନାରୀ ଆନ୍ଦୋଳନରେ ବିଭିନ୍ନ ସଂକଟ ପରିଚୟ ଓ ଆଦର୍ଶର ସଙ୍କଟ, କ୍ଷମତାର ରଣନୀତି, ଆଇନର ନିୟମ, ସମାଜ ଓ ସଂସ୍କୃତି, କ୍ଷମତା ଓ ଦାୟିତ୍ୱର ସମାଧାନପାଇଁ ବିକଳ୍ପ ପନ୍ଥା ଗ୍ରହଣ କଲା । ଏହା ଏକ ସତତ, ଜୀବନ୍ତ ଓ ଜଟିଳ ପ୍ରକ୍ରିୟା ଥିଲା । ଉଭୟ ଆନ୍ଦୋଳନରେ ସଂପୃକ୍ତ ସଦସ୍ୟମାନଙ୍କ ଦ୍ୱାରା ପ୍ରଦର୍ଶିତ ସୃଷ୍ଟିଶୀଳତା ଏବଂ ବିକ୍ଷୋଭରୁ ଏହା ଜଣାପଡ଼େ । ଆମର ଶିଖିବାର ପଦ୍ଧତି ଏବଂ ଉତ୍ସ ଉଭୟରେ ଏକ ବିପ୍ଳବାତ୍ମକ ପରିବର୍ତ୍ତନ ଆସିଛି । ମୁଁ ନିଜେ ନିରକ୍ଷର ମହିଳା, କୃଷକ ଏବଂ ସହରରେ ରହୁଥିବା ଅସଂଗଠିତ କ୍ଷେତ୍ରର କଥାକୁହାଳିଆ ଗରିବ ମହିଳାଙ୍କଠୁଁ ବହୁତ କଥା ଶିଖୁଛି ଓ ମୋ ଭ୍ରାନ୍ତି ଦୂର କରୁଛି । ସେମାନଙ୍କର ସାହସ, ଦୃଢ଼ତା, ବୁଦ୍ଧିମତ୍ତା ଏବଂ ନୂଆ ଜ୍ଞାନ ଆହରଣ କରିବାର ନୈତିକ ସାମର୍ଥ୍ୟ ମୂଲ୍ୟାୟନ କରିବା ସହିତ ପ୍ରଶଂସା କରୁଛି । ସେମାନେ ଏହାକୁ ନିଜର ଉତ୍ତରାଧିକାର ସୂତ୍ରରେ ପ୍ରାପ୍ତଜ୍ଞାନ ଓ ଅଭିଜ୍ଞତାଗତ ଜ୍ଞାନସହ ସମନ୍ୱିତ କରି ଅଧୀନତା, ଅବହେଳା ଓ ଅଦୃଶ୍ୟତାକୁ ଚାଲେଞ୍ଜ କରନ୍ତି । ସମାନତା, ନ୍ୟାୟ, ଆତ୍ମମର୍ଯ୍ୟାଦା, ସବୁଥିରେ ଅଂଶଗ୍ରହଣ କରିବା ଓ ବିକାଶ ପ୍ରତି ସେମାନଙ୍କର ସାମ୍ବିଧାନିକ ଅଧିକାର ଅଛି ଜାଣିବାପରେ ତାଙ୍କର ଚିରନ୍ତନ ବ୍ୟାପକ ସାମାଜିକ ଦାୟିତ୍ୱବୋଧ ପ୍ରତି ସମ୍ମାନ ଦେଖି ମୁଁ ଓ ମୋପରି ଅନେକ ସ୍ତମ୍ଭୀଭୂତ । କିଛିଗୋଟେ ଗବେଷଣାତ୍ମକ କାର୍ଯ୍ୟକରି ଫଳପ୍ରାପ୍ତି ନିମନ୍ତେ ପୂର୍ବରୁ ଯେଉଁ ଆକାଂକ୍ଷା ଥିଲା ତାକୁ ପରିତ୍ୟାଗ କରିଥିବାରୁ ମୋ ମନରେ ଆଦୌ ପଶ୍ଚାତ୍ତାପ ନାହିଁ ।

କୁମୁଦିନୀ ଲାଖିଆ (ଜନ୍ମ ୧୯୩୦) ଜଣେ ପ୍ରସିଦ୍ଧ କଥକ ନର୍ତ୍ତକୀ ଏବଂ ନୃତ୍ୟ ନିର୍ଦ୍ଦେଶିକା (କୋରିଓଗ୍ରାଫର) । ବିଖ୍ୟାତ ରାମଗୋପାଳ ତାଙ୍କର ଗୁରୁ ଓ ସେ ତାଙ୍କଦ୍ୱାରା ବହୁଳ ଭାବରେ ପ୍ରଭାବିତ । ସେ ୪୦ରୁ ଅଧିକ ଦେଶରେ ନୃତ୍ୟ ପ୍ରଦର୍ଶନ କରିଛନ୍ତି । ସେ ଏକକ ନୃତ୍ୟ ପ୍ରଦର୍ଶନ ଛାଡ଼ି ଅହମଦାବାଦରେ କଦମ୍ବ ନୃତ୍ୟ କେନ୍ଦ୍ର ପ୍ରତିଷ୍ଠା କରିଛନ୍ତି ଯେଉଁଠି ସେ ଛାତ୍ରମାନଙ୍କୁ ଶାସ୍ତ୍ରୀୟ କଥକ ନୃତ୍ୟ ଶିକ୍ଷା ଦିଅନ୍ତି । ଦୁଇଟି ବହୁ ସଫଳତା ପ୍ରାପ୍ତ ଚଳଚ୍ଚିତ୍ର ଉମ୍ରାଓଜାନ୍ ଓ ସୁରସଙ୍ଗମର ନୃତ୍ୟ ନିର୍ଦ୍ଦେଶନା ତାଙ୍କର ଅନ୍ୟାନ୍ୟ ସଫଳତା ମଧ୍ୟରୁ ଅନ୍ୟତମ । ସେ ଅଖିଳ ଭାରତୀୟ ସଙ୍ଗୀତ ନାଟ୍ୟକଳା ପୁରସ୍କାର (୧୯୭୭), ଜାତୀୟ ସଙ୍ଗୀତ ନାଟକ ଏକାଡ଼େମୀ ପୁରସ୍କାର (୧୯୮୨), କଳାରତ୍ନ ପୁରସ୍କାର, ସଙ୍ଗୀତ କଳା ସଙ୍ଗମ (୧୯୮୨), ଏବଂ ୧୯୮୭ରେ ପଦ୍ମଶ୍ରୀ ପୁରସ୍କାର ଦ୍ୱାରା ସମ୍ମାନିତ ହୋଇଛନ୍ତି । ସ୍ୱାଧୀନତାର ୫୦ ବର୍ଷ ପାଳନ ଅବସରରେ ଅହମଦାବାଦ ସହର ତାଙ୍କୁ 'ନଗର ଭୂଷଣ' ଉପାଧିରେ ସମ୍ମାନିତ କରିଛି ।

## ୩

# ସେତୁ

## କୁମୁଦିନୀ ଲାଖିଆ

ଯଦି ମୋ ଭିତରର ଶିଶୁ ମତେ ବର୍ତ୍ତମାନ ଦେଖିପାରନ୍ତା ତେବେ ବିସ୍ମିତ ହେଇଯାଆନ୍ତା । ସେ ବିଶ୍ୱାସ କରିପାରନ୍ତାନି ଯେ ମୁଁ ନୃତ୍ୟ ଜଗତରେ ପାଦଦେଇଛି ପୁଣି ନିଜ ଅବବୋଧ ପାଇଁ ନୃତ୍ୟର ଲିଖନ ଓ ଅନୁବାଦ କାର୍ଯ୍ୟ କରୁଛି ଯାହାକୁ ଆପଣ ନୃତ୍ୟ ନିର୍ଦ୍ଦେଶନା (କୋରିଓଗ୍ରାଫି) କହିପାରନ୍ତି । ଏ ବିଷୟରେ ମୁଁ ପ୍ରକୃତରେ ବିଶେଷଭାବରେ ସେମାନଙ୍କ ପ୍ରତି ଈର୍ଷାତୁର ହେଇଉଠେ ଯେଉଁମାନେ କହନ୍ତି ଯେ ନାଚ କରିବାପାଇଁ ହିଁ ତାଙ୍କର ଜନ୍ମ । ଅର୍ଥାତ ଆରମ୍ଭରୁ ସେମାନେ ଏହା ଜାଣିପାରିଥାନ୍ତି । ମାତ୍ର ମୋର ଏ ବକ୍ତବ୍ୟ ଉପରେ ସନ୍ଦେହ ଆସେ । ବହୁତ କମ୍ ଲୋକଙ୍କ କ୍ଷେତ୍ରରେ ଏହା ଏତେ ସହଜରେ ଘଟେ । ନୃତ୍ୟ କରିବା ଅର୍ଥ ହିଁ ସଂଘର୍ଷ – ମୋର ବିଶ୍ୱାସ ଯେ କୌଣସି ବିଭାଗ ପାଇଁ ଏହା ପ୍ରଯୁଜ୍ୟ । କାରଣ ଯେକୌଣସି କ୍ଷେତ୍ରରେ ସାଧନାମାନେ ହିଁ ସଂଘର୍ଷ । ମୋର ବିଶ୍ୱାସ ଯେ ମୁଁ କେବଳ ନୃତ୍ୟ କରିବାପାଇଁ ଜନ୍ମ ହେଇନଥିଲି । ମୁଁ ବଞ୍ଚିବା ପାଇଁ ବା ଜୀବନ ଧାରଣ କରିବାପାଇଁ ଜନ୍ମ ଗ୍ରହଣ କରିଥିଲି । ଆଉ ଆଜି ଯେତେବେଳେ ଜୀବନର ଖଣ୍ଡିତାଂଶ ଗୁଡ଼ିକୁ ଏକତ୍ର କରି ଦେଖେଁ ସେତେବେଳେ ମୋ ଜୀବନାନୁଭୂତି ଏବଂ ନୃତ୍ୟ ପ୍ରସ୍ତୁତି ମଧ୍ୟରେ ଏକ ସ୍ପଷ୍ଟ ସେତୁ ଦେଖିପାରେଁ ।

ସତ କହିବାକୁ ଗଲେ, ପିଲାବେଳେ ମୁଁ ନାଚ କରିବାକୁ ଆଦୌ ଚାହୁଁନଥିଲି । ମୋତେ ଅତ୍ୟଧିକ ସ୍ନେହ କରୁଥିବା ମା ଓ ନୀରବ ରହୁଥିବା ବାପାଙ୍କ ଦ୍ୱାରା ଏହା ଜୋର ଜବରଦସ୍ତି ମୋ ଉପରେ ଲଦି ଦିଆଯାଇଥିଲା । ମୋ ବାପା ସମ୍ଭବତଃ ତର୍କବିତର୍କରୁ ରକ୍ଷାପାଇବା ପାଇଁ ଚୁପ୍ ରହୁଥିଲେ । ପ୍ରଥମରୁ ହିଁ ମୋ ମାଙ୍କପାଇଁ ପରିସ୍ଥିତି ଆଉରି ବିଷମ ଥିଲା । ସେ ସାରାଦିନ ବିରକ୍ତ ହେଇ ସ୍କୁଲରୁ ଫେରି ଗୋଟେ ଅନାଗ୍ରହୀ ପିଲାସାଙ୍ଗରେ ଲୋକାଲ୍ ଟ୍ରେନ୍‌ରେ ଜବରଦସ୍ତ ଭିଡ଼ରେ ନାଚ ସ୍କୁଲକୁ ଯାଉଥିଲେ । ସେ ପୂରା ଘଣ୍ଟେ ମୋ ଗୁରୁଙ୍କ ଘରର ଏକ ଅପେକ୍ଷାକୃତ ଅପରିଷ୍କାର କୋଠରୀରେ ମୋପାଇଁ ଅପେକ୍ଷା କରୁଥିଲେ ଓ ପୁଣି ଫେରିବା ପଥରେ ସମାନ ଦୁର୍ବିସହ ଯାତ୍ରାକୁ ସହ୍ୟ କରୁଥିଲେ । ଏହା ବମ୍ବେର ଘଟଣା । ମୋର ପ୍ରାଥମିକ ନୃତ୍ୟ ଶିକ୍ଷା ଚୌପାଟୀରେ ରହୁଥିବା ଗୁରୁ ସୁନ୍ଦର ପ୍ରସାଦଙ୍କ ନିକଟରେ ହେଲା, ଆମେ ରହୁଥିଲୁ ଖାରରେ । ଆମେ ପ୍ରଥମେ ଟ୍ରେନ୍, ତା'ପରେ

ବସ୍, ତା'ପରେ ଚାଲିକି ଯାଉଥିଲୁ । ଯିବାପାଇଁ ପୁରା ୪୫ ମିନିଟ୍ ସମୟ ଲାଗୁଥିଲା, ଆସିବାପାଇଁ ବି ।

ମଜାର କଥା ଯେ ମୋ ମା ଚଳଚ୍ଚିତ୍ର ଉଦ୍ୟୋଗର ଚାକଚକ୍ୟରେ ବିମୋହିତ ହୋଇ ମତେ ନାଚ ସ୍କୁଲରେ ଭର୍ତ୍ତି କରିଥିଲେ । ମତେ ଯେତେବେଳେ ସାତ ବର୍ଷ ସେତେବେଳେ ଆମେ ହାସ୍ୟ ଅଭିନେତା ମେହମୁଦଙ୍କ ବାପା ମମତାଜ ଅଲୀଙ୍କର ଗୋଟେ ଚଳଚ୍ଚିତ୍ର ଦେଖିବାକୁ ଯାଇଥିଲୁ । ଅଲୀଜୀ ସେଥିରେ ଏପରି ଏକ ନୃତ୍ୟ ପ୍ରଦର୍ଶନ କଲେ ଯାହାକୁ ଦେଖି ମୁଁ ବିହ୍ୱଳ ହେଇଗଲି । ଯେତେବେଳେ ଆମେ ଘରେ ପହଞ୍ଚିଲୁ ମୁଁ ତାଙ୍କୁ ନକଲ କରି ଘରସାରା ନାଚିବୁଲିଲି । ମୋ ମା ନୀରବରେ ମତେ ନିରୀକ୍ଷଣ କରୁଥିଲେ । ''କୁମୁଦିନୀ ନୃତ୍ୟପାଇଁ ତୋର ଜନ୍ମ'' ବୋଲି ସେ କହିଲେ । ମୋର ଏ ବିଷୟରେ କିଛି ମନେ ନାହିଁ କିନ୍ତୁ ମୋ ମା ମୋର ଏ ଜନ୍ମଜାତ ଗୁଣକୁ ଚିହ୍ନିପାରିଥିଲେ । ତାଙ୍କର ଏଥିରେ ଏତେ ଦୃଢ଼ ବିଶ୍ୱାସ ଥିଲା ଯେ ସେ ବିନା ଅଭିଯୋଗରେ ସପ୍ତାହରେ ୪ଦିନ କଠୋର ଶାସ୍ତି ସଦୃଶ ପରିଶ୍ରମ କରି ମତେ ନାଚ କ୍ଲାସକୁ ନେଇଯାଉଥିଲେ ।

ସେ ଯାହାହେଉ ମୋର ପିଲାଦିନର ଶିକ୍ଷାରେ ନାଚ ଓ ପଢ଼ା ସହିତ ଆଉରି ବହୁତ କିଛି ଯୁକ୍ତ ଥିଲା । ମୁଁ କେତେବେଳେ ଫାଙ୍କା ରହୁନଥିଲି । ମୋ ଚାରିପାର୍ଶ୍ୱରେ ପ୍ରାଣ-ପ୍ରାଚୁର୍ଯ୍ୟ ଥିଲା, ସେଥିରୁ ମୁଁ ବହୁତ କିଛି ଶିକ୍ଷା ପାଇଛି, ଯେଉଁ ଶିକ୍ଷା ବର୍ତ୍ତମାନ ବି ମୁଁ ବହନ କରି ଚାଲିଛି, ମୁଁ ଗୋଟିଏ ପରିବର୍ତ୍ତନମୁଖୀ ଯୁଗରେ ବଡ଼ ହୋଇଛି । ଏହା ଥିଲା ଯୁଦ୍ଧ କାଳ- ଭାରତର ସ୍ୱାଧୀନତା ସଂଗ୍ରାମକୁ ବହୁଗୁଣିତ କରିଥିଲା ଦ୍ୱିତୀୟ ବିଶ୍ୱଯୁଦ୍ଧ । ଏଥିରେ ଭାରତୀୟ ସେନାବାହିନୀର ଏକ ସାମରିକ ଭୂମିକା ଥିଲା । ମୋ ବାପା ଇଞ୍ଜିନିୟର ଥିଲେ, ତେଣୁ ତାଙ୍କୁ ସୈନ୍ୟଛାଉଣି ତିଆରି କରିବାପାଇଁ ପ୍ରଥମେ ଦିଲ୍ଲୀ ତା'ପରେ ନୈନୀ ତାପରେ ଆଲ୍ହାବାଦ ଡକାଗଲା । ଦିଲ୍ଲୀରେ ଆମକୁ ହାର୍ଡ଼ିଂ ଆଭେନିଉ (ବର୍ତ୍ତମାନର ତିଲକ ମାର୍ଗ)ରେ ଏକ ବିରାଟ ପ୍ରାସାଦୋପମ ଘର ମିଳିଥିଲା, ଆମର ପଡ଼ୋଶୀ ଥିଲେ ଲିଆକତ୍ ଅଲୀ (ପାକିସ୍ଥାନର ପରବର୍ତ୍ତୀ ପ୍ରଧାନମନ୍ତ୍ରୀ) । ଥରେ ତାଙ୍କର ମାଳୀ ମତେ ଓ ମୋ ଭାଇ ସୁରେଶକୁ ତାଙ୍କ ଗଛରୁ ପିଜୁଳି ତୋଳିବାବେଳେ ଧରି ପକେଇଲା । ସେ ଆମ କାନ ଧରି ଆମକୁ ଶାସ୍ତି ଦେବାପାଇଁ ତା' ମାଲିକଙ୍କ ପାଖରେ ହାଜିର କରିଲା । ଲିଆକତ୍ ଅଲୀ ଆମକୁ କେବଳ ସେତକ ପିଜୁଳି ଦେଲେନାହିଁ ଯେ ଯେତେବେଳେ ଇଚ୍ଛା ହେବ ଗଛରୁ ତୋଳିନେବାପାଇଁ ନିମନ୍ତ୍ରଣ ବି ଦେଲେ । ମାତ୍ର ତାଙ୍କର ଏ ଉଦାର ଆହ୍ୱାନ ସହିତ ମାଳୀର ରାଗ ତମତମ ପ୍ରତିଶୋଧ ପରାୟଣ ମୁହଁ ଆମ ଆଖିରେ ରହିଗଲା । ତେଣୁ ଆମେ କେବେ ବି ଆଉ ସେ ବଗିଚା ଦୁଆର ମାଡ଼ିନୁ । ରାଜନୀତିକମାନେ ଯେଉଁ ଖେଳ ଖେଳନ୍ତି ସେଥିରୁ ମୁଁ ମୋର ଏ ପ୍ରଥମ ଶିକ୍ଷା ପାଇଥିଲି ।

ସୈନ୍ୟମାନଙ୍କ ପାଇଁ ନିର୍ମାଣ କାର୍ଯ୍ୟ ଯେଉଁଠି ଚାଲୁଥିଲା ବାପାଙ୍କୁ ସେଠିକି ଯିବାକୁ ପଡୁଥିଲା । ତେଣୁ ମୁଁ ଯେତେବେଳେ ୯ ବର୍ଷର ଥିଲି ମତେ ଆବାସିକ ବିଦ୍ୟାଳୟକୁ ପଠେଇବାପାଇଁ ସ୍ଥିର କରାଗଲା । ବାପାମାଙ୍କ ଭିତରେ ଅନେକ ଯୁକ୍ତିତର୍କ, ବିଚାର, ପରାମର୍ଶ

ଏବଂ ଗବେଷଣା ପରେ ମତେ ଲାହୋର (ସେତେବେଳେ ଭାରତରେ ଥିଲା)ର କୁଇନ୍ ମେରୀସ କଲେଜ (ସ୍କୁଲ)କୁ ପଠାଗଲା । ମୁଁ ଘରଠୁଁ ବାହାରେ ଦିନେ ବି ରହିନଥିଲି । କିନ୍ତୁ ବହୁ ସମବୟସ୍କ ଝିଅଙ୍କ ସହିତ ରହିବାର ଓ ଗୋଟେ ସୁନ୍ଦର ସ୍କୁଲରେ ପଢ଼ିବାର ସ୍ୱପ୍ନରେ ମୁଁ ଏକାଧାରରେ ମସ୍‌ଗୁଲ ଥିଲି ଓ ଚିନ୍ତିତ ବି ଥିଲି । କୌତୂହଳ ଓ ଦୁଃଖର ଏକ ମିଶ୍ରଭାବ ମୋ ମନରେ ଥିଲା । ନାଚସ୍କୁଲକୁ ଯିବା ଆସିବାର ଝାମେଲା ନାହିଁ କି ଗୁରୁଜୀଙ୍କ ଶାସନ ନାହିଁ ।

ଭାଗ୍ୟରେ ଏସବୁ ନ ଥିଲା । ସୁନ୍ଦର ପ୍ରସାଦଙ୍କ ଭଣଜା ନୃତ୍ୟ ଶିକ୍ଷକ ରାଧେଲାଲ ମିଶ୍ରଙ୍କୁ ମା ମୋସହିତ ପଠେଇଲେ । ସେ ଲାହୋରରେ ତାଙ୍କ ପାଇଁ ଏକ ଛୋଟ ଘର ଭଡ଼ା ନେଲେ ଆଉ ମୋ ନୃତ୍ୟ ଶିକ୍ଷାପାଇଁ ଗୋଟେ ନିର୍ଦ୍ଦିଷ୍ଟ ସମୟ ନିଧାର୍ଯ୍ୟ କଲେ । ମୁଁ ନୃତ୍ୟ କରିବାପାଇଁ ଜନ୍ମ, ବିଶ୍ୱାସ ସତ୍ତ୍ୱେ ମୁଁ ନାଚ ଶିକ୍ଷାକୁ ଆଦୌ ଭଲ ପାଉ ନ ଥିଲି । ସତ କହିବାକୁ ଗଲେ ସେଥିରେ କିଛି ମଜା ଆସୁନଥିଲା । ମତେ ଲାଗୁଥିଲା ମୋର ନାଚରେ କିଛି ଉନ୍ନତି ହେଉନଥିଲା, ମୁଁ କେବଳ ଗୁରୁ ଯାହା କହୁଥିଲେ ତା' କରୁଥିଲି । ମୁଁ ସବୁବେଳେ ଜିଜ୍ଞାସୁ ଥିଲି, ତେଣୁ ମୁଁ କ'ଣ କରୁଥିଲି ତାକୁ ଜାଣିବାପାଇଁ, ବୁଝିବା ପାଇଁ ଚାହୁଁଥିଲି । ମୁଁ କାହିଁକି ତାଙ୍କ ଆଙ୍ଗୁଠି ଅଗରେ ନାଚୁଥିଲି ? କିନ୍ତୁ ମୋ ଗୁରୁ ମତେ ବୁଝେଇପାରୁ ନଥିଲେ ବା ବୁଝଉନଥିଲେ । ଝିଅମାନେ ଯେତେବେଳେ ଟେନିସ୍ କିମ୍ବା ବାସ୍କେଟ ବଲ୍ ଖେଳୁଥିଲେ ସେ ସମୟରେ ମୁଁ ଏଇଆ କରୁଥିଲି ଯାହାକୁ କଥକ କୁହନ୍ତି । ମୁଁ ସେମାନଙ୍କ ପ୍ରତି ଈର୍ଷାପରାୟଣ ହେଇଉଠେ । ମୋ ମା ବ୍ରିଟିଶ ପ୍ରିନ୍ସିପାଲ୍‌ଙ୍କୁ ବୁଝେଇ ନେଦଥିଲେ ଯେ ନୃତ୍ୟ ଏକ ପ୍ରକାର ଈଶ୍ୱର ଆରାଧନା । ତେଣୁ ସେ ଧର୍ମୀୟ ସ୍ୱାଧୀନତାକୁ ଦମନ କରିପାରିବେ ନାହିଁ । ଯେଉଁଠି ଅଧିକାଂଶ ଶିକ୍ଷକ ଇଂରେଜ ଥିଲେ ସେଇପରି ଏକ ସ୍କୁଲରେ ଅନେକ ବର୍ଷ ବିତାଇବାପରେ ମତେ ତାଙ୍କର ଶୃଙ୍ଖଳା ପଦ୍ଧତି ଭଲ ଲାଗୁଥିଲା । ଜଣକର ପ୍ରାତ୍ୟହିକ ଜୀବନରେ ନିୟମିତତା ତା'ର ବିଚାର ଧାରାରେ ବି ଶୃଙ୍ଖଳାବୋଧ ସୃଷ୍ଟି କରେ । ତୁମେ ତୁମର ପୋଷାକ ଓ ଜୋତାକୁ ଠିକ୍‌ଭାବରେ ସଜେଇ ରଖିବାପରି ତୁମର ଭାବନାକୁ ବି ସୁନ୍ଦର ଭାବରେ ସଜେଇବା ଆରମ୍ଭ କରିପାର ।

ସ୍କୁଲର ଶେଷ ପରୀକ୍ଷା, ସେତେବେଳର ମାଟ୍ରିକୁଲେସନ୍‌ର ଠିକ୍ ତିନି ସପ୍ତାହ ପୂର୍ବରୁ ମୋ ଜୀବନ ଏକ ନାଟକୀୟ ମୋଡ଼ ନେଲା । ମତେ ପ୍ରିନ୍ସିପାଲ୍ ଅଫିସକୁ ଡକାଗଲା । ମୁଁ କ'ଣ କଲି କି ? ମିସ୍ କକ୍ସଙ୍କ ଅଫିସ୍‌କୁ ଡକାଯିବା ମୂଳରେ ଏକମାତ୍ର କାରଣ ଥାଏ – ନିୟମ ଉଲ୍ଲଙ୍ଘନ । ସେ ଜଣେ ଦୟାଳୁ ଏବଂ ଦକ୍ଷ ମହିଳା ଥିଲେ, ସେ ବଡ଼ କଡ଼ା ଓ କଠୋର ପ୍ରକୃତିର ମଧ୍ୟ ଥିଲେ । ଯେତେବେଳେ ମୁଁ ଜଣେ ଶିକ୍ଷୟିତ୍ରୀ ହେଲି ତାଙ୍କ ବ୍ୟକ୍ତିତ୍ୱର ପ୍ରଭାବ ମୋ ଉପରେ ଅକ୍ଷୁଣ୍ଣ ଥିବା ଲକ୍ଷ୍ୟ କଲି । ମୁଁ ଅଫିସ୍‌ରେ ପହଞ୍ଚିବା ପର୍ଯ୍ୟନ୍ତ ଭାବୁଥାଏ – ଟେନିସ୍ ର୍ୟାକେଟ୍ ଗୁଡ଼ିକ ସକାଳେ ଖେଳିସାରିବାପରେ ରଖିବାକୁ ଭୁଲିଗଲି କି ? ଡର୍ମିଟାରୀର କବାଟରେ ତାଲା ପକାଇବାକୁ ଭୁଲିଯାଇଛି କି ?

ମୁଁ ଖୁବ୍ ସନ୍ତର୍ପଣ ସହକାରେ ପଚାରିଲି – ‘‘ଭିତରକୁ ଆସିପାରେ କି, ମ୍ୟାମ୍ ?’’

‘‘ହଁ, ଆସ ମା ଆସ,’’ ସେ ଏତେ ଦୟାର୍ଦ୍ର କଣ୍ଠରେ କହିଲେ ଯେ ମୋର ସନ୍ଦେହ ହେଲା । ‘‘ତୁମକୁ ଘରକୁ ଯିବାକୁ ପଡ଼ିବ ।’’

‘‘କିନ୍ତୁ କାହିଁକି ? ଆଗରେ ପରୀକ୍ଷା, ମତେ ପଢ଼ିବାକୁ ପଡ଼ିବ !’’ ‘ତୁମ ବାପା ଫୋନ୍ କରି କହିଲେ ଯେ ତୁମ ମା ଅସୁସ୍ଥ ଏବଂ ସେ ଚାହାଁନ୍ତି ଯେ ତୁମେ ମାଙ୍କୁ ଦେଖାକରିବାକୁ ଯାଅ ।’’

ମିସ୍ କକ୍ସଙ୍କ ଅଫିସ୍‌ରୁ ମୋ କ୍ଲାସ୍‌ରୁମ୍‌କୁ ଫେରିବା ଭିତରେ ମୁଁ ନାନା ପ୍ରକାର ଆଶଙ୍କା ଓ ଦ୍ୱନ୍ଦ୍ୱ ଭିତରେ ଛନ୍ଦି ହେଇପଡ଼ିଥିଲି । ତା’ଏପରି ଏକ ମାନସିକ ସ୍ଥିତି ଥିଲା ଯେ ମୁଁ ସେଥିରୁ କେବେ ବି ମୁକ୍ତି ପାଇପାରିନି । ଆଜି ବି ଯେତେବେଳେ ମୁଁ କିଛି ନୂଆ ସୃଷ୍ଟି କରିବାକୁ ଯାଏଁ, ପ୍ରଥମ ବିଷୟ ଯାହା ମୋ ମୁଣ୍ଡକୁ ଆସେ ତାହା ମତେ ସେଇ ପ୍ରକାର ଦ୍ୱନ୍ଦ୍ୱାତ୍ମକ ଆବେଗରେ ଶିହରିତ କରେ ।

୩୬ ଘଣ୍ଟାପରେ, ୩ଟି ଟ୍ରେନ୍‌ରେ ଯାତ୍ରାକରି ମୁଁ ପହଞ୍ଚିବାବେଳକୁ ମୋ ମା’ ମରିସାରିଥିଲେ । ମୁଁ ଯେତେବେଳେ ତାଙ୍କୁ ଶେଥା ଓ ନିଶ୍ଚଳ ଅବସ୍ଥାରେ ଦେଖିଲି, ସେତେବେଳେ ଅବଶେଷରେ ବୁଝିପାରିଲି ମତେ କାହିଁକି ଘରକୁ ଡକାଯାଇଥିଲା । ମତେ ସେତେବେଳକୁ ୧୪ ବର୍ଷ । ସବୁକିଛି ଶାନ୍ତ, ନିସ୍ତବ୍ଧ ଥିଲା । କେହି ମୋ ଆଡ଼କୁ ଚାହୁଁନଥିଲେ । ମୁଁ ବୁଝିପାରୁନଥିଲି ମୋ ଦେହରୁ ଓହଳିଥିବା ଏ ହାତ ଦି’ଟା କ’ଣ କରିବା ଉଚିତ୍ ? ହଠାତ୍ ହାତ ଦି’ଟା ମୋ ପେଟକୁ ଜାବୁଡ଼ି ଧରିଲା । କ୍ଷୁଧାର ଜ୍ୱାଳା ? ମୁଁ ୩ଦିନ ଧରି କିଛି ଖାଇନଥିଲି । ମୋ ଭିତରେ ଏକ ଶୂନ୍ୟତା ଥିଲା, ଯାହାକୁ ମୁଁ ପୂର୍ଣ୍ଣ କରିବାକୁ ଚାହୁଁଥିଲି । ମୋତେ ଲୋକ ପେଟ ବିକଳା ଭାବିବେ ବୋଲି ଡର ବି ଲାଗୁଥିଲା । ତେଣୁ ମୁଁ ମୋ ଆବେଗକୁ ଚପେଇ ରଖିଲି, ଯଦିଓ ଭୋକରେ ମୋ ପେଟ ଜଳୁଥିଲା ।

ଆଜି ବି ମୋ ଭିତରର ବିଭିନ୍ନ ପ୍ରକାରର କ୍ଷୁଧାକୁ ମୁଁ ବୁଝିବାରେ ଭୁଲ୍ କରେଁ, ଏହା ମୋ ନୃତ୍ୟ ଭିତରେ ମଧ୍ୟ ପ୍ରତିଫଳିତ ହେଇଯାଏ । ମୋ ନୃତ୍ୟ ନିର୍ଦ୍ଦେଶନାରେ ଝୁଲନ୍ତ ହାତର ପ୍ରଦର୍ଶନ ରହିଛି । ‘ଦ୍ୱିବିଧା’ରେ ମୁଁ ଜଣେ ମଧ୍ୟବିତ୍ତ ଶ୍ରେଣୀର ନାରୀର ଦୁଃସ୍ଥିତିକୁ ଦର୍ଶେଇଛି ଯିଏ ଭାରତୀୟ ଜୀବନ – ପରମ୍ପରାର ଶୃଙ୍ଖଳାରେ ଆବଦ୍ଧ । ସେ ଘରକରଣାର ବଳୟ ମଧ୍ୟରେ ସୀମିତ,ବିନା ହାତବାଲା ବ୍ଲାଉଜ୍ ପିନ୍ଧିବା ସେଠି ନିଷିଦ୍ଧ, ବାଳରେ ଗଣ୍ଠି ପକେଇବା ଓ ସ୍ୱାମୀ ସେବାକରିବା ତା’ର କର୍ତ୍ତବ୍ୟ । ତଥାପି ଗୋଟିଏ ଛୋଟ ଝରକାରୁ ସେ ବାହାରକୁ ଅନେଇ ଦେଖୁଛି – ବାହାରେ ଖବରକାଗଜବାଲା ଜଣେ ଏପରି ମହିଳାଙ୍କ ଚିତ୍ର ଦେଖଉଛି ଯାହାର ଛୋଟ କଟା ହେଇଥିବା ବାଳରୁ କେରାଏ ସ୍ପଷ୍ଟଭାବରେ ଧଳା ଦିଶୁଛି,ଯିଏ ବିନା ହାତବାଲା ବ୍ଲାଉଜ୍ ପିନ୍ଧିଛନ୍ତି, ପୁରୁଷ ବେଷ୍ଟିତ ହୋଇଛନ୍ତି ଓ ସେମାନେ ନିବିଷ୍ଟ ଭାବରେ ତାଙ୍କ କଥା ଶୁଣୁଛନ୍ତି । ସେ ଜଣେ ବିଧବା, ମାତ୍ର ରଙ୍ଗୀନ ଶାଢ଼ୀ ପିନ୍ଧିଛନ୍ତି । ଉପରନ୍ତୁ ସେ କୋଟି କୋଟି ଲୋକ ବିଶିଷ୍ଟ ଏକ ଦେଶ ପରିଚାଳନା କରୁଛନ୍ତି ।

ତଥାପି ଯେତେବେଳେ ନାରୀଟି ଝରକା ବାହାରକୁ ଅନଉଛି, ସେ ସେହି ଛବି ଦ୍ୱାରା ମୁଗ୍ଧ ହେଉଛି, ପୁଣି ପରସ୍ପର ବିରୋଧୀ ଭାବ ବି ତା' ମନରେ ଖେଳୁଛି । 'ଦ୍ୱିବିଧା'ର ଚରିତ୍ରଟି ଦୁଇ ପ୍ରକାର ଜୀବନ ମଧ୍ୟରେ ଦ୍ୱିଧା ବିଭକ୍ତ । ସେ ନିଜ ଭିତରେ ଏକ ଶୂନ୍ୟତା ଅନୁଭବ କରେ, କିନ୍ତୁ ଏହା କି ପ୍ରକାରର ବ୍ୟାକୁଳତା ସେ ଠିକ୍ ଭାବେ ଜାଣେନା । ସେ କି ପ୍ରକାର ଜୀବନ ଚାହେଁ ସେ ଜାଣେନା । ଅନେକ ସମୟରେ ମୁଁ ଏଇଆ ଅନୁଭବ କରିଛି । ବର୍ତ୍ତମାନ ମୁଁ ଅନେକ କିଛି ପଛରେ ଛାଡ଼ିଆସିଛି ଓ ସେ ଅଭିଜ୍ଞତାରୁ ମୁଁ ଜାଣେ ମୁଁ କେଉଁଠି କ'ଣ କରିବା ଉଚିତ୍ ।

ଆଶ୍ଚର୍ଯ୍ୟଜନକ ଭାବରେ ମୁଁ ପରୀକ୍ଷାରେ ଭଲ କରିଥିଲି । ମାତ୍ର ୟାପରେ କ'ଣ ? ଏଠୁ ମୁଁ କୁଆଡ଼େ ଯିବି ? ଏ ପ୍ରଶ୍ନ ମୋ ଭିତରେ ସମଗ୍ର ଜୀବନରେ ବାରମ୍ବାର ଦେଖାଦେଉଥିଲା, ବହୁ ବର୍ଷପରେ ମୋର ନୃତ୍ୟ ରଚନା 'ଅତଃ କିମ୍'ରେ ଏହା ରୂପ ନେଲା । ଏହା ଖୁବ୍ ମଜାର କଥା ଯେ ଆମ ମସ୍ତିଷ୍କ ପ୍ରିରେକର୍ଡେଡ୍ କ୍ୟାସେଟ୍ ସଦୃଶ ଆମର ପୂର୍ବ ଅଭିଜ୍ଞତାଗୁଡ଼ିକୁ ସଞ୍ଚିତ କରି ରଖିଥାଏ । ସଠିକ୍ ସ୍ଥାନରେ ସଠିକ୍ କ୍ୟାସେଟ୍‌ଟି ଖାପିଯାଏ, ଯେତେବେଳେ କି ମନୁଷ୍ୟ ଏକଥା ଆଦୌ ଆଶା କରିନଥାଏ । ସ୍କୁଲ୍ ଶେଷ କରିବା ପରେ ମୁଁ ଜୀବନର ଏକ ଚଉମୁହାଁଣିରେ ଆସି ଠିଆ ହେଇଗଲି, ଆଗର ରାସ୍ତା ମୋ ପାଇଁ ଅସ୍ପଷ୍ଟ ଥିଲା । ମୁଁ ଜୀବନରେ କ'ଣ କରିବି, ନ କରିବି ସେ ସଂପର୍କରେ ମୋର ହଜାର ଧାରଣା ଥିଲା, ମାତ୍ର ନୃତ୍ୟକୁ ମୁଁ ଆଦୌ ଅଗ୍ରାଧିକାର ଦେଉନଥିଲି । ସବୁବେଳେ ମତେ କେହି ନା କେହି ରାସ୍ତା ଦେଖଉଥିଲେ କାରଣ ମୋର ପିଲାଦିନ ଟିକେ ଅବଦମିତ ଥିଲା । ମୁଁ ସୁରକ୍ଷାର ଏକ ବୃହତ କୁହେଳିକାମୟ ବଳୟ ମଧ୍ୟରେ ବଞ୍ଚୁଥିଲି । ମୁଁ ସେହି କୁହେଳିକାର ବଳୟ ମଧ୍ୟରୁ ବାହାରି ନିଜକୁ ଆବିଷ୍କାର କରିବାକୁ ଚାହୁଁଥିଲି । ନିର୍ଦ୍ଦିଷ୍ଟ ଭାବରେ ମୁଁ ଶକ୍ତିଶାଳୀ ବୋଲି ଅନୁଭବ କରିବାକୁ ଚାହୁଁଥିଲି । ଗୋଟିଏ ବିଶାଳ ଜନସମୂହକୁ ନିୟନ୍ତ୍ରଣ କରିବାକୁ ଚାହୁଁଥିଲି । 'ଅତଃ କିମ୍'ରେ ମୁଁ ଶକ୍ତିଶାଳୀ ହେବାର ଇଚ୍ଛାକୁ ଆହ୍ୱାନ କରିଛି । ଥରେ ତୁମେ ତାକୁ ହାସଲ କରିସାରିବା ପରେ ତାକୁ ନେଇ କ'ଣ କରିବ ? ଥରେ ତୁମେ ତୁମର ଲକ୍ଷ୍ୟସ୍ଥଳରେ ପହଞ୍ଚି ସାରିଲା ପରେ, ସେଠୁ ତୁମେ କୁଆଡ଼େ ଯିବ ? ମାତ୍ର ଏ ପ୍ରଶ୍ନ ଯେ ଉତ୍ତରହୀନ, ଏ ପ୍ରଶ୍ନ ନିରୁତ୍ତର ରହିଯାଏ, କିନ୍ତୁ ମୁଁ ବିଶ୍ୱାସ କରେ ଯେ ପ୍ରଶ୍ନ ପଚରାଯିବା ଉଚିତ୍ ।

୧୫ ବର୍ଷ ବୟସରେ ମୋ ସମ୍ମୁଖରେ ବହୁତ ରାସ୍ତା ଥିଲା । ସହଜରେ କଲେଜରେ ମନସ୍ତତ୍ତ୍ୱ ବା ଇଂରାଜୀରେ ସ୍ନାତକ ବା ସ୍ନାତକୋତ୍ତର ଡିଗ୍ରୀ କରିପାରିଥାନ୍ତି । କିନ୍ତୁ ସମସ୍ତେ ତ ଏଇଆ କରନ୍ତି । ''ତମକୁ ସାଧାରଣଠୁ ଭିନ୍ନ କିଛି କରିବାକୁ ପଡ଼ିବ, ସମସ୍ତେ ଯାହା କରନ୍ତି ସେ ଘଷରା କାମଠୁଁ କିଛି ଅଲଗା'' ବୋଲି ମୋ ବାପା ମତେ କହିଲେ । ତେଣୁ ମୁଁ ଆଲ୍‌ହାବାଦର ନୈନୀଠାରେ କୃଷି ମହାବିଦ୍ୟାଳୟରେ ନାଁ ଲେଖେଇଲି । କ୍ଲାସର ମୋଟ ୩୦ ଜଣଙ୍କ ମଧ୍ୟରୁ ୨୯ ଜଣ ପୁଅ ଓ ମୁଁ ଜଣେ ମାତ୍ର ଝିଅ ଥିଲି । ସ୍କୁଲ ଜୀବନରୁ

ବାଳିକା ବିଦ୍ୟାଳୟରେ ପଢ଼ିଥିବାରୁ ପୁଅମାନଙ୍କର ଆଚାର, ଆଚରଣ ବିଷୟରେ ମତେ କିଛି ବି ଜଣା ନ ଥିଲା । ମୋ ଭାଇ ମୋଠୁଁ ସାତବର୍ଷ ସାନ ଥିଲା, ତେଣୁ ତା' ସାଙ୍ଗମାନେ ବି କୌଣସି କାମର ନ ଥିଲେ । ଯା'ହେଉ କୃଷି ମହାବିଦ୍ୟାଳୟରେ ମୋର ପୁଅ ଓ ଝିଅମାନଙ୍କ ମଧ୍ୟରେ ଥିବା ସଂପର୍କ ବିଷୟରେ କିଛି ଧାରଣା ହେଲା । ଆମକୁ ସାଇକେଲ୍‌ରେ ମାଇଲ୍ ମାଇଲ୍ ଧରି ଚାଷ ଜମିକୁ ଯିବାକୁ ପଡୁଥିଲା । ପୁଅମାନେ ମୋ ସାଇକେଲ୍‌ର ଟାୟାର୍‌ରୁ ହାଓ୍ୱା ବାହାର କରି ଦେଉଥିଲେ, ଯାହାଫଳରେ ମୋ ସହିତ ଚାଲି ଚାଲି ଫେରିପାରିବେ । ଫଳତଃ ମାଇଲ୍ ମାଇଲ୍ ଧରି ସାରା ରାସ୍ତା ନୂଆ ସିନେମା ଗୀତ, ଅଭିନେତାମାନଙ୍କ ବିଷୟରେ ମୂଲ୍ୟହୀନ କଥାବାର୍ତ୍ତା ହେଉଥିଲା ଯେଉଁଥିରେ ମୋର ତିଳେମାତ୍ର ଆଗ୍ରହ ନ ଥିଲା ।

ମୋର ସେଠିକାର ଅଧିକାଂଶ ପ୍ରଫେସର ଆମେରିକୀୟ ଥିଲେ ଓ ସେମାନଙ୍କ ଦ୍ୱାରା ମୁଁ ମଧ୍ୟ ପ୍ରଭାବିତ ଥିଲି । ସେମାନେ ହାଫପ୍ୟାଣ୍ଟ ପିନ୍ଧୁଥିଲେ କାରଣ ଆମକୁ ଜମିରେ ଫସଲ ସଙ୍ଗେ ସଙ୍ଗେ କାଦୁଅ, ସାର ଓ କୀଟନାଶକ ସହିତ କାମ କରିବାକୁ ପଡୁଥିଲା । ଦିନେ ମୁଁ ବି ହାଫ ପ୍ୟାଣ୍ଟ ପିନ୍ଧି ପହଞ୍ଚିଗଲି ଓ ୫୮ଟି ଆଖି ମୋ ଗୋଡ଼ରେ ଗଳିଯାଉଥାଏ । ମୋ ବୁଢ଼ୀମା ସବୁବେଳେ କହୁଥିଲେ ଝିଅମାନେ କେବେ ବି ଛାତି ଆଗକୁ କରିବା ଓ ଗୋଡ଼ ଅନାବୃତ କରିବା ଉଚିତ୍ ନୁହେଁ । ବର୍ତ୍ତମାନ ମୁଁ ବୁଝିପାରିଲି ସେ କ'ଣ କହୁଥିଲା । କିନ୍ତୁ ମୋ ମନ ତାକୁ ଯଥାର୍ଥ ବୋଲି ମାନି ପାରୁନଥିଲା । ମୁଁ ପଚାରିଲି – ତୁମେ ଯେଉଁ ଛୋଟ ବ୍ଲାଉଜ୍ ପିନ୍ଧୁଛ ସେଥିରେ ତୁମ ପିଠି ତ ଦିଶେ ।

''ଯୁକ୍ତି କରନା,'' ତାଙ୍କର ଉତ୍ତର ଥିଲା ।

କେବେ ଆମେ ଏକ ନାରୀ ଶରୀରର ମର୍ଯ୍ୟାଦା ବୁଝିବୁଁ ? ଜଣେ ନର୍ତ୍ତକୀକୁ ମର୍ଯ୍ୟାଦାର ସହିତ ଅଙ୍ଗ ଚାଳନା କରିବାକୁ ପଡ଼ିଥାଏ । ଏକ ନର୍ତ୍ତକୀ ପକ୍ଷରେ ଏହା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । କିନ୍ତୁ ଦୁଃଖର କଥା ଅଧିକାଂଶଙ୍କ କ୍ଷେତ୍ରରେ ବିଶେଷକରି ନାରୀମାନଙ୍କ ନିକଟରେ ଏହାର ଅଭାବ ପରିଲକ୍ଷିତ ହୁଏ କାରଣ ସମଗ୍ର ଜୀବନ ସେମାନେ ନିଜର ଶରୀରକୁ ଗୁପ୍ତ ରଖିବାକୁ ଶିଖିଥାନ୍ତି । ଅବଶ୍ୟ ମୋ ବୁଢ଼ୀମା'କୁ ଏ ଆଚରଣ ପାଇଁ ସଂପୂର୍ଣ୍ଣ ଦୋଷୀ ସାବ୍ୟସ୍ତ କରାଯାଇପାରିବ ନାହିଁ । ଏହା ଆମ ସମାଜର ସାମାଜିକ ସଂରଚନା ମଧ୍ୟରେ ପ୍ରବେଶ କରିଯାଇଥିବା ଏକ ସମସ୍ୟା । ଆମେ ଆମର ସମସ୍ତ (sense) ଇନ୍ଦ୍ରିୟାନୁଭବ ଗୁଡ଼ିକୁ ନ ଲୁଚେଇ ବରଂ ତା'ର ପୂର୍ଣ୍ଣ ଉପଯୋଗ କରିବା ଆବଶ୍ୟକ ।

ମୋ ବୁଢ଼ୀମା ସହିତ ମୋର ଆଉ ଏକ ବିଷୟରେ ଅଧିକାଂଶ ସମୟରେ ବିତର୍କ ହେଉଥିଲା – ତା' ହେଉଛି ଧର୍ମ ଓ ମନ୍ଦିର ଦର୍ଶନ । ସେ କହନ୍ତି, ''ପରୀକ୍ଷା ପୂର୍ବରୁ ମନ୍ଦିରକୁ ଯା, ଭଗବାନ ତତେ ପରୀକ୍ଷାରେ ଭଲକରିବାକୁ ଶକ୍ତି ଦେବେ ।'' ମୁଁ ଏକଥାକୁ ଏମିତି ଭାବରେ ଗ୍ରହଣ କରେ ଯେ ବାଞ୍ଛିତ ଫଳପ୍ରାପ୍ତି ପାଇଁ ବାହାରର ଶକ୍ତି ସହିତ ମୂଲାମୂଲି କରିବା ଦରକାର ! ଅନ୍ତର୍ନିହିତ ଶକ୍ତି କ'ଣ କାମ କରେନି ? ମୋ ପାଇଁ ଏହା

ବିଶ୍ୱାସ କରିବା କଠିନ ଥିଲା ଯେ କେବଳ ଭଗବାନଙ୍କ କୃପାରୁ ମୋତେ ଏ କ୍ଷମତା ମିଳିଛି । ମନ୍ଦିର ଗଲେ ଏହା ଆପଣଙ୍କର ଚେତନା ଶକ୍ତିକୁ ଜାଗ୍ରତ କରେ – ଆମେ ଏ ବିଷୟକୁ ଗୁରୁତ୍ୱର ସହିତ ନ ଭାବି ଅବଶ୍ୟମ୍ଭାବୀ ବୋଲି ଧରିନେଇଥାନ୍ତି । ଆପଣ ସ୍ଥାପତ୍ୟ କଳାର ସୌନ୍ଦର୍ଯ୍ୟ ଦେଖନ୍ତି ଏବଂ ପଥରର ମୋଟେଇ ଅନୁମାନ କରନ୍ତି । ଧୂପକାଠି, ଫୁଲ, ଚନ୍ଦନର ସୁଗନ୍ଧ ଏକତ୍ରିତ ହୋଇଯାଏ । ଆପଣ ଘଣ୍ଟିର ଧ୍ୱନି ଶୁଣନ୍ତି, ପଞ୍ଚାମୃତର ସ୍ୱାଦ ଚାଖନ୍ତି । ଆପଣ ଆପଣଙ୍କ ପାପୁଲି ଓ ପାଦର ତଳିପାରେ ବିଭିନ୍ନ ଚଟାଣକୁ ଛୁଅଁନ୍ତି । କି ଅଦ୍‌ଭୁତ ଅନୁଭୂତି ? କିନ୍ତୁ ଏଥିରେ ଭଗବାନଙ୍କ ସହିତ ମୂଳାମୂଳି କାହିଁକି – ସତେ ଯେମିତି ସେ ଗୋଟେ ଟ୍ରେଡ଼ିଂ କମ୍ପାନୀର ଏଜେଣ୍ଟ ? ବୁଢ଼ୀ ମା ସହିତ ଏ ଯୁକ୍ତିତର୍କ ଲାଭଦାୟକ ଥିଲା । କାରଣ ଏହି କାରଣରୁ ଏବେ ମୁଁ ସ୍ପର୍ଶକାତରତା ଓ ଭାବପ୍ରବଣତା ମଧ୍ୟରେ ପାର୍ଥକ୍ୟ ନିରୂପଣ କରିପାରୁଛି । ପରେ ମୁଁ 'ପଞ୍ଚ ପାରସ' ନାମରେ ଅର୍ଥାତ୍ ପଞ୍ଚ ଆବେଗ ନାମରେ ଏକ ନୃତ୍ୟ ରଚନା କରିଥିଲି ଯେଉଁଥିରେ ଆବେଗର ସଂସାରକୁ ଆବିଷ୍କାର କରିବାକୁ ଚେଷ୍ଟା କରାଯାଇଥିଲା ।

କୃଷି ବିଜ୍ଞାନରେ ୧୮ ବର୍ଷ ବୟସରେ ସ୍ନାତକ କରିସାରିଲା ପରେ ମୋ ହାତରେ ଗୋଟେ ଦି'ଟା ଚାକିରିର ସମ୍ଭାବନା ଥିଲା, ଆଉ ମୁଁ ପୁଣି ଥରେ ଜୀବନର ଦୋଛକିରେ ଠିଆ ହୋଇଥିଲି । ସୌଭାଗ୍ୟବଶତଃ ବିନା ଡାକରାରେ ମୋ ସୁଦିନ ଆସି ଉପସ୍ଥିତ ହେଲା । ଘଟଣାଟି ବମ୍ବେରେ ଘଟିଲା । ମୁଁ ମୋ ସାନଭାଇକୁ ଟ୍ରେନ୍‌ରେ ଚଢ଼େଇବା ପାଇଁ ଷ୍ଟେସନକୁ ଯାଇଥିଲି । ସେ ନୈନିତାଲର ସେରଉଡ୍ କଲେଜରେ ପଢୁଥିଲା । ଅଦୃଶ୍ୟ ହେଇଯାଉଥିବା ଟ୍ରେନ୍‌କୁ ଚାହିଁ ହାତ ହଲାଉଥିବାବେଳେ ମୋ କାନ୍ଧରେ କିଏ ଟିପା ମାରିଲା । ମୁଁ ବୁଲି ଦେଖିଲି ଏବଂ ସେଠି ଠିଆ ହେଇଥିବା ମହିଳା ଜଣକ ମୋ ଜୀବନ ଶୈଳୀକୁ ପରିବର୍ତ୍ତନ କରିଦେଲେ । ସତେ ଯେମିତି ନୃତ୍ୟ ଶିକ୍ଷା ସମୟର ସେ ସବୁ ଦୀର୍ଘ କ୍ଳାନ୍ତିକର ମୁହୂର୍ତ୍ତ ସବୁ ଏକ ନୂତନ ଶକ୍ତିରେ ରୂପାନ୍ତରିତ ହେଇଯାଉଛି । ସେ ମହିଳା ଜଣକ କୋମଲତା ଦତ୍ତ, ମୋ ବାପାଙ୍କର ବନ୍ଧୁ । କିନ୍ତୁ ୟାଠୁଁ ଗୁରୁତ୍ୱପୂର୍ଣ୍ଣ କଥା ହେଲା ଯେ ଉଦୟ ଶଙ୍କରଙ୍କୁ ନୃତ୍ୟ ସମ୍ରାଟ ଅନ୍ନାପାବଲୋବାଙ୍କ ସହିତ ପ୍ୟାରିସ୍‌ରେ ଏହି ମହିଳା ଜଣକ ପରିଚୟ କରେଇ ଦେଇଥିଲେ । ଏଠି ସେ ମୋ ସାମନାରେ, ମତେ କହୁଛନ୍ତି ଯେ ରାମଗୋପାଳଙ୍କର ଲଣ୍ଡନ ସ୍ଥିତ ନୃତ୍ୟ କମ୍ପାନୀରେ ମୁଁ ଯୋଗ ଦିଏଁ ।

ପେଶାଦାର ନର୍ତ୍ତକ ଏବଂ ଗାୟକମାନଙ୍କର ଏକ ଦଳ ସହିତ ଖାପଖୁଆଇ କାମକରିବାପାଇଁ ମତେ କିଛି ଶିଖିବାକୁ ପଡ଼ିଲା । ସବୁବେଳେ ଆମେ ଗୋଟେ ଯାଗାରୁ ଆଉ ଏକ ଯାଗାକୁ ଯାଉଥାଉ । ନୃତ୍ୟ ଶିକ୍ଷାର ସଂପୂର୍ଣ୍ଣ ଏକ ଭିନ୍ନ ଦିଗକୁ ଜାଣିବାର ସୁଯୋଗ ମତେ ମିଳିଲା । କେରଳର କୁମ୍ମି, ରାଜସ୍ଥାନର ଘୁମୁର୍, ଗୁଜରାଟର ଦାଣ୍ଡିଆପରି ଅନେକ ନାଚ ମତେ ଶିଖିବାକୁ ପଡ଼ିଲା – କାରଣ ଏସବୁ ଆମ ନୃତ୍ୟଦଳକୁ କରିବାକୁ ପଡୁଥିଲା । ସ୍ୱୟଂ ରାମ ଗୋପାଳଙ୍କଠାରୁ ଶାସ୍ତ୍ରୀୟ ଭାରତ ନାଟ୍ୟମ୍ ଶିକ୍ଷା ମୋ ପାଇଁ ସବୁଠାରୁ ଆନନ୍ଦ ଦାୟକ ବିଷୟ ଥିଲା । ସେ ବହୁତ କଡ଼ା ଶୃଙ୍ଖଳାରେ ବିଶ୍ୱାସୀ ଥିଲେ ଓ

କଳାର ପୂର୍ଣ୍ଣତାକୁ ଆରାଧନା କରୁଥିଲେ । ଶେଷରେ ସେ କହିଲେ ''ତୁମେ ଟେକ୍‌ନିକ ଗୁଡ଼ିକ ସଠିକ୍ ଭାବରେ ଶିଖିଯାଇଛ, ଏବେ ଏହାକୁ ପ୍ରଦର୍ଶନ କର ଓ ନାଚ ।'' ଏହି କଥାଟି ମୁଁ ମୋ ଛାତ୍ରମାନଙ୍କୁ ଶିଖେଇବାକୁ ଚେଷ୍ଟା କରିଛି ଯେ ତୁମେ ନୃତ୍ୟରେ ଯେଉଁ ପରୀକ୍ଷା ନିରୀକ୍ଷା କରିବାକୁ ଚାହୁଁଛ ତା' କରିବା ପୁର୍ବରୁ ନିଜେ ସେହି ଟେକ୍‌ନିକ୍‌ରେ ଓସ୍ତାଦ୍ ହେବା ଆବଶ୍ୟକ ।

ରାମଗୋପାଳଙ୍କ ସହିତ ଯାତ୍ରା କରିବା ଭିତରେ ମୁଁ କେବଳ ନୃତ୍ୟ ବିଷୟରେ କିଛି ଅଧିକ ଶିକ୍ଷାକଲି ତା'ନୁହେଁ ମୁଁ ମୋ ନିଜ ବ୍ୟକ୍ତିତ୍ୱ ସଂପର୍କରେ ବହୁ ନୂତନ ତଥ୍ୟ ଆବିଷ୍କାର କଲି । ବିଭିନ୍ନ ଦେଶର ଲୋକଙ୍କ ସଂସ୍ପର୍ଶରେ ଆସି ତୁମେ ନିଜକୁ ଗୋଟେ ନୂଆ ଦୃଷ୍ଟିକୋଣରୁ ଦେଖିବାର ସୁଯୋଗ ପାଅ । ମୁଁ ଦେଖିଲି ଯେତେବେଳେ ସେତେବେଳେ ମୋର ଦୋଷ–ଦୁର୍ବଳତା ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରାଯାଉଛି । ମୁଁ ବିଷୟଗୁଡ଼ିକର ଗୁରୁତ୍ୱ ହୃଦୟଙ୍ଗମ କରିପାରିଲି । କେମିତି ଜିନିଷଟିର ସ୍ଥାନ ପରିବର୍ତ୍ତନ କରିଦେଲେ ସବୁକିଛି ଆପେ ବଦଳିଯାଏ । ମୋ ପାଇଁ ଆମ ଯାତ୍ରାର ସବୁଠାରୁ ହୃଦୟ ବିଦାରକ ମୁହୂର୍ତ୍ତ ଥିଲା ଯୁଦ୍ଧ ପରର ଜର୍ମାନୀରେ ବିତେଇଥିବା ସମୟ । ଏହା ଅବିଶ୍ୱାସ୍ୟ ଭାବରେ ଏକ ଦୁଃଖଦ ସ୍ଥାନ ଥିଲା । ଭାରତରେ କ୍ଷୁଧାର୍ତ୍ତ ପିଲା ଖାଇବା ପାଇଁ ଭିକମାଗିବା ଏକ ସାଧାରଣ ଦୃଶ୍ୟ । କିନ୍ତୁ ଜର୍ମାନୀରେ ସେଇ ସମାନ ଦୃଶ୍ୟ ଏକ ଭିନ୍ନ ଶିହରଣ ସୃଷ୍ଟି କରୁଥିଲା । ମତେ ଆଶ୍ଚର୍ଯ୍ୟ ଲାଗୁଥିଲା ଯେ କିପରି ସମାନ ପରିସ୍ଥିତି ଭିନ୍ନ ପରିବେଶରେ ପୃଥକ ପ୍ରତିକ୍ରିୟା ଉଦ୍ଦୀପିତ କରେ, ନୃତ୍ୟରେ ସେଇ ସମାନ କଥା ଘଟେ । ଆପଣ ମଞ୍ଚରେ ନୃତ୍ୟ ପ୍ରଦର୍ଶନର ସ୍ଥାନ ପରିବର୍ତ୍ତନ କରିଦିଅନ୍ତୁ, ଏହା ସଂପୂର୍ଣ୍ଣ ଭିନ୍ନ ଦିଶିବ ଓ ଏହାର ପ୍ରଭାବ ଭିନ୍ନ ପ୍ରକାର ହେଇଯାଏ । ମୁଁ ନିଜେ ପରିବର୍ତ୍ତିତ ପରିବେଶରେ ପୃଥକ ମଣିଷଟିଏ ପାଲଟିଯାଏ ।

ମୁଁ ପ୍ରାୟତଃ ସର୍ବଦା ସେତେବେଳେ ଭାରତ ଓ ବିଶ୍ୱର ବିଭିନ୍ନ ସ୍ଥାନକୁ ଯିବା ଆସିବା କରୁଥିଲି ଓ କ୍ଳାନ୍ତିର ଲେଶ ମାତ୍ର ଚିହ୍ନ ନ ଥିଲା । କିନ୍ତୁ ଆଜି ୟୁରୋପର କେତେକ ଦେଶ ଏବଂ ଆମେରିକାର ଲମ୍ବା ଯାତ୍ରାରେ ମୁଁ କ୍ଳାନ୍ତ ହେଇଯାଏଁ । ସର୍ବମୋଟ ମୁଁ ବିଦେଶରେ ୩ବର୍ଷ ରହିଲି ଆଉ ଶେଷରେ ମୋର ଘରକୁ ଫେରିବାକୁ ଇଚ୍ଛା ହେଲା । କିନ୍ତୁ ଘର କାହିଁ ? ଆଉ କେମିତି ଜଣେ ନିଜପାଇଁ ଘର ତିଆରି କରେ ? ଘର କିଣିଲ, ବାହାହେଲ, ଛୁଆ ହେଲେ, ବନ୍ଧୁ ହେଲେ, ବାସ୍ ? ମୋ ପାଖରେ କେବଳ ତାଲିକାର ଶେଷ ବସ୍ତୁଟି ଥିଲା । ଲାହୋର ସ୍କୁଲରେ ପଢ଼ିବାବେଳେ ମୁଁ ଅନେକ ବନ୍ଧୁ କରିଥିଲି, ବର୍ତ୍ତମାନ ସେମାନେ ସମସ୍ତେ ଆଉ ଗୋଟେ ଦେଶରେ ରୁହନ୍ତି – ପାକିସ୍ଥାନ । ସପ୍ତାହ ଶେଷରେ ମୁଁ ଯଦି ମୋର ଘନିଷ୍ଠତମ ବନ୍ଧୁ ସହିତ ଦେଖା କରିବାକୁ ଚାହିଁବି – ମତେ ଭିସା କରିବାକୁ ପଡ଼ିବ । ମୁଁ କହିବାକୁ ଚାହେଁ ଯେ ମୁଁ ରାଜନୀତିଠୁଁ ଦୂରରେ ରହେଁ । କିନ୍ତୁ ଯା ଭିତରେ ମୁଁ ଜାଣିସାରିଲିଣି ଯେ ରାଜନୀତି ଏମିତି ଏକ ଅତିଥି ଯେ ବିନା ନିମନ୍ତ୍ରଣରେ ଆସି ତମ ପାଖରେ ହାଜିର ହେଇଯାଏ ।

ଶେଷଥର ଭାରତକୁ ଫେରିବାପରେ ମୋ ପାଇଁ ଯାହା ଅପେକ୍ଷା କରିଥିଲା, ତା' ଥିଲା ବିବାହ, ସନ୍ତାନ ଓ ବମ୍ବେରେ ଏକ ଫ୍ଲାଟ୍ । ଅବଶେଷରେ ମୋର ବି ଗୋଟେ ଘର ହେଲା । କିନ୍ତୁ ତା'ର ବହୁତ ଦାୟିତ୍ୱ ଥିଲା, ମୋତେ ଏ ନୂଆଘର ଚଳେଇବାର ଦାୟିତ୍ୱ ନେବାକୁ ପଡ଼ିଲା । ଆମମାନଙ୍କ ସମାଜରେ ମହିଳାଟିଏ ଘର ବାହାରେ କାମ କରିବାକୁ ଚାହିଁଲେ, ଘରର ସମସ୍ତ ଦାୟିତ୍ୱ ତୁଲେଇବାପରେ ସେ କରିପାରେ । ଏହା ମତେ ସହଜରେ ବିସ୍ମୟ ବିମୂଢ଼ କରିଥିଲା । ତେବେ ଏ କ୍ଷେତ୍ରରେ ବି ସେମିତି କିଛି ମନ୍ଦ ନଥିଲି । ମତେ ସବୁ କାମରେ ସହଯୋଗ କରୁଥିବା ସ୍ୱାମୀ ରଜନୀକାନ୍ତଙ୍କୁ ମୁଁ ଏଥିପାଇଁ ଧନ୍ୟବାଦ ଦିଏଁ । ସେ ଏମିତି ଏକ ପରିବାରରେ ବଢ଼ିଛନ୍ତି ଯେଉଁଠି ପୁରୁଷମାନଙ୍କୁ ଏକ ସ୍ୱତନ୍ତ୍ର ଗୋଷ୍ଠୀ ଭାବରେ ଜ୍ଞାନ କରାଯାଏ । ମାତ୍ର ସେ ଜଣେ ଭଲ ଲୋକ ଥିଲେ, ତାଙ୍କର ସବୁକଥାକୁ ବିଶ୍ୱାସ କରିବାର ଏକ ଅସାଧାରଣ ଗୁଣ ଥିଲା । ତାଙ୍କର ଶବ୍ଦକୋଷରେ 'ସନ୍ଦେହ' ନାମକ ଶବ୍ଦର ସ୍ଥାନ ନ ଥିଲା । ଏଥିପାଇଁ ସେ ଖୁବ୍ ଲୋକପ୍ରିୟ ଥିଲେ । କିନ୍ତୁ ପ୍ରଫେସନ୍‌ରେ ଓ ପିତା ଭାବରେ ତାଙ୍କୁ ସଫଳତା ମିଳୁ ନ ଥିଲା । କିନ୍ତୁ ସେ ଜଣେ ଖୁବ୍ ସହଯୋଗୀ ସ୍ୱାମୀ । ତାଙ୍କ ସଂସ୍ପର୍ଶରେ ଆସି ମୋର ସବୁଠୁ ବଡ଼ ଲାଭ ହେଉଥିଲା ଯେ ସେ ମୋ ଭିତରେ ସଙ୍ଗୀତ ପ୍ରତି ଅନୁରକ୍ତି ଜାଗ୍ରତ କରିଥିଲେ । ସେ ଯଦି ସଙ୍ଗୀତକୁ ତାଙ୍କର ପ୍ରଫେସନ୍ ଭାବରେ ଗ୍ରହଣ କରିଥାନ୍ତେ ତେବେ ଜୀବନରେ ହୁଏତ ଆଉରି ସଫଳତା ପାଇଥାନ୍ତେ । କିନ୍ତୁ ଲଣ୍ଡନର ଲିଙ୍କନ'ସ ଇନ୍‌ରୁ ଆଇନ୍ ବିଦ୍ୟା ଶିକ୍ଷା କରି ସେ ଭୁଲ୍ ପ୍ରଫେସନ୍‌ରେ ପାଦ ଦେଲେ ।

ଭଗବାନଙ୍କ ଆଶୀର୍ବାଦରୁ ମୋର ସୁନ୍ଦର ସୁଖୀ ପରିବାରଟିଏ – ଦୁଇଟି ସୁସ୍ଥ ସୁନ୍ଦର ପିଲା – ମୋ ପୁଅ ଶ୍ରୀରାଜ ଏବଂ ଝିଅ ମୈତ୍ରେୟୀ । ଏବେ ସେମାନେ ବିବାହିତ ଓ ନିଜ ଛୁଆପିଲାଙ୍କ ସହିତ ସୁଖରେ ଅଛନ୍ତି । ପଛକୁ ଫେରି ଚାହିଁଲେ ମତେ ଆଶ୍ଚର୍ଯ୍ୟଲାଗେ, ମା' ଭାବରେ ଏମାନଙ୍କୁ କଣ ଦେଇ ପାରିଛି ? ମାତ୍ର ଯାହା ଦେଇଛି ତାହା ନିଶ୍ଚୟ ସନ୍ତୋଷଜନକ, ନହେଲେ ଏମିତି ସଫଳତା ମିଳିଥାନ୍ତା କେମିତି ? ଦି' ଜଣଯାକ ତାଙ୍କ ଆଚାର, ବ୍ୟବହାର ଓ ଜୀବନପ୍ରତି ଦୃଷ୍ଟିକୋଣ ଦିଗରୁ କେତେ ପୃଥକ ? ଜଣକର ଆଶା ଆକାଂକ୍ଷା ବିରାଟ ତ ଆର ଜଣକ ଭାଗ୍ୟ ହାତରେ ସବୁକିଛି ଛାଡ଼ିଦିଏ । ମାତ୍ର ଦିଜଣଯାକ ଗୋଟିଏ କଥାରେ ଏକମତ ଥିଲେ – ମୋ ଫଫେସନ୍ ପ୍ରତି ଅସମ୍ମତି । ପରିବାର ଭିତରେ ଏପରି ମତ ପାର୍ଥକ୍ୟ ଖୁବ୍ ମଜାର । ଗୋଟିଏ ଛାତ ତଳେ ଭିନ୍ନ ଭିନ୍ନ ବ୍ୟକ୍ତିତ୍ୱର ଲୋକଙ୍କ ସହିତ ବାସ କରିବା ଠିକ୍ ଗୋଟିଏ ମଞ୍ଚରେ ବିଭିନ୍ନ କଳାକାରଙ୍କ ସହିତ ନୃତ୍ୟ ପ୍ରଦର୍ଶନ କରିବା ପରି । ସେ ପରିସ୍ଥିତିରେ ନର୍ତ୍ତକମାନଙ୍କ ମଧ୍ୟରେ ଏକ ସମାନତା ଆଣିବା, ସ୍ଥାନ ନିରୂପଣ କରିବା ତଥା ପରସ୍ପର ମଧ୍ୟରେ ସ୍ପନ୍ଦନ ଓ ସଂପର୍କକୁ ଖୁବ୍ ଗୁରୁତ୍ୱ ସହକାରେ ବିଚାର କରିବାକୁ ହୁଏ । ତୁମେ ଆଉ ଏକାକୀ ପ୍ରଦର୍ଶନ କରୁନାହଁ । ତୁମେ ଗୋଟେ ବିରାଟ ଭାବମୂର୍ତ୍ତିର ଅଂଶ, ତେଣୁ ତୁମର ପ୍ରଦର୍ଶନକୌଶଳରେ ଏହି ନୂତନତା ପ୍ରସ୍ଫୁଟିତ ହେବା ଆବଶ୍ୟକ ।

ବିବାହ ଓ ଛୁଆ ଦୁହିଙ୍କ ଜନ୍ମପରେ ମୁଁ କିଛି ଦିନ ପାଇଁ ନୃତ୍ୟ ଛାଡ଼ି ଦେଇଥିଲି, ମାତ୍ର ହୃଦୟଙ୍ଗମ କରିଲି ଯେ ମୁଁ ସଂପୂର୍ଣ୍ଣ ଛାଡ଼ି ପାରିବି ନାହିଁ । ହୃଦୟଙ୍ଗମ କଲି ଯେ କଥକ ପ୍ରତି ମୁଁ ଗୋପନରେ ଅନୁରକ୍ତ ହେଇ ପଡ଼ିଛି ଯାହା ସହଜରେ ଯିବାର ନୁହେଁ । କଥକ, କାଙ୍ଗଡ଼ା ଓ ରାଜସ୍ଥାନର ସୂକ୍ଷ୍ମ ଚିତ୍ରକଳା ସଦୃଶ। କାଶ୍ମୀରର ଜାମଓ୍ୱାଡ଼ ସାଲ୍‌ର ସୂକ୍ଷ୍ମ ସିଲେଇ (ସୂତାକାମ) ପରି । ଏ ନୃତ୍ୟରେ ଏପରି କିଛି ଅଛି ଯାହା ଅନ୍ତରର ଗଭୀରତାକୁ ଛୁଏଁ ଓ ଏହାର ଶୈଳୀରେ ଅଛି ସୂକ୍ଷ୍ମତା ଓ କୋମଳତା । ମୁଁ ନିଷ୍ପତ୍ତି ନେଲି, କଥକକୁ ଅଧିକ ଗଭୀରଭାବେ ଅଧ୍ୟୟନ କରିବି । ଗୁରୁ ଶମ୍ଭୁ ମହାରାଜ ମତେ ଶିଷ୍ୟା ଭାବେ ନୂଆ ଦିଲ୍ଲୀର ଭାରତୀୟ କଳାକେନ୍ଦ୍ରରେ ଶିକ୍ଷାଦେଲେ । ମୋର ଦୁଇବର୍ଷ ଜାତୀୟ ଛାତ୍ର ବୃତ୍ତି ନେଇ ତାଙ୍କ ସହିତ ଗଭୀର ଅଧ୍ୟୟନ କରିବାର ଥିଲା । ମୁଁ ଦିଲ୍ଲୀରେ କୌଣସି ରହିବା ସ୍ଥାନର ବ୍ୟବସ୍ଥା ନ କରି ପହଞ୍ଚିଗଲି । କନ୍‌ଟ ପ୍ଲେସ୍ ପାଖରେ ରହିବାପାଇଁ ଗୋଟେ ଭଲ ଯାଗା ମିଳିଗଲା । ଏହା ଏକ ପ୍ରକାରର ମହିଳାମାନଙ୍କ ରହିବା ପାଇଁ ପେଇଂ ଗେଷ୍ଟ ଟାଇପ୍‌ର ଥିଲା । ମୁଁ ଭାବୁଛି, ଝିଅମାନେ ଖୁବ୍ ବନ୍ଧୁଭାବାପନ୍ନ ଥିଲେ । ସେମାନେ ସେଦିନ ସନ୍ଧ୍ୟାରେ ପାର୍ଟିକୁ ବି ମତେ ନିମନ୍ତ୍ରଣ କଲେ । ସୌଭାଗ୍ୟ କେବେ ଦୀର୍ଘସ୍ଥାୟୀ ହୁଏନା । ମୁଁ ଖୁବ୍ ଶୀଘ୍ର ଆବିଷ୍କାର କଲି ଯେ ସେ ଝିଅମାନେ ନୈତିକି ଦୃଷ୍ଟିକୋଣରୁ କୌଣସି ସନ୍ଦେହଜନକ ପେଶାରେ ଲିପ୍ତ । ପରଦିନ ମୁଁ ଯେତେବେଳେ ନୃତ୍ୟ କେନ୍ଦ୍ରକୁ ଗଲି କେନ୍ଦ୍ରର ସଭାପତି ଶ୍ରୀମତୀ ସୁମିତ୍ରା ଚରତ୍ରାମ 'ମୁଁ ଅସୁସ୍ଥ କି' ବୋଲି ପଚାରିଲେ । ନିଃସନ୍ଦେହରେ ମୁଁ ବିବ୍ରତ ଥିଲି ବୋଲି ମୋ ମୁହଁରୁ ଜାଣି ହେଉଥିଲା । ମୋ ସମସ୍ୟା ବିଷୟରେ ଶୁଣିସାରିବାପରେ ସେ ତାଙ୍କ କାର୍‌ରେ ମତେ ବସେଇଲେ, ମୁଁ ଯେଉଁଠି ରହୁଥିଲି ସେଠିକି ଗଲେ ଓ ମୋର ସମସ୍ତ ଜିନିଷ ବନ୍ଧାବନ୍ଧି କରି ନେଇ ଆସିଲେ । ମୁଁ ତାଙ୍କ ସହିତ ତାଙ୍କ ପରିବାରର ଜଣେ ପରି ଦି ବର୍ଷ କାଳ ରହିଲି । ବର୍ତ୍ତମାନ ତାଙ୍କ ପରି ଲୋକ କଣ ମିଳିବେ ଯିଏ ଜଣେ ଅପରିଚିତକୁ ଉନ୍ମୁକ୍ତ ହୃଦୟରେ ଦୁଇ ବାହୁ ପ୍ରସାରି ଗ୍ରହଣ କରିନେବେ ? ଏହି ଆପଣାପଣର ଅନୁଭବ ନୃତ୍ୟକୁ ପ୍ରଫେସନ୍ ଭାବେ ଗ୍ରହଣ କରିବାର ସିଦ୍ଧାନ୍ତକୁ ପୁନଃପୁଷ୍ଟ କଲା ।

ସେ ନୃତ୍ୟ ବିଶାରଦଙ୍କ ସହିତ ତିନି ବର୍ଷର ପ୍ରଶିକ୍ଷଣ ଅମୂଲ୍ୟ ଥିଲା । ନାଚକୁ ଛାଡ଼ି ତାଙ୍କ ଜୀବନ ଗାଥା ବିଷୟରେ ସେ ଯେତେବେଳେ କହନ୍ତି ସେ ବର୍ଣ୍ଣନାରୁ ବି ମୁଁ ବହୁତ କଥା ଶିଖିଲି । ଶମ୍ଭୁ ମହାରାଜ କେବଳ ଜଣେ ଓସ୍ତାଦ ନର୍ତ୍ତକ, ଶିକ୍ଷକ ବା ଗାୟକ ନ ଥିଲେ, ସେ ଥିଲେ ଜଣେ ଅବିଶ୍ୱାସ୍ୟଭାବରେ ପ୍ରଭାବଶାଳୀ ବ୍ୟକ୍ତି । ସେ ସାଧାରଣ ଘଟଣାକୁ ବି ଉଚ୍ଛ୍ୱସିତ ଭାବରେ ଅଳଂକୃତ ଭାଷାରେ ଚମତ୍କାର କରି ବର୍ଣ୍ଣନା କରନ୍ତି । ମୁଁ ମହାରାଜଜୀଙ୍କ ଠାରୁ ଶିଖିଲି ଯେ କୌଣସି କାହାଣୀର ବିଷୟବସ୍ତୁ ଆକର୍ଷଣୀୟ ହେବା ପାଇଁ ଖୁବ୍ ଆଡ଼ମ୍ବର ପୂର୍ଣ୍ଣ ବା ଜଟିଳ ହେବାର ଆବଶ୍ୟକତା ନାହିଁ। ବରଂ ଏହା ଯେପରି ଭାବେ ଉପସ୍ଥାପିତ ହୁଏ ତା' ଉପରେ ନିର୍ଭର କରେ ତାର ବିଶିଷ୍ଟତା । ପରେ ଜଣେ ନୃତ୍ୟ ନିର୍ଦ୍ଦେଶିକା ଭାବରେ 'ଶବ୍ଦ' ଏବଂ 'ଶକ୍ତି' ପରି ଖୁବ୍ ସରଳ ବିଷୟ ଉପରେ ଗୁରୁତ୍ୱ ଦେଇ ମୁଁ ଦର୍ଶକ ମାନଙ୍କୁ ସାରା ସନ୍ଧ୍ୟା ବାନ୍ଧି ରଖି ପାରିଥିଲି ।

ଦିଲ୍ଲୀରେ ମୋର ପ୍ରଶିକ୍ଷଣ ସମୟରେ 'ଭାରତୀୟ କଳାକେନ୍ଦ୍ର' 'ନୃତ୍ୟ ନାଟିକା' (ଡ୍ୟାନ୍ସ ବାଲେ) ପ୍ରସ୍ତୁତ କରିବା ଆରମ୍ଭ କଲା । ୧୯୦୯ରେ ଜାତୀୟ ନୃତ୍ୟ ଉତ୍ସବରେ ପ୍ରଥମ ନାଟିକା 'ମାଳତୀ ମାଧବ' ପ୍ରଦର୍ଶିତ ହେଲା । ପ୍ରତ୍ୟେକ ଏହାର ନିର୍ମାଣ ସଂପର୍କରେ ପରାମର୍ଶ ଦେଉଥିଲେ ଯଦିଓ କାହାର ନିର୍ମାଣ ସଂପର୍କରେ କୌଣସି ଜ୍ଞାନ ନଥିଲା । କିଛି ଲୋକ କହିଲେ, 'ଭଲ ହେଇଛି, ମାତ୍ର ମୋ ଦୃଷ୍ଟିରେ ଏହା ସଂପୂର୍ଣ୍ଣ ହତାଶ ଜନକ ଥିଲା । ମୁଁ ମୋ ନିଜ ନାୟିକ ଭୂମିକା 'ମାଳତୀ' କରିବାରେ ଆଦୌ ସହଜ ହେଇପାରୁନଥିଲି, କାରଣ ମୁଁ ଚରିତ୍ରମାନଙ୍କ ଭିତରେ ଥିବା ସଂପର୍କକୁ ବୁଝିପାରିନଥିଲି । ନୃତ୍ୟରେ ଏହା ଖୁବ୍ ଗୁରୁତ୍ୱପୂର୍ଣ୍ଣ ଯେ ପ୍ରତ୍ୟେକେ ନିଜକୁ ସମଗ୍ରର ଏକ ଅଂଶ ଭାବେ ହୃଦୟଙ୍ଗମ କରିବା ସହିତ ଏକକର ସମଷ୍ଟିରେ ଗଠିତ ଏ ଗୋଷ୍ଠୀ ଏକତ୍ର ଗୋଟିଏ ସତ୍ତାପରି ଗତିଶୀଳ ହେବେ । ଏଥିରେ ସଫଳ ହେବା ଅତ୍ୟନ୍ତ କଠିନ କାରଣ ପାରମ୍ପରିକ ଭାରତୀୟ ଶାସ୍ତ୍ରୀୟ ନୃତ୍ୟରେ ପ୍ରତ୍ୟେକ ଛାତ୍ରକୁ ଏକକଭାବେ ନୃତ୍ୟ କରିବାର ପ୍ରଶିକ୍ଷଣ ଦିଆଯାଏ । ଦଳଗତ ବା ଗୋଷ୍ଠୀଗତ ନୃତ୍ୟ ପାଇଁ କୌଣସି ନୃତ୍ୟ ପ୍ରଶିକ୍ଷଣର ଧାରଣା ବା ବ୍ୟବସ୍ଥା ତଥା ନୃତ୍ୟ ନିର୍ଦ୍ଦେଶନା ପ୍ରଶିକ୍ଷଣ ବ୍ୟବସ୍ଥା ଭାରତରେ ନାହିଁ । ନୃତ୍ୟ ନିର୍ଦ୍ଦେଶନାରେ ହାତ ଦେଇଥିବା ଅଧିକାଂଶ ନିର୍ଦ୍ଦେଶକ ନିଜେ ନିଜେ ଶିଖିଛନ୍ତି । ପରିଣତି ସ୍ୱରୂପ ଏହା ସାଧାରଣତଃ ବିଦ୍ୟମାନ ଶୈଳୀର ପୁନର୍ଯୋଜନା ଓ ମଞ୍ଚରେ ବିଭିନ୍ନ ଦିଗରେ ଦଳେ କଳାକାରଙ୍କର ଏକକ ପ୍ରଦର୍ଶନର ସାମୂହିକ ଦୃଶ୍ୟ ଛଡ଼ା କିଛି ନୁହେଁ । ନୃତ୍ୟ ନିର୍ଦ୍ଦେଶନା ଯା ଠାରୁ ଅନେକ କିଛି ଅଧିକ । ତୁମେ ଜାଣିଥିବା ସବୁଠାରୁ ଭଲ ଟେକ୍ନିକ୍‌କୁ ପ୍ରୟୋଗ କରି ନିଜ ଭାବନାକୁ ନୃତ୍ୟ ଶୈଳୀରେ ଅନୁବାଦ କରିବା ହିଁ ନୃତ୍ୟ ନିର୍ଦ୍ଦେଶନା ।

କଥକରେ ପ୍ରଶିକ୍ଷଣ ପରେ ମୋ ସାମ୍ନାରେ ଏକମାତ୍ର ସ୍ୱାଭାବିକ ପ୍ରଫେସନ୍ ଥିଲା ନୃତ୍ୟ । ଭାରତର ବିଭିନ୍ନ ସ୍ଥାନରେ ମୁଁ ଏକକ ନୃତ୍ୟ ପ୍ରଦର୍ଶନ କରିଥାନ୍ତି ଯାହାକୁ ସଂଗୀତ ସମ୍ମିଳନୀ କୁହାଯାଏ । ମଞ୍ଚ ଅବସ୍ଥା ଥିଲା ଖରାପ । ଆଲୋକପାତ ସଂପର୍କରେ କୌଣସି ଧାରଣା ହିଁ ନଥିଲା – କେବଳ ମଞ୍ଚକୁ ଆଲୋକିତ କରାଯାଉଥିଲା । ଯଦି ଆଲୁଅବାଲାକୁ କିଛି ଅଧିକ ଟଙ୍କା ଦିଆଯାଉଥିଲା ତେବେ ସେ ଗୋଟେ ବୃତ୍ତାକାର ଯନ୍ତ୍ର ନେଇ ଆସି ଗୋଲ ଗୋଲ ଘୂରଉଥିଲା । ଯାହା ଫଳରେ ନର୍ତ୍ତକ ଦିଶୁଥିଲା ଲାଲ, ସବୁଜ, ନୀଳ, ହଳଦିଆ ବା ଗୋଲାପୀ ରଙ୍ଗର । ଅଧିକାଂଶ ସମୟରେ ଦର୍ଶକମାନେ ଯା ଦ୍ୱାରା ସନ୍ତ୍ରସ୍ତ ହେଉଯାଉଥିଲେ । ମୁଁ ଯା ଭିତରେ ଲକ୍ଷ୍ୟକଲି ଯେ ଭାରତର ଦର୍ଶକମାନେ ଠିକ୍ ଭାବରେ ବାଛବିଚାର କରିପାରନ୍ତି ନାହିଁ । ସେମାନେ ନୃତ୍ୟରେ ଠିକ୍‌ଭାବରେ ଆଗ୍ରହୀ ନୁହଁନ୍ତି, ଯେତେବେଳେ ସେତେବେଳେ ଭୁଲ୍ ସ୍ଥାନରେ ତାଳି ମାରନ୍ତି । କିଛି ଦିନପରେ ମୁଁ ଆଶ୍ଚର୍ଯ୍ୟ ହେଇ ଭାବିଲି ଯେ ଏମାନଙ୍କ ପାଇଁ ମୁଁ କାହିଁକି ନୃତ୍ୟ କରିବି ? ଏମିତିରେ ବି ମତେ ଏକକ ନୃତ୍ୟ ଖୁବ୍ ଗୋଟେ ଭଲ ଲାଗୁ ନ ଥିଲା କାରଣ ଏଥିରେ ସର୍କସ ପରି ବହୁ କୌଶଳ ଥାଏ। ଅନେକ ସମୟରେ ଏକକ ନୃତ୍ୟ କରିବା ସମୟରେ ମତେ ଘୋଡ଼ା ହଡ୍‌ଲସ୍ ଦୌଡ଼ କଲାପରି ଲାଗେ । ମତେ ମଂଚ ଖୋଜିବା ପରି ଅପ୍ରୀତିକର କାମ ଖୁବ୍

ବିରକ୍ତିକର ଲାଗେ, ପୁଣି ସମୀକ୍ଷକଙ୍କ ସାମ୍ନାରେ ଜବରଦସ୍ତ ସ୍ମିତହାସ୍ୟ ପ୍ରକାଶ କରିବା । ଏଥିରେ ସମୟର ଘୋର ଅପଚୟ ହୁଏ ।

ତା ହେଲେ ମୁଁ କଣ କରିବି ?

ପ୍ରାୟ ଏଇ ସମୟବେଳକୁ ଦ୍ୱିତୀୟ ଥର ପାଇଁ ମୋର ହୃଦୟ ବିଦାରକ ଅନୁଭୂତି ହେଲା । ଇଟାଲୀରେ ରହୁଥିବା ମୋ ଭାଇ ସୁରେଶ ଅସୁସ୍ଥ ହେଲା । ତେଣୁ ମୁଁ ତିନିଥର ଇଟାଲୀ ଯାତ୍ରା କଲି, ତା' ସହିତ ସମୟ ବିତେଇବା ପାଇଁ ଚାହୁଁଥିଲି । ମୁଁ ଜାଣିଥିଲି ତା'ର ସମୟ ଶେଷ ହେଇ ଆସୁଛି । ମୁଁ ତୃତୀୟ ଯାତ୍ରାପାଇଁ ପ୍ରସ୍ତୁତ ହେଉଥିବା ସମୟରେ ଶୁଣିଲି ଯେ ସେ ଚାଲିଗଲା । ଆମେ ଏକାଠି ବଢ଼ିଥିଲୁ । ଗୋଟିଏ ଛାତତଳେ ଜୀବନ ବିତେଇବାଠାରୁ ତାହା ଆମ ପାଇଁ ଅନେକ ଅନେକ ବେଶୀ ମୂଲ୍ୟବାନ୍ ଥିଲା । ମା'ଙ୍କୁ ଅଳ୍ପ ବୟସରୁ ହରେଇଥିବାରୁ ଆମେ ଦୁହେଁ ପରସ୍ପରର ଖୁବ୍ ଘନିଷ୍ଠ ହେଇଯାଇଥିଲୁ । ସେ ବନ୍ଧନ ତା' ମୃତ୍ୟୁପରେ ମଧ୍ୟ ଦୀର୍ଘକାଳ ପର୍ଯ୍ୟନ୍ତ ଅତୁଟ ରହିଥିଲା । ମା ଓ ଭାଇ ସୁରେଶର ମୃତ୍ୟୁ ମତେ ବୁଝେଇ ଦେଇଥିଲା ଯେ ଜୀବନର ଶେଷ ମୃତ୍ୟୁରେ । କିନ୍ତୁ ତୁମେ ଯେତେବେଳେ ମଞ୍ଚରେ ନୃତ୍ୟ ସୃଷ୍ଟି କରିବାକୁ ଯାଉଛ ଶେଷରେ ତା'ର ମୃତ୍ୟୁ ହେବା ଉଚିତ୍ ନୁହେଁ । ଏହା ଅନେକ ଅନେକ ବେଶି ଜୀବନ ବଞ୍ଚିବା ଦରକାର, ହୃଦୟକୁ ଉଦ୍ଦୀପିତ କରିବା ଦରକାର । ଏହା ଦର୍ଶକଙ୍କ ମନରେ ଶାଶ୍ୱତ ହେବା ଆବଶ୍ୟକ । ମୁଁ ଚିରନ୍ତନ କଳା ସର୍ଜନା କରିବାକୁ ଚାହେଁ ।

ବହୁତ ସାନ ଝିଅ ଶିକ୍ଷକ ହେବାର ଖେଳ ଖେଳନ୍ତି, ମୁଁ ବି ସେଥିରୁ ବାଦ୍ ଯାଇନି । ଅହମଦାବାଦକୁ ଯିବା ପରେ ମୁଁ ପ୍ରକୃତ ଶିକ୍ଷକର ଦାୟିତ୍ୱ ବହନ କରିବା ପାଇଁ ପ୍ରସ୍ତୁତ ଥିଲି । ଗୋଟିଏ ଜିନିଷ ମୁଁ ଚାହୁଁ ନଥିଲି ତା' ହେଲା ମୁଁ ଯେଉଁ ପ୍ରଣାଳୀରେ ପଢ଼ିଥିଲି ସେଇ ପ୍ରଣାଳୀରେ ପଢ଼େଇବାକୁ ଚାହୁଁ ନ ଥିଲି । ମୁଁ ଯେତେବେଳେ ବି ମୋ ଗୁରୁଙ୍କୁ ନାଚ ବିଷୟରେ କୌଣସି ପ୍ରଶ୍ନ ପଚାରୁଥିଲି କିମ୍ବା ତାଙ୍କ ଶିକ୍ଷାରେ ପରସ୍ପର ବିରୋଧୀ ତଥ୍ୟ କଥା ଉଠଉଥିଲି, ସେ ଠିକ୍ ମୋ ବୁଢ଼ୀ ମା'ଙ୍କ ପରି ମତେ ସମାନ ଉତ୍ତର ଦେଉଥିଲେ, "ତର୍କ କରନାହିଁ ।" ଗୁରୁ – ଶିଷ୍ୟ ପରମ୍ପରାରେ ତର୍କବିତର୍କର ଅବକାଶ ନ ଥିଲା । କିନ୍ତୁ ମୋର ଏ ପ୍ରତିଷ୍ଠିତ ଶିକ୍ଷା ପ୍ରଣାଳୀ ବିରୁଦ୍ଧରେ ଅନେକ ଅଭିଯୋଗ ଥିଲା । ସାମନାକୁ ଚାହଁ, ହାତ ମୁଣ୍ଡ ଉପରକୁ ଉଠାଅ !' ସାମ୍ନାକୁ, କେଉଁଠିକି ? କେତେ ଉପରକୁ ? ମୁଁ ସଠିକ୍ ମାପ ଚାହୁଁଥିଲି (ମନେ ରଖିବା ଦରକାର ଯେ ମୁଁ ଗୋଟେ ବ୍ରିଟିଶ୍ ସ୍କୁଲରେ ପାଠ ପଢ଼ିଥିଲି) । ମୁଁ ଯେଉଁ ପଦ୍ଧତିରେ ଶିକ୍ଷା ଦେବି ସେଥିରେ ସଠିକ୍ ଦିଗ, କୋଣ, ଡିଗ୍ରୀ, ଓଜନ ଓ ମାପ ରହିଥିବ । ମୋର କଳାକାରମାନେ ସେମାନେ କରୁଥିବା ଅଙ୍ଗଭଙ୍ଗୀ ସଂପର୍କରେ ବୁଝିବା ଦରକାର ଓ କୌତୂହଳ ହେବାପାଇଁ ଉତ୍ସାହିତ ହେବା ଦରକାର ।

ମୋର ପ୍ରଥମ ଛାତ୍ରୀ ସନ୍ଧ୍ୟାକୁ ତା' ସ୍ୱାମୀ ଅତୁଲ ଦେଶାଇ ନାଚ କ୍ଲାସ୍ ଶେଷହେବାପରେ ନେବା ପାଇଁ ଆସନ୍ତି । ପ୍ରଥମେ ଆମ ସଂପର୍କ କେବଳ 'ହେଲୋ' ରେ ସୀମିତ ଥିଲା । ଯେତେବେଳେ ମୁଁ ଜାଣିଲି ସେ ଜଣେ ସଂଗୀତଜ୍ଞ ଆମର 'ହେଲୋ'

ଟିକେ ବର୍ଦ୍ଧିତ ରୂପ ନେଲା ଓ ତା' ସହିତ ସ୍ମିତ ହସ ଟିକେ ମିଶିଲା । ଥରେ ମୁଁ ତାଙ୍କୁ ପଚାରିଲି ଗୋଟେ ନୃତ୍ୟ ପାଇଁ ସେ ସଂଗୀତ ରଚନା କରିବାକୁ ପସନ୍ଦ କରିବେ କି ? ତା'ର ନୃତ୍ୟ ନିର୍ଦ୍ଦେଶନା ମୁଁ ଦେଉଥିଲି । ଏହାପରେ ୪୦ ବର୍ଷ ଆମେ ଏକାସାଙ୍ଗରେ କାମ କଲୁ । ଯା ଭିତରେ ସେ ମୋର ପ୍ରତ୍ୟେକଟି ନୃତ୍ୟ ରଚନା ପାଇଁ ସଙ୍ଗୀତ ସୃଷ୍ଟି କରିଛନ୍ତି । ସେ ଜଣେ ଅତ୍ୟନ୍ତ ସୃଜନଶୀଳ ଓ ସମ୍ବେଦନଶୀଳ ଶକ୍ତି । ମୋର ନିର୍ଦ୍ଦେଶନା ସମୟରେ ସେ ଅତ୍ୟନ୍ତ ମୂଲ୍ୟବାନ ପ୍ରସ୍ତାବ ଦେଇଛନ୍ତି ।

କିଛି ବର୍ଷପରେ ଅନେକ ଝିଅ ଭଲ ନୃତ୍ୟ କରିବାକୁ ଆରମ୍ଭ କରିଲେ । ମୁଁ ବୁଝିପାରିଲି ସେମାନେ ସମସ୍ତେ ଏକକ ନର୍ତ୍ତକୀ ଭାବେ ପ୍ରତିଷ୍ଠା ପାଇ ପାରିବେ ନାହିଁ କାରଣ ସେତିକି ସୁଯୋଗ କାହିଁ ? ଦିଲ୍ଲୀ ପରି ଯାଗା କଥା ଅଲଗା – ସେଠି ବିଶିଷ୍ଟ ଲୋକ, ରାଜନୀତିଜ୍ଞ, ରାଷ୍ଟ୍ରଦୂତ ଏବଂ ବିଦେଶରୁ ଆସିଥିବା ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ନିମନ୍ତେ ନୃତ୍ୟ ପ୍ରସ୍ତୁତ କରିବାର ସୁଯୋଗ ମିଳେ । ଏ ସବୁ ସେଠି ଏତେ ପ୍ରଚୁର ମାତ୍ରାରେ ରହିଚି ଯେ ଦିଲ୍ଲୀବାସୀମାନେ ତାଙ୍କ ସହର ବାହାରେ ଏକ ଭାରତ ଅଛି ବୋଲି ଭୁଲି ଯା'ନ୍ତି, ଜଣେ ନର୍ତ୍ତକୀ ପକ୍ଷରେ ଦିଲ୍ଲୀରେ ରହିବା ଖୁବ୍ ଲାଭଦାୟକ, କାରଣ ଜଣେ ସଠିକ୍ ଯୋଗାଯୋଗ ରଖିପାରେ, ଅନୁବାଦ ଓ ପୁରସ୍କାର ପାଇଁ ଧରାଧରି କରିପାରେ ଆଉ ଠିକ୍ ସ୍ଥାନରେ ଠିକ୍ ଲୋକଙ୍କ ସହିତ ଆତ୍ମପ୍ରକାଶ କରିପାରେ । ତଥାପି ମୁଁ ଭାବୁଛି ମୁଁ ହୁଏତ ଏତେ ସବୁ କାମ କରିବାକୁ ସମର୍ଥ ହେଇ ପାରି ନ ଥାନ୍ତି । ମୁଁ ଗୋଟିଏ ଛୋଟିଆ ଦଳ ଛାତ୍ରଙ୍କୁ ନୃତ୍ୟ ଶିଖାଇବାରେ ଆନନ୍ଦ ପାଉଥିଲି କିନ୍ତୁ ସେମାନେ ଭଲ ନର୍ତ୍ତକୀରେ ପରିଣତ ହୋଇ ମତେ ଆଶ୍ଚର୍ଯ୍ୟାନ୍ୱିତ କରିଦେଲେ। ତାଙ୍କ ପାଇଁ କଣ କରାଯାଇପାରେ ? ମୁଁ ୫ ଜଣ ନର୍ତ୍ତକୀଙ୍କୁ ଆଖିରେ ରଖି ନୃତ୍ୟ – ରଚନା କଲି ।

କେମିତି ଜଣେ ନୃତ୍ୟ–ସର୍ଜନା କରେ ? ସେଥିପାଇଁ ଜଣେ ନିଜର ଆତ୍ମଶକ୍ତିକୁ ବିନିଯୋଗ କରିପାରେ । ମୁଁ ନିଜକୁ ପଚାରେଁ, "ମୋ ଆତ୍ମା କଣ ଚାହେଁ, କଣ ମୋ ଭିତରେ ସ୍ପନ୍ଦିତ ହେଉଛି ?" ଏବଂ ମୁଁ ଆବିଷ୍କାର କଲି ମୋ ହୃଦୟ ଓ ଧମନୀ (ଧବ୍‌କାର) ହଳେ ଢ଼ୋଲ ଭଳି ସ୍ପନ୍ଦିତ ହେଉଛି । 'ଧବକାର' ନାମକ ମୋର ନୃତ୍ୟ–ସର୍ଜନା କଥକର ସ୍ପନ୍ଦନ ସଦୃଶ ଥିଲା । ନିଶ୍ଚୟ ସେଥିରେ କିଛି ଚିରନ୍ତନତା ଥିଲା । କାରଣ ୩୦ ବର୍ଷ ପରେ ମଧ୍ୟ ତାହା ନୂଆ ଲାଗୁଥିଲା । ଅଧିକାଂଶ ନର୍ତ୍ତକୀ ପୁରାଣରୁ କାହାଣୀ ବାଛିଥାନ୍ତି । ଏସବୁ ବିଷୟ ଉପରେ ଆଧାରିତ କାର୍ଯ୍ୟକ୍ରମର ଚାହିଦା ବେଶି କାରଣ ଦର୍ଶକ ଏହା ସହିତ ଆଗରୁ ପରିଚିତ ଥାନ୍ତି । ଫଳରେ ଏହା ଅଧିକ ଲୋକପ୍ରିୟ ଓ ଗ୍ରାହ୍ୟ ହୋଇଥାଏ । କିନ୍ତୁ ନୃତ୍ୟ ନିର୍ଦ୍ଦେଶନାରେ ଗ୍ରାହ୍ୟତାର ଗୁରୁତ୍ୱ ନାହିଁ । ଏହା ବ୍ୟକ୍ତିଗତ ଅଭିବ୍ୟକ୍ତି । ମୁଁ ଦର୍ଶକଙ୍କୁ କେବଳ ସେମାନେ ଯାହା ପ୍ରତ୍ୟାଶା କରନ୍ତି ସେତିକି ଦେବାକଥା ଭାବେନାହିଁ, ସେମାନଙ୍କର ଚିନ୍ତାଶକ୍ତିକୁ ବିସ୍ତୃତ କଲାପରି ନୃତ୍ୟ–ସର୍ଜନା କରେ ଯାହା ତାଙ୍କ ମନରେ ଭାବ ଉଦ୍ଦୀପିତ କରିବ ।

ସମାନ ଭାବରେ, ଜଣେ ନୃତ୍ୟ ନିର୍ଦ୍ଦେଶକକୁ (ସାଧାରଣ) ନୃତ୍ୟ ଶୈଳୀର ଯଥେଷ୍ଟ ଊର୍ଦ୍ଧ୍ୱକୁ ଯିବାକୁ ହୁଏ । ଆପଣଙ୍କୁ ନିଜ ସର୍ଜନାକୁ ଜୀବନ୍ତ କରିବା ପାଇଁ ଜୀବନ ଢ଼ାଳିଦେବାକୁ ହେବ । ମୋ ଜୀବନ ଅନୁଭୂତି ସହିତ ମୋ କାର୍ଯ୍ୟ ବା ନୃତ୍ୟକୁ ସଂଯୁକ୍ତ କରିବା ପାଇଁ ମନପ୍ରାଣ ଦେଇ ପରିଶ୍ରମ କରିଛି । ପରସ୍ପରଠୁ ସେମାନଙ୍କୁ ଅଲଗା ରହିବାକୁ ଦେଇନାହିଁ । ଅନେକ ସମୟରେ ମୁଁ ଲକ୍ଷ୍ୟ କରିଚି ଆମର ଜୀବନଠୁଁ ଆମର କ୍ଷମତା ପୃଥକ ହେଇଯାଏ । ମୁଁ ବିଶେଷଭାବରେ ସମୟ ନିୟନ୍ତ୍ରଣ ସମୟରେ ଏଇ ପାର୍ଥକ୍ୟ ଅନୁଭବ କରିଛି । ନୃତ୍ୟ ପରମ୍ପରାରେ ସମୟ ଏବଂ ତା'ର ବିବିଧତା ଅଧ୍ୟୟନ ଉପରେ ଅନେକ ଗୁରୁତ୍ୱ ପ୍ରଦାନ କରାଯାଇଛି । ଜଣେ ଅଧ୍ୟୟନ ଓ ଅଭ୍ୟାସ ଦ୍ୱାରା ଏହା ହାସଲ କରିବାକୁ ଚେଷ୍ଟା କରେ କାରଣ ଭଲ ନୃତ୍ୟ କରିବା ପାଇଁ ଏହା ଏକାନ୍ତ ଆବଶ୍ୟକ । ଅନେକ ସମୟରେ ଜଣକର ବ୍ୟକ୍ତିଗତ ଜୀବନରେ ସମୟ ଉପଯୋଗ ଏକ ଅବହେଳିତ ବିଷୟ ହେଇ ରହିଥାଏ । ଏହା ଗୋଟିଏ ନିର୍ଦ୍ଦିଷ୍ଟ ବିଷୟକୁ ଜୀବନର ଅନ୍ୟାନ୍ୟ ବିଭିନ୍ନ ସତ୍ତା ସହିତ ସଂଯୁକ୍ତ କରିବା ବ୍ୟତୀତ ଅନ୍ୟ କିଛି ନୁହେଁ । ଅର୍ଥାତ୍ ଲୋକେ ନିଜପାଇଁ ସେତୁ ନିର୍ମାଣ କରିବା ଆବଶ୍ୟକ । 'ସେତୁ' ନୃତ୍ୟ ରଚନାରେ ମୁଁ ଜଣକ ଜୀବନରେ ସେତୁ ନିର୍ମାଣ ଉପରେ ଗୁରୁତ୍ୱ ଦେଇଛି । ସେ ଯାହାହେଉ ମୁଁ ସେଥିରେ ଗୋଟିଏ ଚରିତ୍ରରେ ଅନ୍ଧତ୍ୱକୁ ଯୋଡ଼ିଦେଇଛି କାରଣ ଆମେ ସେ ସେତୁ ଅତିକ୍ରମ କଲାବେଳେ ତାକୁ ଦେଖି ପାରନ୍ତି ନାହିଁ । ଯେତେବେଳେ ଆମେ ପଛକୁ ଫେରି ଚାହାଁନ୍ତି ସେତେବେଳେ ସେତୁକୁ ଦେଖିପାରନ୍ତି ଓ ଦେଖିପାରନ୍ତି ତା' ଭିତର ଦେଇ ବୋହି ଆସୁଥିବା ପାଣିକୁ ।

ମୁଁ ଏପରି ଗୋଟେ ବୃତ୍ତିରେ କାମ କରେଁ ଯେ ସେଥିରେ ଅବସରର ପ୍ରଶ୍ନ ନାହିଁ । ଏଥିରେ ସବୁବେଳେ – ଆଗକୁ ଯିବା ଉଚିତ୍ । ପ୍ରତ୍ୟେକ ଦିନ ଶୂନ୍ୟ ସ୍ଥାନ ମୋ ଆଡ଼କୁ ଚାହିଁ ରହିଥାଏ, ମୁଁ ଦେଖେ ଗୋଟେ ଖାଲି କୋଠରୀରେ ଖାଁ ଖାଁ ନିର୍ଜନତା ପ୍ରତିଧ୍ୱନିତ ହେଉଛି । ମୁଁ ଚଟାଣରେ ବସେଁ, ବିରାଟ ଶୂନ୍ୟ ସ୍ଥାନକୁ ଅନାଏଁ, ଏତେ ବଡ଼ ବିସ୍ତୃତି ମଧ୍ୟରେ ଏ ଶରୀର ଗୁଡ଼ିକ କେତେ ଛୋଟ । କ୍ରମଶଃ ଶୂନ୍ୟତା ସ୍ଥାନରେ ମୁଁ ଦେଖେ ସୁଷୁପ୍ତ ଶକ୍ତି ଯିଏ କୌଣସି ଆକାର ନେବା ଅପେକ୍ଷାରେ ରହିଛି । ଗୋଟିଏ ସୁପ୍ତ ଦାନବକୁ ଜାଗ୍ରତ କରିବା ପରି ମୁଁ ଶୂନ୍ୟରେ ଏଇ ଶରୀରଗୁଡ଼ିକୁ ସଂଚାଳିତ କରେ । ସଂଗୀତ ଏଥିରେ ମତେ ସହଯୋଗ କରେ ଓ କ୍ରମଶଃ ଆକୃତିଗୁଡ଼ିକ ସ୍ପଷ୍ଟ ହୁଏ । ଏହା ଆକୃତି ଧାରଣ କରେ । ସେହି ଆକୃତିଗୁଡ଼ିକ ମୋରି ଜୀବନରୁ ଜନ୍ମ ଲାଭ କରିଛନ୍ତି, ଏବଂ ଏ ଧାରା ସହିତ ମୁଁ ଘନିଷ୍ଠ ଭାବରେ ଜଡ଼ିତ । ସେ ଆକୃତିଗୁଡ଼ିକ କ୍ରମଶଃ ଜୀବନଠୁଁ ବି ବୃହଦ୍ ଆକାର ଧାରଣ କରନ୍ତି । ସ୍ଥାନ ମଧ୍ୟରେ ଏକ ନମନୀୟ ଭାବ ଦେଖାଯାଏ ଏବଂ ପ୍ରତ୍ୟେକ ଥର ସମୟ ଓ ସ୍ଥାନ ମଧ୍ୟରେ ଏକ ନୂଆ ଆଲୋଚନା ପରି ଏହା ପ୍ରକାଶ ପାଏ ।

ମତେ ନୃତ୍ୟ-ସର୍ଜନା ପାଇଁ କଥକ ବାହାରକୁ କେବେ ଯିବାକୁ ପଡ଼ିନି । ମୁଁ ବିଶ୍ୱାସ କରେ ଯେ ଜନସାଧାରଣଙ୍କ ଧାରଣାଠୁଁ ଅନେକ ବେଶି ସମୃଦ୍ଧ କଥକ ନୃତ୍ୟ । ମୁଁ

ଯେତେବେଳେ ନୃତ୍ୟ ବିଦ୍ୟାଳୟ ନାଁ 'କଦମ୍ବ' ରଖିଲି ସେତେବେଳେ କଦମ୍ବର ଗୁଣ ତଥା ବୈଶିଷ୍ଟ୍ୟ କଥା ହିଁ ଭାବୁଥିଲି । ମୋ ପାଇଁ କଦମ୍ବର ଦୁଇଟି ଅର୍ଥ ଅଛି । ପ୍ରଥମତଃ ଏହା ଏକ ପାରମ୍ପରିକ ବୃକ୍ଷ ଯାହା ତଳେ କୃଷ୍ଣ ନୃତ୍ୟ କରୁଥିଲେ ଏବଂ ତା'ର ମୂଳ ଅତ୍ୟନ୍ତ ଦୃଢ଼ ଓ ଗଭୀରତାକୁ ପ୍ରବେଶ କରେ । ଠିକ୍ ସେହିପରି କଥକ ନୃତ୍ୟର ଭିତ୍ତି । ଏକା ସାଙ୍ଗରେ ଏହା ଆମର ଇନ୍ଦ୍ରିୟକୁ ସତେଜ କରିଥାଏ । ତା'ର ସୁନ୍ଦର ସୁସଜ୍ଜିତ ବକ୍‌କଳଠାରୁ ଆରମ୍ଭ କରି ଶାଖା ପ୍ରଶାଖାରେ ପ୍ରସ୍ଫୁଟିତ ସୁଗନ୍ଧିତ ଶ୍ୱେତ ରଙ୍ଗର ଫୁଲ, ଘନ ସବୁଜ ରଙ୍ଗର ଗହଳ ପତ୍ରରାଜି ପର୍ଯ୍ୟନ୍ତ କଦମ୍ବ ଗଛ ପ୍ରାଣ ପ୍ରାଚୁର୍ଯ୍ୟ ଓ ବ୍ୟକ୍ତିତ୍ୱରେ ପରିପୂର୍ଣ୍ଣ । ମୁଁ କେବେ ବି ଏହାର ଛାୟାର ଉର୍ଦ୍ଧ୍ୱରେ କିଛି ଅନ୍ୱେଷଣ କରିବାର ଆକାଂକ୍ଷା କରିନାହିଁ ।

ମୋ ପାଇଁ କଦମ୍ବ ଏକ ନୃତ୍ୟ କେନ୍ଦ୍ରଠାରୁ ଯଥେଷ୍ଟ ଅଧିକ; ମୋ ଦେବାଳୟ । ଏଠି ଆମେ ନୃତ୍ୟକୁ ଧର୍ମ ଦୃଷ୍ଟିରେ ଦେଖୁ । ଆମେ ଏହାର ଆରାଧନା କରୁଁ, ଏହାକୁ ସମୃଦ୍ଧ କରୁଁ । ଯେତେବେଳେ ମୁଁ ପଛକୁ ଫେରିଚାହେଁ, ୪୦ ବର୍ଷ ମଧ୍ୟରେ ଶହ ଶହ ଛାତ୍ରଙ୍କ ସହଯୋଗରେ ବିସ୍ତୃତ ମୋର ଏ ବର୍ଦ୍ଧିଷ୍ଣୁ ପରିବାର କଥା ଭାବେ ଆନନ୍ଦରେ ଶିହରିତ ହେଇଯାଏଁ । ଏ ଗଛର ଶାଖା ପ୍ରଶାଖା ଅନେକ ଦୂର ବିସ୍ତାରିତ । ମୋର କେତେକ ଛାତ୍ରୀ ଖ୍ୟାତନାମା ଶିକ୍ଷୟିତ୍ରୀ, ନୃତ୍ୟ ନିର୍ଦ୍ଦେଶିକା ଏବଂ ନୃତ୍ୟ ସମୀକ୍ଷକ ହେଇ ଗଲେଣି । ମତେ ଯଦି କେହି ଆଉଥରେ ଏ ଜୀବନ ବଞ୍ଚିବାର ସୁଯୋଗ ଦିଏ, ତେବେ ମୁଁ କଣ କିଛି ଭିନ୍ନ ହେବାପାଇଁ ଚାହିଁବି ? ନା, ମୁଁ ତା ଭାବୁନି । ନାଚ କରିବା ପାଇଁ ଜନ୍ମ ନେବା ବିଷୟ କହିଲେ ମତେ ଲଜ୍ଜା ଲାଗେ । କାରଣ ମୁଁ ମୋ ଜୀବନରେ ଚାଲେଞ୍ଜର ଶାଖା–ପ୍ରଶାଖାରୁ ଶକ୍ତି ଆହରଣ କରିଛି, ଏବଂ ସେଇ ଶାଖାରେ ଆଜି ସଫଳତାର ଫୁଲ ପ୍ରସ୍ଫୁଟିତ ।

ରୋମିଲା ଥାପର (ଜନ୍ମ ୧୯୩୧) ପ୍ରାଚୀନ ଭାରତ ସଂପର୍କରେ ଜଣେ ପ୍ରସିଦ୍ଧ ଇତିହାସବିତ୍ । ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀର, ବିଶେଷତଃ ସମ୍ରାଟ ଅଶୋକଙ୍କ କାଳର ଅଧ୍ୟୟନରେ ତାଙ୍କର ଅବଦାନ ଅବିସ୍ମରଣୀୟ । ସାମାଜିକ ଇତିହାସ କ୍ଷେତ୍ରରେ ତାଙ୍କର ପଥିକୃତ ଉଦ୍ୟମ ପ୍ରଶଂସନୀୟ । ସଂପ୍ରତି ସେ ସଂସ୍କୃତି, ସମାଜ ଓ ଇତିହାସ ମଧ୍ୟରେ ଥିବା ସଂପର୍କ ଏବଂ ଇତିହାସ କିପରି ନିର୍ମିତ ଓ ଉପସ୍ଥାପିତ ହୁଏ – ତା'ର ଅଧ୍ୟୟନ କରିଛନ୍ତି ।

ଜଣେ ସାଧାରଣ ବୁଦ୍ଧିଜୀବୀ ଭାବରେ ସେ ରାଜନୈତିକ ଲାଭ ଉଦ୍ଦେଶ୍ୟରେ ଇତିହାସର ଭୁଲ୍ ବ୍ୟାଖ୍ୟା ନକରିବାକୁ ଅନବରତ ସଚେତନ । ସେ ରାଜନୀତିରେ ଧର୍ମ ନିରପେକ୍ଷତାର ଆବଶ୍ୟକତା ଉପରେ ଗୁରୁତ୍ୱ ଦେଇଛନ୍ତି । ପ୍ରାଚୀନ ଭାରତୀୟ ଇତିହାସ ଉପରେ ସେ ବହୁ ପ୍ରସିଦ୍ଧ ଗ୍ରନ୍ଥ ରଚନା କରିଛନ୍ତି – ସେଥିମଧ୍ୟରୁ ପ୍ରମୁଖ – ଏ ହିଷ୍ଟ୍ରି ଅଫ୍ ଇଣ୍ଡିଆ; ଦ ପାଷ୍ଟ ଆଣ୍ଡ ପ୍ରିଜୁଡିସ୍; ଆନ୍‌ସିଏଣ୍ଟ ଇଣ୍ଡିଆନ୍ ସୋସିଆଲ୍ ହିଷ୍ଟ୍ରି; ଶକୁନ୍ତଳା : ଟେକ୍ସଟ୍ ରିଡିଂସ୍, ହିଷ୍ଟ୍ରି । ସେ ଅନେକ ପୁରସ୍କାର ଓ ସମ୍ମାନରେ ସମ୍ମାନିତ । ତାଙ୍କୁ ୧୯୯୩ ରେ ଚିକାଗୋ ବିଶ୍ୱବିଦ୍ୟାଳୟ, ୧୯୯୨ରେ ପେରାଦେନିୟା ବିଶ୍ୱବିଦ୍ୟାଳୟ, ଶ୍ରୀଲଙ୍କା, ୨୦୦୧ରେ ପ୍ୟାରିସ୍‌ର ଇନ୍‌ଷ୍ଟିଚ୍ୟୁଟ୍ ନ୍ୟାସ୍‌ନାଲ୍ ଡେସ୍ ଲେଙ୍ଗସ୍ ଏଟ୍ ସିଭିଲାଇଜେସନ୍ ଓରିଏଣ୍ଟାଲ୍ ଏବଂ ୨୦୦୨ରେ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟରୁ ୪ଟି ସମ୍ମାନଜନକ ଡିଗ୍ରୀ ମିଳିଛି । ୧୯୯୭ ମସିହାରେ ସେ ଫୁକୁ ଓକା ସାଂସ୍କୃତିକ ପୁରସ୍କାର ଲାଭ କରିଛନ୍ତି ।

# ୪

# ଇତିହାସ, ଅତୀତ ଓ ବର୍ତ୍ତମାନ

## ରୋମିଲା ଥାପର

ମୋର ସବୁଠୁ ପୁରୁଣା କଥା ଯାହା ମନେ ପଡୁଛି – ପୁଅଝିଅ ଏକାଠି ପଢୁଥିବା ଗୋଟେ ଛୋଟ ସ୍କୁଲ, ସେଠି ପଢ଼ାଠୁଁ ଅଧିକ ଖେଳକୁଦ କରୁଥିଲି । ଏଥିପାଇଁ ଆଂଶିକଭାବେ ଦାୟୀ, ଘରେ ଆରମ୍ଭ କରିଦେଇଥିବା ଅ, ଆ ଶିକ୍ଷା । ସୌଭାଗ୍ୟବଶତଃ ଦ୍ୱିଭାଷା ଶିକ୍ଷାସୂତ୍ରରେ ମୁଁ ଇଂରାଜୀ ସହିତ ଉର୍ଦ୍ଦୁ ବର୍ଣ୍ଣମାଳା ମଧ୍ୟ ଶିଖିଲି । ଅସଲରେ ମୁଁ ପଞ୍ଜାବୀମାନଙ୍କର ସେଇ ସମୟର ବଂଶଧର ଯେଉଁ ସମୟରେ ସେମାନେ ତାଙ୍କ ବୁଢ଼ୀମାମାନଙ୍କୁ ପଞ୍ଜାବୀ ଭାଷାରେ ଉର୍ଦ୍ଦୁ ଲିପିରେ ଚିଠି ଲେଖୁଥିଲେ । ମୁଁ ଏ ସ୍କୁଲରୁ, ଅନ୍ୟ ସ୍କୁଲକୁ ଗଲି ଓ ପଢ଼ାଉପରେ ଏଥର ଅଧିକ ଜୋର ଦିଆଗଲା । ଆମେ ପ୍ରଥମେ ଡେଲହାଉସି ଗଲୁ ଯେଉଁଠି ମା ବାପା କିଛି କାଳପାଇଁ ନିଯୁକ୍ତି ପାଇଥିଲେ, ତାପରେ ପେଶାୱାର ଏବଂ ତାପରେ ରାୱଲପିଣ୍ଡି । ସ୍କୁଲ ଯିବାପୂର୍ବରୁ ମୁଁ ସେ ସମୟରେ ଉତ୍ତର-ପଶ୍ଚିମ ସୀମାନ୍ତ ଅଞ୍ଚଳର କିଲ୍ଲାରେ ରହିଥିଲି । ମୋ ବାପା ସୈନ୍ୟ ବିଭାଗରେ ଡାକ୍ତର ଥିଲେ । ରାୱଲପିଣ୍ଡି ପରେ ସେ ପୁନେ ଗଲେ । ଏହା ଏକ ବିରାଟ ପରିବର୍ତ୍ତନ ଥିଲା । ଯା ପୂର୍ବର ସ୍ଥାନଗୁଡ଼ିକ ପଞ୍ଜାବୀ ଓ ପଠାଣ ସମାଜର ଥିଲାବେଳେ ବର୍ତ୍ତମାନ ହଠାତ୍ ମରାଠୀ ସମାଜର କେନ୍ଦ୍ରସ୍ଥଳରେ । ଭାଷା ଓ ଆଞ୍ଚଳିକ ଦୃଶ୍ୟ ଉଭୟ ଯଥେଷ୍ଟ ପୃଥକ ଥିଲା । ମୋର ଯାଯାବର ଶୈଶବ କାଳରେ ପୁନେରେ ମୁଁ ସବୁଠୁ ଅଧିକ ଦିନ ବିତେଇଛି ।

ଔପଚାରିକ ସ୍କୁଲ ଶିକ୍ଷା ପେଶାୱାର ଓ ରାୱଲପିଣ୍ଡିଠାରୁ ଖୁବ୍ ଗୋଟେ ଭିନ୍ନ ନଥିଲା କାରଣ କନଭେଣ୍ଟ ସ୍କୁଲଗୁଡ଼ିକ ସମଗ୍ର ଦେଶରେ ଅଳ୍ପ ବହୁତ ସମାନ ଥିଲା । ମତେ ପାଞ୍ଚଥର ସ୍କୁଲ ବଦଳେଇବାକୁ ପଡ଼ିଛି । ପଢ଼ାପଢ଼ି ବିଷୟକୁ ନେଇ ସମସ୍ୟା ନ ଥିଲା, ପ୍ରତ୍ୟେକ ଥର ନୂଆସାଙ୍ଗ ତିଆରି କରିବାଟା ହିଁ ପ୍ରକୃତ ସମସ୍ୟା ଥିଲା । ଗୋଟିଏ ସହଶିକ୍ଷା ବିଦ୍ୟାଳୟରୁ ବାଳିକା ବିଦ୍ୟାଳୟକୁ ଆସିବାରେ ଅନୁଭୂତି କିଛିଟା ଭିନ୍ନ ଥିଲା । ବାଳିକା ବିଦ୍ୟାଳୟରେ ବନ୍ଧୁତା କରିବାଟା ସହଜ ଥିଲା ଓ ଶିକ୍ଷା ଦିଗରେ ପ୍ରତିଯୋଗିତାଟା ମୋଟାମୋଟି କମ୍ ଥିଲା (ମୁଁ ଯେଉଁ ପ୍ରକାର ସ୍କୁଲକୁ ଯାଉଥିଲି ସେଥିରେ ମଧ୍ୟ ପ୍ରତିଯୋଗିତାଟା

ଖୁବ୍ ଗୋଟେ ବଡ଼ ନ ଥିଲା) । ପୁଅମାନଙ୍କ ବିଷୟରେ ଆଲୋଚନା ହେଉଥିଲା କିନ୍ତୁ କାରଣ ଥାଇ କି ! ଯେଉଁ ମାନଙ୍କ ଭିତରେ ଆମେ ରହୁଥିଲୁ ସେମାନଙ୍କ ବିଷୟରେ ସ୍ୱାଭାବିକ ଭାବରେ କଥା ହେଉଥିଲୁ, ସମସ୍ତଙ୍କ ସାମ୍ନାରେ ।

ମୋର ମନେହୁଏ ଆରମ୍ଭରୁ ହିଁ ଇତିହାସରେ ମୋର ରୁଚି ଥିଲା । କାରଣ ତିନୋଟି ବିଷୟ – ଇତିହାସ, ସାହିତ୍ୟ ଏବଂ ଉଦ୍ଭିଦ ବିଜ୍ଞାନର ଟଣାଟଣି ଭିତରେ ଏକଥା ସ୍ପଷ୍ଟଭାବରେ ମନେପଡୁନି । ଆମକୁ ଇତିହାସ ଓ ସାହିତ୍ୟ ଜଣେ ଚମତ୍କାର ଶିକ୍ଷକ ପଢ଼ଉଥିଲେ । ସେ ବାରମ୍ବାର ଆମକୁ ପ୍ରଶ୍ନ ପଚାରିବାକୁ ଉତ୍ସାହିତ କରିବା ସହିତ ନିଜକୁ ଭାବିବାକୁ ଶିଖିବାକୁ କହନ୍ତି । ଉଦ୍ଭିଦ ବିଜ୍ଞାନର ଶିକ୍ଷୟିତ୍ରୀ ବହୁତ ଆକର୍ଷଣୀୟ ଥିଲେ । ମତେ ଏ ବିଷୟ ବହୁତ ଭଲ ଲାଗୁଥିଲା କାରଣ ଏଥିପାଇଁ ଆମକୁ ପୁନେ ଆଖପାଖର ସୁନ୍ଦର ବଗିଚାକୁ ନେଇ ଯାଉଥିଲେ । ଆମେ ବୃକ୍ଷର ଚିତ୍ର ଅଙ୍କନ କରିବା ସହିତ ଅଣୁବୀକ୍ଷଣରେ ତାର ପତଳା କଟାଯାଇଥିବା ଅଂଶ ଅଧ୍ୟୟନ କରୁଥିଲୁ । ତେଣୁ ଆମ ଉପରେ ଏକ ଦୃଶ୍ୟଗତ ପ୍ରଭାବ ପଡୁଥିଲା । ସରଳରୁ ଜଟିଳ ସଂରଚନା ପଦ୍ଧତିକୁ ପରିବର୍ତ୍ତିତ ହେବା ଅବସ୍ଥାକୁ ନିରୀକ୍ଷଣ କରିବାରେ ଆନନ୍ଦ ମିଳୁଥିଲା । ମାତ୍ର ମୁଁ କହିପାରେ ଯେ ଇତିହାସ ଓ ସାହିତ୍ୟରୁ ଯଥେଷ୍ଟ ଅଧିକ ବୌଦ୍ଧିକ ଓ ମାନସିକ ଆନନ୍ଦ ମିଳୁଥିଲା । ବର୍ତ୍ତମାନ ଭାବିଲେ ମନେ ପଡୁଛି ଯେ ଏମାନେ କେହି କନଭେଣ୍ଟରେ ପଢ଼ଉଥିବା ସତ୍ତ୍ୱେ 'ନନ୍' ନଥିଲେ ।

ଘଟଣାକ୍ରମେ ମୁଁ ଦୁଇଟି କାରଣରୁ ଇତିହାସ ଅଧ୍ୟୟନ କରିବାକୁ ଇଚ୍ଛା କଲି । ମୁଁ ଭାବୁଛି ଗୋଟେ ଅଧିକ ବ୍ୟକ୍ତିଗତ ଓ ଅନ୍ୟଟି ସାଧାରଣ । ସ୍କୁଲ ପରୀକ୍ଷା ଶେଷ ଓ ବିଶ୍ୱ ବିଦ୍ୟାଳୟ ଶିକ୍ଷା ଆରମ୍ଭ ହେବା ପୂର୍ବରୁ ମୋ ପାଖରେ ୬ ମାସ ଥିଲା । ମୋ ବାପା ସେ ସମୟରେ ଦକ୍ଷିଣ ଭାରତୀୟ ବ୍ରୋଞ୍ଜ ମୂର୍ତ୍ତି ଅଧ୍ୟୟନ କରିବାରେ ଆଗ୍ରହୀ ଥିଲେ, ଏହା ତାଙ୍କର ସଉକ ଥିଲା । ସେ ଜଣେ ଆସାଧାରଣ ମନୁଷ୍ୟ ଥିଲେ, ତିରିଶ ଦଶକରେ ତାଙ୍କର ସଉକ ଥିଲା ମୂକ-ସିନେମା ନିର୍ମାଣ କରିବା ଓ ତା'ଭିତରୁ କେତେଗୁଡ଼ିଏ ବେଶ ଚମତ୍କାର ହୋଇଥିଲା । କିନ୍ତୁ ଏଇ ନୂଆ ସଉକ ହେବାପରେ ସେ ମୂର୍ତ୍ତିକଳା, ଇତିହାସ ଓ କଳାର ଇତିହାସ ଉପରେ ମୋଟାମୋଟା ବହି ଘରକୁ ନେଇ ଆସିଲେ – ମତେ କହିଲେ କି ମୁଁ ଯେମିତି ସେସବୁ ପଢ଼େଁ ତାହାହେଲେ ତାଙ୍କ ସାଙ୍ଗରେ ଆଲୋଚନା କରିବାପାଇଁ କେହି ତ ଜଣେ ଥିବ । ମୋ ମା' ତ ଅନ୍ୟ କାମ ଅଛି କହି ସିଧା ଖସିଗଲେ । ମୁଁ ବି ଆରମ୍ଭରୁ ବିରୋଧ କଲି ଯେ ମୋର ୬ ମାସର ଛୁଟି କଠିନ ତପସ୍ୟା ସଦୃଶ ହେଇଯିବ । ମୁଁ ପଢ଼ିବା ଆରମ୍ଭ କଲି ତ ଧୀରେ ଧୀରେ ମତେ ଖୁବ୍ ଭଲ ଲାଗିଲା । ମୁଁ ଇତିହାସ ପଢ଼ିବାରେ ବେଶୀ ମଜ୍ଜିଗଲି ଓ କିଛି ପରିମାଣରେ ସଂସ୍କୃତ ବି ଶିଖିଲି ।

କିନ୍ତୁ ଚାଳିଶ ଦଶକର ଜାତୀୟ ଆନ୍ଦୋଳନର କ୍ରମଉତ୍‌ଥାନ ଦ୍ୱାରା ମୁଁ ସମପରିମାଣରେ ପ୍ରଭାବିତ ଥିଲି । ପୁନାରେ ରହୁଥିବାରୁ ଏ ପ୍ରଭାବ ଆଉରି ଅଧିକ ହେଉଥିଲା କାରଣ ଗାନ୍ଧିଜୀଙ୍କର ପ୍ରାର୍ଥନା ସଭା ହେଉଥିଲା ଓ ଆମେ ଅନେକ ଥର ଯାଉଥିଲୁ । ଜାତୀୟତା ବାଦର ଗୁଞ୍ଜନରେ ସେତେବେଳେ ଗଗନ ପବନ ମୁଖରିତ ଥିଲା ଆଉ ସ୍ୱାଧୀନତାର

ଆଗମନ ଆସନ୍ନ ଥିଲା । ସେତେବେଳେ ଜ୍ୱଳନ୍ତ ପ୍ରଶ୍ନ ଥିଲା – ଆମେ ଆମର ଅତୀତକୁ କେତେ, କେମିତି ବୁଝୁଛୁ ଓ ଆମ ସମାଜର ଭବିଷ୍ୟତ ବିଷୟରେ କଣ ବିବେଚନା କରୁଛୁ । ନିଶ୍ଚିତ ଭାବରେ ଇତିହାସ ଆଲୋଚନାର କେନ୍ଦ୍ରବିନ୍ଦୁ ଥିଲା ।

ବିଦ୍ୟାଳୟରେ ଜାତୀୟତାବାଦର ଦୁଇ ପ୍ରକାର ବ୍ୟାଖ୍ୟା ପରିଲକ୍ଷିତ ହେଉଥିଲା । ଏହାର ବିଚାର ଆଲୋଚନା ସମୟରେ ଆମକୁ ଏଇ ଧାରଣା ଦିଆଯାଉଥିଲା ଯେ ଜାତୀୟତାବାଦ ଗୋଟିଏ ସ୍ତର ଯାହା ଭିତର ଦେଇ ସମାଜକୁ ଗତି କରିବାକୁ ହୁଏ – ସେଇ ସମାନ କଥା ଫରାସୀ ବିପ୍ଳବ, ଇଟାଲୀ ଜାତୀୟତାବାଦ ଏବଂ ଜର୍ମାନୀ ଏକୀକରଣରେ ଘଟିଥିଲା । ଭାରତୀୟ ଜାତୀୟତାବାଦ ବିଷୟରେ ଆଲୋଚନା କରିଲେ ଏହି ବିପ୍ଳବ ଓ ଉପନିବେଶବାଦ ବିରୁଦ୍ଧରେ ହେଉଥିବା ବିପ୍ଳବ ମଧ୍ୟରେ ଥିବା ପ୍ରମୁଖ ପାର୍ଥକ୍ୟଗୁଡ଼ିକ ଉନ୍ମୋଚିତ ହେଉଥିଲା । ଯଦିଓ ଶିକ୍ଷକମାନେ ବ୍ରିଟିଶ ଶାସନ ପ୍ରତି ବିମୁଖ ନଥିଲେ ତେବେ ଆଲୋଚନାପାଇଁ ପଛଉନଥିଲେ । ଆମମାନଙ୍କୁ ରୀତିମତ ସବୁବେଳେ କୁହାଯାଉଥିଲା – ବେଳେବେଳେ ହାଲୁକା ଭାବରେ ଯେ ସ୍ୱାଧୀନତା ଯେତେବେଳେ ଅବଶ୍ୟମ୍ଭାବୀ ତୁମେ ଯୁବକମାନେ ଚିନ୍ତାକରିବା ଉଚିତ୍ ସ୍ୱାଧୀନତାପରେ ତୁମେ କି ପ୍ରକାର ରାଜ୍ୟର ଉତ୍ତରାଧିକାରୀ ହେବ ଏବଂ ତୁମେମାନେ ଏହାକୁ କିପରି ନିର୍ମାଣ କରିବାକୁ ଚାହିଁବ । ୧୯୪୭ର ପ୍ରକୃତ ପୂର୍ବବର୍ତ୍ତୀ ସନ୍ଧିକ୍ଷଣ ବାସ୍ତବରେ ବହୁତ ବେଶୀ ସମସ୍ୟା ଶଙ୍କୁଳ ଥିଲା କାରଣ ଆମମାନଙ୍କ ମଧ୍ୟରୁ କେତେକଙ୍କର ଆତ୍ମୀୟ ସ୍ୱଜନ ଓ ପରିବାର ଦେଶ ବିଭାଜନ ଦ୍ୱାରା ଆକ୍ରାନ୍ତ ହେଲେ । ମୁଁ ଅକସ୍ମାତ ଅନୁଭବ କଲି ଯେ ସେତେବେଳର ସେ ଘଡ଼ିସନ୍ଧି ମୁହୂର୍ତ୍ତରେ ଅଗଷ୍ଟ ମାସର ଦୁଇ ସପ୍ତାହଯାକ ସ୍କୁଲରେ ଖବର କାଗଜ ମିଳିଲା ନାହିଁ । ମୋ ବାପା, ମା ଦୂରରେ ଥିବାରୁ ମୁଁ ସେତେବେଳେ ସ୍କୁଲର ହଷ୍ଟେଲରେ ରହୁଥିଲି । ଆମେମାନେ ସ୍କୁଲର ଅନ୍ୟ ପିଲାମାନେ ଯେଉଁମାନେ ବାହାରେ ରହୁଥିଲେ ତାଙ୍କଠୁ ଦଙ୍ଗା ବିଷୟରେ ଉଦ୍ଧୃତାଂଶ ଟିକେ ଟିକେ ଶୁଣୁଥିଲୁ । ପ୍ରକୃତରେ ସ୍କୁଲପାଇଁ ଚିନ୍ତାର କାରଣ ଥିଲା ଯେ ବାପାମାନଙ୍କ ଅନୁପସ୍ଥିତିରେ ଖବରକାଗଜ ପଢ଼ି ପିଲାମାନେ ବିବ୍ରତ ହୋଇପଡ଼ିବେ । ଆମର ଯେତେବେଳେ ଅକ୍ଟୋବର ମାସରେ ଛୁଟି ହେଲା, ମୁଁ ଘରକୁ ଗଲି, ସେତେବେଳେ ଜାଣିପାରିଲି ଯେ କଣ ହୋଇଥିଲା । ପ୍ରଥମେ ତ ମୁଁ ବହୁତ ଅସନ୍ତୁଷ୍ଟ ହୋଇଗଲି ଯେ ମୋ ଠୁଁ ଏ ଖବର କାହିଁକି ଲୁଚାଯାଇଥିଲା । ମାତ୍ର ଆଜି ଭାବିଲେ ଦ୍ୱନ୍ଦ୍ୱରେ ପଡ଼ିଯାଏ । ତଥାପି ବି ମୁଁ ଭାବେଁ ଯେ ସ୍କୁଲରେ ଦେଶ ବିଭାଜନ ବିଷୟ ଉପରେ ଆଲୋଚନା ହେବା ଉଚିତ୍ ଥିଲା । କାରଣ ଆମମାନଙ୍କ ମଧ୍ୟରୁ ଅନେକଙ୍କ ପାଇଁ ଏ ଉପଲବ୍ଧି ଏକ ବିରାଟ ଧକ୍କା ଥିଲା । ବର୍ତ୍ତମାନ ହିନ୍ଦୁ ଓ ମୁସଲମାନ ମାନଙ୍କ ମଧ୍ୟରେ ଏକ ଅଭାବିତ ବିଭାଜନ ସୃଷ୍ଟି ହେଲା ।

୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖ ପ୍ରତି ନନ୍‌ମାନଙ୍କର ପ୍ରତିକ୍ରିୟା କାର୍ଯ୍ୟକଳାପ ମତେ ସତରେ ପ୍ରଭାବିତ କରିଥିଲା । ସମଗ୍ର ସ୍କୁଲର ପିଲା ମିଶି ଗୋଟେ ଉତ୍ସବ ପାଳନ କଲେ, ନୂଆ ଦେଶ ପାଇଁ ଆଶୀର୍ବାଦ କାମନା କରାଗଲା । ସ୍କୁଲର ପ୍ରିଫେକଟ ଭାବରେ ମତେ ଗୋଟିଏ ବୃକ୍ଷ ରୋପଣ କରିବାକୁ ଓ ଭାଷଣ ଦେବାକୁ କୁହାଗଲା । ତାହା ମୋର

ପ୍ରଥମ ସାର୍ବଜନୀନ ବକ୍ତୃତା ଥିଲା । ମୁଁ ଖୁବ୍ ନର୍ଭସ ହେଇ ଯାଇଥିଲି, ଆଜି ବି ଲୋକଙ୍କ ଭିତରେ କହିବାବେଳେ ନର୍ଭସ ହେଇଯାଏଁ । ମୁଁ ଦିନ ରାତି ଲାଗି ବାରମ୍ବାର ଭାଷଣଟି ଲେଖିଲି । ଶେଷରେ ଆମେ ଉତ୍ସବଟି ପାଳନ କଲୁ ଏବଂ ମୁଁ ଗଛଟିଏ ଲଗେଇଲି । ସେଇ ମୁହୂର୍ତ୍ତର ଆବେଗରେ ବିହ୍ୱଳ ନହେଇ ଏବଂ ଦେଶ ସ୍ୱାଧୀନ ହେବା ଗର୍ବକୁ ହୃଦୟରେ ରଖି ଏକ ମିଶ୍ର ଆବେଗରେ ମୁଁ ମୋର ଭାଷଣ ଦେଲି । ଆଉ ସେ ଗଛ ଏବେ ବି ବଢୁଛି ।

ମୋ ବିଚାରରେ ଐତିହାସିକଭାବେ – ୧୯୮୪ରେ ଦିଲ୍ଲୀରେ ହୋଇଥିବା ଦଙ୍ଗା, ପୁନଶ୍ଚ ୧୯୯୨ରେ ବାବ୍‌ରୀ ମସ୍‌ଜିଦ୍ ଘଟଣା ପରି ଭୟଙ୍କର ମୁହୂର୍ତ୍ତ ପ୍ରତି ଆମର ପ୍ରତିକ୍ରିୟା କଣ ତାହା ଅତି ଗୁରୁତ୍ୱପୂର୍ଣ୍ଣ । କୌଣସି ସମ୍ବେଦନଶୀଳ ଘଟଣାକୁ ଅଡ଼େଇଦେବା ଓ ଗୁପ୍ତ ରଖିବାଠାରୁ ସେ ବିଷୟରେ ଆଲୋଚନା କରିବା ଅତ୍ୟନ୍ତ ଜରୁରୀ । ବିଶେଷ କରି ପିଲାମାନଙ୍କ କ୍ଷେତ୍ରରେ ଏହା ଅଧିକ ଗୁରୁତ୍ୱପୂର୍ଣ୍ଣ । ସେମାନଙ୍କୁ ଘଟଣାର ପୃଷ୍ଠଭୂମି ବୁଝେଇବା ଆବଶ୍ୟକ, ଏ ବିଷୟରେ ଆଲୋଚନା କରିବାକୁ ଦେବା ଓ ଲୋକମାନଙ୍କର ଏ ଘଟଣା ପ୍ରତି ବିଭିନ୍ନ ଦୃଷ୍ଟିକୋଣ ଜଣେଇବା ଦରକାର । ସେମାନେ ଜାଣିବା ଉଚିତ୍ ଯେ ଏସବୁ ଘଟଣାରେ ଦଳେ ସଂପୂର୍ଣ୍ଣ ଖରାପ ଓ ଦଳେ ସଂପୂର୍ଣ୍ଣ ଭଲ ନଥା'ନ୍ତି ଏବଂ ଏ ସବୁ ସଂପର୍କରେ ବହୁ ସୂକ୍ଷ୍ମ ପାର୍ଥକ୍ୟ ଥାଏ । ସେମାନଙ୍କୁ ଜଣେଇବାକୁ ହେବ ଯେ ଯେଉଁ ପଦ୍ଧତିରେ ଦ୍ୱେଷ ଓ ଶତ୍ରୁତା ବୃଦ୍ଧିପାଉଛି ତାହା ଯେ ଶତାବ୍ଦୀ ଶତାବ୍ଦୀ ଧରି ଥିଲା ତା' କେବେ ନୁହେଁ, ତାହା ସେହି ଆଞ୍ଚଳିକ ଓ ସାଂପ୍ରତିକ ଘଟଣାରୁ ଉଦ୍‌ଭୂତ ପରିସ୍ଥିତିରୁ ହୋଇଥାଇପାରେ । ମୁଁ ଆନନ୍ଦିତ ଯେ ଭାରତ, ପାକିସ୍ଥାନ ବିଭାଜନ ବିଷୟରେ ଐତିହାସିକମାନେ ନୂଆକରି ଆଗ୍ରହ ଦେଖଉଛନ୍ତି ଏବଂ ଏ ଲେଖା ପୂର୍ବ ଲିଖିତ ଇତିହାସରୁ ଭିନ୍ନ ।

ପୁନାରେ ଥିବା ୱାଡ଼ିଆ କଲେଜ୍‌ରେ ପଢ଼ାପଢ଼ିର ଚାପ ବହୁତ ନଥିଲା, ମୋଟାମୋଟି ମଉଜ ମସ୍ତି କରିହେଉଥିଲା । ମୁଁ ପ୍ରତ୍ୟେକ ଦିନ ସକାଳୁ ସାଇକେଲ୍ କରି ସେଠାକୁ ଯାଉଥିଲି ଓ ସାଙ୍ଗମାନଙ୍କ ସାଙ୍ଗରେ ବୁଲୁଥିଲି, କାରଣ କଲେଜଟା ଖୁବ୍ ପାଖରେ ଥିଲା । ମୁଁ ସେଠି କେବଳ ଦି' ବର୍ଷ ଥିଲି କାରଣ ତା'ପରେ ବାପାଙ୍କର ପୁଣିଥରେ ଦିଲ୍ଲୀକୁ ବଦଳିହେଲା । ଏ ଥର ମୁଁ ମୋ ବାପା ମାଙ୍କ ସାଙ୍ଗରେ ଦିଲ୍ଲୀ ଆସିଲି ଏବଂ କହିବା ବାହୁଲ୍ୟ ଯେ ମିରାଣ୍ଡା ହାଉସରେ ପଢ଼ିଲି । ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ଅନର୍ସ ପାଠ୍ୟକ୍ରମପାଇଁ ମତେ ୩ ବର୍ଷ ପଢ଼ିବାକୁ ହେଇଥାନ୍ତା । ପୁନା ବିଶ୍ୱବିଦ୍ୟାଳୟରେ ୪ ବର୍ଷରେ ବି. ଏ. କରି ହେଉଥିଲା ସେଥିରୁ ବର୍ଷେ ଇଣ୍ଟର ମିଡିଏଟ୍ । ଗୋଟେ ବି. ଏ. ଡିଗ୍ରୀ ବା ସ୍ନାତକ କରିବା ପାଇଁ ପାଞ୍ଚବର୍ଷ ସମୟ ଲାଗିବ ଭାବି ମତେ ବଡ଼ ହତାଶ ଲାଗିଲା । ତେଣୁ ମୋର ଯାହା ମନେପଡୁଛି ମୁଁ ୪ ମାସ ମିରାଣ୍ଡା ହାଉସ୍‌ରେ ପଢ଼ିବାପରେ ବନ୍ଦ କରିଦେଲି । ଶୀଘ୍ର ବି. ଏ. ସାରିବା ପାଇଁ ମୁଁ ପଞ୍ଜାବ ବିଶ୍ୱବିଦ୍ୟାଳୟ ଅନ୍ତର୍ଗତ ସିମଳାରେ ପଢ଼ିଲି । ଲଣ୍ଡନ ବିଶ୍ୱ-ବିଦ୍ୟାଳୟରେ ସ୍କୁଲ୍ ଅଫ୍ ଓରିଏଣ୍ଟାଲ ଆଣ୍ଡ ଆଫ୍ରିକାନ୍ ଷ୍ଟଡିଜ୍‌ରେ ଇତିହାସରେ ଏମ୍. ଏ. କରିବା ପାଇଁ ମୋର ଡିଗ୍ରୀଟା ଦରକାର ଥିଲା । ମୋ ବାପା ମତେ କହିଲେ ଯେ ମୋ

ଯୌତୁକ ବାବଦରେ ସେ କିଛି ଟଙ୍କା ରଖିଛନ୍ତି ଯାହାକୁ ମୁଁ ଚାହିଁଲେ ଯୌତୁକ ନିମନ୍ତେ ଅଥବା ଲଣ୍ଡନ ବିଶ୍ୱ ବିଦ୍ୟାଳୟରେ ଦୁଇବର୍ଷ ପଢ଼ା ଖର୍ଚ୍ଚ ଉଦ୍ଦେଶ୍ୟରେ ବ୍ୟବହାର କରିପାରେଁ । ମୁଁ ଲଣ୍ଡନ ବିଶ୍ୱ ବିଦ୍ୟାଳୟକୁ ବାଛିଲି, ଯଦିଓ ସେ ସମୟରେ ଶିକ୍ଷା ଦିଗରେ ଯିବାର ମୋର ଆଗ୍ରହ ନ ଥିଲା । ମୋର ପ୍ରକୃତ ଆକର୍ଷଣ ଥିଲା ଲଣ୍ଡନ, ସେତେବେଳେ ସମସ୍ତଙ୍କ ଦୃଷ୍ଟିରେ ଲଣ୍ଡନ ଥିଲା ବିଶ୍ୱର କେନ୍ଦ୍ରବିନ୍ଦୁ । ବାପା ମାଙ୍କ ତରଫରୁ ମୋର ସିଦ୍ଧାନ୍ତର ପୁନର୍ବିଚାର ପାଇଁ ସାମାନ୍ୟ ଚାପ ଥିଲା କିନ୍ତୁ ମୁଁ ସ୍ୱୀକାର କରିବା ଉଚିତ୍ ଯେ ମୋର ପିତାମାତା ଦୁହେଁ ବହୁତ ଉଦାର ଥିଲେ ଏବଂ ଏ ନିଷ୍ପତ୍ତି ମୋ ଉପରେ ଛାଡ଼ି ଦେଇଥିଲେ । ଏ ଦୃଷ୍ଟିରୁ ମୁଁ ବହୁତ ଭାଗ୍ୟବାନ ଥିଲି ।

ଲଣ୍ଡନ ଯାଇ ଯାହା କହନ୍ତି ମୁଁ ବିମୁଗ୍ଧ ହେଇଗଲି । ବିଭିନ୍ନ କାର୍ଯ୍ୟ କରିବା ପାଇଁ ସୁବିଧା ସୁଯୋଗର ଯେଉଁ ପ୍ରଚୁର ଅବକାଶ ଥିଲା ତା' ବିସ୍ମୟକର । ମୁଁ ଯାହା କରିବା ପାଇଁ ଚାହୁଥିଲି – ଯେପରି କୌଣସି ପାଠ୍ୟକ୍ରମରେ ଯୋଗଦେବା, କୌଣସି ବକ୍ତୃତା, ବାଦ୍ୟ ସମାରୋହ, ଜାଜକ୍ଲବ, ଚିତ୍ରକଳା ପ୍ରଦର୍ଶନୀ, କବିତା ପାଠ, ନାଟକ, ସିନେମା ସବୁକିଛି କରିବାର ସୁବିଧା ଥିଲା । ସତେ ଯେପରି ଏଇଟା ଗୋଟିଏ କାମନା ପୂର୍ତ୍ତି କରିବାର ସ୍ୱପ୍ନିଳ ରାଜ୍ୟ ! ମୁଁ ଆଗରୁ କେବେ, ଏମିତି ଅନୁଭବ କରିନଥିଲି କାରଣ ତୁଳନାତ୍ମକଭାବେ ଭାରତୀୟ ସହରରେ ଜଣେ ଯୁବତୀ ନାରୀର ଜୀବନ ବଡ଼ କାଇଦା କଟକଣା, ଅନୁଶାସନ ପୂର୍ଣ୍ଣ । ତେବେ ପ୍ରତ୍ୟେକ ବିଷୟରେ ଖାପ୍ ଖୁଏଇ ଚଳିବା ସହଜ ନଥିଲା – କାରଣ ଲଣ୍ଡନ ବିଶ୍ୱ ବିଦ୍ୟାଳୟର ନିୟମ ଅନୁସାରେ ଏମ୍. ଏ. କରିବା ପୂର୍ବରୁ ମତେ ଇତିହାସ ଅନର୍ସରେ ବି. ଏ କରିବାକୁ ହେବ । (ମୋର ଇତିହାସ ଅନର୍ସରେ ବି. ଏ. ଡିଗ୍ରୀ ଦରକାର । ପଞ୍ଜାବରେ ମୁଁ ସାହିତ୍ୟରେ ବି. ଏ. କରିଥିଲି ।) କିନ୍ତୁ ସେମାନେ ମତେ ସାଧାରଣ ତିନି ବର୍ଷ ପରିବର୍ତ୍ତେ ଦୁଇ ବର୍ଷ ଭିତରେ ବି.ଏ କରିବାକୁ ଅନୁମତି ଦେଲେ । ଏ ଦୁଇ ବର୍ଷ ପଢ଼ିବା ମୋ ପାଇଁ ଖୁବ୍ ଲାଭଦାୟକ ହେଲା କାରଣ ଐତିହାସିକ ପଦ୍ଧତି ଓ ବିଭିନ୍ନ ଉତ୍ସର ଉପଯୋଗ କରିବା ବିଷୟରେ ଶିକ୍ଷା ପାଇଲି । ତଥାପି ମୋର ଅନ୍ୟ ଆଗ୍ରହର ବିଷୟ ପାଇଁ ମୁଁ ସମୟ ବାହାର କଲି । ମୁଁ ପ୍ରଥମ ବର୍ଷ ଚୀନୀ କଳା ଓ ପୁରାତତ୍ତ୍ୱରେ ଡିପ୍ଲୋମା କୋର୍ସରେ ଯୋଗ ଦେଲି କାରଣ ମତେ ଲାଗିଲା ଯେ ଆଉ ଏକ ଏସୀୟ ସଭ୍ୟତା ସଂପର୍କରେ ମୋର ଜ୍ଞାନ ରହିବା ଆବଶ୍ୟକ । ମୋର ଏସବୁ କାର୍ଯ୍ୟକଳାପ ସତ୍ତ୍ୱେ ମୁଁ ପରୀକ୍ଷାରେ ଭଲ କଲି ଆଉ ବର୍ତ୍ତମାନ ଲଣ୍ଡନରେ ରହିବା ପାଇଁ ଅଧିକ ଆଗ୍ରହୀ ଥିଲି । ମୋ ବାପା ସ୍ପଷ୍ଟଭାବରେ କହିଦେଲେ ଯେ ଆଗକୁ ପଢ଼ାଖର୍ଚ୍ଚ ତୁଲେଇବା ତାଙ୍କ ପକ୍ଷେ ସମ୍ଭବ ନୁହେଁ । ସେ ସମୟରେ ଆଜିକାଲି ପରି ଲଣ୍ଡନରେ ଚାକିରିର ସେତେ ସୁଯୋଗ ବି ନଥିଲା । ମୁଁ ଗୋଟେ ସାମ୍ବାଦିକ ହେବି ବୋଲି ଚିନ୍ତା କରୁଥିଲି କିନ୍ତୁ ମୋ ଭାଇ ମତରେ ମୁଁ ସେ ଧାତୁରେ ଗଢ଼ା ହେଇନି । ମୋ ଶିକ୍ଷକ ପ୍ରଫେସର ଏ. ଆର୍. ବାସମ୍ ଲଣ୍ଡନ ବିଶ୍ୱ ବିଦ୍ୟାଳୟର ଗବେଷକଙ୍କ ନିମିତ୍ତ ଉଦ୍ଦିଷ୍ଟ ଛାତ୍ରବୃତ୍ତିପାଇଁ ମତେ ଆବେଦନ କରିବା ପାଇଁ ପରାମର୍ଶ ଦେଲେ । ପ୍ରଥମେ ମୁଁ କୁଣ୍ଠିତ ହେଉଥିଲି କିନ୍ତୁ ଯା'ହେଉ ମୁଁ ଆବେଦନ କଲି ଓ

ଆଶ୍ଚର୍ଯ୍ୟ ଜନକ ଭାବେ ମତେ ମିଳିଗଲା । ତେଣୁ ଏମିତି ଭାବରେ ଉଭୟ ଲଣ୍ଡନରେ ରହିବା ଓ ଜଣେ ଶିକ୍ଷାବିଦ୍ ହେବା ମୋ ଭାଗ୍ୟରେ ସୁନିଶ୍ଚିତ ହେଇଗଲା ।

ମୁଁ ଅଶୋକ ମୌର୍ଯ୍ୟଙ୍କର ଶାସନ କାଳର ପୁନର୍ବ୍ୟାଖ୍ୟା କରିବାକୁ ଚାହୁଁଥିଲି । କାରଣ ତାଙ୍କର ଖୋଦିତ ଶିଳାଲେଖ ଆଦିରୁ ପ୍ରତିଫଳିତ ବ୍ୟକ୍ତିତ୍ୱ ଦ୍ୱାରା ମୁଁ ବିମୋହିତ ଥିଲି । ସେ ଜଣେ ଉଲ୍ଲେଖନୀୟ କୂଟନୀତିଜ୍ଞ ଥିଲେ ଯିଏ ସାମାଜିକ ନ୍ୟାୟ ଉପରେ ଗୁରୁତ୍ୱ ଦେଉଥିଲେ ଓ ଏହାକୁ ପ୍ରୟୋଗ କରିବାରେ ପ୍ରୟାସୀ ଥିଲେ । ମୁଁ ଅନୁସନ୍ଧାନ କରିବାକୁ ଚାହୁଁଥିଲି ଯେ କେତେ ପରିମାଣରେ ସେ ବୌଦ୍ଧଧର୍ମ ପ୍ରତି ଆଗ୍ରହୀ ଥିବାରୁ ଏଥି ନିମନ୍ତେ ଉତ୍ସାହିତ ହେଲେ ନା ଐତିହାସିକ ପ୍ରାସଙ୍ଗିକତା ପ୍ରତି ପ୍ରତିକ୍ରିୟାଶୀଳ ହୋଇ ଏହା କରିଥିଲେ । ମୁଁ ଯୁକ୍ତିନିଷ୍ଠ ଭାବେ ପ୍ରମାଣ କରିବାକୁ ଚାହୁଁଥିଲି ଯେ ପ୍ରାସଙ୍ଗିକ ପ୍ରତିକ୍ରିୟାଶୀଳତା ମୁଖ୍ୟ କାରଣ କିନ୍ତୁ ବୌଦ୍ଧଧର୍ମର ପ୍ରଭାବ ଆଦୌ ଅଯୌକ୍ତିକା ବା ଅପ୍ରାସଙ୍ଗିକ କାରଣ ନଥିଲା । ମୋର ତାଙ୍କ ପ୍ରତି ଏକ ଅନନ୍ୟ, ଅଗାଧ ଓ ପ୍ରଗାଢ଼ ଶ୍ରଦ୍ଧା ଥିଲା । ଯଦିଓ ତାଙ୍କ ନୀତିର ମୁଁ ଯେପରି ସମାଲୋଚନାତ୍ମକ ବିଶ୍ଳେଷଣ କରିଥିଲି ତାକୁ ପଢ଼ି ଅନେକ ମୋତେ ସମାଲୋଚନା କଲେ । ପ୍ରାଚୀନ ଭାରତୀୟ ଇତିହାସରେ ଏହାକୁ ଏକ ଗୁରୁତ୍ୱପୂର୍ଣ୍ଣ ସଂଯୋଗ ସ୍ଥଳ ମନେ କରାଯାଏ । କାରଣ ଏହି ସମୟରେ ଗୋଟିଏ ରାଷ୍ଟ୍ର, ନଗର ସଭ୍ୟତା, ରାଜନୈତିକ ପରିବର୍ତ୍ତନ ଆଦିର ନିର୍ମାଣ କାର୍ଯ୍ୟ ଆରମ୍ଭ ହେଲା ଯାହା ଆଗରୁ କେବେ ଘଟି ନ ଥିଲା । ମୌର୍ଯ୍ୟକାଳୀନ ସମସ୍ତ ବ୍ୟାପାରକୁ ସମୃଦ୍ଧ କରିଥିବା ବ୍ୟବସ୍ଥା ତଥା ମୌର୍ଯ୍ୟ ପରବର୍ତ୍ତୀ କାଳରେ ଏଗୁଡ଼ିକର ବିସ୍ତୃତି ପ୍ରାଚୀନ ଇତିହାସରେ ଗୋଟେ ନୂଆ ଦିଗନ୍ତ ଯୋଗ କଲା ।

ମୋର ପି.ଏଚ୍.ଡି. ପରେ ବି ମୁଁ ଲଣ୍ଡନରେ ରହିବାକୁ ଚାହୁଁଥିଲି । ତେବେ ଯା ଭିତରେ ମୁଁ ବୁଝି ସାରିଥିଲି ଜଣେ ସୌଖୀନ୍ ଇତିହାସବିତ୍ ଭାବରେ ବେଶୀ ଦିନ ଚଳିବନି । ମୁଁ ଗବେଷଣା କାଳ ମଧ୍ୟରେ ଯା ବି ଜାଣିସାରିଥିଲି ଯେ ପ୍ରାଚୀନ ଇତିହାସ ଅଧ୍ୟୟନ ବିଷୟରେ ମୁଁ ଯେଉଁ ଜ୍ଞାନ ଆହରଣ କରିଛି ତାର ଯଥାର୍ଥ ପ୍ରୟୋଗ କେବଳ ଭାରତର କୌଣସି ବିଶ୍ୱ ବିଦ୍ୟାଳୟରେ ଅଧ୍ୟାପନା ଦ୍ୱାରା ସମ୍ଭବ । ମୁଁ ଏଇ ଦିଗରେ ଭାବିବା ଆରମ୍ଭ କରୁଥିଲି ଆଉ ସେତିକିବେଳେ ବିଭିନ୍ନ ବ୍ୟକ୍ତିଗତ ବ୍ୟାପାର ଏହାକୁ ଅଧିକ ମଜବୁତ୍ କରିଲା । ୧୯୬୧ରେ ନୂଆ ଖୋଲିଥିବା କୁରୁକ୍ଷେତ୍ର ବିଶ୍ୱବିଦ୍ୟାଳୟରେ ଯୋଗଦେବାପାଇଁ ମତେ ନିମନ୍ତ୍ରଣ ମିଳିଲା ଓ ମୁଁ ଲଣ୍ଡନରୁ କୁରୁକ୍ଷେତ୍ର ଚାଲିଆସିଲି । କିନ୍ତୁ କୁରୁକ୍ଷେତ୍ର କାହିଁକି ? ଅସଲରେ ମୁଁ ନିଜକୁ ଶିକ୍ଷାକ୍ଷେତ୍ରରେ ଜଣେ ଦିଗ୍‌ଦର୍ଶକ ମନେ କରୁଥିଲି । ସେଠି ଗୋଟିଏ ପ୍ରାଚୀନ ଭାରତୀୟ ଇତିହାସ ବିଭାଗ ଖୋଲିବାର ଥାଏ ଯାହାର ପାଠ୍ୟକ୍ରମ ଓ ଶିକ୍ଷା ଆଦି ଯୋଜନା କରିବାର ଦାୟିତ୍ୱ ମୋ ଉପରେ ଥିଲା । ମୋ ପାଇଁ ଏହା ଏକ ଅବିଶ୍ୱାସନୀୟ ଆନନ୍ଦର ଘଟଣା ଥିଲା । ପ୍ରଥମ ଚାକିରିରେ ମୋ ସ୍ୱପ୍ନ ସତହେବାକୁ ଯାଉଛି ଦେଖି ବହୁତ ଭଲ ଲାଗୁଥିଲା । ମୁଁ ନିଜକୁ ଖୁବ୍ ଶୀଘ୍ର ପଥ ପ୍ରଦର୍ଶକ ରୂପେ ଦେଖିବା ପାଇଁ ଉତ୍କଣ୍ଠିତ ଥିଲି । ଆପଣମାନେ ଜାଣନ୍ତି ଯଦି ଜଣେ ନିଜକୁ ସେହିପରି ଦୃଷ୍ଟିରେ ଦେଖେ ତେବେ

ସାହସ ବୃଦ୍ଧିପାଏ । ପରିସ୍ଥିତି କିନ୍ତୁ ଠିକ୍ ବିପରୀତ ଥିଲା । ମୋ ବିଭାଗରେ ନା ଅନ୍ୟ କୌଣସି ଅଧ୍ୟାପକ ଥିଲେ ନା ଛାତ୍ର ନା ପୁସ୍ତକାଳୟ । ତେଣୁ ପାଠ୍ୟକ୍ରମ ଆରମ୍ଭ କରିପାରୁନଥିଲି । ମତେ ସେ ସମୟରେ ବିଶ୍ୱବିଦ୍ୟାଳୟ ଯାହା ଯୋଗେଇ ପାରୁଥିଲା ତା'ଠାରୁ ମୋର ବିଭାଗ ସ୍ଥାପନ କରିବା ଏବଂ ଶିକ୍ଷା ଦେବାର ଯୋଜନା ସଂପୂର୍ଣ୍ଣ ପୃଥକ ଥିଲା । ଯଦିଓ ପରେ ଏହା ଏକ ଖୁବ୍ ସମ୍ମାନିତ ବିଶ୍ୱବିଦ୍ୟାଳୟର ନାଁ ଅର୍ଜନ କଲା । ମାତ୍ର ସେତେବେଳେ ମୁଁ ବାସ୍ତବରେ କହିବାକୁ ଗଲେ ବନ୍ଧା ପଡ଼ିଥିଲି, ହାତରେ କିଛି କାମ ନଥିଲା । ଭାରତକୁ ଫେରିବା ପୂର୍ବରୁ ମୁଁ ପେଙ୍ଗୁଇନ୍ ପ୍ରକାଶକ ସଂସ୍ଥା ସହିତ ଭାରତ ଇତିହାସର ପ୍ରଥମ ଖଣ୍ଡ ଲେଖିବା ପାଇଁ ଗୋଟିଏ ଚୁକ୍ତି ସ୍ୱାକ୍ଷର କରିଥିଲି । ମୁଁ ପ୍ରାଣପଣେ ଲେଖିବାପାଇଁ ଚାହୁଁଥିଲି, ସେଥିପାଇଁ ମତେ ବହୁତ ବହି ପଢ଼ିବାକୁ ହେବ – କିନ୍ତୁ ପୁସ୍ତକାଳୟ ନଥିଲା । ପ୍ରାୟ ଦେଢ଼ବର୍ଷପରେ ମତେ ଲାଗିଲା, ଯଥେଷ୍ଟ ହେଲା । ମୁଁ ଗୋଟିଏ ୟୁ.ଜି.ସି ଛାତ୍ର ବୃତ୍ତି ପାଇଁ ଅବେଦନ କଲି ଓ ଦିଲ୍ଲୀକୁ ଚାଲିଗଲି । ବର୍ଷକ ପରେ ସେମାନେ ଦିଲ୍ଲୀ ବିଶ୍ୱ ବିଦ୍ୟାଳୟରେ ଗୋଟିଏ ରିଡ଼ର ପଦପାଇଁ ବିଜ୍ଞାପନ ଦେଲେ ଏବଂ ମୁଁ ନିଯୁକ୍ତି ପାଇଲି ।

ଜଣେ ପୁରୁଷ ଶିକ୍ଷାବିଦ୍ ତୁଳନାରେ ମହିଳା ଶିକ୍ଷାବିଦ୍ ହେବା ବହୁତ ଅଲଗା କଥା । ଏହା ଯେ ମୁଁ ଅନୁଭବ କଲି ତା' ନୁହେଁ ମତେ ଅନୁଭବ କରାଗଲା । ଜଣେ ସ୍ତ୍ରୀ ଲୋକ ଅଧ୍ୟାପିକା ପଦ ଅଧିକାର କରିଥିବା ବିଷୟଟି ମୋର କିଛି ସହକର୍ମୀଙ୍କୁ ଅସନ୍ତୁଷ୍ଟ କରିଥିଲା । ଜଣେ ସେନାଧିକାରୀ ଝିଅ ହୋଇଥିବାରୁ ସହଜାତ ଭାବରେ ମୋର ପ୍ରାଚୀନ ଇତିହାସ ବୁଝିପାରିବାର କ୍ଷମତା ନଥିବା କଥା କହି ମୋ ସହକର୍ମୀମାନେ ଛାତ୍ରମାନଙ୍କ ଆଗରେ ମୋ ବିଷୟରେ ଥଟ୍ଟାମଜା କରନ୍ତି । ଅନ୍ୟ ମହିଳାମାନଙ୍କ ସହିତ ପ୍ରାୟତଃ ଯାହା ଘଟିଥାଏ, ମୁଁ ବି ସେ ଧାରଣାର ବଶବର୍ତ୍ତୀ ହୋଇ ସ୍ଥିର କରିଲି ଯେ ଯଦି ମତେ କୌଣସି ପ୍ରକାର ଭଲ ଭାବମୂର୍ତ୍ତି ତିଆରି କରିବାକୁ ପଡ଼େ ତେବେ ମତେ ମୋର ପୁରୁଷ ସହକର୍ମୀମାନଙ୍କଠାରୁ ଦୁଇଗୁଣ ଭଲହେଇ ଦେଖେଇବାକୁ ପଡ଼ିବ । ଭାଗ୍ୟକୁ ଏହା ଖୁବ୍ ଗୋଟେ କଠିନ କାମ ନ ଥିଲା । ଏଥି ସହିତ ମୁଁ ୟା ବି କହିରଖେ ଯେ ବିଭାଗରେ ଜଣେ ମହିଳା ଅଧ୍ୟାପକ ଯୋଗଦେବା ତଥା ଏ ପ୍ରକାର ପରିବର୍ତ୍ତନକୁ କେତେକ ସହକର୍ମୀ ସମର୍ଥନ ମଧ୍ୟ କରୁଥିଲେ । ତଥାପି ଏ ପ୍ରଫେସନରେ ମୁଁ ମହିଳା ବୋଲି ଯଥେଷ୍ଟ ସଚେତନ ଥିଲି । ଅନ୍ୟମାନଙ୍କର ଏ ସଂପର୍କିତ ଟିପ୍ପଣୀ ବାରମ୍ବାର ମୋ କାନରେ ପଡୁଥିଲା । ସଂପ୍ରତି ମହିଳାମାନଙ୍କୁ ବିବିଧ କ୍ଷେତ୍ରରେ ଦେଖିବାକୁ ମିଳୁଛି ଯଦିଓ ବହୁ ସଂଖ୍ୟକ ନୁହେଁ । ଜଣେ ଲିଙ୍ଗଗତ ସମସ୍ୟା ବିଷୟରେ ଭଲଭାବରେ ଅବଗତ ରହୁଛି କାରଣ ସେ ସଂପର୍କରେ କୁହାଯାଉଛି । କିନ୍ତୁ ମୁଁ ନିଜକୁ କେବେବି ଆଦର୍ଶ ବୋଲି ସଚେତନ ଭାବରେ ଭାବିନଥିଲି ।

୧୯୭୦ ମସିହା ଶେଷବେଳକୁ ମୁଁ ଜୱାହରଲାଲ ନେହ୍ରୁ ବିଶ୍ୱବିଦ୍ୟାଳୟକୁ ଚାଲିଆସିଲି, ଯେତେବେଳେ ଏହା ଆରମ୍ଭ ହେଲା । ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ କିଛି ବିଶେଷ ପରିବର୍ତ୍ତନ ଆଣିବା କାଠିକର ପାଠ ଥିଲା । ହୁଏତ ମୁଁ ବହୁତ ପରିଶ୍ରମ କରି ନଥିଲି – କିନ୍ତୁ ଜେ. ଏନ୍. ୟୁ ବଡ଼ ଆକର୍ଷଣୀୟ ଥିଲା କାରଣ ଏଠି ସବୁକିଛି ନୂଆ ଥିଲା । ମୁଁ

ଭାବୁଛି ମୋର ଅଗ୍ରଣୀ ହେବାର ପ୍ରବୃତ୍ତି ପୁନର୍ଜାଗ୍ରତ ହେଇଉଠିଲା । ମୁଁ ଜାଣିବାକୁ ପାଇଲି ଯେ ସେଠାରେ ଅର୍ନ୍ତ-ବିଷୟ ପାଠ୍ୟକ୍ରମ ଓ ପାରମ୍ପରିକ ବିଷୟକୁ ନୂତନ ଦୃଷ୍ଟିକୋଣରୁ ଅଧ୍ୟୟନ ଓ ଅଧ୍ୟାପନା ନିମନ୍ତେ ଗଭୀର ଆଗ୍ରହ ରହିଛି । ଆମେ କିଛି ନୂତନ ପ୍ରବର୍ତ୍ତନ କରିବା ନିମନ୍ତେ ସମର୍ଥ ଥିଲୁ । ଆମକୁ ଯାହା ନିର୍ଦ୍ଦେଶ ଦିଆଗଲା ତାକୁ ସଂକ୍ଷିପ୍ତରେ କୁହାଯାଇପାରେ ଯେ - ବିଦ୍ୟମାନ ଇତିହାସ ବିଭାଗଗୁଡ଼ିକର ପାଠ୍ୟକ୍ରମର ଅଯଥା ନକଲ ନକରିବା ପାଇଁ, ତେଣୁ ଆମେ ତା'ଠୁ ଭିନ୍ନ ପାଠ୍ୟକ୍ରମ ତିଆରି କରିବା ପାଇଁ ପ୍ରୟାସ କଲୁ । ପାଠ୍ୟକ୍ରମକୁ ସୁଚାରୁରୂପେ ଚଳେଇବା ପାଇଁ ତାକୁ ସେମିଷ୍ଟର ବ୍ୟବସ୍ଥା କରି ଦିଆଗଲା ଓ ନିୟମିତ ଟିଉଟରିଆଲ୍‌ସ ବି ଦିଆଗଲା । ପ୍ରଥମେ ଆମର ପାଠ୍ୟକ୍ରମକୁ ବେଶି ନୂତନତାଯୋଗୁଁ ସମାଲୋଚନା କରାଗଲା କିନ୍ତୁ ସୌଭାଗ୍ୟବଶତଃ ଆମେ ସେଥିରେ ଅବିଚଳିତ ରହିଲୁ । ଦଶବର୍ଷପରେ ବିଭିନ୍ନ ବିଶ୍ୱବିଦ୍ୟାଳୟ ଯେମିତି ଶିଲଂରେ ଏନ୍.ଇଏଚ୍.ୟୁ, ହାଇଦ୍ରାବାଦ ଏବଂ ଏପରିକି ଦିଲ୍ଲୀ ବିଶ୍ୱବିଦ୍ୟାଳୟ ଧୀରେ ଧୀରେ ଆମର କିଛି କିଛି ପାଠ୍ୟକ୍ରମକୁ ଗ୍ରହଣ କଲେ ଏବଂ ଏହା ଅତି ଆନନ୍ଦର ବିଷୟ ଥିଲା ।

କିନ୍ତୁ ପଢ଼େଇବା ବଡ଼ କଠିନ ଥିଲା । ଛାତ୍ରମାନଙ୍କ ସଂଖ୍ୟା କମ୍ ଥି ଲା । ମାତ୍ର ସେମାନଙ୍କୁ ନିର୍ଦ୍ଦିଷ୍ଟ ବିଷୟ ଉପରେ ବିଶେଷ ଅଧ୍ୟୟନ କରିବାକୁ ପଡୁଥିଲା, ଟିଉଟୋରିଆଲ୍ ପ୍ରବନ୍ଧ ଲେଖିବାକୁ ହେଉଥିଲା ଏବଂ ଏସବୁ ସେହି ବିଷୟ ପଢ଼ଉଥିବା ଅଧ୍ୟାପକଙ୍କ ସହିତ ଆଉରି ଛୋଟ ଛୋଟ ଦଳରେ ଆସି ଆଲୋଚନା କରିବାକୁ ପଡୁଥିଲା । ସେହି ପ୍ରବନ୍ଧ ଗୁଡ଼ିକୁ ଆଭ୍ୟନ୍ତରୀଣ ମୂଲ୍ୟାଙ୍କନ (ଇଣ୍ଟର୍ନାଲ୍ ଆସେସ୍‌ମେଣ୍ଟ) ନିମନ୍ତେ ଗ୍ରହଣ କରାଯାଉଥିଲା । ମୁଁ ଜାଣିଥିବା ଭାରତର ଅନ୍ୟ ଯେ କୌଣସି ବିଶ୍ୱ ବିଦ୍ୟାଳୟର ଛାତ୍ରମାନଙ୍କ ସହିତ କାମ କରିବାର ଦାୟିତ୍ୱଠୁଁ ଯଥେଷ୍ଟ ଅଧିକ ଥିଲା । ଆଶ୍ଚର୍ଯ୍ୟର କଥା ଏଇ ସମୟରେ ହିଁ ଅର୍ଥାତ ୧୯୭୦ରୁ ୮୦ ମଧ୍ୟରେ ମୁଁ ଅଧିକ ସୃଜନଶୀଳ ଭାବରେ ଲେଖିଲି, ଚିନ୍ତା କରିଲି ଯାହା ମୁଁ ପୂର୍ବରୁ କରିପାରିନଥିଲି । ଛାତ୍ର ମାନଙ୍କ ସହିତ ଗଭୀର ଆଲୋଚନା ଓ ମୋ ନିଜର ଗବେଷଣା ପରସ୍ପରର ପରିପୂରକ ହେଲେ । ଅର୍ଥାତ ନୂଆ ବିଚାର ବା ସିଦ୍ଧାନ୍ତର ପରୀକ୍ଷା ପଦ୍ଧତି ଅର୍ଥ ହିଁ ଏଗୁଡ଼ିକର ସ୍ପଷ୍ଟୀକରଣ ହେବା ଆବଶ୍ୟକ ।

ସତୁରୀ ଦଶକ ରାଜନୈତିକ ଦୃଷ୍ଟିକୋଣରୁ ଘୋର ଅସ୍ଥିରତାର ସମୟ ଥିଲା । ୧୯୭୫ - ୭୭ ସମୟ ଅଧିକ ମହତ୍ତ୍ୱପୂର୍ଣ୍ଣ ଥିଲା କାରଣ ଶ୍ରୀମତୀ ଗାନ୍ଧୀ ଜରୁରୀକାଳୀନ ପରିସ୍ଥିତି ଜାରି କରିଥିଲେ । ଆମେ ଜେ. ଏନ୍.ୟୁର ଅଧିକାଂଶ ଯାର ପ୍ରତିବାଦ କରିଥିଲୁ । ତାପରେ ମୋରାରଜୀ ଦେଶାଇ ସରକାର କ୍ଷମତାକୁ ଆସିଲା । ମୋରାରଜୀ ସରକାର ଏନ୍ ସି ଆର୍ ଟି ଦ୍ୱାରା ପ୍ରକାଶିତ ସ୍କୁଲ ଇତିହାସ ପାଠ୍ୟ ପୁସ୍ତକ ଉପରେ ନିଷେଧାଜ୍ଞା ଜାରି କଲେ ଯାହା ମତେ ପ୍ରଚଣ୍ଡ ବିସ୍ମିତ କରିଥିଲା । ମୁଁ ଷଷ୍ଠ ଓ ସପ୍ତମ ଶ୍ରେଣୀ ପାଇଁ ପ୍ରାଚୀନ ଓ ମଧ୍ୟଯୁଗୀୟ ଭାରତ ଉପରେ ପାଠ୍ୟ ପୁସ୍ତକ ଲେଖିଥିଲି ଯାହା ୧୯୬୬-୬୭ରୁ ତାଙ୍କ ପାଠ୍ୟ ପୁସ୍ତକ ଭାବେ ଚଳି ଆସୁଥିଲା । ଏହା ବିସ୍ମୟକର ଥିଲା । କାରଣ ଜରୁରୀକାଳୀନ ପରିସ୍ଥିତିର ଅନ୍ତଃ ହେବା ଅର୍ଥ ଅଭିବ୍ୟକ୍ତିର ସ୍ୱାଧୀନତାରେ ପ୍ରତ୍ୟାବର୍ତ୍ତନ ଆସିବା । ଆମେ

ଜାଣିବାକୁ ପାଇଲୁ ଯେ ମୋରାରଜୀ ସରକାରଙ୍କୁ ଏହା ନାନାଜୀ ଦେଶମୁଖଙ୍କର ଅବଦାନ ଆଉ ଏଇଟା ରାଷ୍ଟ୍ରୀୟ ସ୍ୱୟଂ ସେବକ ସଂଘ ସହିତ ମୋର ପ୍ରଥମ ପ୍ରତ୍ୟକ୍ଷ ମୁକାବିଲା ଥିଲା ।

ବର୍ତ୍ତମାନ ଏ ବହିଉପରେ ବାରମ୍ବାର ଆକ୍ରମଣ କାହାକୁ ଚକିତ କଲାନାହିଁ, ଜଣାଥିଲା ଯା ପଛରେ କାହା ହାତ ଅଛି । ଆମେମାନେ ତାପରେ ବିରୋଧ କରିବାର ସିଦ୍ଧାନ୍ତ ନେଲୁ ଯେ ନୀତିଗତ ଭାବରେ କୌଣସି ପ୍ରଧାନମନ୍ତ୍ରୀ ପ୍ରଧାନମନ୍ତ୍ରୀ ଭାବରେ ବା ଶିକ୍ଷାମନ୍ତ୍ରୀଭାବରେ ଶିକ୍ଷାମନ୍ତ୍ରୀ ଇତିହାସ ପାଠ୍ୟ ପୁସ୍ତକର ବିଷୟ ନିର୍ଦ୍ଧାରଣ କରିନପାରନ୍ତି । ଏହା ଇତିହାସବିଦ୍ ମାନଙ୍କର କ୍ଷମତା ଅନ୍ତର୍ଭୁକ୍ତ । ତେଣୁ ଯଦି ସରକାର ଇତିହାସବିଦ୍‌ମାନଙ୍କର ଏକ କମିଟି ଗଠନ କରି ବହିଗୁଡ଼ିକର ମୂଲ୍ୟାୟନ କରନ୍ତି ତେବେ ଆମେ ସେମାନଙ୍କ ନିର୍ଣ୍ଣୟ ସହିତ ଏକମତ ହେବୁଁ । ଯେଉଁ କମିଟି ସରକାରଙ୍କ ଦ୍ୱାରା ନିଯୁକ୍ତ ହେଲା ତାହା ଏ ବହିଗୁଡ଼ିକୁ ଅନୁମୋଦିତ କଲା । ତିନି ବର୍ଷ ଧରି ଏହା ଜନ- ଆଲୋଚନାର ବିଷୟ ହେଇ ରହିଲା । ଏ ଆଲୋଚନାରୁ ଆଶା କରାଯାଏ ଯେ ଐତିହାସିକ ବ୍ୟାଖ୍ୟାର ଗୁରୁତ୍ୱ ଲୋକମାନେ ବୁଝିପାରିଥିବେ ।

ସତୁରୀ ଦଶକରେ ଗୋଟେ ଦୃଷ୍ଟିରୁ ବିତର୍କ ଅନ୍ୟ ଏକ ଦିଗର ଲକ୍ଷଣ ଥିଲା – ଭାରତୀୟ ସମାଜରେ ଏକ ତଥାକଥିତ ଆଧୁନିକତା ଆସିଯାଇଛି । ଜଣେ ଯୁବ ମହିଳା ଭାବରେ ମୁଁ ଖୁବ୍ ଗର୍ବ ଅନୁଭବ କରୁଥିଲି ଯେ ଜଣେ ମହିଳା ପ୍ରଧାନମନ୍ତ୍ରୀ ପଦରେ ଅଛନ୍ତି ଯଦିଓ ତାଙ୍କ ରାଜନୀତିର ମୁଁ ପକ୍ଷପାତୀ ନଥିଲି । ଆମେ ଭାବିଲୁ ଯେ ଷାଠିଏ ଦଶକରେ ଏକ ନୂତନ ଭାରତର ଉଦୟ ହେଲା ଓ ସେଥିରେ ହେଉଥିବା ପରିବର୍ତ୍ତନର ପ୍ରଭାବ ସୁଦୂର ପ୍ରସାରୀ ହେବ । ଗୋଟିଏ ଗଣତାନ୍ତ୍ରିକ, ଧର୍ମ ନିରପେକ୍ଷ, ନାଗରିକତ୍ୱରେ ସମାନତା ଥିବା ଦେଶ ସଂପର୍କରେ ଆମର ଯେଉଁ ସ୍ୱପ୍ନ ଓ ଦୃଷ୍ଟିକୋଣ ଥିଲା ତା' ଶେଷରେ ସାକାର ରୂପ ନେଉଛି ବୋଲି ଭାବୁଥିଲୁ । ମାତ୍ର ସେ ପରିବର୍ତ୍ତନ ଯାହାକୁ ଆମେ ଠିକ୍ ବୁଝିପାରୁନଥିଲୁ ତା ପ୍ରକୃତ ସତ୍ୟ ନ ଥିଲା, ତା ଉପରଠାଉରିଆ ଥିଲା । ଗଣତନ୍ତ୍ର, ଧର୍ମନିରପେକ୍ଷତା ସମାନ ନାଗରିକତା ନିମିତ୍ତ ଆବଶ୍ୟକ ଉପାଦାନ ଉପରେ ଯଥେଷ୍ଟ ଦୃଷ୍ଟି ଦିଆଯାଉନଥିଲା । ଶିକ୍ଷା ଅବହେଳିତ ହେଉଥିଲା, ସ୍ୱାସ୍ଥ୍ୟ ଓ ସର୍ବାଙ୍ଗୀନ ଉନ୍ନତି, ନ୍ୟାୟ ବ୍ୟବସ୍ଥା ଏବଂ ମାନବିକ ଅଧିକାର ହାତ ପାହାନ୍ତାର ବାହାରେ ଥିଲା । ଯଥାର୍ଥରେ କହିବାକୁ ଗଲେ ଏହା ହିଁ ସାଂପ୍ରତିକ ବିଷମ ସମସ୍ୟାର ମୂଳ କାରଣ ।

ମୋର ଜେ.ଏନ୍.ୟୁର ୨୦ ବର୍ଷର ରହଣି ମୋ ପାଇଁ ଖୁବ୍ ଉପକାରୀ ଥିଲା । ମୁଁ ଛାତ୍ରମାନଙ୍କ ଖୁବ୍ ନିକଟ ସଂପର୍କରେ ଆସିଥିଲି, ସେମାନେ ଆଜି ଅନ୍ୟ ସ୍ଥାନରେ ଶିକ୍ଷକ ଭାବରେ ଭଲ ସୁନାମ ଅର୍ଜନ କରିଛନ୍ତି ଓ ଅନ୍ୟ ଚାକିରି ବି କରିଛନ୍ତି । ମୁଁ ଦେଶର ବିଭିନ୍ନ ଅଞ୍ଚଳର ଯୁବ ଛାତ୍ରମାନଙ୍କୁ ଜାଣିବାର ସୁଯୋଗ ପାଇଲି ଯାହା ପ୍ରକୃତରେ ମୋର ଅନ୍ତର୍ଦୃଷ୍ଟି ଉନ୍ମୋଚିତ କରିଦେଲା । ଆମେ ଭାରତୀୟ ଇତିହାସ ବିଷୟକୁ ଯେଉଁ ଦିଗନ୍ତର ସ୍ପର୍ଶ ଦେବାକୁ ସମର୍ଥ ହେଲୁ ତାହା ପ୍ରକୃତରେ ଏକ ଚାଲେଞ୍ଜ ଥିଲା । ଏଥିରେ ଆମର କେବଳ

ଅବଦାନ ନ ଥିଲା, ଆମେ ଏକ ପ୍ରକାର ସମୀକ୍ଷାତ୍ମକ ଦୃଷ୍ଟିକୋଣ ଦେଲୁ ଯାହା ନୂତନ ବିଚାରକୁ ଉତ୍ସାହିତ କରିଲା । ମୋର ଆଗ୍ରହ ଇତିହାସ ଲେଖାର ବିଷୟ ଏବଂ ଐତିହାସିକ ବ୍ୟାଖ୍ୟାର ଅନୁସନ୍ଧାନ କରିବାରେ କେନ୍ଦ୍ରୀଭୂତ ଥିଲା । ପ୍ରାଚୀନ ଇତିହାସର ବିବିଧ ଦିଗରେ ସମୀକ୍ଷାତ୍ମକ ଅନୁସନ୍ଧାନ କରିବାରେ ମୋର ରୁଚି ଥିଲା, 'କଲଚରାଲ୍ ପାଷ୍ଟ'ର କେତେକ ପ୍ରବନ୍ଧ ଏହାର ସାକ୍ଷୀ । ମୋ ପ୍ରବନ୍ଧର କେତେକ ଦିଗ ଯେଉଁମାନେ ଇତିହାସକୁ ସୂଚନାର ତାଲିକା ମନେକରନ୍ତି ଓ ଯାହା ପୁରୁଷାନୁକ୍ରମେ ହସ୍ତାନ୍ତରିତ ହେଇ ଚାଲିଥାଏ ତା'ଠୁଁ ପ୍ରୋଫେସନାଲ୍ ଇତିହାସବିତ୍‌ଙ୍କୁ ପୃଥକ ବୋଲି ପ୍ରମାଣ କରେ ।

ମୁଁ ମୋର ଛାତ୍ରମାନଙ୍କର ଅଭାବ ବହୁତ ଅନୁଭବ କରେ । ଗୋଟେ ନୂଆ ପିଢ଼ି ସହିତ ସଂପର୍କ, ଅତୀତକୁ ସେମାନେ କେଉଁ ଦୃଷ୍ଟିରେ ଦେଖନ୍ତି ଓ ମତେ କଣ କହିବାକୁ ଚେଷ୍ଟା କରନ୍ତି – ଏସବୁ ମତେ ପ୍ରଚୁର ଆନନ୍ଦ ଦିଏ । ଏହା ମତେ ବହୁତ ପ୍ରୋତ୍ସାହିତ କରେ । ଅବସର ନେବା ପରେ ମୁଁ ମୋ ନିଜ କାମ କରିବା ପାଇଁ ପ୍ରଚୁର ସକ୍ଷମ ହେଲି । ମୁଁ ଏକ୍‌ସ୍ଟେନ୍‌ସେନ୍ ନେଲି ନାହିଁ କାରଣ ମୁଁ ଭାବିଲି ଯେ ମୁଁ ଯେଉଁ ସବୁ କାମ କରିବି ବୋଲି ଭାବିଥିଲି ଅଥଚ ଯଥେଷ୍ଟ ପରିମାଣରେ ପୂର୍ବରୁ କରିପାରିନାହିଁ, ସେ ସବୁ କରିବି – ଯେମିତି ସଙ୍ଗୀତ ଶୁଣିବା, କବିତା ପଢ଼ିବା, ଅନ୍ୟ କିଛି କରିବା ଏପରିକି ମାଟିର ହାଣ୍ଡି ଗଢ଼ିବା ! ଅବଶ୍ୟ ବର୍ତ୍ତମାନ ବି ମୁଁ ତା' କରୁନି କାରଣ ମୁଁ ପ୍ରଚୁର ପରିମାଣରେ ଗବେଷଣା କରୁଛି ଓ ଲେଖୁଛି । ଚାରିଆଡ଼େ ବକ୍ତୃତା ଦେଉଛି । ନିର୍ଦ୍ଦିଷ୍ଟ ଭାବରେ ଭାରତର ଦୂର – ଦୂରାନ୍ତର ଅଞ୍ଚଳରେ ବକ୍ତୃତା ଦେଉଛି ଯାହା ଫଳରେ ନିଜେ ବି କିଛି ଶିଖିପାରିବି ।

ବର୍ତ୍ତମାନ ପ୍ରକଳ୍ପ ଭାବରେ ମୁଁ ପେଙ୍ଗୁଇନ୍ ସଂସ୍ଥା ଦ୍ୱାରା ପ୍ରକାଶିତ ଭାରତ ଇତିହାସର ପ୍ରଥମ ଖଣ୍ଡର ପୁନର୍ଲେଖନ କରୁଛି । ମତେ ପ୍ରାୟ ୩୦ ବର୍ଷ ବୟସ ହେଇଥିଲା ବେଳେ ମୁଁ ଏହା ଲେଖିଥିଲି, ଆଉ ଏହାର ସଂଶୋଧନ ହେଇନଥିଲା । ମୁଁ ଭାବିଲି ମୁଁ କେବଳ ଆଜିପର୍ଯ୍ୟନ୍ତ ଘଟିଥିବା ଇତିହାସର ପଞ୍ଜୀକରଣ କରିବି । କିନ୍ତୁ ଖୁବ୍ ଶୀଘ୍ର ଉପଲବ୍ଧି କଲି ଯେ କିଛି ନୂଆ ଘଟଣା ସଂଯୋଜନା କରିବା ସହିତ ମୋ ନିଜର ବ୍ୟାଖ୍ୟାଗତ ଦୃଷ୍ଟିକୋଣର ଏତେ ଦୂର ପରିବର୍ତ୍ତନ ହେଇଯାଇଛି ଯେ ଲେଖୁ ଲେଖୁ ସଂପୂର୍ଣ୍ଣ ନୂଆ ବହିଟିଏ ଲେଖି ପକେଇଲି । ୟାପରେ ମୁଁ ଗଜନୀର ମହମ୍ମଦଙ୍କ ଦ୍ୱାରା ସୋମନାଥ ମନ୍ଦିରଲୁଣ୍ଠନ ପରବର୍ତ୍ତୀ ବିଭୀଷିକାପୂର୍ଣ୍ଣ ଘଟଣା ସଂପର୍କରେ ଏକ କ୍ଷୁଦ୍ର ଅଧ୍ୟୟନ ଆଧାରିତ ଲେଖା ସଂପୂର୍ଣ୍ଣ କରିବି । ଏହା ଅନେକ ଦୃଷ୍ଟିରୁ ଐତିହାସିକ ପଦ୍ଧତିମୂଳକ କାର୍ଯ୍ୟ । ଏଥିରେ ବିଭିନ୍ନ ଉତ୍ସଗୁଡ଼ିକ ସାମ୍ନା ସାମ୍ନି ରଖି ରାଶୋମନ ସଦୃଶ କାହାଣୀ ଗଠନ କରାଯାଇଛି । ଶତାବ୍ଦୀ ଶତାବ୍ଦୀ ଧରି ଗୋଟିଏ ଘଟଣା ଉପରେ ଜମିଥିବା ବିଚାର ଓ ଦୃଷ୍ଟିକୋଣର ପରସ୍ତକୁ ବିଦୀର୍ଣ୍ଣ କରି ପରିଷ୍କାର କରିବାର ପ୍ରୟାସ କଲେ ପରିଶେଷରେ ଏ ସତ୍ୟ ଉଦ୍‌ଘାଟିତ ହେବ ଯେ କିପରି ଅତୀତ ସଂପର୍କରେ କିମ୍ବଦନ୍ତୀ ଗଢ଼ାଯାଏ । ଆଉ ତାପରେ ମୁଁ ଫେରିଯିବାକୁ ଚାହେଁ ମୋର ଏକ ପୁରୁଣା ଅନୁରକ୍ତି ନିକଟକୁ ଯାହା ମୁଁ ବାରମ୍ବାର କରିଛି – ପ୍ରାଚୀନ ଭାରତର ଐତିହାସିକ ଚେତନାର ଅଧ୍ୟୟନ । ଏହା ଆଂଶିକ ଭାବରେ ପ୍ରାଚ୍ୟ ସିଦ୍ଧାନ୍ତକୁ ଅସ୍ୱୀକାର କରେ, ଯେଉଁ

ସିଦ୍ଧାନ୍ତ ଅନୁସାରେ ଭାରତୀୟ ସଭ୍ୟତାର ଇତିହାସ ଚେତନା ନଥିଲା କି ଇତିହାସ ନଥିଲା । ଅତୀତ କିପରି କବଳିତ ହେଲା ଓ ପ୍ରାରମ୍ଭିକ ସମୟର ରଚନାରେ କିପରି ପ୍ରତିଫଳିତ ହୋଇଛି ତଥା ବ୍ୟକ୍ତି ଏବଂ ତାଙ୍କର ବିଚାରକୁ ବୈଧ ପ୍ରମାଣିତ କରିବା ଉଦ୍ଦେଶ୍ୟରେ କିପରି ବ୍ୟବହୃତ ତାହାକୁ ବୁଝିବାର ଏହାଏକ ଆଂଶିକ ଉଦ୍ୟମ ।

ପୂର୍ବରୁ ବି ଦୃଷ୍ଟିଗୋଚର ହେଉଥିଲା ଇଣ୍ଡୋଲୋଜି (ଭାରତୀୟ ବିଦ୍ୟା)ରୁ ସମାଜ ବିଜ୍ଞାନରେ ପରିଣତ ହେଉଥିବା ଦୃଷ୍ଟିକୋଣ । ଏବେ ଇତିହାସ ପରିବର୍ତ୍ତନର ଏକ ସମୟ ମଧ୍ୟରେ ଗତିକରୁଛି । ଏବେ ଅଧିକରୁ ଅଧିକ ଲୋକେ ଏହାକୁ ଗ୍ରହଣ କରୁଛନ୍ତି । ପ୍ରଥମେ ଏମାନେ ହିଁ ପ୍ରାଚୀନ ଇତିହାସକୁ ଇଣ୍ଡୋଲୋଜିର ଏକ ଅଂଶ ବୋଲି ଗ୍ରହଣ କରୁଥିଲେ । ଏହି ପ୍ରଭାବ ପ୍ରତି ଅନେକ ସମୟରେ ବିରୋଧୀ ଭାବ ପ୍ରକାଶ ପାଉଛି କାରଣ ଏଥିରେ ଇତିହାସକୁ ଦେଖିବାର ଦୃଷ୍ଟିଭଙ୍ଗୀ ନୂଆ । ଏ ପରିବର୍ତ୍ତନକୁ ଦୁଇଟି ସ୍ତରରେ ଅଭିବ୍ୟକ୍ତ କରାଯାଇପାରେ । ଯଦି ବର୍ତ୍ତମାନର ସରକାର ତିଷ୍ଠି ରହେ, ତା ହେଲେ ବର୍ତ୍ତମାନର ସ୍କୁଲ ପାଠ୍ୟକ୍ରମ ବ୍ୟବସ୍ଥା ଲୋପ ପାଇଯିବ । ତା' ସ୍ଥାନରେ ଏପରି ବିଷୟ ରଖାଯିବ ଯାହା ଛାତ୍ରକୁ ଆଉ ଚିନ୍ତା କରିବାକୁ ଶିକ୍ଷାଦେବନି କାରଣ କ୍ଷମତାସୀନ ବ୍ୟକ୍ତିଗଣ ଚିନ୍ତାଶୀଳ ବ୍ୟକ୍ତିଙ୍କୁ ଭୟ କରନ୍ତି । ଏପରି ଏକ ଭାରତୀୟ ପିଢ଼ି ବିକଶିତ ହେବେ ଯେଉଁମାନେ କେବଳ ଇତିହାସ ବା ସମାଜ ବିଜ୍ଞାନ ବିଷୟରେ ଅଜ୍ଞ ରହିବେ ତା' ନୁହେଁ ଏହାକୁ ଗବେଷଣାର ପ୍ରକୃଷ୍ଟ ମାଧ୍ୟମ ବୋଲି ମଧ୍ୟ ଗ୍ରହଣ କରିବେ ନାହିଁ । ୟା ସତ୍ତ୍ୱେ ମୁଁ ଭାବୁଛି ମୁଷ୍ଟିମେୟ କେତେକ ଐତିହାସିକ, ସମାଜ ବିଜ୍ଞାନୀ, ବୈଜ୍ଞାନିକ ଯେଉଁମାନେ ନିଜକୁ ସ୍ୱତନ୍ତ୍ରଭାବେ ପ୍ରତିଷ୍ଠିତ କରିବାକୁ ଚାହାନ୍ତି, ସେମାନେ ସରକାରୀ ଚାପକୁ ପ୍ରତିରୋଧ କରି ନିଜର ବୌଦ୍ଧିକ ସ୍ୱାଧୀନତାକୁ ଅକ୍ଷୁଣ୍ଣ ରଖିବା ପାଇଁ ଚେଷ୍ଟିତ ହେବା ଆବଶ୍ୟକ । ଏହା ପ୍ରତ୍ୟେକ ଜ୍ଞାନର ସ୍ୱୟଂସିଦ୍ଧ ସତ୍ୟ । ତେଣୁ ପ୍ରଶ୍ନ ଉଠେ ବ୍ୟାବହାରିକତାର, କେଉଁ ସୀମା ପର୍ଯ୍ୟନ୍ତ ଜ୍ଞାନ ଓ ଏହାକୁ ଉପଯୋଗ କରୁଥିବା ବ୍ୟକ୍ତି ଦାବୀ କରିବେ । ତେବେ ମୁଁ ନିଜକୁ ଘୋର ନୈରାଶବାଦୀ କହିବି ନାହିଁ । ସର୍ବଦା କିଛି ଉତ୍କୃଷ୍ଟ ଧରଣର ବୁଦ୍ଧିଜୀବୀ ତ ରହିବେ । କିନ୍ତୁ ମୋଟାମୋଟି ବିଗତ ଅର୍ଦ୍ଧ ଶତାବ୍ଦୀ ମଧ୍ୟରେ ଆମେ ନିଜକୁ ଅତୀତ ଆଡ଼କୁ ପୁନର୍ଉନ୍ମୁଖ କରି ଯେତିକି ବିପୁଳଭାବରେ ଲାଭାନ୍ୱିତ ହେଇଛେ ତାହା ଧ୍ୱଂସ ହେଇଯିବ ଯଦି ବର୍ତ୍ତମାନର ଏ ନୀତି ତିଷ୍ଠି ରହେ ।

କିଛି ଶୁଣିବାକୁ ରାଜି ନ ଥିବା ସରକାର ବିରୁଦ୍ଧରେ ଠିଆହେବା ବହୁତ କଠିନ କାମ । ସରକାର ଛଡ଼ା ଅନ୍ୟମାନଙ୍କ ଦୃଷ୍ଟିକୋଣ ସାମ୍ନାରେ ସବୁବେଳେ ରହିବା ଜରୁରୀ । ୟା ମନେ ରଖିବା ଉଚିତ୍ ଯେ ମାନବ – ବିଜ୍ଞାନ ପରି ଲୋକେ ଇତିହାସ ଲେଖନ୍ତି, କୁହନ୍ତି ଆଉ ପାରୁ ପର୍ଯ୍ୟନ୍ତ ପଢ଼ାନ୍ତି ମଧ୍ୟ । ଆମର ସମାଜ ବିବିଧ ସଂସ୍କୃତି ସମନ୍ୱିତ ଓ ଏଠାରେ ବହୁତ ଗୋଷ୍ଠୀ ଅଛନ୍ତି ଯେଉଁମାନେ ଭବିଷ୍ୟତରେ ଲେଖାଯିବା ଇତିହାସରେ ତାଙ୍କର ଭୂମିକା ସ୍ଥାନ ପାଉ ବୋଲି ଚାହାଁନ୍ତି । ସାଂପ୍ରତିକ କାଳରେ ବିଭିନ୍ନ ଅବହେଳିତ ଦିଗ ଯଥା – ଲିଙ୍ଗ ଆଧାରିତ ଇତିହାସ, ଦଳିତ ଇତିହାସ ଓ ପରିବେଶ – ଇତିହାସ ଉପରେ ଗବେଷଣା

କାର୍ଯ୍ୟ ଚାଲିଛି । ଏହି ବିଷୟଗୁଡ଼ିକୁ ଏକାଠି ଇତିହାସ ଅନ୍ତର୍ଭୁକ୍ତ କରିବାକୁ ହେଲେ ଏହାକୁ ଇତିହାସ ପାଠ୍ୟ ପୁସ୍ତକରେ ଦେବାକୁ ପଡ଼ିବ । ଇତିହାସ ଜୀବିତ ରହିବ କାରଣ ମନୁଷ୍ୟ ଏକକ ଭାବେ ହେଉ ବା ସମାଜ ଭାବେ ହେଉ ନିଜକୁ ଜାଣିବା ଓ ନିଜର ଅତୀତକୁ ଜାଣିବା ଏକ ଅନିବାର୍ଯ୍ୟ ଆବଶ୍ୟକତା । ଠିକ୍ ସେମିତି ଯେମିତି ଜୀବନୀ ତିଷ୍ଠି ରହିଛି । ସେମିତି ଇତିହାସ ରହିବ ।

*କୁମ୍‌କୁମ୍ ରଏଙ୍କ ସହିତ ସାକ୍ଷାତ୍‌କାର ଉପରେ ଆଧାରିତ ।*

ଇଲା ଆର୍ ଭଟ୍ଟ (ଜନ୍ମ ୧୯୩୩) 'ସ୍ୱୟଂ-ରୋଜଗାର ମହିଳା' ସଂଗଠନର ସମପର୍ଯ୍ୟାୟ ବାଚୀ ଶବ୍ଦ ହେଇଯାଇଛନ୍ତି । ଏହି ସଂଗଠନ ତାଙ୍କ ଦ୍ୱାରା ୧୯୭୨ରେ ପ୍ରତିଷ୍ଠିତ ଏବଂ ଏହା ଅହମଦାବାଦର କର୍ମଜୀବୀ ମହିଳାମାନଙ୍କର ଏକ ସଂଗଠନ । ସେ ତାଙ୍କର କାର୍ଯ୍ୟ ଅହମଦାବାଦର ବସ୍ତ୍ର ଉଦ୍ୟୋଗ ଶ୍ରମିକ ସଂଘର ସଦସ୍ୟଭାବରେ ଆରମ୍ଭ କଲେ । କାମ କରୁଥିବା ଭିତରେ ସେ ବହୁ ଗୁରୁତ୍ୱପୂର୍ଣ୍ଣ ସଂଗଠନ ଏବଂ ଅନୁଷ୍ଠାନର ମହତ୍ତ୍ୱପୂର୍ଣ୍ଣ ପଦ ଅଧିକାର କଲେ । ଏଗୁଡ଼ିକ ହେଲା - ଇଣ୍ଡିଆନ୍ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମ୍ୟାନେଜମେଣ୍ଟ (ଅହମଦାବାଦ); ଫ୍ରେଣ୍ଡସ୍ ଅଫ ଉମେନ୍‌ସ ୱାର୍ଲଡ ବ୍ୟାଙ୍କିଂ, ଇଣ୍ଡିଆ; ନ୍ୟାସନାଲ କମିଶନ୍ ଅନ୍ ଲେବର୍; ଏସିଆ ସୋସାଇଟି, ନ୍ୟୁୟର୍କ; ଇଣ୍ଟର ନ୍ୟାସନାଲ୍ କୋଆଲିସନ୍ ଅଫ ଉମେନ୍ ଆଣ୍ଡ କ୍ରେଡିଟ୍, ନିଉୟର୍କ; ୱାର୍ଲଡ଼ କମିଶନ ଅନ୍ ଅର୍ବାନ ଫ୍ୟୁଚର, ବର୍ଲିନ୍; ଷ୍ଟ୍ରିଟ୍ ନେଟ୍ : ଇଣ୍ଟରନ୍ୟାସ୍‌ନାଲ୍ ଆଲିଏନ୍‌ସ ଅଫ୍ ଷ୍ଟ୍ରିଟ୍ ଭେଣ୍ଡରସ୍; ଡବ୍ଲ୍ୟୁ ଆଇ ଇ ଜି ଓ (ଉମେନ୍ ଇନ୍ ଇନଫର୍ମାଲ୍ ଏମ୍ପ୍ଲଏମେଣ୍ଟ : ଗ୍ଲୋବାଲାଇଜିଂ ଅରଗାନାଇଜିଂ), ବୋଷ୍ଟନ; ଏବଂ ଉମେନ୍‌ସ ୱାର୍ଲଡ ବ୍ୟାଙ୍କିଂ, ନୁୟର୍କ । ସେ (ଏସ୍ ଇ ଡବ୍ଲ୍ୟୁ) ସେୱାର ସାଧାରଣ ସଂପାଦକ ଏବଂ ସେୱା ସହକାରୀ ବ୍ୟାଙ୍କର ପ୍ରତିଷ୍ଠାତା ଅଧ୍ୟକ୍ଷା ।

ଡ. ଭଟ୍ଟ ଚାକିରୀଜୀବୀ ମହିଳାମାନଙ୍କ ଉପରେ ଇଂରାଜୀ ଓ ଗୁଜୁରାଟୀ ଭାଷାରେ ବହୁତ ଲେଖିଛନ୍ତି । ତାଙ୍କୁ ମିଳିଥିବା ସମ୍ମାନର ତାଲିକା ଦୀର୍ଘ ଓ ବୈଶିଷ୍ଟ୍ୟପୂର୍ଣ୍ଣ । ସେ ବହୁ ବିଶିଷ୍ଟ ସମ୍ମାନରେ ଅଧିକାରୀ । ସେ ୧୯୭୭ରେ ସାମୂହିକ ନେତୃତ୍ୱ ପାଇଁ ରାମନ ମେଗସେସ୍ ପୁରସ୍କାର; ୧୯୮୨ରେ ଜାତୀୟ ଏକତା ପାଇଁ ସୁମନ ବି. ଆଣ୍ଟୋନୀ ପୁରସ୍କାର; ୧୯୮୪ରେ ମାନବୀୟ ପରିବେଶ ପରିବର୍ତ୍ତନ ପାଇଁ ଦ ରାଇଟ୍ ଲାଇଭ୍‌ଲିହୁଡ଼ ପୁରସ୍କାର; ୧୯୯୪ରେ କେଆର ହ୍ୟୁମାନିଟାରିଆନ୍ ପୁରସ୍କାର; ୨୦୦୦ରେ ଦ ଏସିଆନ୍ ସୋସାଇଟି ପୁରସ୍କାର, ଏସୀୟ ଓ ଆମେରିକୀୟମାନଙ୍କ ମଧ୍ୟରେ ସଂପର୍କ ସେତୁ ନିର୍ମାଣ ପାଇଁ ଲାଭକରିଛନ୍ତି । ସେ ଆଉ କେତେକ ସମ୍ମାନ ଦ୍ୱାରା ମଧ୍ୟ ପୁରସ୍କୃତ ହୋଇଛନ୍ତି - ୧୯୮୫ରେ 'ପଦ୍ମଶ୍ରୀ'; ୧୯୮୬ରେ ପଦ୍ମଭୂଷଣ; ୧୯୯୬ରେ ବିଶ୍ୱ ଗୁର୍ଜରୀ;

୧୯୯୯ରେ ରାଷ୍ଟ୍ରୀୟ ଏକତା ପାଇଁ ଯଶଓ୍ୱନ୍ତ ରାଓ ଚୌହାନ୍ ପୁରସ୍କାର ତାଙ୍କୁ ମିଳିଛି । ସେ ଅନ୍ତତଃ ୬ଟି ସମ୍ମାନଜନକ ଉପାଧି ପାଇଛନ୍ତି । ଏସ୍ଏନ୍ ଡି ଟି ବିଶ୍ୱବିଦ୍ୟାଳୟ, ମୁମ୍ବାଇ (୧୯୯୧) ସହିତ ହେଓ୍ୱରଫୋର୍ଡ କଲେଜ, ଆମେରିକା (୧୯୯୩); ସେଣ୍ଟ ଫ୍ରାନ୍ସିସ୍ ଜେବିୟର୍ ବିଶ୍ୱବିଦ୍ୟାଳୟ, କାନାଡା (୧୯୯୩); ତଥା ହାଭାର୍ଡ଼ ବିଶ୍ୱବିଦ୍ୟାଳୟ, ଆମେରିକା (୨୦୦୧) ।

ଜଣେ ବିଶିଷ୍ଟ ନାଗରିକଭାବେ ପରିଗଣିତ ହେଉଥିବା ଡ.ଭଙ୍ଗ ଭାରତର ଯୋଜନା ଆୟୋଗ ଏବଂ ରାଜ୍ୟ ସଭାର ଜଣେ ସଦସ୍ୟ ଭାବେ କାର୍ଯ୍ୟ କରିଛନ୍ତି ।

୫

# ପରିବର୍ତ୍ତନ ନିମିତ୍ତ ସଂଗଠନ

## ଇଲା ଆର. ଭଟ୍ଟ

ଜଣେ ନିଜ ଜୀବନ ବୃତ୍ତାନ୍ତ କେମିତି କହେ ? ସାତଟି ଦଶକରେ ବିସ୍ତୃତ ଏ ଜୀବନ ଯାହାକୁ ମୁଁ ଗଭୀର ଭାବେ ତପସ୍ୟା କରି ବଞ୍ଚିଛି, ତାକୁ କେମିତି ବଖାଣିବି ? କେଉଁ କେଉଁ ଅଂଶ ବାଛିବି ? ହଁ ଅନ୍ତତଃ ମତେ ଆରମ୍ଭ କରିବା ଜଣା–ଜନ୍ମରୁଁ ।

ମୋର ଜନ୍ମ ୧୯୩୩ ମସିହା ସେପ୍ଟେମ୍ବର ମାସ ସାତ ତାରିଖ ଜଣେ ନାଗର ବ୍ରାହ୍ମଣ ପରିବାରରେ ଅହମଦାବାଦରେ ହୋଇଥିଲା । ମୋ ମା’ ବନଲୀଲା ବ୍ୟାସ, ଡ. ମଣିଧର ପ୍ରସାଦଙ୍କର ଝିଅ ଯିଏ କି ଗାନ୍ଧିଜୀଙ୍କ ସ୍ୱାଧୀନତା ଆନ୍ଦୋଳନର ଡାକରାରେ ସାମିଲ୍ ହେଇଥିଲେ । ମୋର ଅଜା ଦାଣ୍ଡି ମାର୍ଚ୍ଚ ଯାହା ଲବଣ ସତ୍ୟାଗ୍ରହ ଭାବେ ମଧ ଖ୍ୟାତ ସେଥିରେ ଯୋଗ ଦେଇଥିଲେ । ୧୯୩୦ରେ ଖାଇବା ଲୁଣ ଉପରେ କର ଲଗେଇଥିବା ବ୍ରିଟିଶ ସାମ୍ରାଜ୍ୟ ବିରୁଦ୍ଧରେ ସ୍ୱରଉତ୍ତୋଳନର ସାହସ କରିଥିବା ପ୍ରଥମ ଗୋଷ୍ଠୀରେ ସେ ଯୋଗ ଦେଇଥିଲେ । ମୋ ବାପାଙ୍କର ବାପା ଅର୍ଥାତ୍ ବୁଢ଼ା ବାପା ଜଣେ ଓକିଲ – ସରକାରୀ ଓକିଲ ଥିଲେ । ତାଙ୍କ ଭିତରେ ଜାତୀୟତା ବୋଧଗତ ଭାବପ୍ରବଣତା ନ ଥିଲା । କିନ୍ତୁ ସାମାଜିକ ଓ ସାଂସ୍କୃତିକ ଦୃଷ୍ଟିକୋଣରୁ ଦୁଇ ପରିବାର ମଧରେ ବହୁ ସାମଞ୍ଜସ୍ୟ ଥିଲା । ତେଣୁ ବନଲୀଲା ଓ ସୁମନ୍ତ ଭଟ୍ଟଙ୍କ ମଧରେ ବିବାହ ସଂପନ୍ନ ହେଲା । ଘଟଣାକ୍ରମେ ମୋ ମା’ଙ୍କ ପରିବାରର ପ୍ରଭାବ ମୋ ଉପରେ ଅଧିକ ଘନୀଭୂତ ହେଲା ଓ ମୁଁ ସେଇ ଅନୁସାରେ ମୋ ବୃତ୍ତି ବାଛିନେଲି ।

ପୁରାତନ ସୁରଟର ଗୋଟିଏ ବିରାଟ ଘରେ ମୁଁ ବଡ଼ ହେଲି । ଆମ ଘର ଥିଲା ରାଜ୍ୟ କଂଗ୍ରେସ ସଭାପତିଙ୍କ ଘରର ଖୁବ୍ ନିକଟରେ । ଏହା ସର୍ବବିଦିତ ଯେ କଂଗ୍ରେସ ରାଜନୈତିକ ଦଳ ଦେଶକୁ ବ୍ରିଟିଶ୍ ସାମ୍ରାଜ୍ୟର ଶୃଙ୍ଖଳରୁ ମୁକ୍ତ କରିବାପାଇଁ ଥିଲା ସଂଘର୍ଷରତ । ଆମ ଘରର ରାସ୍ତା ଆର ପାଖରେ ଗୋଟେ ଛାପାକଳ ଥିଲା । ଯିଏ ବାହ୍ୟତଃ ପିଲାଙ୍କ ବହି ଛପଉ ଥିଲା । ମୁଁ ସେଠିକି ଯିବାକୁ ଚାହୁଁଥିଲେ ବି ମତେ ସେଠିକି ଯିବାକୁ, ବହି ପଢ଼ିବାକୁ କି କ’ଣ ଛପଉଛନ୍ତି ଦେଖିବାକୁ ଅନୁମତି ନଥିଲା । ପରେ ମୁଁ ଜାଣିଲି ବ୍ରିଟିଶ ଶାସନକୁ ବିରୋଧ କରୁଥିବା ଓ ମୁଖ୍ୟତଃ ବିଦ୍ରୋହକୁ ଉତ୍ସାହିତ କରୁଥିବା ଆରୋପରେ

ଗିରଫ ହୋଇଯିବା ଭୟରେ ଯେଉଁମାନେ ଅଣ୍ଡର ଗ୍ରାଉଣ୍ଡ ହେଇଯାଉଥିଲେ ସେମାନଙ୍କ ପାଇଁ ସେ ଛାପାକଳ ପ୍ରାଚୀର ପତ୍ର ଓ ସମ୍ବାଦ ପତ୍ର ଛାପନ୍ତି । ଭାରତର ସ୍ୱାଧୀନତା ପାଇଁ ଆମ ପଡ଼ୋଶୀରେ ହେଉଥିବା ଅନେକ ରାଜନୈତିକ କାର୍ଯ୍ୟକଳାପ ଆମେ ଦେଖିଲୁ ଏବଂ ବ୍ରିଟିଶମାନଙ୍କ ଦ୍ୱାରା ତା'ର ଦମନ ଲୀଳା ମଧ୍ୟ ଦେଖିଲୁ ।

ଖୁବ୍ ଅଳ୍ପ ବୟସରେ ବିବାହ ନିମନ୍ତେ ମୋ ମା'ଙ୍କୁ ସ୍କୁଲ ଛାଡ଼ିବାକୁ ପଡ଼ିଥିଲା । ସେ ଏଥିରେ କ୍ଷୁବ୍ଧ ହୋଇ ନିଜେ ନିଜେ ପଢ଼ିବାର କୌଣସି ସୁଯୋଗ ହାତଛଡ଼ା କରୁ ନ ଥିଲେ । ସେ ନିଜେ ନିଷ୍ପତ୍ତି ନେଲେ ଯେ ତାଙ୍କ ଝିଅକୁ ସେ ବିଶ୍ୱବିଦ୍ୟାଳୟ ପଠେଇବେ । ମୋ ମା' କବିତା ଓ ଗଜଲ ଲେଖୁଥିଲେ, ସନ୍ଧ୍ୟାରେ ସମସ୍ତଙ୍କ ସମ୍ମୁଖରେ କବିତା ଆବୃତ୍ତି ଆସରରେ ସେଗୁଡ଼ିକ ପ୍ରାୟତଃ ପଢୁଥିଲେ । ମୋ ବାପା ଜଣେ ଓକିଲ ଥିଲେ, ତାଙ୍କ ଭାଇ ବି । ଆମର ଦୁଇ ପରିବାର ଦୀର୍ଘ ଗରମ ଛୁଟିଗୁଡ଼ିକ (ଯେତେବେଳେ କଚେରୀ ଓ ସ୍କୁଲ ବନ୍ଦ ଥାଏ) ସମୁଦ୍ର କୂଳରେ, ଶୈଳ ନିବାସ କିମ୍ବା ଜଙ୍ଗଲରେ ବୁଲି କଟାଉଁ । ମୋ ବାପା ସନ୍ଧ୍ୟାବେଳର ଦୀର୍ଘ ସମୟଗୁଡ଼ିକ ଆମ ସହିତ ବିତଉଥିଲେ ଏବଂ ତାଙ୍କର ପ୍ରିୟ କବିତାଗୁଡ଼ିକ ଆମକୁ ମୁଖସ୍ତ କରିବାକୁ ଉତ୍ସାହିତ କରୁଥିଲେ । ମତେ ଲାଗେ ସେ ଇଂରାଜୀ ସାହିତ୍ୟ ପ୍ରତି ଆମ ମନରେ ଏକ ଅନୁରାଗ ସୃଷ୍ଟି କରିବାକୁ ଚାହୁଁଥିଲେ । ତା'ଠୁଁ ଅଧିକ ତାଙ୍କର ଆଗ୍ରହ ଥିଲା ଆମକୁ ନୈତିକ ଶିକ୍ଷା ଦେବାରେ, ଯାହା ଆମ ସହିତ ସାରାଜୀବନ ରହିବ । ଆମ ବାପା'ମାଙ୍କର ଖୁବ୍ ଆଗ୍ରହ ଥିଲା ଯେ ଆମେ ସ୍କୁଲରେ ଭଲ ପଢୁଁ । ତାଙ୍କ ଇଚ୍ଛାପୂର୍ଣ୍ଣ କରିବାପାଇଁ ମୋ ମନରେ ଯେଉଁ ଉତ୍କଣ୍ଠା ଥିଲା ତାହା ଏଥିରୁ ସ୍ପଷ୍ଟ ହୁଏ ଯେ ଗ୍ରୀଷ୍ମଛୁଟି ହେବାମାତ୍ରେ ଆଗାମୀ ବର୍ଷର ସମସ୍ତ ପାଠ୍ୟପୁସ୍ତକ ଆମେ କିଣିଆଣୁଁ ଓ ସ୍କୁଲ ଆରମ୍ଭ ହେବା ଆଗରୁ ମୁଁ ସବୁବହି ପଢ଼ି ଶେଷ କରି ଦେଇଥାଏ ।

୧୯୪୭ ମସିହା ଅଗଷ୍ଟ ପନ୍ଦର ତାରିଖ ଦିନ ଭାରତ ସ୍ୱାଧୀନ ହେଲା । ମତେ ୧୪ ବର୍ଷ ହେଇଥାଏ ଏବଂ ମୁଁ ହାଇସ୍କୁଲ ପାଶ କରିଥାଏ । କଲେଜରେ ମୋର ଆଡ଼ମିଶନ ହେଲା ଏବଂ ଗୋଟେ ନୂଆ ସାଇକେଲ୍ ମଧ୍ୟ ଦିଆଯାଇଥିଲା । ମୁଁ ମୋ ସ୍ୱାଧୀନତାର ସୀମା ବୁଝିବାକୁ ଆରମ୍ଭ କଲି । ମୁଁ ନିର୍ଦ୍ଦିଷ୍ଟ ଭାବରେ ଗୁଜୁରାଟୀ ଏବଂ ଇଂରାଜୀ କବିତା କ୍ଲାସ୍‌କୁ ଉପଭୋଗ କରୁଥିଲି । ସ୍କୁଲର ପାଠ୍ୟକ୍ରମସହିତ ଅଙ୍ଗାରର ଚିତ୍ରକଳା, ଫଟୋଗ୍ରାଫ ଏବଂ ସଂଗୀତ ବି ଶିଖିଲି ।

ମୁଁ କଲେଜରେ ଦ୍ୱିତୀୟବର୍ଷ ପଢୁଥାଏ । ସ୍ୱାଧୀନ ଭାରତର ପ୍ରଥମ ଜନଗଣନା ଆରମ୍ଭ ହେବାର ଥାଏ । ଯୁବ କଂଗ୍ରେସର ସଦସ୍ୟମାନଙ୍କୁ କୁହାଗଲା ଯେ ସେ ନିର୍ଦ୍ଧାରିତ ସ୍ଥାନଗୁଡ଼ିକରେ ଜନଗଣନାରେ ସାହାଯ୍ୟ କରନ୍ତୁ । ସେତିକିବେଳେ ମୁଁ ରମେଶ ଭଟ୍ଟଙ୍କୁ ପ୍ରଥମେ ଭେଟିଲି । ସେ ଜଣେ ସକ୍ରିୟ, ଉତ୍ସାହୀ, ସୁନ୍ଦର ଏବଂ ସହଜାତ ନେତା ଥିଲେ । ଆମମାନଙ୍କ ମଧ୍ୟରୁ ଅନେକ ସ୍ୱେଚ୍ଛାରେ ତାଙ୍କର ଅନୁଗାମୀ ହୋଇଗଲେ । ତାଙ୍କ ସହିତ ସାଇକେଲ୍‌କରି ସୁରଟର ବସ୍ତି ଅଞ୍ଚଳକୁ ଯାଇ ପ୍ରତ୍ୟେକଙ୍କୁ ୬୫ଟି ଘରର ତଥ୍ୟ ସଂଗ୍ରହ କରିବାକୁ ପଡୁଥିଲା । ମୁଁ ବସ୍ତିବାସିନ୍ଦାମାନଙ୍କର ଏତେ କମ୍ ଗୃହଉପକରଣ ଓ ନିମ୍ନମାନର

ବଞ୍ଚିବା ଶୈଳୀ ଦେଖି ସ୍ତବ୍ଧ ଚକିତ ହେଇଗଲି । ଜନଗଣନାଗତ ସର୍ବେକ୍ଷଣଯୋଗୁଁ ମୋର ଦାରିଦ୍ର୍ୟସହିତ ପ୍ରଥମ ସାକ୍ଷାତ ହେଲା । ମୁଁ ସେତେବେଳ ପର୍ଯ୍ୟନ୍ତ ଜାଣିନଥିଲି, ମାତ୍ର ଏବେ ପଛକୁ ଫେରିଚାହିଁଲେ ଜାଣିପାରେ ଯେ ତାହା ମୋ ଜୀବନର ମୋଡ଼ ପରିବର୍ତ୍ତନ କରିଥିଲା ।

ମୋ ପିତାମାତା ମୋର ସେ ବସ୍ତି ଅଞ୍ଚଳକୁ ଯିବା ଓ ଶ୍ରମିକ ଶ୍ରେଣୀର ଲୋକଙ୍କ ପରିବାର ସହିତ ମିଶିବାକୁ ପସନ୍ଦ କରୁନଥିଲେ, କିନ୍ତୁ ମୋତେ କେମିତି ରୋକାଯିବ ତା' ଜାଣିପାରୁନଥିଲେ । ଏକାସାଙ୍ଗରେ କାମ କରିବା ଭିତରେ ରମେଶ ଏବଂ ମୁଁ ପରସ୍ପର ପ୍ରତି ଆସକ୍ତ ହେଲୁ ଓ ବାହା ହେବାପାଇଁ ସ୍ଥିର କଲୁ । ମୋ ବାପାମାଙ୍କ ପାଇଁ ଏହା ଏକ ପ୍ରଚଣ୍ଡ ଆଘାତ ଥିଲା । ସେମାନେ ଏ ଯୋଡ଼ିକୁ ବିରୋଧ କଲେ, କାରଣ ରମେଶ ଗରିବ ପରିବାରର ଜଣେ ଲୁଗାକଳ ଶ୍ରମିକର ପୁଅ ଥିଲେ । ପ୍ରଥମତଃ ସବୁବେଳେ ଗରିବମାନଙ୍କ ସମସ୍ୟାକୁ ନେଇ ଆଲୋଚନା କରିବା ସେମାନଙ୍କୁ ଭଲ ଲାଗୁନଥିଲା, ପୁଣି ତା'ଉପରେ ଏମିତି ଏକ ଜୀବନସଙ୍ଗୀ ବାଛିଲି ଯିଏ ଆମ ସମାନ ଆର୍ଥିକ ଅବସ୍ଥାର ନଥିଲେ । ତେଣୁ ମୋ ବାପାମା ଏହାକୁ ଆଦୌ ଗ୍ରହଣ କରିପାରିଲେ ନାହିଁ । ମୋ ବାପା ମତେ ପଚାରିଲେ ''ତୁ ଦାରିଦ୍ର୍ୟ ବିଷୟରେ କ'ଣ ଜାଣୁ ?'' ମତେ ଲାଗିଲା ଏ ବିଷୟରେ ମୋର ପ୍ରତ୍ୟକ୍ଷ ଜ୍ଞାନ ଦରକାର । ନିଜ ସହିତ ପରୀକ୍ଷା ସ୍ୱରୂପ ମୁଁ ସୁରଟ ନିକଟରେ ଏକ ଗାଁରେ ମାସକୁ ୬୦ ଟଙ୍କାରେ ପୁରାବର୍ଷେ ଚଳିଲି, କେବଳ ଦାରିଦ୍ର୍ୟର ଅନୁଭୂତି କ'ଣ ଜାଣିବା ପାଇଁ । କିନ୍ତୁ ମୋ ମନ ଭିତରେ ସବୁବେଳେ କାମ କରୁଥାଏ ଯେ ମୁଁ ଖୁବ୍ ସରଳ ଭାବରେ ଜୀବନ ଅତିବାହିତ କରିପାରିବି ବୋଲି ପ୍ରମାଣ କରିବାକୁ ଚେଷ୍ଟାକରୁଛି ।

୧୯୫୫ ମସିହାରେ ଆଇନ୍‌ରେ ଡିଗ୍ରୀ ପାଇବା ପରେ ମୁଁ ବସ୍ତ୍ରଉଦ୍ୟୋଗ ଶ୍ରମିକ ସଂଘ (TLA), ଅହମଦାବାଦରେ ଗୋଟେ ଚାକିରି ପାଇଁ ଆବେଦନ କଲି । ଏହି TLAର ପ୍ରତିଷ୍ଠାତାଗଣ ଥିଲେ ଅନସୂୟାବେନ ସାରାଭାଇ, ଶଙ୍କରଲାଲ୍ ବାଙ୍କେର ଏବଂ ମହାତ୍ମା ଗାନ୍ଧୀ । ବିଚାର ଆଲୋଚନା ମାଧ୍ୟମରେ ବିବାଦ ସମାଧାନ କରିବାର ଖ୍ୟାତି ଏହି ସଙ୍ଗଠନର ଥିଲା । ମୁଁ କାମ ଆରମ୍ଭ କରିବାବେଳେ ଟିକେ କୁଣ୍ଠିତ ଓ ଭୟାଳୁ ଥିଲି । କିନ୍ତୁ ମୁଁ ଶ୍ରମିକଙ୍କ ତରଫରୁ କେତେକ ମକଦ୍ଦମା କୋର୍ଟରେ ପେଶ୍ କରିବାକୁ ସମର୍ଥ ହେଲି । ପରେ TLA ଗୋଟେ ମହିଳା ଶାଖା ଆରମ୍ଭ କରିଲା ଓ ମତେ ତା'ର ଦାୟିତ୍ୱ ଦିଆଗଲା । ସର୍ବପ୍ରଥମେ ମୁଁ ବସ୍ତି ଅଞ୍ଚଳକୁ ଗଲି ଯେଉଁଠି ସ୍ତ୍ରୀ ଲୋକମାନେ ରହୁଥିଲେ । ମୁଁ ସବୁଆଡ଼େ ଲ୍ୟାମ୍ବ୍ରେଟା ସ୍କୁଟରରେ ଯାଉଥିଲି । ସେ ସମୟରେ ଜଣେ ସ୍ତ୍ରୀଲୋକ ସ୍କୁଟର ଚଳେଇବା ସାଧାରଣ ଦୃଶ୍ୟ ନ ଥିଲା, ତେଣୁ ବହୁତ ଲୋକ ମତେ ଅନଉଥିଲେ । ଯାହେଉ ମୋ ଚାକିରି ମତେ ସ୍ତ୍ରୀଲୋକମାନଙ୍କୁ ତାଙ୍କ ଘରେ ସାକ୍ଷାତ କରିବାର ଓ ତାଙ୍କର ବିଶେଷ ସମସ୍ୟା ବୁଝିବାର ସୁଯୋଗ ଦେଲା ।

୧୯୫୬ ମସିହାରେ ରମେଶ ଭଟ୍ଟ ଉଭୟ ଅର୍ଥନୀତି ଓ ଆଇନ୍‌ରେ ଏମ୍.ଏ. ପାଶ କଲେ । ମୋ ବାପା ମା ଏଥିରେ ଖୁସିହେଇ ଶେଷରେ ମୋ ପସନ୍ଦକୁ ମାନିନେଲେ ।

ଆମର ବିବାହ ୧୯୫୬ ମସିହା ଏପ୍ରିଲ୍ ୨୦ରେ ହେଲା । ଯଦିଓ ମୁଁ ଗୋଟେ ନାଲି ଧଡ଼ିଥିବା ଧଳାଶାଢ଼ୀ, ଗୋଟେ ପାରମ୍ପରିକ ହାତୀ ଦାନ୍ତର ବଳା ଛଡ଼ା ଅନ୍ୟ କୌଣସି ଗହଣା ନ ପିନ୍ଧିବା ପାଇଁ ଜିଦି କଲି, ତଥାପି ମୋ ବାପାମା ଏକ ବିରାଟ ବ୍ୟୟବହୁଳ ଉତ୍ସବର ଆୟୋଜନ କରିଥିଲେ । ଆମର ବିବାହପରେ ଦୁଇବର୍ଷ ପର୍ଯ୍ୟନ୍ତ ଆମେ ଗୁଜରାଟ ବିଦ୍ୟାପୀଠ ପରିସରରେ ରହୁଥିଲୁ, ସେଠି ରମେଶ ଶିକ୍ଷକତା କରୁଥିଲେ । ଆମେ ଖୁବ୍ ସରଳଭାବରେ ଗାନ୍ଧୀବାଦୀ ଜୀବନ ବିତଉଥିଲୁ । ମୁଁ ୧୯୫୮ ମସିହା, ଜାନୁୟାରୀରେ ମୋର ପ୍ରଥମ ଝିଅ ଅମିମୟୀ ଜନ୍ମର ଦୁଇମାସ ପୂର୍ବ ପର୍ଯ୍ୟନ୍ତ ଟି.ଏଲ.ଏରେ କାମ କରୁଥିଲି । ୧୯୫୯ ମସିହା ନଭେମ୍ବରରେ ମୋ ପୁଅ ମିହିରର ଜନ୍ମ । ମୋ ସ୍ୱାମୀ ଓ ମୁଁ ସେମାନଙ୍କର ଶୈଶବକୁ ବହୁତ ଉପଭୋଗ କରିଛୁ, ସେମାନଙ୍କର ଯତ୍ନନେବା ଓ ଘରକାମ ମିଶିକି କରିବାରେ ବହୁତ ଆନନ୍ଦ ପାଇଛୁ ।

୧୯୬୦ରେ ବମ୍ବେ ପ୍ରେସିଡେନ୍ସି, ମହାରାଷ୍ଟ୍ର ଓ ଗୁଜରାଟ ଦୁଇଭାଗରେ ବିଭକ୍ତ ହେଲା । ପରିଣାମ ସ୍ୱରୂପ ସରକାରୀ ଚାକିରି ବେଶି ପରିମାଣରେ ଉପଲବ୍ଧ ହେଲା । ମୁଁ ସହକାରୀ ରୋଜଗାର ଅଫିସର ପଦପାଇଁ ଆବେଦନ କଲି ଓ ମତେ ଚାକିରିଟି ମିଳିଗଲା । ମୋର ତିନିଜଣ କର୍ମଚାରୀ ଥିଲେ । ମୋର ଦାୟିତ୍ୱ ଥିଲା ଗୁଜରାଟ ବିଶ୍ୱବିଦ୍ୟାଳୟରେ ଏକ ରୋଜଗାର ମାର୍ଗଦର୍ଶନ କେନ୍ଦ୍ର ସ୍ଥାପନ କରିବା । ମୁଁ ନୂଆ ସ୍ନାତକଧାରୀମାନଙ୍କ ପାଇଁ ଚାକିରି ଖୋଜୁଥିଲି ଓ ଭାବୁଛି ସେଥିରେ ସଫଳ ହେଉଥିଲି । ତିନିବର୍ଷପରେ ମତେ ମୁଖ୍ୟ କାର୍ଯ୍ୟାଳୟକୁ ସ୍ଥାନାନ୍ତରିତ କରାଗଲା ଓ ବୃତ୍ତିଗତ ସୂଚନା ଅଧିକାରୀ ପଦ ଦିଆଗଲା । ନୂତନ ଜୀବିକା ସଂପର୍କରେ ମୋତେ କ୍ଷେତ୍ର ଅଧ୍ୟୟନ କରିବାକୁ ପଡୁଥିଲା । ମୁଁ ଲୋକମାନଙ୍କୁ କାମ କରୁଥିବାବେଳେ ନିରୀକ୍ଷଣ କରୁଥିଲି ଏବଂ ତାଙ୍କ କାର୍ଯ୍ୟପ୍ରଣାଳୀକୁ ଟିକିନିଖି ଭାବରେ ଲେଖିନେଉଥିଲି ଯଦିଓ ଏହା ମତେ ଅନେକ ଯାତ୍ରା କରିବାର ଓ ଏକ ବାସ୍ତବ ଜଗତ ସହିତ ସମ୍ପର୍କ ରଖିବାର ସୁଯୋଗ ଦେଉଥିଲା, ତଥାପି ଅମଲାତାନ୍ତ୍ରିକ ପଦ୍ଧତି ମତେ ମାଡ଼ିପଡୁଥିଲା । ତେଣୁ ମୁଁ ମୋ ଚାକିରି ଛାଡ଼ିଦେଲି ଓ ଟିଏଲ୍ଏର ୧୯୬୮ ମସିହା ଜୁଲାଇରେ ଅହମଦାବାଦରେ ହେବାକୁ ଥିବା ଭାରତୀୟ ଜାତୀୟ ମଜଦୁର ସଂଗଠନର ବୈଠକର ପ୍ରସ୍ତୁତି ପାଇଁ ସାହାଯ୍ୟ କରିବାରେ ଲାଗିଲି ।

ଦୁଇଟି ବଡ଼ ଘଟଣା ମତେ ଏ ବୃତ୍ତି ନେବାପାଇଁ ଉତ୍ସାହିତ କରିଛି । ପ୍ରଥମଟି ଥିଲା ଦୁଇଟି ବଡ଼ ଲୁଗା କଳ ୧୯୬୮ରେ ବନ୍ଦ ହେଇଯିବା । ସର୍ବହରା ହେଇଯାଇଥିବା ଶ୍ରମିକମାନେ ବିକ୍ଷୋଭ ପ୍ରଦର୍ଶନ କରୁଥିଲେ । ସେମାନଙ୍କର ସ୍ତ୍ରୀମାନେ ବିଭିନ୍ନ କାମ–କୁଲିଗିରି, ବୁଲା ବିକାଳି, ଦର୍ଜୀ, ଚାକରାଣୀ କାମ ପର୍ଯ୍ୟନ୍ତ କରୁଥିଲେ । ମୁଁ ବୁଝିପାରିଲି ଯେ ଅସଙ୍ଗଠିତ କ୍ଷେତ୍ରରେ କରାଯାଉଥିବା କାର୍ଯ୍ୟର କୌଣସି ସୁରକ୍ଷା ଓ ବୀମା ନ ଥିଲା । ଏପରିକି କୌଣସି ରେଜିଷ୍ଟରରେ 'ଶ୍ରମିକ' ଶବ୍ଦର ପ୍ରବେଶ ନ ଥିଲା । ଯେତେଦୂର ସରକାରଙ୍କ କଥା ବା ପ୍ରଶ୍ନ ଆସେ ସବୁ ଶ୍ରମିକ ତାଙ୍କ ପାଇଁ ନାମହୀନ ଓ ମୁହଁହୀନ ଥିଲେ । ତଥାପି ସ୍ତ୍ରୀଲୋକମାନେ କାମ କରି କୌଣସି ମତେ ପରିବାରକୁ ପୋଷୁଥିଲେ ।

ଦ୍ୱିତୀୟ ଘଟଣାଟି ଅହମଦାବାଦରେ ହୋଇଥିବା ସାଂପ୍ରଦାୟିକ ଦଙ୍ଗା । ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ଚାପା ଉତ୍ତେଜନା ଓ ଦଙ୍ଗା ଯୋଗୁଁ ୧୯୬୯ରେ ଗୋଟେ ବିରାଟ ବିଷମ ପରିସ୍ଥିତି ଉପୁଜିଲା । ସେତେବେଳେ ଟିଏଲ୍ଏ ସଦସ୍ୟମାନଙ୍କୁ ଶାନ୍ତି ଫେରେଇ ଆଣିବାପାଇଁ ପ୍ରଭାବିତ ଅଞ୍ଚଳକୁ ଯିବାପାଇଁ ଅନୁମତି ମିଳୁଥିଲା । ମୁଁ ଅନ୍ୟମାନଙ୍କ ସହିତ ଗଲି । ଦିନେ ରାତିରେ ଆମେ କର୍ଫ୍ୟୁ ଅଞ୍ଚଳରେ ରକ୍ତାକ୍ତ ଶବସବୁ ଦେଖିଲୁ । ମୁଁ ମିଲିଟାରୀ ଟ୍ରକରେ ସାର୍ବଜନୀନ ଶବଦାହକ୍ଷେତ୍ରକୁ ନେବାପାଇଁ ଶବସବୁ ଉଠେଇବାରେ ସାହାଯ୍ୟ କଲି । ଏହା ପ୍ରଥମଥର ପାଇଁ ମୃତ୍ୟୁର ଭୀଷଣ ବିଭୀଷିକାସହିତ ମୋର ସାକ୍ଷାତ । ଟିଏଲ୍ଏର କାର୍ଯ୍ୟ ହିସାବରେ ମୁଁ ଆହତ ମହିଳାମାନଙ୍କୁ ଡାକ୍ତରଖାନାରେ ଦେଖାକରିବାକୁ ଗଲି ଓ ସେମାନଙ୍କ ମଧ୍ୟରୁ ଅନେକ ଥିଲେ ମୁସଲମାନ । ମୁଁ ବହୁ ସମୟ ବ୍ୟୟ କରି ମହିଳାମାନଙ୍କୁ ତାଙ୍କ ଆତ୍ମୀୟସ୍ୱଜନଙ୍କୁ ଖୋଜିବାରେ ଓ ନୂଆକରି ଜୀବନ ଗଢ଼ିବାରେ ସାହାଯ୍ୟ କଲି । ବହୁ ପରିବାର ତାଙ୍କର ଘରଦ୍ୱାର, ଚାକିରି ହରେଇ ଭୀଷଣ ଦରିଦ୍ର ହୋଇଯାଇଥିଲେ ।

ମୁଁ ମୋର ସର୍ବେକ୍ଷଣ କାର୍ଯ୍ୟକ୍ରମରେ ଦେଖିଲି ଯେ ହଜାର ହଜାର ମହିଳା ପୁରୁଣା ଲୁଗା ବିକ୍ରିକରିବା, ବିଡ଼ି ତିଆରି କରିବା, ଅଳିଆ ଗୋଟେଇ ବିକ୍ରି କରିବା, ସିଲେଇ କରିବା, ପରିବା ବିକ୍ରି କରିବା ଓ ଠେଲା ଟାଣିବା ଆଦି କାମରେ ଲାଗିଥିଲେ । ଏ କାମଗୁଡ଼ିକର ନା କୌଣସି ନାମଥିଲା ନା ତାଙ୍କୁ ଯଥେଷ୍ଟ ପଇସା ମିଳୁଥିଲା ଏଥିରୁ । କୌଣସି ମତେ ବଞ୍ଚିଯିବାପାଇଁ ସେମାନେ ପ୍ରାୟ ସବୁବେଳେ ଚଢ଼ାସୁଧରେ ଧାର ନେଉଥିଲେ । ନିତିଦିନିଆ ଜୀବନରେ ସ୍ତ୍ରୀଲୋକମାନଙ୍କୁ ଏତେ ବେଶୀ ବୋଝ ଉଠେଇବାକୁ ପଡୁଥିଲା ଯେ ମତେ ଲାଗୁଥିଲା ଯେପରି ସେ ଓଜନରେ ମୁଁ ନିଜେ ଦବିଯାଉଛି । ଏଇ ସମୟରେ ଇସ୍ରାଏଲ୍‌ର ରାଷ୍ଟ୍ରୀୟ ଶ୍ରମିକ ସଂଘ 'ହିସ୍ତାଦ୍ରତ'ରେ ଗୋଟିଏ ପ୍ରଶିକ୍ଷଣରେ ଯୋଗଦେବା ପାଇଁ ମତେ ସୁଯୋଗ ମିଳିଲା । ମୁଁ ଦେଖିଲି କେମିତି ଶ୍ରମିକ ସଂଘ ସମବାୟ ରୂପରେ କାମ କରିପାରେ । ଇସ୍ରାଏଲ୍‌ରେ ବ୍ୟାଙ୍କ, ସ୍ୱାସ୍ଥ୍ୟସେବା, ଯାତାୟତ ବ୍ୟବସ୍ଥା, ଏପରିକି ବାୟୁ ସେବା ବି ସଂଘର ସଦସ୍ୟମାନଙ୍କ ଦ୍ୱାରା ସମବାୟ ମାଧ୍ୟମରେ ପରିଚାଳିତ ହେଉଛନ୍ତି । ମୁଁ ଏହା ଦେଖି ଆବେଗରେ ଉତ୍ତେଜିତ ହୋଇ ଭାବିଲି – ଯେ ମୁଁ ବି ସେ ମହିଳାମାନଙ୍କୁ ସଙ୍ଗଠିତ କରିପାରିବି – ସେମାନଙ୍କୁ କେବଳ କାହା ବିରୋଧରେ ନୁହେଁ ନିଜ ଉପକାର ପାଇଁ ସଂଗଠିତ କରିପାରିବି । ଲକ୍ଷ୍ୟପଥରେ ପରବର୍ତ୍ତୀ ପଦକ୍ଷେପପାଇଁ ମୋର ଯେଉଁ ଗୁରୁତ୍ୱପୂର୍ଣ୍ଣ ଶକ୍ତି–ସାମର୍ଥ୍ୟ ଦରକାର ଥିଲା, ତାହା ମୋତେ ଏହି ଯାତ୍ରାରୁ ମିଳିଗଲା ।

ମୋର ସଙ୍ଗଠିତ କରିବାର ପ୍ରଥମ ପ୍ରୟାସ ସଫଳ ହେଲା ସମ୍ଭବତଃ ଆରମ୍ଭ କରୁଥିବା ଲୋକର ଭାଗ୍ୟ ବୋଲି । ମୁଣ୍ଡରେ ବୋଝ ବୋହୁଥିବା ଲୋକଙ୍କୁ ଭିକ୍ଷା ସମାନ ସାମାନ୍ୟ ଟଙ୍କା ମିଳୁଥିଲା, ତେଣୁ ମୁଁ ଖବର କାଗଜରେ ଏ ବିଷୟରେ ଏକ ଲେଖା ଲେଖିଲି । ବ୍ୟବସାୟୀମାନେ ଏତେ କମ୍ ମଜୁରି ସଂପର୍କରେ ଅସ୍ୱୀକାର କଲେ । ସେମାନେ ତା'ର ଚାରିଗୁଣ ମଜୁରି ଦିଅନ୍ତି ବୋଲି ଦୃଢ଼ ଭାବରେ କହିଲେ ଓ ଉଚିତ୍ ମଜୁରି ଖବର କାଗଜରେ ବି ସେମାନେ ଛପେଇ ସାରିଛନ୍ତି ବୋଲି ଜଣେଇଲେ । ମୁଁ ସେଇ ମଜୁରି

କାର୍ଡ଼ରେ ଛପେଇ ପ୍ରତ୍ୟେକ ଶ୍ରମିକକୁ ଗୋଟିଏ ଗୋଟିଏ କାର୍ଡ଼ ଦେଇଦେଲି । ଯେହେତୁ ସେମାନେ ଖବରକାଗଜରେ ଛପେଇ ସାରିଥିଲେ ତେଣୁ ସେ ମଜୁରି ନ ଦେଇ ତାଙ୍କର ପଛକୁ ଫେରିବାର ରାସ୍ତା ନ ଥିଲା । ତେଣୁ ମୁଣ୍ଡରେ ବୋଝ ବୋହୁଥିବା ଲୋକଙ୍କର ମଜୁରି ଆଶାନୁରୂପ ବଢ଼ିଗଲା ।

ଦ୍ୱିତୀୟ ଦଳଟି ଥିଲା ପୁରୁଣା ବ୍ୟବହୃତ ଲୁଗାକୁ ବିକ୍ରୀ କରୁଥିବା ମହିଳାମାନଙ୍କର । ମୁଁ ସେମାନଙ୍କ ସହିତ ଗୋଟିଏ ସଭା କଲି, ସେମାନେ ଆଗ୍ରହର ସହିତ ବର୍ଷକୁ ସଦସ୍ୟ ଚାନ୍ଦା ଟ୩.୦୦ ଦେବାକୁ ରାଜି ହେଇଗଲେ । ଏହିପରି SEWA ବା ସ୍ୱୟଂ ନିଯୁକ୍ତି ମହିଳା ସଂଘର (ସେଲ୍ଫ ଏମ୍ପ୍ଲଏଡ୍ ଉମେନ୍'ସ ଏସୋସିଏସନ୍) ସୂତ୍ରପାତ ଥିଲା । ଆଗକୁ ଆଉରି ଅନେକ ବାଧା ଅତିକ୍ରମ କରିବାକୁ ଥିଲା । କିନ୍ତୁ ଆମେ ସେଓ୍ୱାକୁ ଟିଏଲ୍ଏ ସାହାଯ୍ୟରେ ୧୯୭୨ ମସିହା ଏପ୍ରିଲ୍ ୧୨ ତାରିଖରେ ଗୋଟିଏ ଶ୍ରମିକ ସଂଘ ଭାବରେ ପଞ୍ଜୀକରଣ କରିଲୁ । ଆରମ୍ଭରେ ଆମେ ୮ଟି ସହରୀ ବ୍ୟବସାୟର ସର୍ବେକ୍ଷଣ କଲୁ । ଏ କାମ ପାଇଁ ସେଇ ବ୍ୟବସାୟ ଗୋଷ୍ଠୀର ଲୋକଙ୍କୁ ନିଯୁକ୍ତ କରାଗଲା । ଏ ସର୍ବେକ୍ଷଣ ପଦ୍ଧତିରୁ ଆପେ ନେତା ଓ ସଂଗଠକ ତିଆରି ହେଲେ । ମୁଁ ସର୍ବେକ୍ଷଣର ଡାଟା ଲେଖି ପକେଇଲି ଓ ଟି ଏଲ୍ ଏ ଦ୍ୱାରା ତାହା ପ୍ରକାଶିତ ହେଲା । ବର୍ତ୍ତମାନ ମୂଳ ସମସ୍ୟାଟି ସମ୍ମୁଖକୁ ଆସିଲା – ଶ୍ରମିକଙ୍କ ପାଖରେ ତାଙ୍କର ଯନ୍ତ୍ରପାତି ବା ମୂଳଧନ କିଛି ନଥିଲା ।

ଆମ ନିଜର ବ୍ୟାଙ୍କ କରିବା ଧାରଣା ଆମରି ଜଣେ କର୍ମୀ ଚନ୍ଦାବେନ୍ (ଚନ୍ଦା ପାପୁ) ଦେଲେ । ଏହା ଖୁବ୍ କଠିନ ଥିଲା । କିନ୍ତୁ ଆମେ ମହିଳା SEWA ସହକାରୀ ବ୍ୟାଙ୍କ ଲିମିଟେଡ୍ (ଏସ୍ ଇ ଡବ୍ଲୁଏ) ନାମରେ ଏକ ସମବାୟ ବ୍ୟାଙ୍କ ୧୯୭୪ ମସିହା ମେ ମାସରେ ସ୍ଥାପନ କଲୁ । ଆମେ ବ୍ୟାଙ୍କ ପାସ୍‌ବୁକ୍ ତିଆରି କଲୁ । ବହୁ ମହିଳା ଅଶିକ୍ଷିତ ଥିବାରୁ ପରିଚୟ ପାଇଁ ପାସ୍‌ବୁକ୍‌ରେ ସେମାନଙ୍କ ଫଟୋ ବ୍ୟବସ୍ଥା କରାଗଲା । ତେବେ ସେମାନଙ୍କ ମଧ୍ୟରୁ ଅନେକ ନିଜର ଦସ୍ତଖତ ଶିଖିବା ଉପରେ ଜୋର୍ ଦେଲେ ଓ ଏମିତି ବ୍ୟାଙ୍କିଂ ସେମାନଙ୍କର ସାକ୍ଷରତା ବଢ଼ାଇଲା । ମହିଳାମାନଙ୍କୁ ବ୍ୟାଙ୍କ ଆସିବାରେ ଅସୁବିଧା ହେଉଥିଲା ବୋଲି ଆମର କ୍ଷେତ୍ରୀୟ କର୍ମକର୍ତ୍ତାମାନେ ତାଙ୍କ କାର୍ଯ୍ୟସ୍ଥଳକୁ ଯାଇ ତାଙ୍କ ସଂଚୟ ସଂଗ୍ରହ କରୁଥିଲେ ଓ ସେଇ ଅନୁସାରେ ସେମାନଙ୍କ ପାଇଁ ଖାତାରେ ଲେଖିରଖୁଥିଲେ ।

ଋଣର ସ୍ୱୀକୃତି ଏବଂ ପରିଶୋଧ ନିମନ୍ତେ ସେ ଶ୍ରମଜୀବୀମାନଙ୍କୁ ଦାୟିତ୍ୱ ସଂପନ୍ନ କରିବା ଅନ୍ୟ ଏକ ନୂଆ ବିଷୟର ପ୍ରବର୍ତ୍ତନ ଥିଲା । ଆମେ ଗୋଟେ ବୋର୍ଡ ଗଠନ କଲୁ । ଯେଉଁଥିରେ ବିଭିନ୍ନ ବ୍ୟବସାୟ କରୁଥିବା ଦଳର ପ୍ରତିନିଧି ଓ ମୁଁ ରହିଲୁ । ଆମେ ମହିଳାମାନଙ୍କର ଅବସ୍ଥା ବିଷୟରେ ଟିକିନିଖି ଜାଣିଥିଲୁ, ତେଣୁ ଅନ୍ୟ ବ୍ୟାଙ୍କ ତୁଳନାରେ ଅଧିକ ସାହସିକ ପଦକ୍ଷେପ ନେଇ ପାରୁଥିଲୁ । ଆଜି ଆମ ବ୍ୟାଙ୍କ ଅହମଦାବାଦରେ ଏକ ବହୁତଳ ବିଶିଷ୍ଟ କୋଠା ଓ ବ୍ୟାଙ୍କ ଦ ପ୍ୟାରିସ ପାଖରେ ଅବସ୍ଥିତ । ଆମେ ଆମର ଉଭୟ ସାକ୍ଷର ଓ ନିରକ୍ଷର ସଦସ୍ୟଙ୍କ ସହିତ ବିପୁଳ ପରିମାଣର ବ୍ୟବସାୟ କରୁଛୁ ।

୧୯୭୬ ମସିହାରେ ଆମେ ଗ୍ରାମାଞ୍ଚଳରେ ସଂଗଠନ କାମ ଆରମ୍ଭ କଲୁ । ଏଠି ସମସ୍ୟା ଭିନ୍ନ ପ୍ରକାରର ଥିଲା, ତାଙ୍କୁ କିପରି ସାହାଯ୍ୟ କରିପାରିବୁ ଓ ସମସ୍ୟାର ସମାଧାନ କରି ପାରିବୁ, ସେ ଉପାୟ ଶିଖିବାକୁ ଥିଲା । ଆମେ ଦେଖିଲୁ ଯେ କେବଳ ଜମିରେ ମଜୁରି ଲାଗି ଅର୍ଥ ଉପାର୍ଜ୍ଜନ କରୁଥିବା ମହିଳାମାନେ କୁଶଳୀ ଶ୍ରମିକ ମହିଳାମାନଙ୍କଠାରୁ ଅଧିକ ଦାରିଦ୍ର୍ୟପୂର୍ଣ୍ଣ ଜୀବନ ବିତଉଛନ୍ତି । ତେଣୁ ଆମେ ତାଙ୍କର ବୁଣିବା କୁଶଳତାକୁ ଜାତୀୟ ଡିଜାଇନ୍ ଅନୁଷ୍ଠାନ ସହଯୋଗରେ ବୃଦ୍ଧି କରେଇବା ପାଇଁ ଓ ଜାତୀୟ ଡେିରୀ ଡେଭେଲପ୍‌ମେଣ୍ଟ ବୋର୍ଡ଼ ଦ୍ୱାରା ତାଙ୍କର ଦୁଗ୍ଧ ଉତ୍ପାଦନ ଜନିତ ଜ୍ଞାନକୁ ଉନ୍ନତ କରାଇବା ପାଇଁ ନିର୍ଣ୍ଣୟ ନେଲୁ । ଆମେ ଏପରି ଏକ ଅର୍ଥ ଯୋଜନା କଲୁ ଯାହା ସାହାଯ୍ୟରେ ପାଳିକରିକି ମହିଳାମାନେ ଗାଈ କିଣି ପାରିବେ । ୧୯୭୮ରେ ମୁଁ ସସେକ୍ସ ବିଶ୍ୱବିଦ୍ୟାଳୟକୁ ଏକ (ବିଶେଷ) ଅଧ୍ୟୟନ ପାଇଁ ଗଲି । ସେଠି ମୁଁ ଗୋଟେ ଗବେଷଣାମୂଳକ ଲେଖା ଉପସ୍ଥାପନ କଲି ଯାହା ଆନ୍ତର୍ଜାତିକ ଶ୍ରମିକ ସଂଗଠନ (ଆଇ ଏଲ୍ ଏ) ଏବଂ ଅନ୍ୟ ଆନ୍ତର୍ଜାତିକ ସଂଗଠନଗୁଡ଼ିକର ଦୃଷ୍ଟି ଆକର୍ଷଣ କଲା ।

୧୯୭୭ରେ ମୁଁ ସାମୂହିକ ନେତୃତ୍ୱପାଇଁ ମେଗ୍‌ସେସ ପୁରସ୍କାର ପାଇଲି । 'ସେୱା'ର କାର୍ଯ୍ୟକଳାପକୁ ଏହା ଅଧିକ ଉତ୍ସାହିତ କଲା । କିନ୍ତୁ ଏହା ଆମର ମୂଳ ସଂଗଠନ ଟି ଏଲ୍ ଏର କ୍ରିୟା ପ୍ରକ୍ରିୟାଠାରୁ ଆମକୁ ଅଧିକ ଦୂରକୁ ନେଇଗଲା । ଅନେକେ ସେୱାର ସୁନାମ ବା ଖ୍ୟାତିକୁ ସହିପାରୁ ନଥିଲେ । ମୁଁ ମଧ ବହୁତ ଦୃଢ଼ ଥିଲି । ଦଳିତମାନଙ୍କ ତରଫରୁ ଅନୁସୂଚିତ ଜାତି/ ଜନଜାତି ଛାତ୍ରଙ୍କ ପାଇଁ ପୋଷ୍ଟ ଗ୍ରାଜୁଏଟ୍ ସ୍ତରରେ ଗୁଜରାଟ ମେଡିକେଲ୍‌ରେ ୨ଟି ସ୍ଥାନ ସଂରକ୍ଷଣକୁ ନେଇ ସ୍ୱର ଉତ୍ତୋଳନ କଲି । ଅଧିକାଂଶ ଛାତ୍ର ଏହାର ବିରୋଧ କରୁଥିଲେ ଯେତେବେଳେ କି ମୁଁ ଖୋଲାଖୋଲି ଏହାକୁ ସମର୍ଥନ କରୁଥିଲି । ଗଣମାଧମରେ ଏହା ଜୋରସୋରରେ ପ୍ରଚାରିତ ହେଲା । ମଧବିତ୍ତ ଶ୍ରେଣୀର ଲୋକେ ଏଥିରେ ଘୋର ଅସନ୍ତୁଷ୍ଟ ଥିଲେ, ଆମର ପଡ଼ୋଶୀ ବି ଏଥିରେ ଯୁକ୍ତ ଥିଲେ । ଏପରିକି ଥରେ ଆମ ଘର ଉପରେ ଟେକା ପଥର ମାଡ଼ ହେଇଥିଲା । ଟି ଏଲ୍ ଏ ଦୃଷ୍ଟିରେ ମୁଁ ମୋ ସୀମା ବାହାରକୁ ଚାଲିଯାଉଛି । ଶେଷରେ ପ୍ରତ୍ୟକ୍ଷ ଭାବେ ସେମାନେ ଟି ଏଲ ଏର ମୋ ଅଫିସକୁ ଆସି ମତେ ଛାଡ଼ିଚାଲିଯିବାପାଇଁ କହିଲେ ଏବଂ 'ସେୱା'କୁ ଜାତୀୟ ଶ୍ରମିକ ସଂଘର ଅନୁମୋଦନରୁ ବାଦ୍ ଦିଆଗଲା । ମୁଁ ଏବେ ଏତେ ସହଜରେ କହିଦେଉଛି କିନ୍ତୁ ସେତେବେଳର ଅନୁଭବ ବଡ଼ ମର୍ମଦାହୀ ଥିଲା । ଯାହେଉ ଏ ସମସ୍ୟାର ସମାଧାନ ହେଲା ଓ ସେୱା କାଳ ଅତିକ୍ରମି ବର୍ତ୍ତମାନ କାଳର ଅବସ୍ଥା ପ୍ରାପ୍ତ ହେଲା ।

ଅଶି ଦଶକରେ ସେୱାର ସଦସ୍ୟ ସଂଖ୍ୟା ତୀବ୍ର ଗତିରେ ବୃଦ୍ଧି ପାଇବାକୁ ଲାଗିଲା । ୧୯୮୧ରେ ପ୍ରାୟ ୬୦୦୦ରୁ ୧୯୮୪ରେ ପ୍ରାୟ ୨୩,୦୦୦ ପର୍ଯ୍ୟନ୍ତ ! ଆମେ ଆମର ଅଫିସ୍ ବଢ଼େଇଲୁ । ବାହାରୁ ବିଶେଷଜ୍ଞ ମାନଙ୍କୁ ନିମନ୍ତ୍ରଣ କରି ପ୍ରଶାସନ ଓ ସଂଘ ସଂଗଠନ ପଦ୍ଧତିକୁ ଦୃଢ଼ ଓ ସୁଷ୍ଠ କରାଗଲା । ୬ଟି ମୁଖ୍ୟ ଉଦ୍ୟୋଗ ଦ୍ୱାରା ଏ ସଂଘ ସେତେବେଳେ ଗଠିତ ହୋଇଥିଲା – ବସ୍ତ୍ର ଏବଂ ପୋଷାକ ପ୍ରସ୍ତୁତି ଶ୍ରମିକ, ବିଡ଼ି ମୋଡୁଥିବା ଲୋକ,

ମୁଣ୍ଡରେ ବୋଝ ବୋହୁଥିବା କୁଲି ଏବଂ ଠେଲାବାଲା, ସଫା କରିଲା ବାଲା, ଫେରିବାଲା ଓ କୃଷି କରୁଥିବା ଶ୍ରମିକ । ସେମାନେ ତାଙ୍କ ଭିତରୁ ନିଜ ନିଜ ନେତା ବାଛୁଥିଲେ । ତାଙ୍କର ସମସ୍ତ ବିଷୟ ଖୋଲାଖୋଲି ଆଲୋଚିତ ହେଉଥିଲା । ମହିଳାମାନେ ନିଜ ମତାମତ ଉଚ୍ଚସ୍ୱରରେ ବ୍ୟକ୍ତ କରୁଥିଲେ । ତା' ଭିତରୁ ସବୁଠୁ ଝାମେଲାବାଲା ବିଷୟ ଥିଲା ପୁରୁଷମାନଙ୍କୁ କଣ ସେୱାର ସଦସ୍ୟଭାବେ ଗ୍ରହଣ କରାଯାଇପାରେ ? ଯେତେବେଳେ ବି ମୁଁ ଏ ପ୍ରଶ୍ନ ଉଠଉଥିଲି ମହିଳାମାନେ ସମସ୍ୱରରେ ନିର୍ବିବାଦରେ ଏହାକୁ ବାତିଲ୍ କରି ଦେଉଥିଲେ । ମହିଳାମାନେ ଅନୁଭବ କରୁଥିଲେ ଯେ ତାଙ୍କ ନିଜ ପରିବାରର ପୁରୁଷମାନଙ୍କର ଉପସ୍ଥିତି ତାଙ୍କର ସକ୍ରିୟ ଯୋଗଦାନରେ ବାଧା ସୃଷ୍ଟି କରିବ । ଏହିପରି 'ସେୱା'ର ଭାବମୂର୍ତ୍ତି ମହିଳା ସଂଗଠନ ରୂପେ ସୁଦୃଢ଼ ହୋଇଛି । ଏହାର ସ୍ୱର ବହୁ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ଶୁଣାଯାଇଥାଏ ।

ମୋ କାମର ଗୋଟିଏ ପରିଣାମ ହେଲା ଯେ ବିଶ୍ୱର ଶିକ୍ଷିତ ବ୍ୟକ୍ତିମାନଙ୍କୁ ଏହା ପ୍ରଭାବିତ କରୁଛି । ୧୯୮୪ରେ ମତେ ମାନବ ଜାତିର ପରିବେଶ ପରିବର୍ତ୍ତନ ନିମନ୍ତେ ରାଇଟ୍ ଲାଇଭ୍ଲିହୁଡ୍ ପୁରସ୍କାର ଦିଆଗଲା । ଏହାକୁ ନୋବେଲ ପୁରସ୍କାରର ବିକଳ୍ପ କୁହାଯାଇଥାଏ । ଏହା ପରେ ଭାରତ ସରକାର ୧୯୮୫ରେ ମତେ ପଦ୍ମଶ୍ରୀ ଏବଂ ୧୯୮୬ରେ ପଦ୍ମଭୂଷଣ ଦ୍ୱାରା ସମ୍ମାନିତ କଲେ । ଅନ୍ୟାନ୍ୟ ସମ୍ମାନ ସବୁ ଫ୍ରାନ୍ସ, ଆମେରିକା ଏପରିକି ଅହମଦାବାଦ୍ ମ୍ୟୁନିସିପାଲଟି (ନଗରପାଳିକା)ରୁ ମଧ୍ୟ ମିଳିଲା । ଏ ପୁରସ୍କାର ଦ୍ୱାରା ମୋ କାମକୁ ଯେଉଁ ସ୍ୱୀକୃତି ଓ ପରିଚିତି ମିଳିଲା ସେଥିପାଇଁ ମୁଁ ସଂସ୍ଥାଗୁଡ଼ିକୁ ପ୍ରଶଂସା କରୁଛି । ସର୍ବଦା ମହିଳା ଶ୍ରମିକମାନଙ୍କ ସଂଖ୍ୟା ବୃଦ୍ଧିପାଉଥିବା ଦେଖି ମୁଁ ଆନନ୍ଦିତ। ମୁଁ ପୁରସ୍କାର ପାଇଥିବା ଯୋଗୁଁ କେବେ ଆନନ୍ଦରେ ବିହ୍ୱଳ ହେଇଯାଇନି ବରଂ ଗ୍ରହଣ କରିବାକୁ ଗଲାବେଳେ ଭୟ ମିଶ୍ରିତ ଉତ୍ତେଜନା ଅନୁଭବ କରେ । କେବେ କେବେ ମୋତେ ଏମିତି ବି ଲାଗିଛି ଯେ ଏ ପୁରସ୍କାର ପାଇଁ ମୁଁ ଯେମିତି ମୋ ସହକର୍ମୀମାନଙ୍କଠୁଁ ଦୂରେଇ ଯାଇଛି ।

୧୯୮୭ରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ରାଜିବ ଗାନ୍ଧୀ ମତେ ରାଜ୍ୟସଭାର ସଦସ୍ୟ ହେବା ପାଇଁ ନିମନ୍ତ୍ରଣ ଦେଲେ । ସେଇ ବର୍ଷ ପ୍ରଧାନମନ୍ତ୍ରୀ ସ୍ୱ-ରୋଜଗାରରେ ଯୁକ୍ତ ଥିବା ମହିଳାମାନଙ୍କ ନିମନ୍ତେ ଏକ ରାଷ୍ଟ୍ରୀୟ ଆୟୋଗ ସ୍ଥାପନ କଲେ ଏବଂ ମତେ ତା'ର ଅଧ୍ୟକ୍ଷ ନିଯୁକ୍ତ କରିଲେ । ଏଇ ଆୟୋଗର କାର୍ଯ୍ୟ ସଂକ୍ରାନ୍ତରେ ମତେ ଭାରତର ସମସ୍ତ ରାଜ୍ୟକୁ ଯିବାକୁ ହେଲା । ଆମେ ସରକାରୀ ପ୍ରାଶାସନିକ ଅଧିକାରୀ, ସ୍ୱେଚ୍ଛାସେବୀ ସଂଗଠନ ମହିଳା ଶ୍ରମିକମାନଙ୍କ ସହିତ ସାକ୍ଷାତ କରିଲୁ । ଏମିତିରେ ଗରିବ ମହିଳାମାନଙ୍କର ଦୁର୍ଦ୍ଦଶା ଓ ଯନ୍ତ୍ରଣା ମୋ ପାଇଁ ନୂଆ ନ ଥିଲା ମାତ୍ର ଏତେ ମାତ୍ରାରେ ବ୍ୟାପ୍ତ ହୋଇପାରେ ! ତାଙ୍କର ଆବଶ୍ୟକତା ପ୍ରତି ଆଇନ୍‌କାନୁନ୍ ଓ ନିୟମର ଉଦାସୀନତା, କ୍ଷମତାସୀନମାନଙ୍କର ଶୋଷଣ – ଏହି ନିର୍ମମ ସତ୍ୟ ମତେ ଦୁଃଖୀ କରିଦେଉଥିଲା । ୧୯୮୮ରେ ଆମର

'ଶ୍ରମ-ଶକ୍ତି' ବିବରଣୀ ଦାଖଲ କରାଗଲା । ଆର୍ଥିକ ଉତ୍ପାଦନ ଉପରେ ମହିଳାମାନଙ୍କର କମ୍‌ସେକମ୍ ଆଂଶିକ ଅଧିକାର ଓ ନିୟନ୍ତ୍ରଣ ରହିବା ଆବଶ୍ୟକ ; ଅସଂଗଠିତ କ୍ଷେତ୍ରରେ ମହିଳାମାନଙ୍କ ନିମନ୍ତେ ଏକ କେନ୍ଦ୍ରୀୟ - ସାମାଜିକ ସୁରକ୍ଷା ପାଣ୍ଠି ତିଆରି କରାଯିବା ଆବଶ୍ୟକ ବୋଲି ବହୁବାର ସୁପାରିଶ୍ କରାଯାଇଥିଲା । ଆମର ପରିକଳ୍ପନା ଥିଲା ଯେ ଏହି ପାଣ୍ଠି ମାତୃତ୍ୱ ସମ୍ବନ୍ଧିତ ସାହାଯ୍ୟ, ସ୍ୱାସ୍ଥ୍ୟ ଏବଂ ଶିଶୁ କଲ୍ୟାଣ ନିମନ୍ତେ ଅର୍ଥ ଯୋଗାଇବ । ଏହି ପରାମର୍ଶ ଆଗାମୀ ଦଶକ ପାଇଁ ମୋ ଯୋଜନାଯୁକ୍ତ ହେଲା ।

ମୁଁ ୧୯୯୧ରେ ଅହମଦାବାଦକୁ ଫେରିଲି, ସେୱାର ବୃଦ୍ଧି ଘଟିଥିଲା । କେବଳ ନୂତନ ସଦସ୍ୟ ସଂଖ୍ୟାରେ ନୁହେଁ, ନୂଆ କାର୍ଯ୍ୟକ୍ରମ ଓ ବିବିଧ କ୍ଷେତ୍ରରେ ନୂତନ ସକ୍ରିୟ ନେତୃତ୍ୱ ନେବାରେ ମଧ୍ୟ । ଭିଡ଼ିଓ ସେୱାନାମରେ ଏକ କାର୍ଯ୍ୟକ୍ରମ ଥିଲା । ଏହାର ଆରମ୍ଭ ସେୱା ମହିଳାଙ୍କର ଭିଡ଼ିଓ ପ୍ରଶିକ୍ଷଣରୁ ଆରମ୍ଭ ହୋଇଥିଲା । ସେମାନେ ନିଜ ଜୀବନର କିଛି ଅତୀବ ଅସାଧାରଣ ସ୍ପର୍ଶକାତର ଛବି ଉଠେଇଥିଲେ, ମହିଳାମାନଙ୍କର ଜୀବନ କାହାଣୀ ରେକର୍ଡ଼ କରିଥିଲେ, ବିଭିନ୍ନ ଘଟଣା ଓ କାର୍ଯ୍ୟର ଅବସ୍ଥାକୁ ନେଇ ବୃତ୍ତଚିତ୍ର ବି ନିର୍ମାଣ କରିଥିଲେ । ତାଙ୍କ ହାତରେ ଭିଡ଼ିଓ କ୍ୟାମେରା ଗୋଟିଏ ଶକ୍ତିଶାଳୀ ସାମାଜିକ ଅସ୍ତ୍ରରେ ପରିଣତ ହେଇଯାଇଥିଲା । ସେୱା ଏକାଡ଼େମୀ ନାମରେ ଏକ ଅନୁଷ୍ଠାନ ସ୍ଥାପିତ ହେଲା । ଏହା ସେୱାର ନୂତନ ସଦସ୍ୟ ଓ ସଂସ୍ଥାଗୁଡ଼ିକୁ ନିଜର ସାମର୍ଥ୍ୟ ଏବଂ ସାମୂହିକ ପରିକଳ୍ପନା ଏବଂ କାର୍ଯ୍ୟ ସଂପର୍କରେ ଶିକ୍ଷା ଦେଉଥିଲା ।

ଆମର ଅନେକ ସଂଗ୍ରାମ ମଧ୍ୟରୁ ଘରେ କାମ କରୁଥିବା ଠିକା ଚାକରାଣୀମାନଙ୍କର ଅଧିକାର ପାଇଁ ସଂଘର୍ଷ ଥିଲା ଗୁରୁତ୍ୱପୂର୍ଣ୍ଣ । ଏ ବିଷୟକୁ ଆନ୍ତର୍ଜାତିକ ସ୍ତରରେ ଆଲୋଚନା କରିବା ଅତ୍ୟନ୍ତ ଦୁଃସାଧ୍ୟ ଥିଲା । ୧୯୯୬ ମସିହା ଜୁନ୍ ୨୦ରେ ଆନ୍ତର୍ଜାତିକ ଶ୍ରମିକ ସଂଗଠନ ଘରୁଆ ଶ୍ରମିକମାନଙ୍କ ସମ୍ବନ୍ଧରେ କିଛି ନିୟମ ପ୍ରଣୟନ କଲେ । ସେୱାର ଏ ଷୋଳ ବର୍ଷର ପ୍ରଚାର ଅଭିଯାନ ଲବ୍ଧ ଏହି ପରିବର୍ତ୍ତନକୁ ଆମେ "ହୱାବିବିରୁ ଆଇ ଏଲ୍ ଓ (ILO) ଜେନିଭା କନଭେନ୍‌ସନ" ନାଁ ଦେଇଥିଲୁ । ସେୱାର ଆରମ୍ଭ ଦିନରେ ହାୱା ବିବି ଜଣେ ବିଡ଼ି ମହିଳା ଶ୍ରମିକ ଥିଲା । ତେଣୁ ଏହା ଥିଲା ଏକ ବୈଶିଷ୍ଟ୍ୟପୂର୍ଣ୍ଣ ଘଟଣା । ସାମୂହିକ କ୍ରିୟା ପ୍ରକ୍ରିୟା ଉପରେ ଆମର ବିଶ୍ୱାସର, ଯଥାର୍ଥତାର ବିଜୟର ପ୍ରତୀକ ।

୧୯୭୫ରେ ମେକ୍‌ସିକୋରେ ହୋଇଥିବା ମହିଳା ସମ୍ମିଳନୀରେ ମହିଳା ବିଶ୍ୱବ୍ୟାଙ୍କ ବିଷୟକ ଚିନ୍ତା ପ୍ରଥମେ ଜନ୍ମ ନେଇଥିଲା । ଏହା ୧୯୭୯ରେ ସ୍ଥାପିତ ହେଲା ଏବଂ ଏକ ବିଶ୍ୱବ୍ୟାପୀ ପ୍ରଭାବଶାଳୀ ସଂଗଠନଭାବେ ଉନ୍ନତି କଲା । ଏହା ଦରିଦ୍ର ମହିଳାମାନଙ୍କ ପାଇଁ ମଧ୍ୟସ୍ଥି ଓ ଋଣଦେବାର ଗ୍ୟାରେଣ୍ଟର୍‌ଭାବରେ କାର୍ଯ୍ୟକଲା । ମୂଳଧନ ଯୋଗାଇବା ସହିତ ମହିଳାମାନଙ୍କୁ ବ୍ୟବସାୟରେ ଦକ୍ଷ ହେବା ପାଇଁ ସୁବିଧା ଯୋଗାଇ ଦିଆଗଲା । ସେମାନେ, ବଜାର, ସୂଚନା - ଟେକ୍‌ନିକ୍ ଏବଂ ଅନ୍ୟ ସହଯୋଗୀ ସେବା ବ୍ୟବସ୍ଥା ବ୍ୟବହାର କରିବାପାଇଁ ସମର୍ଥ ହେଲେ। ମୁଁ ମହିଳା ବିଶ୍ୱ-ବ୍ୟାଙ୍କର କାର୍ଯ୍ୟକାରୀ ସମିତିରେ

ତ ଆରମ୍ଭରୁ ଥିଲି, ୧୯୮୮ ମସିହାରୁ ୧୦ ବର୍ଷ ପର୍ଯ୍ୟନ୍ତ ଅଧ୍ୟକ୍ଷ ପଦରେ କାର୍ଯ୍ୟ କଲି । ସେୱା ପରେ ମହିଳା ବିଶ୍ୱବ୍ୟାଙ୍କ ହିଁ ଏପରି ଏକ ସଂଗଠନ ଯାହା ସହିତ ମୁଁ ସଂପର୍କିତ ହେଲି ଓ ଆତ୍ମୀୟତା ଅନୁଭବ କରିଥିଲି ।

ଯେତେବେଳେ ଭି. ପି ସିଂହ ପ୍ରଧାନମନ୍ତ୍ରୀ ହେଲେ ମତେ ଯୋଜନା ଆୟୋଗରେ ଯୋଗଦେବାକୁ ନିମନ୍ତ୍ରଣ କରାଗଲା ଓ ରୋଜଗାର ଏବଂ ଶ୍ରମ ବିଭାଗର ଦାୟିତ୍ୱ ଦିଆଗଲା । ମୁଁ ଜଣେ ଅର୍ଥନୀତିର ଶିକ୍ଷାବିତ୍ ହୋଇ ନଥିବାରୁ ମୋର ପ୍ରଥମ ପଦକ୍ଷେପ ହେଲା ନିଜ ସହକର୍ମୀମାନଙ୍କୁ ବୁଝେଇବା ଓ ସ୍ୱୀକାର କରେଇବା ଯେ କାର୍ଯ୍ୟଦକ୍ଷତା ଏବଂ ଉତ୍ପାଦନ କ୍ଷମତା ପାରମ୍ପରିକ ଅର୍ଥବ୍ୟବସ୍ଥା ବାହାରେ ବି ତିଷ୍ଠିପାରେ । ଆମର ଯୋଜନା ସଫଳତା ଦେଖିବା ପର୍ଯ୍ୟନ୍ତ ସେ ସରକାର ତିଷ୍ଠିଲା ନାହିଁ । ସେୱାର ସଂଯୋଜନ ଜରୁରୀ ବୋଲି ମୋ ସହକର୍ମୀମାନଙ୍କୁ ସମ୍ମତ କରେଇବାପାଇଁ ମୁଁ ବହୁତ ଚେଷ୍ଟା କଲି । କିନ୍ତୁ ଯୋଜନାରେ ମୋ ବକ୍ତବ୍ୟକୁ ଅଧିକ ମହତ୍ତ୍ୱ ଦିଆଗଲା ନାହିଁ । ମୁଁ ପରେ ଦେଖିଲି ଯେ ୟୁନିସେଫ ନିଜର ପାଞ୍ଚବର୍ଷୀୟ ଯୋଜନାରେ ଏହାକୁ ଅନ୍ତର୍ଭୁକ୍ତ କରିଛି ।

ସେୱାର ଆଦର୍ଶ ଏବଂ ସଂଗଠନ ବିଶ୍ୱର ବିଭିନ୍ନ ଅଞ୍ଚଳକୁ ପ୍ରଭାବିତ କରୁଥିଲା । ମୁଁ ଅନବରତ ବିଭିନ୍ନ ସ୍ଥାନକୁ ଯାଉଥିଲି ଓ ବର୍ଣ୍ଣନା କରି କହୁଥିଲି କିପରି ଗାନ୍ଧିବାଦୀ ଧାରାରେ ଆମେମାନେ ସଂରଚନାତ୍ମକ କାର୍ଯ୍ୟ କରୁଛୁ, କହୁଥିଲି ସେୱା ସଂଗଠନ ମହିଳାମାନଙ୍କର, ତାଙ୍କ ନିମନ୍ତେ ଓ ତାଙ୍କ ଦ୍ୱାରା ପରିଚାଳିତ । ବର୍ତ୍ତମାନ ମୁଁ ୩ଟି ମହତ୍ତ୍ୱପୂର୍ଣ୍ଣ ଆନ୍ତର୍ଜାତିକ ସଂଗଠନ ଓ ନେଟ୍‌ୱର୍କର ଅଧ୍ୟକ୍ଷ–ଷ୍ଟ୍ରିଟ୍‌ନେଟ୍, ହୋମ ନେଟ୍ ଏବଂ ୱିଗୋ । ମୁଁ ରାକ୍‌ଫେଲ୍‌ର ଫାଉଣ୍ଡେସନ୍‌ର ଜଣେ ଟ୍ରଷ୍ଟି ବି । ମୁଁ ତାଙ୍କୁ ବେଲଜିୟୋ, ଇଟାଲୀରେ ହେବାକୁ ଥିବା ପ୍ରସିଦ୍ଧ ସମ୍ମିଳନୀ କେନ୍ଦ୍ରରେ ଫେରିବାଲାମାନଙ୍କ ଉପରେ ଏକ ଆନ୍ତର୍ଜାତିକ ସମ୍ମେଳନ ଆୟୋଜନ କରିବା ପାଇଁ ଏକମତ କରେଇ ପାରିଛି ।

ବିଂଶ ଶତାବ୍ଦୀର ଶେଷ ଦଶକରେ ଶିକ୍ଷା ଜଗତ ମଧ୍ୟ ମୋର ଅବଦାନକୁ ସ୍ୱୀକୃତି ଦେବା ଆରମ୍ଭ କଲା । ଦୁଇଟି ଭାରତୀୟ ବିଶ୍ୱବିଦ୍ୟାଳୟ, ଏସ୍ ଏନ୍ ଡିଟି ବିଶ୍ୱବିଦ୍ୟାଳୟ ଏବଂ ଏମ୍. ଏସ୍. ବିଶ୍ୱ ବିଦ୍ୟାଳୟ ତଥା ଚାରୋଟି ବିଦେଶୀ – ହାଭର୍‌ଫୋର୍ଡ୍ କଲେଜ, ଟେମ୍ପଲ ବିଶ୍ୱବିଦ୍ୟାଳୟ, ସେଣ୍ଟ ଫ୍ରାନ୍‌ସିସ୍ ଜେଭିୟର ବିଶ୍ୱବିଦ୍ୟାଳୟ ଏବଂ ହାର୍ଭାର୍ଡ ବିଶ୍ୱ ବିଦ୍ୟାଳୟରୁ ସମ୍ମାନଜନକ ଡକ୍ଟରେଟ୍ ଉପାଧି ଦ୍ୱାରା ସମ୍ମାନିତ ହେଲି । ଯେତେବେଳେ ମୁଁ ପୁରସ୍କୃତ ହୋଇଛି ମୁଁ ସମସ୍ତ ମହିଳାମାନଙ୍କୁ ସ୍ମରଣ କରିଛି ଯେଉଁମାନେ ମୋ ସହିତ କାମ କରିଛନ୍ତି । ଆନନ୍ଦିତ ହେଉଛି ଯେ ମୁଁ ବହୁ ସଂଖ୍ୟାରେ କାର୍ଯ୍ୟକର୍ତ୍ତାମାନଙ୍କୁ ସ୍ୱରୋଜଗାରରେ ଲଗେଇପାରିଛି ଓ ପ୍ରଶିକ୍ଷିତ କରେଇପାରିଛି । ସେମାନଙ୍କ ମଧ୍ୟରୁ କେତେକ ଭବିଷ୍ୟତରେ ସେୱାକୁ ନେତୃତ୍ୱ ଦେବେ ।

ଭାରତ ୧୯୪୭ରେ ରାଜନୈତିକ ସ୍ୱାଧୀନତା ପ୍ରାପ୍ତ ହେଲା । ମୁଁ ଭାବୁଛି ବର୍ତ୍ତମାନ ଆମକୁ ଦ୍ୱିତୀୟ ସ୍ୱାଧୀନତା ପାଇଁ ସଂଗ୍ରାମ କରିବାକୁ ହେବ । ଏହା ଆମଦେଶର ଶ୍ରମରତ ଗରିବମାନଙ୍କର ଆର୍ଥିକ ସଶକ୍ତୀକରଣ ନିମନ୍ତେ । ମୁଁ ଏହାର ପ୍ରାପ୍ତି ନିମନ୍ତେ ଯେଉଁ ରଣନୀତି

ଦରକାର ତା ବିଷୟରେ ଭାବିବାରେ ଲାଗିଛି । ଆଜି ସେଓ୍ୱାରେ ୩, ୧୮, ୫୨୭ ସଂଖ୍ୟକ ସ୍ୱରୋଜଗାର ମହିଳାକର୍ମୀ ଅଛନ୍ତି । ସେମାନଙ୍କ ବ୍ୟତୀତ ଲକ୍ଷ ଲକ୍ଷ ସଂଖ୍ୟାରେ ଲଘୁ ଉଦ୍ୟୋଗୀ, ଫେରିବାଲା, ବିଭିନ୍ନ କାମ କରିଲାବାଲା, ଦୁଗ୍ଧ ଉତ୍ପାଦନ କେନ୍ଦ୍ର, ତନ୍ତୁ ଏବଂ କୃଷିରେ ନିଯୁକ୍ତ ଲୋକ ଅଛନ୍ତି । ସେମାନେ କୌଣସି ଭାବେ ତାଲିକାଭୁକ୍ତ ହୋଇନାହାନ୍ତି କି ତାଙ୍କର କୌଣସି ପରିଚୟ ନାହିଁ । ମୁଁ ସେମାନଙ୍କର ବିଶାଳ ସମୁଦାୟକୁ 'ଜନସଂସ୍ଥା' ନାମ ଦେଇଛି । କାରଣ ସେମାନେ ନା ସରକାରୀ ସଂସ୍ଥା ନା ଘରୋଇସଂସ୍ଥା । ଭାରତର ସମୁଦାୟ ଶ୍ରମଶକ୍ତିର ହାରାହାରି ୯୨ଭାଗ 'ଜନସଂସ୍ଥାର' । ଏନ୍ ସି ଏଇ ଆର୍‌ର ବର୍ତ୍ତମାନ ସର୍ବେକ୍ଷଣରୁ ଜଣାପଡ଼େ ଯେ ଜିଡ଼ିପିର ୬୩ ଭାଗ, ୫୫ ଭାଗ ସଂଚୟରୁ ଓ ୪୭ ଭାଗ ଅସଂଗଠିତ କ୍ଷେତ୍ରରୁ ଆସିଥାଏ ଏବଂ ଆପଣମାନେ ଜାଣିଥିବେ ଏ କ୍ଷେତ୍ର ମୋଟାମୋଟି ମହିଳାମାନଙ୍କର । କର୍ମ ଜଗତରେ ମହିଳାମାନଙ୍କର ଦାରିଦ୍ର୍ୟ ଏବଂ ଅସଂଗଠିତ କ୍ଷେତ୍ରର ସ୍ପଷ୍ଟ ସୀମା ନିର୍ଦ୍ଧାରଣ କରିହୁଏନା । ବେଳେବେଳେ ଲୋକେ ମତେ ପଚାରନ୍ତି ସେଓ୍ୱା ରାଜ୍ୟର ହିତପାଇଁ ନା ବଜାରର ହିତପାଇଁ  କାମ କରେ । ମୋର ସ୍ପଷ୍ଟ ଉତ୍ତର – ସେଓ୍ୱା ଗରିବଙ୍କ କଲ୍ୟାଣ ପାଇଁ । ଆମର ଲକ୍ଷ୍ୟ ଗରିବମାନଙ୍କୁ ତାଙ୍କ କାମ ଓ କଳାରେ ଦକ୍ଷ କରି ସଶକ୍ତ କରିବା । ଆମ ଲକ୍ଷ୍ୟ ସେତେବେଳେ ସଂପୂର୍ଣ୍ଣ ହେବ ଯେତେବେଳେ ଅସଂଗଠିତ କ୍ଷେତ୍ରରେ କାର୍ଯ୍ୟରତ ସମସ୍ତ ଶ୍ରମିକଙ୍କର ପୂର୍ଣ୍ଣ ରୋଜଗାର ଏବଂ ଆତ୍ମନିର୍ଭରତା ଆସିବ ।

ମୁଁ ମୋ ନିଜ ଜୀବନ କାହାଣୀର ଉପସଂହାରରେ ମୋର ଗାନ୍ଧିଜୀଙ୍କର ଟ୍ରଷ୍ଟି ସମ୍ବନ୍ଧୀୟ ପରିକଳ୍ପନା ଉପରେ ଗଭୀର ବିଶ୍ୱାସ ସ୍ଥାପନ ପୂର୍ବକ ଉଲ୍ଲେଖ କରୁଛି ଯେ ତାଙ୍କ ବିଚାରରେ ପ୍ରତିଭା ବା ଧନ ପୁରସ୍କାର ସ୍ୱରୂପ ଅସୀମ ଆନନ୍ଦ ଦିଏ ନାହିଁ । ଏହା ଜନସାଧାରଣଙ୍କ ବିଶ୍ୱାସ ବା ଆସ୍ଥାରୁ ପ୍ରାପ୍ତ ହୁଏ । ପ୍ରଥମ ଦୃଷ୍ଟିରେ ଏହା ଅବାସ୍ତବ ଲାଗିପାରେ ମାତ୍ର ନିକଟ ଇତିହାସରେ ପରୋପକାର, ଅନ୍ୟକୁ ଭାଗଦେବାରେ ଆଗ୍ରହ, ଦାନ କରିବା ଏପରିକି ମୂଳରୁ ପ୍ରତ୍ୟାଖ୍ୟାନ କରିବାକୁ ଉଦାହରଣ ସ୍ୱରୂପ ଗ୍ରହଣ କରାଯାଇପାରେ । ଆଜିର ବାସ୍ତୁବାଦୀ  ଜଗତରେ ବି ସମାନତାର ଆଦର୍ଶ ଓ ସାମାଜିକ ନ୍ୟାୟ ସମ୍ଭବ । ଏଥିସହିତ ପ୍ରାପ୍ତି, ମର୍ଯ୍ୟାଦା ଓ ଖୁସିକୁ ଗୁରୁତ୍ୱ ଦେଉଥିବା ଏକ ଜୀବନ ବଞ୍ଚିହେବ ।

*(ଏସ୍ . ଆନନ୍ଦ ଲକ୍ଷ୍ମୀଙ୍କ ସହ ସାକ୍ଷାତ୍‌କାର ଉପରେ ପର୍ଯ୍ୟବସିତ)*

ପଦ୍ମା ରାମଚନ୍ଦ୍ରନ (ଜନ୍ମ ୧୯୩୪) ୧୯୫୦ ମସିହା ଆରମ୍ଭରେ ଭାରତୀୟ ପ୍ରଶାସନିକ ସେବାରେ ଯୋଗଦେଇଥିବା ପ୍ରଥମ ମହିଳା । କେରଳ ସରକାରରୁ ଚିଫ୍ ସେକ୍ରେଟାରୀଭାବେ ଅବସର ନେଲେ । ଅନ୍ୟ ଗୁରୁତ୍ୱପୂର୍ଣ୍ଣ ପଦ ମଧ୍ୟରୁ, ଏମ୍. ଏସ. ବିଶ୍ୱ ବିଦ୍ୟାଳୟ, ବରୋଦାର କୁଳପତି, ନିର୍ଦ୍ଦେଶକ, ଏସିଆ ଆଣ୍ଡ ପାସିଫିକ୍ ସେଣ୍ଟର ଫର ଓମ୍ୟାନ ଆଣ୍ଡ ଡେଭେଲପମେଣ୍ଟ, ବ୍ୟାଙ୍କକ୍; ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମ୍ୟାନେଜ୍‌ମେଣ୍ଟ ଇନ୍ ଗଭର୍ଣ୍ଣମେଣ୍ଟ ତ୍ରିଭାନ୍ଦ୍ରମର ନିର୍ଦ୍ଦେଶକ ଆଦି ଦାୟିତ୍ୱ ନିର୍ବାହ କରିଛନ୍ତି । ବର୍ତ୍ତମାନ ସେ ତ୍ରିଭାନ୍ଦ୍ରମର ନଗର ଓ ଆଞ୍ଚଳିକ ଉନ୍ନୟନ ଅନୁଷ୍ଠାନର ସଭାପତି ଅଛନ୍ତି । ତାଙ୍କୁ ସଂଯୁକ୍ତ ରାଷ୍ଟ୍ର ବିକାଶ କାର୍ଯ୍ୟକ୍ରମ ତରଫରୁ ୧୯୭୬ ମସିହାରେ କେନିଆ ଏବଂ ଶ୍ରୀଲଙ୍କାକୁ ମହିଳାମାନଙ୍କ ଅଧିକାର ସଂପର୍କରେ ଅଧ୍ୟୟନ କରିବା ପାଇଁ ମାନବ ଅଧିକାର ଶିକ୍ଷାବୃତ୍ତି ମିଳିଥିଲା ।

୬

# ମୁଁ ଓ ମୋର କର୍ମ

## ପଦ୍ମା ରାମଚନ୍ଦ୍ରନ

ମୁଁ ଦକ୍ଷିଣ ଭାରତର ତିରୁନେବେଲି ଆୟାର ସଂପ୍ରଦାୟର ଏକ ଅପେକ୍ଷାକୃତ ରକ୍ଷଣଶୀଳ ପରିବାରେ ଜନ୍ମ ହୋଇଥିଲି । ମୁଁ ବାପାମାଙ୍କର ପଞ୍ଚମ ଝିଅ ଏବଂ ଷଷ୍ଠ ଓ ଶେଷ ସନ୍ତାନ ଥିଲି । ମୋ ବାପା ସମ୍ଭବତଃ ଅଳ୍ପ କେତେକ ତାମିଲମାନଙ୍କ ମଧ୍ୟରୁ ପ୍ରଥମ ବ୍ୟକ୍ତି ଯିଏ କି ଜୀବିକା ଅନୁସନ୍ଧାନରେ ବିନ୍ଧ୍ୟର ଉତ୍ତରାଞ୍ଚଳ ଯିବାର ସାହସ କରିଥିଲେ । ତାଙ୍କର ବହୁତ ଇଚ୍ଛା ଥିଲା ଭାରତୀୟ ପ୍ରାଶାସନିକ ସେବାରେ ଯିବାପାଇଁ କିନ୍ତୁ ତାଙ୍କୁ ସେ ପରୀକ୍ଷାରେ ବସିବା ପାଇଁ ଦିଆଗଲା ନାହିଁ କାରଣ ପାଶ୍ କରିଲେ ସାତ ସମୁଦ୍ର ପାରହୋଇ ପ୍ରଶିକ୍ଷଣପାଇଁ ଯିବାକୁ ପଡ଼ିବ – ସେତେବେଳେ ଏହା ଏକ ପ୍ରକାର ନିଷିଦ୍ଧ ଥିଲା । ସେ ପ୍ରତିଜ୍ଞା କଲେ – ତାଙ୍କୁ ଯାହା କରିବାକୁ ଅନୁମତି ଦିଆଯାଇନଥିଲା ତାଙ୍କ ସନ୍ତାନଗଣ ତାହା କରିବେ । କିନ୍ତୁ ଦୁଃଖର ବିଷୟ ଯେ ତାଙ୍କର ଗୋଟିଏ ମାତ୍ର ପୁତ୍ର ସନ୍ତାନ ଥିଲା ଓ ତା'ପରେ ଶେଷ ସନ୍ତାନଭାବେ ମୋର ଜନ୍ମ । ମୁଁ ଝିଅଟିଏ ହୁଏଁ ବୋଲି ସେ କେବେ ଚାହିଁ ନ ଥିବେ । ସେତେବେଳେ କ୍ୱଚିତ ମହିଳା ସ୍ନାତକଧାରୀ ଥିଲେ ଓ ପ୍ରାଶାସନିକ ସେବାକୁ ଆସୁଥିଲେ । ଉଚ୍ଚ ପଦପଦବୀ ପ୍ରଶ୍ନ ତ ଉଠୁନି । ବିବାହ କରିବା ସବୁ ଝିଅଙ୍କ ଭାଗ୍ୟଲିଖନ ଥିଲା – ଏଥିରୁ ବହୁତ କମ୍ ଅଥବା କେହି କେହି ବର୍ତ୍ତିପାରୁ ଥିଲେ । ତାହା ପୁଣି ବାଲ୍ୟ ବିବାହ ଏବଂ ଝିଅ ନାରୀତ୍ୱ ପ୍ରାପ୍ତ ହେବା ପୂର୍ବରୁ ଅଧିକ ଆକାଂକ୍ଷିତ ଥିଲା । ବିବାହ, ଯାହାର ଅର୍ଥ ଥିଲା ଯୌତୁକ ଓ ବଧୂର ମାତାପିତାଙ୍କ ଉଦ୍ଦେଶ୍ୟରେ ଅନବରତ ନାନାବିଧ ପ୍ରଚୁର ତାଚ୍ଛଲ୍ୟପୂର୍ଣ୍ଣ ମନ୍ତବ୍ୟ । ମୋର କୌଣସି ଭଉଣୀ କଲେଜ ଯିବାପରି ସୌଭାଗ୍ୟବତୀ ନଥିଲେ, ତେଣୁ ଯଦି ମତେ ଉଚ୍ଚଶିକ୍ଷା ଲାଭ କରିବାକୁ ହେବ ତେବେ ହଷ୍ଟେଲ୍‌ରେ ରହି ପଢ଼ିବାକୁ ହେବ ।

ମୁଁ ସ୍ୱୀକାର କରିବା ଉଚିତ୍ ହେବ ଯେ ଝିଅମାନଙ୍କ ପ୍ରତି ସମୟ ଓ ଦୃଷ୍ଟିକୋଣ ବଦଳୁଥିଲା – ଅବଶ୍ୟ ତା' ସହିତ ମୋ ଭାଗ୍ୟ ବି । ମୁଁ ମାଡ୍ରାସରେ ଉଚ୍ଚ ମାଧ୍ୟମିକ ପଢ଼ିଲି, ସେଠି ମୋ ଭାଇ ବି ପଢୁଥିଲେ । ଗୋଟେ ଛାତ୍ରାବାସରେ ରହି ମହିଳା ମହାବିଦ୍ୟାଳୟରେ ପଢ଼ିବା ଖୁବ୍ ଆନନ୍ଦ ଦାୟକ ଥିଲା । କିନ୍ତୁ ସେ କଲେଜରେ ଅର୍ଥନୀତିରେ ଅନର୍ସ ନ ଥିଲା । ତେଣୁ ପରେ ମତେ ସହଶିକ୍ଷା ମହାବିଦ୍ୟାଳୟକୁ ଯିବାକୁ ହେଲା ।

ଏଥିପାଇଁ ମୁଁ ମୋର ଉଦାରଚେତା ବାପା-ମାଙ୍କ ପ୍ରତି କୃତଜ୍ଞ, ବିଶେଷକରି ମୋ ବାପାଙ୍କର ମୁଁ ପ୍ରାଶାସନିକ ସେବାରେ ଯୋଗଦେବାର ଯେଉଁ ଏକକ ନିଷ୍ପତ୍ତି ଓ ଯେଉଁଥିପାଇଁ ମୁଁ ପଢ଼ିପାରିଲି ତା' ନିମନ୍ତେ ବାପାମାଙ୍କ ପ୍ରତି କୃତଜ୍ଞ । ସ୍ୱାଧୀନତା ପ୍ରାପ୍ତିର ଠିକ୍ ପରବର୍ତ୍ତୀ ସମୟରେ କୃତକାର୍ଯ୍ୟ ହେଉଥିବା ପ୍ରତ୍ୟେକ ପିଲାର ନାମ ରେଡ଼ିଓରେ ଘୋଷିତ ହେଉଥିଲା, ବିଶେଷକରି ଜଣେ, ଦୁଇଜଣ, ତିନିଜଣ ମହିଳାଙ୍କ ନାମ ଯେଉଁମାନେ ଏଥିରେ କୃତକାର୍ଯ୍ୟ ହେଉଥିଲେ । ସେଇ ବର୍ଷ ୬୭/୬୮ ଜଣଙ୍କ ମଧ୍ୟରୁ ଆମେ ଦୁଇଜଣ ମହିଳା ଥିଲୁ । ଆଶ୍ଚର୍ଯ୍ୟର କଥା ସେଇ ଏକା ମହାବିଦ୍ୟାଳୟ, ଏକା ରକ୍ଷଣଶୀଳ ଆୟାର ସଂପ୍ରଦାୟରୁ । ରେଡ଼ିଓରେ ମୋ ନାଁ ଘୋଷଣା ଶୁଣି ମୋ ବାପା ମା ଯେଉଁ ଗର୍ବ ଓ ଆନନ୍ଦ ଅନୁଭବ କରିଥିବେ ବିଶେଷକରି ମୋ ବାପା, ତା' ଆପଣ କଳ୍ପନା କରିପାରୁଥିବେ ।

ମେଟ୍‌କାଫ୍ ହାଉସ୍, ଦିଲ୍ଲୀରେ ବର୍ଷେ ପ୍ରୋବେସନ୍ କାଳରେ ଆମକୁ ବହୁ ଶାରୀରିକ କାର୍ଯ୍ୟକଳାପ ଯେପରି ଘୋଡ଼ାଚଢ଼ିବା ଓ ମାଉଣ୍ଟ ଆବୁରେ ପୋଲିସ୍ ସହିତ ଏବଂ କାଶ୍ମୀରରେ ସୈନ୍ୟମାନଙ୍କ ସହିତ ପ୍ରଶିକ୍ଷଣ ନେବାକୁ ପଡ଼ିଥିଲା । ଆମ ଦୁଇଜଣଙ୍କୁ ପୁଅମାନଙ୍କ ପରି ସବୁକିଛି କରିବାକୁ ପଡୁଥିଲା । ମାତ୍ର ପାହାଡ଼ ଚଢ଼ିବା, ଉଦ୍ୟାନ କରିବା ଇତ୍ୟାଦିରେ ଆମେ ଅଧିକ ଉତ୍ସାହ ଓ ଦକ୍ଷତା ପ୍ରଦର୍ଶନ କରୁଥିଲୁ । ଆମକୁ ଲାଗୁଥିଲା ପୁଅମାନଙ୍କ ତୁଳନାରେ ଆମେ ଭଲ ନକଲେ ଅନ୍ତତଃ ତାଙ୍କ ସମାନ ହେବା ଉଚିତ୍ । ସେ ସମୟରେ ପ୍ରକୃତରେ ପୁରୁଷଙ୍କ ତୁଳନାରେ କମ୍ ସେ କମ୍ ଅଧା ପ୍ରଦର୍ଶିତ ହେବାକୁ ହେଲେ ତାଙ୍କଠାରୁ ଦୁଇଗୁଣ ଭଲ ପ୍ରଦର୍ଶନ କରିବାକୁ ପଡୁଥିଲା । ଯାହା ଅନ୍ୟମାନେ କରୁଛନ୍ତି ଆମେ ତା'ଠୁ ଭଲ କରିପାରିବୁ ଏକଥା ଘୋଷଣା କରିବାର ଉପଯୁକ୍ତ ସମୟ ସେତେବେଳକୁ ଅସିନଥିଲା – କେବଳ କରି ଦେଖାଇବା କଥା – କହିକି ନୁହେଁ । ୧୯୫୧ରେ ଭାରତୀୟ ପ୍ରଶାସନିକ ସେବା ସଂସ୍ଥାରେ ପ୍ରଥମ ମହିଳା ଆନ୍ନା ଜର୍ଜ ଯୋଗଦେବା ବେଳର ସମସ୍ୟା ଆମ ବେଳକୁ ନଥିଲା । ସେ ଆମକୁ ଏ ଘଟଣା ଶୁଣେଇଥିଲେ, ଯେତେବେଳେ ସପ୍ତାହକ ପାଇଁ ସେ ହସ୍ପିଟାଲ୍‌ରେ ଥିଲେ ଆଉ ମେଟ୍‌କାଫ୍ ହାଉସ୍‌ରୁ ତାଙ୍କ ଲୁଗାପଟା କାହା ହାତରେ ଅଣେଇବାପାଇଁ ତାଙ୍କୁ ମୁସ୍କିଲରେ ପଡ଼ିବାକୁ ହେଇଥିଲା । ସ୍ୱେଚ୍ଛାରେ ଆଣିବା ଲୋକ ତ ଅନେକ ଥିଲେ ମାତ୍ର ଜଣେ ହେଲେ ଉପଯୁକ୍ତ ନଥିଲେ ।

ଯେତେବେଳେ ମୁଁ ପ୍ରୋବେସନ୍‌ରେ ଥିଲି ରାଜ୍ୟ କାଡ଼ରର ନିଯୁକ୍ତି ନେଇ ଏକ ମଜାଦାର ଘଟଣା ଘଟିଥିଲା । ମୋର ଶୈଶବ ଓ କୈଶୋରର ବହୁକାଳ ମାଡ୍ରାସ ସହରଠୁଁ ଦୂରରେ କଟିଥିବାରୁ ମୁଁ ମୋ ଆବେଦନ ପତ୍ରରେ ମାଡ୍ରାସକୁ ପ୍ରଥମ ଐଚ୍ଛିକ ସ୍ଥାନ ଭାବରେ ଲେଖିଥିଲି । ସାଧାରଣତଃ ଜଣେ ମହିଳାଙ୍କୁ ତାଙ୍କର ପ୍ରଥମ ଐଚ୍ଛିକ ସ୍ଥାନରେ ନିଯୁକ୍ତି ଦେବାର ବିଶେଷ ସୁବିଧା ଥିଲା । ଏହା କଣ ଏକ ପ୍ରକାର ଯଥାର୍ଥ କାର୍ଯ୍ୟ, ଏକ ସୁରକ୍ଷାତ୍ମକ ପଦକ୍ଷେପ ? ମୁଁ କହିପାରିବିନି । ମୁଁ ମାଡ୍ରାସ ପାଇଲିନି, କାରଣ ମୋଠୁଁ ଉଚ୍ଚ ସ୍ଥାନରେ ଥିବା ସତ୍ୟଭାମାକୁ ମିଳିଲା । ମୋର ଦ୍ୱିତୀୟ ଐଚ୍ଛିକ ସ୍ଥାନ ବମ୍ବେରେ ମତେ ସ୍ଥାନିତ

କରାଗଲା । ରାଜ୍ୟ ପୁନର୍ଗଠନ କାର୍ଯ୍ୟ ଆରମ୍ଭ ମାତ୍ର ହୋଇଥାଏ ଓ ବମ୍ବେକୁ ଗୁଜରାଟ ଓ ମହାରାଷ୍ଟ୍ର ଦୁଇଭାଗରେ ବିଭକ୍ତ କରାଯାଇଥାଏ । ବମ୍ବେ ପାଇଁ ଦୁଇଜଣଙ୍କ ନାମ ପ୍ରସ୍ତାବ କରାଯାଇଥିଲା । ଦୁଇଜଣଯାକ ମହାରାଷ୍ଟ୍ର ଯିବାପାଇଁ ଚାହିଁଲୁ । ଏ କ୍ଷେତ୍ରରେ ଅବଶେଷରେ ଲଟେରୀ ଉଠେଇବା କଥା ହେଲା କାରଣ ଏଠି ମହିଳାଙ୍କୁ ତାଙ୍କ ପସନ୍ଦରସ୍ଥାନ ସ୍ୱତଃସ୍ଫୂର୍ତ୍ତଭାବେ ମିଳିବାର ପ୍ରଶ୍ନ ଉଠୁ ନଥିଲା । ପ୍ରଶିକ୍ଷଣ ସ୍କୁଲର ପ୍ରିନ୍ସିପାଲ ପଚାରିଲେ ଯେ ମୁଁ କଣ କେରଳ ରାଜ୍ୟ ପାଇଁ ଆଗ୍ରହୀ ହେବି କି ? ୧୯୫୬ ମସିହା ନଭେମ୍ବର ମାସରେ ରାଜ୍ୟ ପୁନର୍ଗଠନ କ୍ରମରେ କେରଳ ରାଜ୍ୟ ଗଠିତ ହୋଇଥିଲା, ସେଠି ଗୋଟିଏ ପଦ ଖାଲି ଥିଲା । ମୁଁ କିଛି ବିଚାର ନକରି ହଁ କହିଦେଲି କାରଣ ମୁଁ ଦକ୍ଷିଣ ଭାରତରେ କାମ କରିବାକୁ ଚାହୁଁଥିଲି । ତା'ପରେପରେ ହିଁ ଭାରତର ଗୃହ ମନ୍ତ୍ରଣାଳୟ ମତେ ଡକେଇ ପଠେଇଲେ । ମତେ କାହିଁକି ଡକାଯାଇଛି ନଜାଣି ମୁଁ ଏକଦମ୍ ଭୟଭୀତ ହୋଇପଡ଼ିଲି । ମୁଁ ଏକ ଓଜସ୍ୱୀ ବ୍ୟକ୍ତିତ୍ୱ ସଂପନ୍ନ ବ୍ୟକ୍ତି ଗୋବିନ୍ଦ ବଲ୍ଲଭ ପନ୍ଥଙ୍କ ସମ୍ମୁଖରେ ଉପସ୍ଥିତ ହେଲି । ଆମେ ଦିଜଣ ଯାକ ଥରୁଥିଲୁ । ମୁଁ ଡରେମରେ ଅଧିକ ଥରୁଥିଲି ନା ସ୍ୱାଧୀନତା ସଂଗ୍ରାମରୁ ପ୍ରାପ୍ତ ଆଘାତଯୋଗୁଁ ସେ ଅଧିକ ଥରୁଥିଲେ କହିହେବନି । ସେ, ''ତୁମେ କେରଳ ଯିବାକୁ ରାଜି ହେଇଛ ?'' ପଚାରିବାରୁ ମୁଁ 'ହଁ' କହିଲି । ସେ କହିଲେ, ''ତୁମେ ଜାଣିଛ ଏହା ଏକ କମ୍ୟୁନିଷ୍ଟ ସରକାର ଶାସିତ ରାଜ୍ୟ – ଆମେ କେମିତି ତମକୁ ସେ ବିପଦ ଭିତରକୁ ଠେଲି ଦେବୁ ?'' ମୁଁ ଜାଣେନି କେଉଁଠୁ କିପରି ତାଙ୍କ ପ୍ରଶ୍ନର ଉତ୍ତର ଦେବାପାଇଁ ସାହସ ଆସିଲା ? ୟା ପୂର୍ବରୁ ଜୀବନରେ କେବେ ମୁହୂର୍ତ୍ତକ ମଧ୍ୟରେ ନିଷ୍ପତ୍ତି ମୁଁ ନେଇ ନଥିଲି । ମୁଁ କିପରି ଭାବରେ ଏହାର ପ୍ରତିରୋଧ କରିବି ତା' ଜାଣିନଥିଲି । ମୁଁ ବାସ୍ ଏତିକି କହିଲି ଯେ କେରଳକୁ ଯିବାପାଇଁ ଥରେ ନିଷ୍ପତ୍ତି ନେବାପରେ ମୁଁ ସେଥିରେ ଅଟଳ ରହିବି – ତା'ଛଡ଼ା ପ୍ରତ୍ୟେକ ରାଜ୍ୟ ଅନ୍ୟ ରାଜ୍ୟ ପରି ସମାନ ପରିମାଣରେ ଭଲ ବା ମନ୍ଦ ହୋଇଥାଏ । ଆଶା କରେ ଭାରତ ସରକାରକୁ ମତେ ବିପଦରୁ ରକ୍ଷାକରିବା ପାଇଁ ମୁଁ କୌଣସି ସୁଯୋଗ ଦେବିନି । ମତେ ଲାଗିଲା ସେ ବୋଧହୁଏ ମୋ ଉତ୍ତରରେ ଅସନ୍ତୁଷ୍ଟ ହେଲେ । ସେ କହିଲେ, ''ଏ ଝିଅ ପରେ ମତେ କହିବନି କି ମୁଁ ସତର୍କ କରିନଥିଲି ।'' ଅସଲ କଥା ହେଲା ଯେ ପ୍ରଥମ ଥର ପାଇଁ ଶାସନକୁ ଆସିଥିବା ନମ୍ବୁଦରୀପଦ (ଯାହାକୁ ଲୋକେ ଶ୍ରଦ୍ଧାରେ ଇ. ଏମ୍. ଏସ୍ ଡାକୁଥିଲେ)ଙ୍କ କମ୍ୟୁନିଷ୍ଟ ସରକାର କେନ୍ଦ୍ର ସରକାରଙ୍କ ପାଇଁ ଅପରିଚିତ ଓ ଅପରୀକ୍ଷିତ ଥିଲା । ତେଣୁ କେନ୍ଦ୍ର ସରକାର ଜଣେ ମହିଳାଙ୍କୁ ସେଠିକି ପଠେଇବାପାଇଁ କୁଣ୍ଠିତ ଥିଲେ । ତେଣୁ ସେମାନେ ଭାବୁଥିଲେ – ୟେ ଡୁବିଲା । ପରେ ମତେ ବି ଲାଗିଲା ମୁଁ କଣ ଠିକ୍ ସ୍ଥାନ ପସନ୍ଦ କରିଥିଲି ? ତେବେ ଆଜି ମୋର ଅବସର ନେବାର ନଅ ବର୍ଷ ପରେ ମୋର କୌଣସି ଅନୁତାପ ନାହିଁ । ମୋର ମନେହେଉଛି ସବୁ ଯାଗାରେ ଚ୍ୟାଲେଞ୍ଜ ଅଛି, କେରଳରେ ବି ଥିଲା । ତେବେ ମୋ ପାଇଁ ଅନୁମାନରୁ ଅଧିକ ।

ମୋର ଯେତେବେଳେ ଜିଲ୍ଲା କଲେକ୍ଟର ଭାବେ ନିଯୁକ୍ତ ହେବାର ଥାଏ ରାଜ୍ୟ ସରକାର ବି କୁଣ୍ଠିତ ଥିଲେ କାରଣ ସେମାନେ ଆଗରୁ କେବେ ଏଇ ପଦରେ ମହିଳା ପାଇନଥିଲେ । ସେମାନେ ଏ ନିଷ୍ପତ୍ତି ନେବାରେ ଯଥା ସମ୍ଭବ ଆଡ଼େଇ ଯାଉଥିଲେ ଓ ପାରୁ ପର୍ଯ୍ୟନ୍ତ ବିଳମ୍ବ କରିଥିଲେ । ମୁଖ୍ୟ ସଚିବ କାର୍ଯ୍ୟାଳୟରେ ମୁଁ ପଚରା ପଚରି କରୁଥିଲି ତ ମତେ କୁହାଯାଉଥିଲା କି ମାସକ ଭିତରେ ଖାଲି ହେବ କାରଣ ପଦାସୀନ କଲେକ୍ଟର ଛୁଟିରେ ଯିବାର ଅଛି । ବାଧହୋଇ ମତେ ସ୍ପଷ୍ଟଭାବରେ ଜଣେଇବାକୁ ପଡ଼ିଲା ଯେ କେହି ଛୁଟିରେ ଗଲେ ତା' ସ୍ଥାନରେ ନୁହେଁ ମୋର ଏକ ନିୟମିତ ସ୍ଥାନ ଆବଶ୍ୟକ । ଶେଷରେ ଯେତେବେଳେ ମୁଁ ରାଜ୍ୟପାଳଙ୍କ ପାଖକୁ ଯାଇ ମୋର ଅବସ୍ଥା କଥା ଜଣେଇଲି (ସେତେବେଳେ କେରଳରେ ରାଷ୍ଟ୍ରପତି ଶାସନ ଚାଲିଥିଲା) ସେତେବେଳେ ଯାଇ ମତେ ଗୋଟେ ନିୟମିତ ପଦ ଦିଆଗଲା ଯଦିଓ ସେମାନେ ମତେ ଆଖି ଆଢୁଆଳକୁ ଅନ୍ୟ ଜିଲ୍ଲାକୁ ଯିବାକୁ ଦେବାକୁ ସାହସ କରୁନଥିଲେ ।

ସେ ସମୟରେ କେରଳରେ ଖାଦ୍ୟଶସ୍ୟ ଅଭାବ ଜନିତ ସମସ୍ୟା ଥିଲା । ସରକାରଙ୍କ ଦ୍ୱାରା କ୍ରୟ କରାଯାଉଥିବା ଖାଦ୍ୟଶସ୍ୟ କେବେ ବି ଯଥେଷ୍ଟ ପରିମାଣର ହେଉନଥିଲା । ଏପରିକି ଆଜି ବି କେରଳ ତା' ଆବଶ୍ୟକତାର ଏକ ତୃତୀୟାଂଶ ଚାଉଳ, ପନିପରିବା ଏବଂ ଅନ୍ୟ ଖାଦ୍ୟଶସ୍ୟ ଉତ୍ପାଦନ କରେ । ପଡ଼ୋଶୀ ରାଜ୍ୟରୁ ଏହି ଅଭାବ ପୂରଣ କରାଯାଏ । ସେ ସମୟରେ ଜିଲ୍ଲାରେ ଖାଦ୍ୟ-ପଦାର୍ଥ ଅଭାବରୁ ଅସନ୍ତୋଷ ବଢୁଥିଲା । ଛାତ୍ରମାନେ କେନ୍ଦ୍ର ସରକାରଙ୍କ ବିରୁଦ୍ଧରେ ବିକ୍ଷୋଭ ପ୍ରଦର୍ଶନ ପାଇଁ ରାସ୍ତାକୁ ଓହ୍ଲେଇ ପଡୁଥିଲେ । ଆମେ ଆପୋଷ ମିଳାମିଶା ପାଇଁ ବିଭିନ୍ନ ଦଳ ସହିତ ବୈଠକ କଲୁ ଏବଂ ସମସ୍ତ ପାର୍ଟି ମଧ୍ୟରେ ସୁସଂପର୍କ ପାଇଁ ବୈଠକ ଡକାଇ ବିଶେଷ ପ୍ରୟାସ କଲୁ । ଅନେକ ଛାତ୍ରନେତା ମୋର ବନ୍ଧୁ ଥିଲେ ଏବଂ କୌଣସି ଝାମେଲା ସୃଷ୍ଟି କରିବେ ନାହିଁ ବୋଲି ସେମାନେ ମତେ କଥା ଦେଇଥିଲେ । ମାତ୍ର ସେମାନେ ପୋଲିସ୍ ଉପରେ ଅତ୍ୟନ୍ତ ବିରକ୍ତ ଥିବାରୁ ସେମାନଙ୍କୁ ଦେଖିବାମାତ୍ରେ ଉତ୍ତେଜିତ ହେଇ ଉଠୁଥିଲେ । ମୁଁ ସେମାନଙ୍କୁ କହିଥିଲି ଯେ ମୁଁ ତାଙ୍କ କଥା ଅକ୍ଷରେ ଅକ୍ଷରେ ପାଳନ କରିବି ଯଦି ସେମାନେ ମୋ କଥା ଅନୁସାରେ ଚଳନ୍ତି – ଯେମିତି ସାର୍ବଜନୀନ ସଂପତ୍ତିର କୌଣସି କ୍ଷତି କରାଯିବ ନାହିଁ । କେହି ଉସ୍କେଇବା ଦ୍ୱାରା ତାଙ୍କ କହିବା ଅନୁସାରେ ପୋଲିସ୍ ଦ୍ୱାରା ପ୍ରରୋଚିତ ହୋଇ ସେମାନେ ଗୋଟିଏ ବସ୍ ପୋଡ଼ି ଦେଲେ ଓ ତାଙ୍କ ସହିତ ଆଲୋଚନା କରିବା ପାଇଁ ଯିବାକୁ ପଡ଼ିଲା । ମୁଁ ଛାତ୍ରମାନଙ୍କ ନିକଟକୁ ଯାଉଥିବାବେଳେ ପୋଲିସ୍ କମିଶନର ହଠାତ୍ ମୋ ପାଖକୁ ଦୌଡ଼ି ଆସି ମୋତେ ସୁରକ୍ଷା ଦେବା କର୍ତ୍ତବ୍ୟ ଭାବି ମୋ ସହିତ ଚାଲିବାକୁ ଲାଗିଲେ । ଛାତ୍ରମାନେ ଭାବିଲେ ମୁଁ ତାଙ୍କ ସହ ବିଶ୍ୱାସଘାତକ କରିଛି। ସଙ୍ଗେ ସଙ୍ଗେ ଟେକାପଥର ଆମ ଉପରକୁ ବୃଷ୍ଟି ହେବାରେ ଲାଗିଲା, ପିଚୁ ଟିଣରେ ସବୁ ନିଆଁ ଲଗେଇଦେଲେ, ଆଉରି ଅଧିକ କିଛି ହୁଏତ ଘଟିଯାଇଥାନ୍ତା, ଯଦି ଆମେ ସେମାନଙ୍କ

ଉପରେ ଲୁହ ବୁହା ଗ୍ୟାସ ପ୍ରୟୋଗ କରି ନ ଥାନ୍ତୁ । ଛାତ୍ରମାନେ କିଏ କୁଆଡ଼େ ପ୍ରଳେଇଲେ । ଘଟଣାଚକ୍ରର ଏପରି ପରିବର୍ତ୍ତନ ମୋତେ ଗଭୀର ଆଘାତ ଦେଲା । ସୌଭାଗ୍ୟବଶତଃ ବହୁତ କ୍ଷୟକ୍ଷତି ଘଟି ନଥିଲା । କିନ୍ତୁ ମତେ ଅସଂଖ୍ୟ ପ୍ରଶ୍ନବାଣର ସମ୍ମୁଖୀନ ହେବାକୁ ପଡ଼ିଲା : କାହିଁକି କଲେକ୍ଟର ଏପରି ଏକ ଅଣାୟତ୍ତ ଭିଡ଼ ଉପରକୁ ଗୁଳି ଚଳେଇବାର ଆଦେଶ ଦେଲେ ନାହିଁ ? ପୋଲିସ ମହାନିର୍ଦ୍ଦେଶକ ମତେ ମାତ୍ରାଧିକ କୋମଳ ଏବଂ ପ୍ରଶାସନ ଜଣାନାହିଁ କହିବା ସହିତ ମୁଁ ଦୃଢ଼ ପଦକ୍ଷେପ ନେବା ଉଚିତ୍ ହୋଇଥାନ୍ତା ବୋଲି ଦୋଷାରୋପ କଲେ । ସବୁବେଳେ ଜିଲ୍ଲା ପ୍ରଶାସନ କ୍ଷେତ୍ରରେ ତାଙ୍କର ହସ୍ତକ୍ଷେପକୁ ମୁଁ ବିରୋଧ କରୁଥିଲି ବୋଲି ତାଙ୍କପରି ଗୋଟେ ଜଘନ୍ୟ ଚରିତ୍ର ମୋ ଉପରେ ଅସନ୍ତୁଷ୍ଟ ଥିଲେ । ମୁଁ କେବଳ ଜାଣିଥିଲି ଯେ ସେ ପରିସ୍ଥିତିରେ କେହି ବି ଛାତ୍ରମାନଙ୍କ ଉପରକୁ ଗୁଳି ଚଳେଇବାର ଆଦେଶ ଦେଇ ନ ଥାନ୍ତା । ସେଇ ଯେ ନିଆଁ ଲାଗିଥିଲା ତାହା କେବେ ଲିଭିଲା ନାହିଁ । କର୍ମକର୍ତ୍ତାଗଣ ମୋ ଉପରେ ଅସନ୍ତୁଷ୍ଟ ରହିଲେ, କିନ୍ତୁ ତ୍ରିଭାନ୍ଦ୍ରମର ଜନତା ମୋ ପକ୍ଷରେ ଥିଲେ । ମୁଁ ଭାବୁଛି ଜଣେ ପ୍ରକୃତ ପ୍ରଶାସକର ଏହା ହିଁ ଅସଲ ପରୀକ୍ଷା ।

ଜିଲ୍ଲା କଲେକ୍ଟର ଭାବରେ ଦେଢ଼ବର୍ଷ କାଳ ସମୟ ମୁଁ ଉପଭୋଗ କରିଥିଲି କାରଣ ଏହାଦ୍ୱାରା ପ୍ରଶାସନ ଓ ଜନସେବା କଣ ତା'ର ଏକ ସୂକ୍ଷ୍ମ ଧାରଣା ମୋର ହେଲା । ବଜ୍ରପାତ ଦ୍ୱାରା କ୍ଷତିଗ୍ରସ୍ତ ହୋଇଥିବା ଘରକୁ ମତେ ଯିବାକୁ ପଡୁଥିଲା ଏବଂ ସେମାନଙ୍କୁ ସାନ୍ତ୍ୱନା ଓ କ୍ଷତିପୂରଣ ଦେଉଥିଲି । 'ଗୋଲ୍ଡବଣ୍ଡ ଡ୍ରାଇଭ' ଅଭିଯାନରେ ମତେ ଧନୀ ଲୋକଙ୍କଠାରୁ ସୁନା ବାହାର କରିବାକୁ ପଡ଼ିଛି । ମୁଁ ବନ୍ୟା ଓ ଦୁର୍ଭିକ୍ଷ ସାହାଯ୍ୟ ବଣ୍ଟନ କରିବାର ସୁଯୋଗ ପାଇଥିଲି । ମୁଁ ବିଭିନ୍ନ ପ୍ରକାର ଲୋକ ଭେଟିଚି ଓ ବିବିଧ ପ୍ରକାରର ପରିସ୍ଥିତିକୁ ଆୟତ୍ତ କରିଛି – ରେଶନ୍ ଦୋକାନରେ ନିଆଁ ଲାଗିବାଠାରୁ ଆରମ୍ଭ କରି ସାଂପ୍ରଦାୟିକ ଉତ୍ତେଜନା ରୋକିବା ପର୍ଯ୍ୟନ୍ତ । ଜଣେ କଲେକ୍ଟରକୁ ପ୍ରାକୃତିକ ବିପର୍ଯ୍ୟୟ ଓ ଜରୁରୀକାଳୀନ ଅବସ୍ଥାକୁ ଆୟତ୍ତ କରିବାପାଇଁ ସର୍ବଦା ପ୍ରସ୍ତୁତ ହୋଇ ରହିବାକୁ ପଡ଼େ । ଭାରତ ସରକାର ଏହାକୁ ଖଣ୍ଡାଧାରରେ ଚାଲିବା କହିଥାଏ । ଏଥିରେ ଆପଣ ଜନତାର ଖୁବ୍ ନିକଟବର୍ତ୍ତୀ ହେଇଯା'ନ୍ତି, ଯେଉଁମାନେ ଆପଣଙ୍କଠୁଁ କମ୍ ପ୍ରଭାବଶାଳୀ ତାଙ୍କ ସୁଖଦୁଃଖରେ ଏକାକାର ହୋଇଯାନ୍ତି । ଜଣେ କଲେକ୍ଟର ଭାବରେ ମୋର ବହୁତ କିଛି କରିପାରିବାର ଥିଲା । ଯଦିଓ ମୋ ସମୟ ମୋର ନ ଥିଲା । ମୋର ପିଲାମାନେ ଖୁବ୍ ଛୋଟ ଥିଲେ ଯାହାଙ୍କୁ ମତେ ପୂରା ଦୃଷ୍ଟିଦେବାକୁ ପଡୁଥିଲା । ତଥାପି ମୁଁ ମୋ ଦାୟିତ୍ୱ ପାଳନ କରିବାକୁ ସମର୍ଥ ହେଉଥିଲି କାରଣ ମୋ ମା'ଙ୍କର ଉପସ୍ଥିତି ଓ ବିଶ୍ୱସ୍ତ ଲୋକଙ୍କର ଘରୋଇ ସାହାଯ୍ୟ ସହଯୋଗ ଯୋଗୁଁ ।

୧୯୭୪ରେ ଭାରତୀୟ ମହିଳାଙ୍କ ଅବସ୍ଥା ଉପରେ ଗଠିତ ସମିତିର ରିପୋର୍ଟ 'ସମାନତା ଆଡ଼କୁ' (ଟୁୱାର୍ଡସ୍ ଇକ୍ୱାଲିଟି) ସଂପର୍କରେ ମୁଁ ଜାଣିବାକୁ ପାଇଲି । ମୁଁ ସମାଜ କଲ୍ୟାଣ ବିଭାଗ'କୁ ସ୍ଥାନାନ୍ତରିତ ହେବାପାଇଁ ଚାହିଁଲି । ଯାହାଫଳରେ ତା'ର ପରବର୍ତ୍ତୀ କାର୍ଯ୍ୟ ସଂପୂର୍ଣ୍ଣ ହୋଇପାରିବ । ସମାଜ କଲ୍ୟାଣ ବିଭାଗର ଏଇ ପଦ ଚାହିଁଥିବାରୁ ମତେ

ସମସ୍ତେ ବୋକା ଭାବିଲେ । (ମନେହୁଏ ସେମାନେ ଭାବୁ ଥିଲେ ଏ ବିଭାଗରେ ଚାକଚକ୍ୟ ନାହିଁ କି ବିଦେଶ ଯାତ୍ରାର ସୁଯୋଗ ନାହିଁ ଏବଂ ଏ କାର୍ଯ୍ୟ ପାଇଁ ବୁଦ୍ଧିମତାର ଆବଶ୍ୟକତା ବି ନାହିଁ ।) ମୋ ପାଇଁ ଏହା ଏକ ମହତ୍ତ୍ୱପୂର୍ଣ୍ଣ ମୋଡ଼ ଥିଲା । ସେ ଦାୟିତ୍ୱରେ ମୁଁ ଅନବରତ ଆବିଷ୍କାର ପୂର୍ଣ୍ଣ ଜଳଯାତ୍ରା କଲାପରି (ମହିଳାମାନଙ୍କ ସଂପର୍କରେ) ନୂତନ ଦିଗନ୍ତ ଅନ୍ୱେଷଣରେ ଲାଗିରହିଲି । ଅଭିଜ୍ଞତା ଯୋଗୁଁ ୧୯୯୫ରେ ବରୋଦାର ମହାରାଜ ସୟାଜୀରା ଓ ବିଶ୍ୱବିଦ୍ୟାଳୟରେ କୁଳପତିଭାବେ ନିଯୁକ୍ତି ପାଇଲାପରେ ମୁଁ ଅନେକ କିଛି କରିପାରିଲି । ଏହା ଏକ କଠିନ ପ୍ରାଶାସନିକ କାମ ଥିଲା । ବିନା ଟଙ୍କାରେ ଏକ ଶିକ୍ଷା – ଜଗତ ପରିଚାଳନା କରିବା, କୌଣସି ପ୍ରକାର ପ୍ରଚେଷ୍ଟା ବା ନୂଆକିଛି ପ୍ରବର୍ତ୍ତନ କରିବା ଦୁଃସାଧ ଥିଲା । ମୁଁ ଆନନ୍ଦର ସହିତ କହିପାରେ ଯେ ଗବେଷଣା ଓ ପ୍ରକଳ୍ପ ନିମନ୍ତେ ମୁଁ କୋଟି କୋଟି ଟଙ୍କା ସଂଗ୍ରହ କରିବାରେ ସମର୍ଥ ହେଇଥିଲି । ହଁ, ଆମ ପ୍ରଶାସନ ଶୈଳୀ ଉଲ୍ଲେଖନୀୟଭାବେ ମହିଳାଙ୍କ ପ୍ରତି କଲ୍ୟାଣମୁଖୀ ଥିଲା ।

ମୋର କାର୍ଯ୍ୟକାଳ ମଧ୍ୟରେ କୌଣସି ସ୍ଥଳରେ କଣ ମତେ ମୋ ଅଧିକାର ପାଇଁ ସ୍ୱର ଉତ୍ତୋଳନ କରିବାକୁ ପଡ଼ିଛି ? ପ୍ରାରମ୍ଭ କାଳରେ ଯେତେବେଳେ ପ୍ରଶିକ୍ଷଣପାଇଁ ମୋର ବିଦେଶ ଯାତ୍ରା କରିବାର କଥା ସେତେବେଳେ ମୋ ନାଁ କୁ ବାଦ୍ ଦିଆଗଲା କାରଣ ମୁଁ ସେତେବେଳକୁ ମୋ ସ୍ୱାମୀଙ୍କ ସାଙ୍ଗରେ ବିଦେଶ ଯାଇ ସାରିଥିଲି । ମତେ ବୁଝେଇବାକୁ ପଡ଼ିଥିଲା ଯେ ସ୍ୱାମୀ ସାଙ୍ଗରେ ପତ୍ନୀଭାବରେ ଯିବା ଓ ନିଜେ ନିଜ ଅଧ୍ୟୟନ ପାଇଁ ଯିବା ଏବଂ ଅଧିକାର ସ୍ୱରୂପ ଡେପୁଟେସନ୍‌ରେ ଯିବା ମଧ୍ୟରେ ଯଥେଷ୍ଟ ପାର୍ଥକ୍ୟ ଅଛି । ଜଣେ ଭୀଷଣ ରୁକ୍ଷ ମୁଖ୍ୟ ସଚିବ ଶେଷରେ ବହୁତ ବିଳମ୍ବରେ ରାଜିହେଲେ । ଆଉ ଥରକର ଘଟଣା ମୁଁ ସେତେବେଳେ ସ୍ୱାସ୍ଥ୍ୟ ସଚିବ ଥାଏଁ – ଜଣେ ନୂଆ କ୍ୟାଥୋଲିକ୍ ମନ୍ତ୍ରୀ ସେହି ପଦକୁ ଆସିଲେ ଏବଂ ମତେ କହିଲେ ଜନ୍ମ ନିୟନ୍ତ୍ରଣ ସଂପର୍କିତ କୌଣସି କାଗଜପତ୍ର, ଫାଇଲ ଯେପରି ମୁଁ ତାଙ୍କ ପାଖକୁ ନ ପଠାଏଁ, ପୁଣି ସେ ଜଣେ ମହିଳା ସଚିବଙ୍କ ସହିତ କାମ କରିପାରିବେ ନାହିଁ କହି ସ୍ୱାସ୍ଥ୍ୟ ବିଭାଗରୁ ମୋର ବଦଳି କରେଇବାକୁ ଚାହିଁଥିଲେ । ସଚିବ ସ୍ତରରେ କୌଣସି ପଦ ଖାଲିନଥିବାରୁ ମତେ କୌଣସି ପଦରେ ସ୍ଥାନିତ କରିବା ପାଇଁ କୌଣସି ଉପାୟ ତ କରିବାକୁ ପଡ଼ିବ । ଶିକ୍ଷା ବିଭାଗକୁ ଉଚ୍ଚ ଶିକ୍ଷା ଓ ବିଦ୍ୟାଳୟ ବା ସ୍କୁଲ ଶିକ୍ଷା ଭାବରେ ୨ ଭାଗରେ ବିଭକ୍ତ କରାଗଲା ଏବଂ ବିଦ୍ୟାଳୟ ବିଭାଗରେ ମୋର ନିଯୁକ୍ତି କରାଗଲା । ଶେଷରେ ୧୯୯୨ରେ ମୁଖ୍ୟ ସଚିବ ଭାବରେ ଦଶମାସ ସଂପୂର୍ଣ୍ଣ କରିବା ପରେ କେନ୍ଦ୍ର ଓ ରାଜ୍ୟର ନିର୍ବାଚନ ହେଲା । ଆଗାମୀ ସରକାର ଏବଂ ମୁଖ୍ୟମନ୍ତ୍ରୀ ସ୍ପଷ୍ଟ ଭାବରେ କହିଦେଲେ ଯେ ମୁଖ୍ୟ ସଚିବ ଭାବରେ ସେମାନେ ତାଙ୍କର ନିଜ (ଖାସ୍) ଲୋକଙ୍କୁ ରଖିବାକୁ ଚାହାଁନ୍ତି, ତେଣୁ ମତେ କେନ୍ଦ୍ରରେ ପୁନର୍ବାର ଅବସ୍ଥାପିତ ହେବାପାଇଁ ପଡ଼ିଲା । ଏ ସବୁ ବାଧାବିଘ୍ନ ଆମ ଚାକିରିରେ ତ ଲାଗିଥାଏ – ସେ ନାରୀ ହେଉ ବା ପୁରୁଷ ହେଉ – ଇଚ୍ଛାନୁଯାୟୀ ସ୍ଥାନିତ କରିବା ଆଳରେ ମୁଖ୍ୟମନ୍ତ୍ରୀଙ୍କ ମନମୁଖୀ କାରବାରକୁ ଟକ୍କର ଦିଆଯାଇନପାରେ । ତେବେ ବହୁତ ଲୋକଙ୍କୁ ମୁଖ୍ୟମନ୍ତ୍ରୀଙ୍କ

ଦୃଷ୍ଟିକୋଣ ଜଣାଥିଲା । ତାଙ୍କ ଦୃଷ୍ଟିରେ ଜଣେ ମହିଳା ମୁଖ୍ୟ ସଚିବ  କାମପାଇଁ ସୁବିଧା ଜନକ ନୁହଁ ।

ଆମମାନଙ୍କ ସମୟରେ ପରିସ୍ଥିତି ଯାହା ବି ହେଉ ନା କାହିଁକି ମହିଳାଙ୍କ ସପକ୍ଷରେ ନଥିଲା । ଆମମାନଙ୍କୁ ସମାଜ କଲ୍ୟାଣ, ଶିକ୍ଷା ଆଦି ସହିତ ସଂପର୍କିତ ଚାକିରି ପାଇଁ ଯୋଗ୍ୟ ମନେ କରାଯାଉଥିଲା, ସେଠି ଅର୍ଥ ବା ଶିଳ୍ପଦ୍ୟୋଗର ପ୍ରଶ୍ନ ଉଠୁ ନ ଥିଲା । ଶିକ୍ଷା, ପ୍ରଶିକ୍ଷଣ, ପରିଚାଳନା ତଥା ମହିଳା ସଂପର୍କିତ ବିଭାଗଗୁଡ଼ିକରେ ମୋର ଦଖଲ ଥିଲା ଓ ମତେ ଭଲଲାଗୁଥିଲା । ମୁଁ ଆନନ୍ଦିତ ହୋଇଥାଆନ୍ତି କଠିନ କ୍ଷେତ୍ରଭାବରେ ପରିଚିତ ଯୋଜନା ଓ ଅର୍ଥନୀତି ବିଭାଗରେ ପ୍ରଶିକ୍ଷିତ ହୋଇଥିଲେ । ୧୯୮୧ରେ ବ୍ୟାଙ୍କକ୍‌ରୁ ଫେରିବା ପରେ ମତେ ସଚିବାଳୟରୁ ହଟେଇ ଲୋକ ସେବାର (Civil Servant) ଏକ ପ୍ରଶିକ୍ଷଣ ଅନୁଷ୍ଠାନକୁ ପଠେଇ ଦିଆଗଲା, ଯେଉଁ ସମୟରେ ଏହା ଏକ ଭ୍ରୁଣ ଅବସ୍ଥାରେ ଥିଲା । ସେ ସମୟରେ କେହି ସେ ପଦକୁ ଯିବାକୁ ଚାହୁଁ ନ ଥିଲେ । ମୁଁ ସେଠାରେ ଆନନ୍ଦରେ ୯ ବର୍ଷ କଟେଇଲି । ପ୍ରଶିକ୍ଷଣ  ଦେବା ପାଇଁ ନୂଆ ନୂଆ ପଦ୍ଧତି ପ୍ରୟୋଗ ଓ ପରୀକ୍ଷା ନିରୀକ୍ଷା କଲି । ପ୍ରତ୍ୟେକ ପ୍ରଶିକ୍ଷଣ ପାଠ୍ୟକ୍ରମରେ ମହିଳା ବିଷୟକୁ ଅନ୍ତର୍ଭୁକ୍ତ କରିବାକୁ ସମର୍ଥ ହୋଇଥିବାରୁ ମୁଁ ବିଶେଷ ଭାବରେ ଖୁସି । ଆମେ ଅନୁଷ୍ଠାନ ମଧ୍ୟରେ ଦିବସ - ଯତ୍ନ କେନ୍ଦ୍ର ସ୍ଥାପନ କଲୁ । ଯାହା ଫଳରେ ମହିଳାମାନେ ପ୍ରଶିକ୍ଷଣ ପାଇଁ ଆସିବାକୁ ଉତ୍ସାହିତ ହେବେ । ମହିଳାମାନଙ୍କ ପାଇଁ ଯେଉଁ ସୁବିଧା ସୁଯୋଗର ବ୍ୟବସ୍ଥା କରାଯାଉଛି ସେମାନେ ତା'ର ସଠିକ ଉପଯୋଗ କରିବା ପାଇଁ ହେଲେ ଏହିପରି ସହଯୋଗୀ ବ୍ୟବସ୍ଥା ଅତ୍ୟନ୍ତ ଆବଶ୍ୟକ ।

ଅତୀତ ଅପରିବର୍ତ୍ତନୀୟ । ଭାରତୀୟ ପ୍ରାଶାସନିକ ସେବାରେ ଅନେକ ସଂଖ୍ୟାରେ ମହିଳା ଯୋଗଦେଲେଣି । ଏ ବୃତ୍ତିରେ ତିଷ୍ଠି ରହିବାକୁ ହେଲେ ଜ୍ଞାନ, ଦୃଢ଼ ନୈତିକ ଶକ୍ତି, ଆବେଗାତ୍ମକ ଦୃଢ଼ତା ସହିତ ସାହସ ଆହରଣ କରିବାକୁ  ହେବ ଓ ସତର୍କ ରହିବାକୁ ହେବ କାରଣ ସବୁବେଳେ ରାଜନୀତିଜ୍ଞମାନଙ୍କ ସହିତ କାରବାର କରିବାକୁ ପଡ଼େ । ପ୍ରଶାସକମାନଙ୍କର ଭଲ କାମ ଲୋକମାନେ କ୍ୱଚିତ୍ ଦେଖିପାରନ୍ତି । ଅନେକ ସମୟରେ ଲୋକଙ୍କର ଏକ ପ୍ରବଣତା ହେଉଛି ଯେ ସେମାନଙ୍କର ଦୋଷ-ତ୍ରୁଟିକୁ ଅତିରଞ୍ଜିତ କରି କହିବା । ଅବଶେଷରେ ଅବସର ନେବା ପରେ ଲୋକମାନେ ଏଇଆ କହିବେ ଯେ ଏଠି ସତରେ ଜଣେ ଭଲ ଅଫିସର ଥିଲେ, - ସାଧୁ ଓ ନ୍ୟାୟବନ୍ତ । ମୋ ଦୃଷ୍ଟିରେ ପୁଷ୍ପଗୁଚ୍ଛ ଓ ସରକାରୀ ସ୍ୱୀକୃତି ବା ପ୍ରଶସ୍ତିଠାରୁ ଏହା ଅନେକ ବେଶି ମୂଲ୍ୟବାନ୍ ।

ସଇ ପରାଂଜପେ (ଜନ୍ମ ୧୯୩୬) ମରାଠୀର ଜଣେ ପୁରସ୍କୃତ ନାଟ୍ୟକାର, ଥିଏଟର କର୍ମୀ ଏବଂ ଚଳଚ୍ଚିତ୍ର ନିର୍ମାତା । ସେ ହିନ୍ଦୀ ଓ ମରାଠୀ ଚଳଚ୍ଚିତ୍ର ଉଦ୍ୟୋଗ ଏବଂ ଟେଲିଭିଜନ୍‌ରେ କାମକରିବା ସହିତ ମୁଖ୍ୟ ଚଳଚ୍ଚିତ୍ର, ଧାରାବାହିକ, ବୃତ୍ତ ଚିତ୍ର ଏବଂ ଲଘୁ ବୃତ୍ତ ଚିତ୍ର ମଧ୍ୟ ନିର୍ମାଣ କରିଛନ୍ତି । ସେ ପିଲାମାନଙ୍କ ପାଇଁ ବହି ଲେଖିଛନ୍ତି ଏବଂ ପୁନେରେ ସ୍ଥାପିତ 'ଚିଲ୍‌ଡ୍ରେନ୍‌ସ ଥିଏଟର'ର ସହ-ପ୍ରତିଷ୍ଠାତା । ସଂପ୍ରତି ସେ ଭାରତୀୟ ଶିଶୁ ଚଳଚ୍ଚିତ୍ର ସୋସାଇଟି'ର ଅଧକ୍ଷା । ତାଙ୍କର କୃତିତ୍ୱ ମଧ୍ୟରେ ହିନ୍ଦୀ ଚଳଚ୍ଚିତ୍ର, ସ୍ପର୍ଶ (୧୯୭୯), ଚଷମେ ବଦ୍ଦୁର (୧୯୮୧) ଏବଂ ସାଜ୍ (୧୯୯୭); ଲଘୁ ଫିଚର ଫିଲ୍ମ, 'ବେଗର', 'ଅଙ୍ଗୁଠା ଛାପ' ଏବଂ ଚୁଡ଼ିୟାଁ; ଶିଶୁ ଚଳଚ୍ଚିତ୍ର, ସିକନ୍ଦର (୧୯୭୩) ଏବଂ ଜାଦୁ କା ଶଙ୍ଖ (୧୯୭୧); ବୃତ୍ତ ଚିତ୍ର, ଦି ଲିଟଲ୍ ଟି ସପ୍ ଏବଂ ବୁକ୍ସ ଦ୍ୟାଟ୍ ଟକ୍ (୧୯୭୬); ଏବଂ ଦୂରଦର୍ଶନ ଧାରାବାହିକ, ଅଡ଼ୋଶ ପଡ଼ୋଶ, ହମ ପଂଛୀ ଏକ ଡାଲ୍ କେ ଏବଂ ବେହ୍ନା । ତାଙ୍କର ଲେଖା ମଧ୍ୟରେ ଝଲୀ କେ ଗମ୍ମତ୍, ଜାଦୁ କା ଶଙ୍ଖ, ଶେପ୍ରିଟା ଶାପ୍ (ପିଲାଙ୍କ ପାଇଁ ନାଟକ) ଜସଓ୍ୱନ୍ଦୀ ଏବଂ ମାଝ୍ଯା ଖେଲ୍ ମଣ୍ଡୁ ଦେ (ମରାଠୀ ନାଟକ) ପ୍ରସିଦ୍ଧ ।

## ୭

# ଆବେଗର ଭଉଁରୀ

## ସଇ ପରାଂଜପେ

ମୁଁ ବହୁତ ଭାଗ୍ୟବତୀ ଯେ ଜଣେ ନିଜ ଜୀବନରେ କିଛି କରିପାରିଥିବା ପରି ମହିଳାଙ୍କ ଝିଅ ମୁଁ । ମୋ ମା ଶକୁନ୍ତଳା ପରାଂଜପେ ଜଣେ ଅସାଧାରଣ, ପ୍ରତିଭା ସଂପନ୍ନ ମହିଳା ଥିଲେ । ଯେଉଁ ସମୟରେ ଝିଅମାନେ କ୍ୱଚିତ୍ ସ୍କୁଲ୍ ପଢ଼ା ଶେଷ କରିପାରୁଥିଲେ ସେ ସେସମୟରେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟରୁ ଗଣିତରୁ ଡିଗ୍ରୀ ଲାଭ କରିଥିଲେ । ସେ ପରିବାର ନିୟୋଜନ ସଂପର୍କରେ ପ୍ରଚାର କରିଥିଲେ ଯେଉଁ ସମୟରେ ସଂଭ୍ରାନ୍ତ ଓ ସଭ୍ୟ ସମାଜରେ ଏହାର ନାମ ଉଚ୍ଚାରଣ ସୁଦ୍ଧା ନିଷିଦ୍ଧ ଥିଲା । ତାଙ୍କର ଏଇ ପଥୀକୃତ ଉଦ୍ୟମ ନିମନ୍ତେ ସେ ପଦ୍ମଭୂଷଣ ପଦବୀ ଦ୍ୱାରା ସମ୍ମାନିତ ହୋଇଥିଲେ । ସେ ସାମାଜିକ ଅନ୍ଧବିଶ୍ୱାସ, ପ୍ରଥା –ପରମ୍ପରା ଏବଂ ମନ୍ଦ ଦିଗ ବିରୁଦ୍ଧରେ ବିଶେଷକରି ମହିଳା ଏବଂ ଦଳିତଙ୍କ ନିମନ୍ତେ ସଂଗ୍ରାମ କରିଥିଲେ । ମୋ ମା' ନିଜ ନୀତିନିୟମ ଅନୁସାରେ ବଞ୍ଚୁଥିଲେ । ସେ ଆନ୍ତର୍ଜାତିକ ଶ୍ରମ ସଂଗଠନ, ଜେନେଭାରେ କାର୍ଯ୍ୟରତ ଥିବା ସମୟରେ ଜଣେ ଗୋରା ରୁଷୀୟ ଭଦ୍ରବ୍ୟକ୍ତି (ମୋର ବାପା)ଙ୍କୁ ବିବାହ କରିଥିଲେ । କିଛିଦିନ ପରେ ସେ ବିବାହ–ଛାଡ଼ପତ୍ର ନେଇ ନିଜ ପିତା ସାର୍ ଆର୍. ପି. ପରାଂଜପେଙ୍କ ସହିତ ରହିବାପାଇଁ ଚାଲିଆସିଲେ ଯିଏ କି ଜଣେ ବିଖ୍ୟାତ ଗଣିତଜ୍ଞ, ଯୁକ୍ତିବାଦୀ, ସମାଜ ସଂସ୍କାରକ ଏବଂ ଶିକ୍ଷାବିତ୍ ଥିଲେ । ମୁଁ ଆଂଶକା କରୁଛି ଯେ ମୋର ବାଲ୍ୟକାଳ ବିଷୟ ଉଲ୍ଲେଖ କରିବାକୁ ହେଲେ ଏହିପରି ବଡ଼ ଲୋକଙ୍କ ନାଁ ଉଲ୍ଲେଖ ଅପରିହାର୍ଯ୍ୟ ।

ମୋ ମା ଏବଂ ଅଜାଙ୍କ ପାଖରେ ମୁଁ ବଡ଼ ହେଲି । ମୁଁ ଯାହା କିଛି ହେଇଛି ଏବଂ ଯାହା କିଛି କରିପାରିଛି ସବୁ ସେମାନଙ୍କ ଯୋଗୁ ସମ୍ଭବ । ବସ୍ତୁତଃ ମୋ ମାଙ୍କ ଜୀବନର ଯେପରି ଲକ୍ଷ୍ୟଥିଲା ମତେ ମଣିଷ କରିବା । ମୋ ପ୍ରତିଭା ସଂପର୍କରେ ମୋ ମା'ଙ୍କର ଖୁବ୍ ଉଚ୍ଚ ଆଶାଥିବାରୁ ଏବଂ ତାହା ଫଳବତୀ ହେଉନଥିବାରୁ ମୁଁ ଖୁବ୍ ମାନସିକ ଚାପ ଅନୁଭବ କରୁଥିଲି । ମତେ ୬ରୁ ୯ ବର୍ଷ ପର୍ଯ୍ୟନ୍ତ ପୁନେର ପ୍ରସିଦ୍ଧ ମିରାସୀ ବୁଆଙ୍କଠାରୁ ଶାସ୍ତ୍ରୀୟ ସଂଗୀତ ଶିଖିବାକୁ ପଡ଼ିଥିଲା । ତିନିବର୍ଷ ପର୍ଯ୍ୟନ୍ତ ପୂରା ଘଣ୍ଟେ ଲେଖେଁ । ମୋ ମୁକ୍ତିର ଦିନ ସେ ଦିନ ଆସିଲା ଯେଉଁ ଦିନ ବୁଆ ନିଜେ ହାତଯୋଡ଼ି ମା'ଙ୍କୁ କହିଲେ– 'ମ୍ୟାଡାମ୍, ସାଇକୁ ଗୀତ ଶିଖାଇବା ନିରର୍ଥକ, ସେ ସ୍ୱର ତାଳରେ ଗାଇ ପାରିବନି ।''

ଶୋଇଲାବେଳେ ଗପଶୁଣିବା ବୟସରେ ମୋର ସୃଜନଶୀଳତାର ପରିଚୟ ମିଳିଥିଲା । ମା' ମତେ ପ୍ରତ୍ୟେକ ରାତିରେ ଗୋଟିଏ ଗୋଟିଏ ନୂଆ ଗପ ଶୁଣାନ୍ତି । ଦିନେ ରାତିରେ ସେ କହିଲେ, "ତୁ ମତେ ଆଜି ଗୋଟେ ଗପ କହ" । ଆଉ ମୁଁ ଶୁଣେଇଲି । ଗୋଟେ ଲମ୍ବା ଗପ ଗୁଡ଼େଇ ତୁଡ଼େଇ ହେଇ ଚାଲିଥାଏ, ତା ଭିତରେ ଥାଏ କିଛି ବିଚିତ୍ର ଚରିତ୍ର । ଗପ ଶେଷ ହେବାରୁ ସେ କହିଲେ, "ମନ୍ଦ ନୁହେଁ, ତତେ ଏ ଗପ କିଏ କହିଲା ?" "କେହି ନୁହେଁ, ମୁଁ ନିଜେ ତିଆରି କଲି," ମୁଁ କହିଲି । ଏମିତି ମୋର ସୃଜନଶୀଳତା ପ୍ରକାଶ ପାଇଥିଲା । ସେଇ ଦିନଠାରୁ ପ୍ରତ୍ୟେକ ଦିନ ଖେଳିବାକୁ ଯିବା ପୂର୍ବରୁ ମତେ ତିନିପୃଷ୍ଠା ସାହିତ୍ୟ ଅର୍ଥାତ ଗୋଟେ ରଚନା ଅଥବା କ୍ଷୁଦ୍ରଗଳ୍ପ ଲେଖିବାକୁ ପଡୁଥିଲା । ମୋର ସାହିତ୍ୟ ସୃଷ୍ଟି ଗୋଟିଏ ପୁସ୍ତକ ଆକାର ନେଲା ଅର୍ଥାତ ପ୍ରକାଶିତ ହେଲା ଯେତେବେଳକୁ ମୋର ବୟସ ମାତ୍ର ୮ ବର୍ଷ । ମୁଁ ଅନେକ ସମୟରେ ଭାବିଲେ ଆଶ୍ଚର୍ଯ୍ୟ ହୁଏଁ କେତେ ପ୍ରତିଭାଶାଳୀ ଓ ଭାଗ୍ୟବାନ୍ ପିଲା ଏମିତି ଥିବେ ଯେଉଁମାନଙ୍କର ମା' ତାଙ୍କର ପ୍ରତ୍ୟେକ କଳ୍ପନାର ପକ୍ଷୀରାଜ ଘୋଡ଼ାକୁ ସାକାର ରୂପ ଦେଉଥିବେ ।

ଅଧାରୁଷୀୟ ହୋଇଥିବା କାରଣରୁ ମୁଁ ଅଧିକାଂଶ ଭାରତୀୟ ପିଲାଙ୍କଠୁଁ ଅଲଗା ଦିଶୁଥିଲି । ସେ ସମୟରେ ଛାଡ଼ପତ୍ର ହେଇଯାଇଥିବା ବାପାମାଙ୍କର ସନ୍ତାନ ହୋଇଥିବାରୁ ଏହା ଖୁବ୍ ଗୋଟେ ରସାଳ ଚର୍ଚ୍ଚାର ବିଷୟ ଥିଲା । ଲୋକେ ମୋ ବାପାଙ୍କ ବିଷୟରେ ନାନା କଥା ଜାଣିବା ପାଇଁ ପ୍ରଶ୍ନ ପଚାରୁଥିଲେ ଓ ଉତ୍ତର ପାଇଁ ମତେ ଚକୋଲେଟ୍ ପ୍ରଲୋଭନ ଦେଖଉଥିଲେ । ମୋର ଆଜି ବି ଭୟଙ୍କର ଅନୁସନ୍ଧିତ୍ସୁ ଲୋକଙ୍କର ବିଦ୍ଧ ହେଇ ଯିବା ପରି ତୀକ୍ଷ୍ଣ ଚାହାଁଣି ମନେ ଅଛି । ପିଲାଦିନର ସେ ଦୁଃଖଦ ସ୍ମୃତି ଏବେ ବି ମୋ ଭିତରେ ଜୀବନ୍ତ । ଆଜି ବି କୌଣସି ଅପରିଚିତ ବ୍ୟକ୍ତି ଭଲମନରେ ବି ଯଦି ମୋ ବ୍ୟକ୍ତିଗତ ବିଷୟରେ କିଛି ପଚାରନ୍ତି ମୁଁ, ଗେଣ୍ଡା ଖୋଳଭିତରେ ଲୁଚିଗଲାପରି ସଂକୁଚିତ ହୋଇଯାଏ ।

ମୁଁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ଜଗତର ଭଲଦିଗ ସଂସ୍ପର୍ଶରେ ଆସିଛି, ଏଥିପାଇଁ ମୁଁ ମୋ ମା ଓ ଆପ୍ପା (ଅଜା)ଙ୍କୁ ଧନ୍ୟବାଦ ଜଣାଏଁ । ଆପ୍ପା ଅଷ୍ଟ୍ରେଲିଆର ପ୍ରଥମ ଭାରତୀୟ ହାଇ କମିଶନର ଥିଲେ । ତେଣୁ ଚାରିବର୍ଷ ମୁଁ ସଂପୂର୍ଣ୍ଣ ପାଶ୍ଚାତ୍ୟ ଜୀବନ ଶୈଳୀରେ ବଢ଼ିଲି, ସେ ଉଷ୍ମ ଓ ବନ୍ଧୁତ୍ୱପୂର୍ଣ୍ଣ ଦେଶରେ ମୁଁ ଅବିଳମ୍ବେ ଛୋଟିଆ ଅଷ୍ଟ୍ରେଲିଆନ୍‌ଟିଏ ହେଇଗଲି । ମୁଁ ହଲିଉଡ୍‌ର ନୂତନତମ ଚଳଚ୍ଚିତ୍ର ଦେଖୁଥିଲି, ମଞ୍ଚରେ ଆୟୋଜିତ ଚମତ୍କାର ସଙ୍ଗୀତ ଅନୁଷ୍ଠାନ ଦେଖୁଥିଲି ଆଉ ପଢୁଥିଲି ହାସ୍ୟରସାତ୍ମକ ଓ ଶାସ୍ତ୍ରୀୟ ସାହିତ୍ୟ । ପୂର୍ଣ୍ଣପ୍ରାଣରେ ଆନନ୍ଦର ସହିତ ଗାଉଥିଲି "ୱାଲ୍‌ଜିଂ ମାଟିଲ୍‌ଡା" । ଫଳତଃ ଭାରସାମ୍ୟ ରଖିବା ପାଇଁ ମତେ ଘରେ ମରାଠୀ କହିବାକୁ ପଡୁଥିଲା ଆଉ ତିନି ତିନି ପୃଷ୍ଠା ଉଭୟ ଇଂରାଜୀ ଓ ମରାଠୀରେ ଲେଖିବା ତ ଅନିବାର୍ଯ୍ୟ ଥିଲା । ଏ କାମ ବଡ଼ କଠିନ । ୟା ଉପରେ ପୁଣି ମତେ ସଂସ୍କୃତରେ ପ୍ରାଥମିକ ଜ୍ଞାନ ଶିକ୍ଷା ଦିଆଯାଉଥିଲା । ମୁଁ

ରାମରକ୍ଷା, ଅନ୍ୟ କେତେ ସ୍ତୋତ୍ର ଓ ସୁଭାଷିତ ବି କଣ୍ଠସ୍ଥ କରିଥିଲି । ମୋ ସହିତ ଯଦି କେହି ବାଜି ଲଗାଏ ତେବେ ଆଜି ବି ରାବଣ ରଚିତ ଶିବସ୍ତୋତ୍ରର କଠିନ ଉଚ୍ଚାରଣକୁ ମୁଁ ଦୋହରାଇପାରେ । ଗୋଟେ ନାସ୍ତିକ ପରିବାର ପକ୍ଷରେ ସଂସ୍କୃତ ଶ୍ଳୋକ ପାଇଁ ଏ ଆବେଗାସକ୍ତି ବିଚିତ୍ର ଲାଗିପାରେ – କିନ୍ତୁ ଆମ ପରିବାର ହିଁ ବଡ଼ ବିଚିତ୍ର ଥିଲା ।

ମତେ ବାରବର୍ଷ ହେବାପୂର୍ବରୁ ମୁଁ ସୁଇଫ୍ଟ, ସ୍କଟ, ଜେନ୍ ଅଷ୍ଟିନ୍, ହାର୍ଡି, ଚାର୍ଲସ ଡିକେନ୍ସ ଆଦି ପଢ଼ିଥିଲି । ଆଉ ମରାଠୀର ତ ସମସ୍ତ ବିଖ୍ୟାତ ଲେଖକ – ହରି ନାରାୟଣ ଆପ୍‌ଟେ, ସାନେ ଗୁରୁଜୀ, ଖାଣ୍ଡେକର ଆଦିଙ୍କୁ ପଢ଼ିସାରିଥିଲି । ମା ଭାଷା ଏବଂ ଏହାର ଶୁଦ୍ଧତା ଉପରେ ବହୁତ ଗୁରୁତ୍ୱ ଦେଉଥିଲେ । ଆମେ ଇଂରାଜୀରେ କଥାହେବାବେଳେ ସେ 'ମମି' ଆଉ ମରାଠୀରେ କଥାହେବାବେଳେ 'ଆଈ' ହେଇଯାଉଥିଲେ । ମରାଠୀରେ କଥା ହେବାବେଳେ ଗୋଟିଏ ଇଂରାଜୀ ଶବ୍ଦ ବ୍ୟବହାର କରି ପକେଇଲେ ୨୫ ପଇସା ଜୋରିମାନା ମତେ ଦେବାକୁ ପଡୁଥିଲା, ତାଙ୍କୁ ବି । ଆଜିକାଲିକାର ଖେଚୁଡ଼ି ଭାଷା ଶୁଣିଲେ ତାଙ୍କର କଣ ହୁଅନ୍ତା ଭାବି ମୁଁ ଆତଙ୍କିତ ହେଇଯାଏ । ଆପ୍ପା କୋଙ୍କଣର ଏକ ଛୋଟ ସହର ଆଞ୍ଜାର୍ଲେର ଜଣେ ଗାଉଁଲି ପୁରୋହିତଙ୍କ ପୁଅ ଥିଲେ । ସେ ଇଂଲଣ୍ଡରେ ଥିବାବେଳେ ଜୋନ୍ ଷ୍ଟୁଆର୍ଟ ମିଲ୍‌ଙ୍କୁ ପଢ଼ିଲେ ଆଉ ଜଣେ ସଂପୂର୍ଣ୍ଣ ଯୁକ୍ତିବାଦୀ ଓ ନାସ୍ତିକ ହୋଇ ଘରକୁ ଫେରିଲେ । ଘରେ ସାରା ପରିବାର ସାଙ୍ଗରେ ଖାଇବା ଟେବୁଲ୍‌ରେ ଏକାଠି ବସି ତାଙ୍କୁ ଖାଇବାକୁ ଦିଆଯାଉ ନ ଥିଲା । ସେ ଏକାଟିଆ ଅଗଣାରେ ଖାଉଥିଲେ ।

ତାଙ୍କଠୁଁ ଅଧିକ ସଚ୍ଛଭାବାପନ୍ନ ଲୋକ ମୁଁ ଆଜି ପର୍ଯ୍ୟନ୍ତ ଦେଖିନି । ଶିକ୍ଷା ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ ଥିଲା। ସେ ଯେତେବେଳେ ବିଜୟ ଉଲ୍ଲାସରେ କେମ୍ବ୍ରିଜରୁ 'ସିନିୟର ରେଙ୍ଗଲ୍‌ର' ଉପାଧି ପାଇଥିବା ପ୍ରଥମ ଭାରତୀୟ ଭାବେ ଫେରିଲେ ସେତେବେଳେ ସାରାଦେଶ ନାନା ପ୍ରକାରର ମୋଟା ଦରମାର ଚାକିରି ତାଙ୍କୁ ଯାଚୁଥିଲା । ସେ କିନ୍ତୁ ତାଙ୍କ ଜୀବନ ଫର୍ଗସନ କଲେଜ ପାଇଁ ଉତ୍ସର୍ଗ କରିଦେଲେ । ସେଠି ସେ ମାସକୁ ଟ୧୫୦ଙ୍କା ଦରମାରେ ପ୍ରିନ୍ସିପାଲ ହେଇ ରହିଲେ। ସେ ସମୟରେ ବି ତାଙ୍କ ଦରର ପ୍ରତିଭାବାନ ଲୋକଙ୍କ ପାଇଁ ଏ ଟଙ୍କା ନଗଣ୍ୟ ଥିଲା । ସେ ମୂଲ୍ୟବୋଧ ନିକଟରେ ଅଟଳ। ମୋ ଆଈ ଦିନେ କଲେଜର କାଗଜ କଲମ ବ୍ୟକ୍ତିଗତ ଚିଠି ଲେଖିବାରେ ବ୍ୟବହାର କରି ଦେଇଥିଲେ ବୋଲି ସେ ରାଗରେ ପଞ୍ଚମ ହେଇ ଯାଇଥିଲେ, ମନେହେଉଥିଲା ଘରର ଛାତ ଉଡ଼ିଯିବ । ବର୍ତ୍ତମାନର ପରିପ୍ରେକ୍ଷୀରେ ଏହା ଖୁବ୍ ଅଜବ ଲାଗୁଛି କାରଣ ଅଧିକାଂଶ ରାଜନୀତିଜ୍ଞ ବ୍ୟକ୍ତିଗତ ଫାଇଦା ପାଇଁ ଦେଶକୁ ହିଁ ବନ୍ଧା ପକେଇ ଦେଉଛନ୍ତି ।

ଆପ୍ପା ଭୂସଂପତ୍ତିରେ ବିଶ୍ୱାସ କରୁନଥିଲେ । ସେ ମତେ ଓ ମା'ଙ୍କୁ କହିଦେଇଥିଲେ ଯେ ସେ ତାଙ୍କର ବ୍ୟାଙ୍କରେ ସଂଚିତ ସାମାନ୍ୟ ଟଙ୍କା ଓ ସଂପତ୍ତି ଫର୍ଗସନ୍ କଲେଜ ନାଁରେ କରିଦେବେ । ତାଙ୍କର ମୃତ୍ୟୁ ପରେ କେହି ଜଣେ ମା'ଙ୍କୁ ପରାମର୍ଶ ଦେଇଥିଲେ ଯେ ଫର୍ଗସନ କଲେଜ ନାଁରେ ଆପ୍ପା ଉଇଲ କରିଦେଇଥିବା ଘର ପୁନର୍ଦଖଲ ପାଇଁ ଗୋଟେ କେଶ୍ କରିବାକୁ । ମା ରାଗରେ ଜଳିଉଠି କହିଥିଲେ, "ତୁମେ ଏ ପ୍ରସ୍ତାବ ମତେ ଦେବାପାଇଁ

ସାହସ କେମିତି କଲ ? ମୁଁ ତାଙ୍କର ଇଚ୍ଛା ଜାଣିଥିଲି ଓ ସମ୍ମାନ ଦିଏଁ, ସ୍ୱପ୍ନରେ ବି ମୁଁ ତାଙ୍କ ସ୍ମୃତିକୁ ଅସମ୍ମାନ କରିବା କଥା ଭାବିପାରିବିନି ।'' ଫର୍ଗସନ କଲେଜ ସୌଜନ୍ୟମୂଳକ ଭାବେ ମା ବଞ୍ଚିଥିବା ପର୍ଯ୍ୟନ୍ତ ଘରର ତଳମହଲାରେ ତାଙ୍କୁ ରହିବାକୁ ଦେଇଥିଲେ । କଲେଜର ସୌଜନ୍ୟରୁ ଆଜି ବି ତଳମହଲାରେ ଥିବା ପ୍ରିୟ ପୁରୁଷୋତ୍ତମ ଆଶ୍ରମରେ ମୋର ଅଂଶ ଅଛି ।

ଦୁର୍ଭାଗ୍ୟବଶତଃ ପରାଂଜପେ ପରିବାରର ବୁଦ୍ଧିମତ୍ତାରୁ ତିଳେମାତ୍ର ବି ଉତ୍ତରାଧିକାର ସୂତ୍ରରେ ମୋ ମସ୍ତିଷ୍କକୁ ଆସିନି । ମୁଁ ବୀଜଗଣିତ, ଜ୍ୟାମିତି, ଅଙ୍କ ଆଦି କୌଣସି ମତେ କଷ୍ଟେ ମଷ୍ଟେ କରୁଥିଲି, ଏବେ ବି ଗଣିତର ସଂଖ୍ୟା ଦେଖିଲେ ମୁଁ ଦୂରୁ ଜୁହାର କରେ । ମତେ ଆପ୍ପା ପଢ଼େଇବାକୁ ଚେଷ୍ଟା କରୁଥିଲେ, ସେ ଯେତେ ଅଧିକ ପଢ଼ଉଥିଲେ ମୁଁ ସେତେ ବେଶି ହତବୁଦ୍ଧି ହେଇଯାଉଥିଲି । ମୁଁ ଭାଷା ଓ ଇତିହାସରେ ଭଲ କରୁଥିଲି କାରଣ ସେ ବିଷୟରେ ମୋ କଳ୍ପନାର ଘୋଡ଼ାକୁ ମନଇଚ୍ଛା ଏଣେ ତେଣେ ଦଉଡ଼ାଇ ପାରୁଥିଲି । ଆପ୍ପା ନାରୀ ଶିକ୍ଷାର ଜଣେ ଅଗ୍ରଦୂତ ଥିଲେ । ପ୍ରକୃତରେ ସେ ବିଖ୍ୟାତ ଭାରତ ରତ୍ନ ମହର୍ଷି ଧୋଁଣ୍ଡୋ କେଶବ କାର୍ବେଙ୍କର ଆଶ୍ରିତ ଓ ଦାଦାପୁଅ ଭାଇ ଥିଲେ । (କ୍ଷମା କରିବେ ପୁଣି ବଡ଼ ଲୋକଙ୍କ ନାଁ ନେଲି) ବାଲ ଗଙ୍ଗାଧର ତିଲକ ଝିଅମାନଙ୍କର ଶିକ୍ଷାକୁ ବିରୋଧ କରୁଥିଲେ, ସେମାନଙ୍କ ସ୍ଥାନ ଘରେ ବୋଲି ସେ ବିଶ୍ୱାସ କରୁଥିଲେ । କେହି ଜଣେ ମତେ କହୁଥିଲେ ଯେ ଗୋଟିଏ ମୁକ୍ତମଞ୍ଚରେ ଦୁଇ ବିରାଟ ଦିଗ୍ଗଜ ମୋ ଆପ୍ପା ଓ ତିଲ୍‌କଜୀ ଏହି ବିଷୟ ଉପରେ ତର୍କ କଲାବେଳେ ଲୋକେ ତିଲକଜୀଙ୍କ ଉପରକୁ ପଚା ଟମାଟୋ ଫୋପାଡ଼ିଥିଲେ। ମୁଁ ଆପ୍ପାଙ୍କୁ ଏ ବିଷୟରେ ପଚାରିବାରୁ ସେ କହିଲେ, 'ହଁ ସତ', କିନ୍ତୁ ବିରୋଧୀ ପକ୍ଷର ଲୋକେ ମୋ ଉପରକୁ ବି ପଚା ଅଣ୍ଡା ଫୋପାଡ଼ିଥିଲେ ।

କହିବା ବାହୁଲ୍ୟ ଫର୍ଗସନ କଲେଜରେ ହିଁ ମୋର ଚମତ୍କାର ଚାରିବର୍ଷ ଅତିବାହିତ ହେଲା । ସେ ସବୁ ବର୍ଷରେ ମୁଁ ନିଜକୁ ଏବଂ ଏକ ସଂପୂର୍ଣ୍ଣ ନୂତନ ବିଶ୍ୱକୁ ଆବିଷ୍କାର କଲି । ମୁଁ ପଢ଼ାପଢ଼ିରେ ଖୁବ୍ ଗୋଟେ କିଛୁ ନାଁ କରିବି ବୋଲି କେହି ଆଶା କରୁ ନ ଥିଲେ ଓ ମୁଁ କଲିବି ନାହିଁ । କିନ୍ତୁ ମୁଁ ମଂଚ ସଂପର୍କିତ ପ୍ରତ୍ୟେକଟି କ୍ରିୟାକଳାପରେ ସଂପୃକ୍ତ ରହୁଥିଲି ଏବଂ ଆନ୍ତର୍ମହାବିଦ୍ୟାଳୟ ନାଟକ ପ୍ରତିଯୋଗିତାରେ ଚାରିବର୍ଷ ଧରି ଏକାଙ୍କିକାର ନିର୍ଦ୍ଦେଶନା ଦେଇଥିଲି । ଫର୍ଗସନ କଲେଜରେ ସାଧାରଣତଃ ମରାଠୀ ନାଟକ ହିଁ ଅଭିନୀତ ହୁଏ । ମୁଁ 'ଡିଅର ଡିପାର୍ଟେଡ଼' ଖୋଜି ବାହାର କଲି, ତାର ନିର୍ଦ୍ଦେଶନା ବି ଦେଲି ଓ ନିଜେ ଅଭିନୟ ବି କରିଥିଲି । ପ୍ରତିଯୋଗିତା ପାଇଁ ବିଭିନ୍ନ ଦଳ ନିଜକୁ ପ୍ରସ୍ତୁତ କରୁଥିଲେ । ୱାଡ଼ିଆ କଲେଜ୍‌ର ଛାତ୍ରମାନେ ଥରେ ଆମଆଡ଼କୁ ଗଡ଼ି ଆସିଲେ । ଯେତେବେଳେ ସେମାନେ ଜାଣିବାକୁ ପାଇଲେ ଯେ ଆମେ ଗୋଟେ ଇଂରାଜୀ ନାଟକ କରୁଛୁ, ସେମାନେ ହସରେ ଫାଟି ପଡ଼ିଲେ । ଯା' ହେଉ ଶେଷରେ ଆମ ହସ ହିଁ ଦୀର୍ଘସ୍ଥାୟୀ ହେଲା କାରଣ ଅଥେଲୋ ନାଟକକୁ ପଛରେ ପକେଇ ଆମର 'ଡିଅର ଡିପାର୍ଟେଡ୍' ହିଁ ବିଜୟୀ ହେଲା । ଆମ ଦଳ ସର୍ବଶ୍ରେଷ୍ଠ ନାଟକ ପୁରସ୍କାର ଓ ମୁଁ ସର୍ବଶ୍ରେଷ୍ଠ' ନାୟିକା ପୁରସ୍କାର ପାଇଲି ।

ତେବେ ଯେତେବେଳେ ପୁରସ୍କାର ଘୋଷଣା ହେଲା 'ଅଥେଲୋ' ନାଟକର ନିର୍ଦ୍ଦେଶକ ଆମ ପାଖକୁ ସ୍ଫୂର୍ତ୍ତିର ସହ ଆସି ଅଭିନନ୍ଦନ ଜଣେଇଲେ ।

ମୁଁ କଲେଜରେ ପ୍ରଥମ ଝିଅ ଥିଲି ଯିଏ ଡ୍ରାମା ସେକ୍ରେଟାରୀଭାବେ ଜେନେରାଲ୍ ପୋଷ୍ଟରୁ ନିର୍ବାଚିତ ହେଇଥିଲି – ମୁଁ ଛାତ୍ରୀ ପ୍ରତିନିଧିଭାବେ ଠିଆହେବାକୁ ମନା କରିଦେଲି । ପୁଅ ପ୍ରତିଦ୍ୱନ୍ଦ୍ୱୀଙ୍କ ତୁଳନାରେ ବିପୁଳ ଭୋଟରେ ମୁଁ ବିଜୟୀ ହୋଇଥିଲି । ଯଦିଓ ପରବର୍ଷ ମୁଁ ସମାନ ପରିମାଣ ଭୋଟରେ ହାରିଗଲି । ପୁଅମାନେ ମତେ ଶିକ୍ଷାଦେବାକୁ ଚାହୁଁଥିଲେ । ମୋର ସେଦିନ କଥା ସ୍ପଷ୍ଟ ଭାବରେ ମନେଅଛି – ଯେଉଁଦିନ ମୁଁ ଚଳଚ୍ଚିତ୍ର ନିର୍ମାତ୍ରୀ ହେବି ବୋଲି ସ୍ଥିର ହେଲା । ଆମର ପାରିବାରିକ ବନ୍ଧୁ ଅଚ୍ୟୁତ ରାନାଡ଼େ ମତେ ପ୍ରତିଦିନ ସକାଳେ ଫର୍ଗସନ କଲେଜର ପାହାଡ଼ ଉପରକୁ ଡାକୁଥିଲେ । ଅଚ୍ୟୁତ ମାମୁଁ ଜଣେ ସମ୍ମାନନୀୟ ଚଳଚ୍ଚିତ୍ର ନିର୍ମାତା । ସେ ତାଙ୍କ ସିନେମାରେ ବଲରାଜ ସାହାଣୀଙ୍କୁ ପ୍ରଥମେ ଅଭିନୟ କରିବାର ସୁଯୋଗ ଦେଇଥିଲେ। ଆମର ପ୍ରଭାତ ଭ୍ରମଣ ଅତ୍ୟନ୍ତ ଉପଭୋଗ୍ୟ ହେଉଥିଲା କାରଣ ସେ ପ୍ରତ୍ୟେକ ଦିନ ମତେ ଗୋଟେ ନୂଆ କାହାଣୀ ଶୁଣାଉଥିଲେ । ତାଙ୍କର କାହାଣୀ ଗୁଡ଼ିକ ସିନେମାର କାହାଣୀ ପରି ଧୀରେ ଧୀରେ ଉନ୍ମୋଚିତ ହୁଏ ଓ ଖୁବ୍ ମନ୍ତ୍ରମୁଗ୍ଧ କଲା ପରି । ମୋର ଆଜି ବି ଓ୍ୱଦରିଙ୍ଗ ହ୍ୱାଇଟସ୍, ଗ୍ୟାସ୍ ଲାଇଟ୍, ଦ ଗୁଡ୍ ଯର୍ଥ ଓ ଆଉରି ଅନେକ କାହାଣୀ ମନେ ଅଛି । ଥରେ ସେ ମତେ ରାମ ଯୋଶୀ, ସେତେବେଳର ଚାଞ୍ଚଲ୍ୟ ସୃଷ୍ଟିକାରୀ ପ୍ରସିଦ୍ଧ ମରାଠୀ ସିନେମାର କାହାଣୀ, ଶୁଣେଇଲେ । ରାମଯୋଶୀ ମଦ୍ୟପ ହେଇଗଲା ଓ ତା'ର ପେଶା ବିପନ୍ନ ହେଇଗଲା । ସେ ଆଉ ଠୋପେ ବି ମଦ ପିଇବନି ବୋଲି ପ୍ରତିଜ୍ଞା କଲା । ଅଚ୍ୟୁତ ମାମା ବର୍ଣ୍ଣନା କରୁଥିଲେ, ''ଆମେ ଦେଖୁଛେ କୋଠରୀ ଭିତରେ ଅସ୍ଥିର ଭାବରେ ସେ ପଦଚାରଣା କରୁଥିବାର ଦୃଶ୍ୟ। ଆମେ ଦେଖୁଛେ ତାଙ୍କ ପାଦ, ତାଙ୍କର ସୂକ୍ଷ୍ମ ମସଲିନ୍ ଧୋତି ମାର୍ବଲ ଚଟାଣ ଉପରେ ଘୁଷୁରୁଛି । ଆଉ କେମିତି କେଜାଣି ଧୋତି କାନି କାରୁକାର୍ଯ୍ୟ ଖଚିତ ସୁରେଇ ବେକରେ ଗୁଡ଼େଇ ହେଇ ତାଙ୍କ ଚାଲି ସହିତ ଘୋଷାରି ହେଉଥାଏ ।'' ତାଙ୍କର କୌଣସି ଶବ୍ଦ ବା କଥା ଉଚ୍ଚାରଣ ନ କରି ଗୋଟିଏ ଭାବକୁ ଅତି ସ୍ପଷ୍ଟ ଓ ବିଚକ୍ଷଣ ଭାବରେ ଶକ୍ତିଶାଳୀ ଦୃଶ୍ୟ ମାଧ୍ୟମରେ ବ୍ୟକ୍ତ କରିବାର ଦକ୍ଷତା ମତେ ଗଭୀର ଭାବରେ ପ୍ରଭାବିତ କରିଥିଲା । ଏବେ ବି ବଡ଼ ଚିକିନିଖିଭାବରେ ମୁଁ ମନଶ୍ଚକ୍ଷୁରେ ଦେଖିଥିବା ସେ ଦୃଶ୍ୟ ମୋର ମନେ ଅଛି । ଆଉ ପରବର୍ତ୍ତୀ ସମୟରେ ଯେତେବେଳେ ମୁଁ ପ୍ରକୃତ ସିନେମାଟି ଦେଖି ନିରାଶ ହେଲି ତା' ବି ମନେପଡ଼େ । ମୋ ଦ୍ୱାରା ପ୍ରସ୍ତୁତ ନାଟ୍ୟାଂଶଟି ଅଧିକ ନାଟକୀୟ ହେଇଛି ବୋଲି ଭାବିବାକୁ ମତେ ଭଲଲାଗେ । ହୁଏତ ମୁଁ ନିଜ କଥା ନିଜେ ବଢ଼େଇ ଚଢ଼େଇ କହୁଛି । ଅସଲରେ ଜଣେ ନାଟ୍ୟରୂପ ଲେଖକ ଏବଂ ନିର୍ଦ୍ଦେଶକ ଭାବରେ ମୋର ଆତ୍ମପ୍ରକାଶର ଗୌରବ ମୁଁ ଅଚ୍ୟୁତ ମାମାଙ୍କୁ ଦେବାକୁ ଚାହେଁ ।

ଗଣମାଧ୍ୟମରେ ମୋର କ୍ୟାରିଅର୍ ଆକାଶବାଣୀ, ପୁନେରୁ ଆରମ୍ଭ ହେଲା । ଜୀବନରେ ବହୁ ଅଦ୍ଭୁତ ଘଟଣା ଯେପରି ଭାଗ୍ୟ ନିର୍ଣ୍ଣୟ କରିଥାଏ ଠିକ୍ ସେହିପରି ଏ ଘଟଣା ଥିଲା। ମୋର ବି. ଏ. ପରୀକ୍ଷା ମାତ୍ର ପନ୍ଦର ଦିନ ଥାଏ, ମୁଁ ଜୀବନରେ କଣ

କରିବି ନ କରିବି ସେ ବିଷୟରେ ତିଳେମାତ୍ର ଚିନ୍ତା କରୁନଥିଲି । ଦିନେ ସକାଳେ ଗୋଟେ ୟୁନିଫର୍ମ ପିନ୍ଧା ପିଅନଟିଏ ଆସି ସରକାରୀ ଦିଶୁଥିବା ଗୋଟେ ମାଟିଆ ଲଫାଫା ଧରି ଆମ ଦୁଆରେ ହାଜର। ଆକାଶବାଣୀ ଷ୍ଟେସନରେ ମରାଠୀ ଉଦ୍‌ଘୋଷିକାର ଅଭାବ ଯୋଗୁଁ ମତେ ଅଡ଼ିସନ୍ (ସ୍ୱର ପରୀକ୍ଷା) ପାଇଁ ଡକା ଯାଇଥିଲା । ମତେ କାହିଁକି ଆଉ କିଏ ଡାକିଥିଲେ – ଆଜି ପର୍ଯ୍ୟନ୍ତ ଜାଣି ପାରିଲିନି । ବାସ୍ ମଜା ପାଇଁ ଗଲି । ଅତି ସହଜରେ ସେ କଠିନ ଉଚ୍ଚାରଣ ବିଶିଷ୍ଟ ଶବ୍ଦ ସବୁ ପଢ଼ିଗଲି, ଏଥିପାଇଁ ମୁଁ ମୋର ସଂସ୍କୃତ ଶିକ୍ଷାକୁ ଧନ୍ୟବାଦ ଦିଏଁ । ଷ୍ଟୁଡ଼ିଓ ଦ୍ୱାର ବାହାରକୁ ପାଦ ବଢ଼ାଇବା ମାତ୍ରେ ଡ୍ୟୁଟି କାର୍ଯ୍ୟରତ ଅଫିସର ମତେ କହିଲେ, ''କାଲିଠୁଁ କାମ ଆରମ୍ଭ କରିଦିଅନ୍ତୁ ।'' ଖୁବ୍ ଭଦ୍ରତା ସହକାରେ ନିକଟରେ ପରୀକ୍ଷାଥିବାରୁ ମୁଁ କାମରେ ଯୋଗ ଦେଇପାରିବିନି କହି ଦୁଃଖ ପ୍ରକାଶ କରି ଫାଟକ ଆଡ଼କୁ ଆଗେଇଗଲି । ଜଣେ ପିଅନ ମୋ ପଛରେ ଦଉଡ଼ି ଦଉଡ଼ି ଆସିଲା । ଆଉଥରେ ଗୋଟିଏ ଅଡିସନ୍ ପାଇଁ ମତେ ଡାକିନେଲେ – ଏଇଟା ଇଂରାଜୀ ଉଦ୍‌ଘୋଷକ ପାଇଁ । ସେମାନେ ପ୍ରକୃତରେ ବଡ଼ ଅସୁବିଧାରେ ପଡ଼ିଥିଲେ, ତାଙ୍କର କୌଣସିମତେ ଲୋକ ଦରକାର ଥିଲା । ସଂକ୍ଷିପ୍ତରେ କହିବାକୁ ଗଲେ ମୁଁ ପୁନେ ଆକାଶବାଣୀରେ ଇଂରାଜୀ ଉଦ୍‌ଘୋଷିକା ଭାବେ ଯୋଗ ଦେଲି । ପ୍ରତ୍ୟେକ ଦିନ ୫ ମିନିଟ୍ ଆଞ୍ଚଳିକ ସମ୍ବାଦ ପାଠ କରିବାର ସାନ୍ଧ୍ୟ କାର୍ଯ୍ୟକ୍ରମ ଥିଲା । ମୁଁ ପ୍ରତ୍ୟେକ ଦିନ ସେଣ୍ଟ୍ରାଲ ବିଲ୍‌ଡ଼ିଂକୁ ସାଇକେଲ୍‌ରେ ଯାଉଥିଲି ଓ ଏଥିପାଇଁ ମତେ ମାସକୁ ୫୦ଟଙ୍କା ମିଳୁଥିଲା । ପରୀକ୍ଷା ଶେଷ ହେବାର ବେଶି ଦିନ ହୋଇନଥାଏ ମୁଁ ମରାଠୀ ଭାଷାରେ ଘୋଷିକା କାମ ମଧ୍ୟ ଆରମ୍ଭ କରିଦେଲି ଆଉ ତା' ସାଙ୍ଗରେ ପିଲାଙ୍କ କାର୍ଯ୍ୟକ୍ରମ 'ବାଲୋଦ୍ୟାନ'ର ସଂଯୋଜିକା କାମ ବି କଲି । ଆକାଶବାଣୀର କାମ କରୁଥିବା ଦିନଗୁଡ଼ିକ ବଡ଼ ଚମତ୍କାର ଥିଲା, ରୋଜଗାର ସହିତ ଅନେକ କିଛି ଶିଖିଲି ଓ ବହୁତ ମଜା ବି ହେଉଥିଲା ।

ବାର୍ଷିକ 'ରେଡ଼ିଓ ସପ୍ତାହ' ପାଳନ ସମୟରେ ସଂଗୀତ ସମାରୋହ ଓ ନାଟକଆଦିର ସିଧା ପ୍ରସାରଣ ହୁଏ । ମୁଁ ପିଲାଙ୍କ ନିମନ୍ତେ କେତେଗୁଡ଼ିଏ ନାଟକ ଲେଖିଲି, ନିର୍ଦ୍ଦେଶନା ଦେଲି, ଯାହା କି ପରବର୍ତ୍ତୀ ସମୟରେ ବହି ଆକାରରେ ପ୍ରକାଶିତ ହେଲା – ପଡେନାଗରୀତ, ଶୋପ୍ତିଚା ଶାପ, ଭକ୍ତ୍ୟାଚେ ଭବିଷ୍ୟ, ଝଲ୍ଲୀକେ ଗମ୍ମତ ଏବଂ ଜାଦୁ ବା ଶଙ୍ଖ ଆଦି କିଛି ଉଲ୍ଲେଖନୀୟ ସୃଷ୍ଟି । ଏକଥା କହିବା ସମୟରେ ମୁଁ ଆନନ୍ଦ ଅନୁଭବ କରୁଛି ଯେ ମୋର ପାଞ୍ଚଟିଯାକ ବହି ଉଭୟ କେନ୍ଦ୍ର ଓ ରାଜ୍ୟ ସ୍ତରୀୟ ସରକାରୀ ପୁରସ୍କାର ପାଇଛି । ଅଜାଣତରେ ମୁଁ ପିଲାଙ୍କ ନାଟକ ରଚନାକାର ହେଇଗଲି, ଏଥିପାଇଁ ମୁଁ ରେଡ଼ିଓକୁ ଧନ୍ୟବାଦ ଜ୍ଞାପନ କରେ । ମୋର ସମସ୍ତ ନାଟକ ସମଗ୍ର ମହାରାଷ୍ଟ୍ରର ସ୍କୁଲଗୁଡ଼ିକରେ ଅଭିନୀତ ହୁଏ, ଆଜି ବି ।

'ରେଡ଼ିଓ ସପ୍ତାହ' ପାଳନ ଅବସରରେ ଗୋଟେ ମାତ୍ର ନାଟକ ଅଭିନୀତ ହୁଏ, ତାପରେ ବର୍ଷକ ପାଇଁ ସବୁ ବନ୍ଦ ! ତେଣୁ ଏଥିପାଇଁ ବିନିଯୋଗ ହେଉଥିବା ସମସ୍ତ ସମୟ ଉଦ୍ୟମ ଓ ଶକ୍ତି ମତେ ଅଯଥା ଅପଚୟ ମନେ ହେଲା । ତେଣୁ ପୁନେର ପିଲାଙ୍କ ଥିଏଟର୍ ଜନ୍ମ ନେଲା । ଆମ ପାଖରେ ଆଗରୁ ନାଟକ, ଶିଶୁ କଳାକାର, ନିର୍ଦ୍ଦେଶକ ଏବଂ ପ୍ରଚୁର

ଉତ୍ସାହ ମହତ୍ତ୍ୱପୂର୍ଣ୍ଣ ଥିଲା । ଆମ ପାଖରେ ନଥିଲା କେବଳ ଅର୍ଥ । ଗୋପୀନାଥ ତାଲୱାଲ୍କର ସଂଘର ସଭାପତି ଏବଂ ଅରୁଣ ଯୋଗଲେକର ଏବଂ ମୁଁ ଏହାର ସେକ୍ରେଟେରୀ ହେଲୁ । ଆମେ ଲ୍ୟାଣ୍ଡ ଅଫ କାର୍ଡସ୍ (ରବୀନ୍ଦ୍ର ଠାକୁରଙ୍କ ରଚିତ ନୁହେଁ)ର ଅଭିନୟରୁ ଆମର ଶୁଭାରମ୍ଭ ଘୋଷଣା କଲୁ । ସାନ ପିଲାମାନେ ବଡ଼ ଆକାରର ତାସ୍ କାର୍ଡ ପିନ୍ଧିଥିଲେ, ସେଥିରେ ପୁଣି ସମସ୍ତ ରାଜକୀୟ ବେଶଭୂଷା ସହିତ ଚାରିଯୋଡ଼ା ରାଜା ଓ ରାଣୀ – ଏହା ସତରେ ଅତ୍ୟନ୍ତ, ଅପୂର୍ବ ସୁଦୃଶ୍ୟ ରଙ୍ଗର ସମାବେଶ ଥିଲା । ତାସ୍ କାର୍ଡ ତିଆରି କରିବା ପାଇଁ ଆମର ଗଦାଗଦା ବକ୍ରମ୍ ଓ ଧଳା ପପ୍‌ଲିନ ଦରକାର ଥିଲା । ମୋର ମନେପଡୁଛି ମୁଁ ଲକ୍ଷ୍ମୀ ରୋଡ଼ର ବିଭିନ୍ନ ଦୋକାନକୁ ଯାଇ ବିନା ଦ୍ୱିଧାରେ କହୁଥିଲି ଯେ ମୁଁ ତର୍କଶାସ୍ତ୍ରୀ ପରାଂଜପେଙ୍କର ନାତୁଣୀ ଏବଂ ମୁଁ ପିଲାମାନଙ୍କପାଇଁ ଏକ ଚମତ୍କାର ନାଟକ ମଞ୍ଚସ୍ଥ କରିବାକୁ ଯାଉଛି । ମୁଁ ଉଧାର ସ୍ୱରୂପ କିଛି କପଡ଼ା କିଣିପାରିବି କି ? ଆମର ନାଟକ ମଞ୍ଚସ୍ଥ ହେବା ପରେ ପରେ ହିଁ ଋଣ ପରିଶୋଧ କରିଦିଆଯିବ, ଆପଣ ବିଶ୍ୱାସ କରନ୍ତୁ ବା ନ କରନ୍ତୁ ମୋର ନିର୍ଭୀକତା କାମ ଦେଲା । ମୋର ଅନୁପ୍ରେରିତ କରିବାର କ୍ଷମତା ଅଥବା ମୋ ଅଜାଙ୍କପ୍ରତି ସହରର ଶ୍ରଦ୍ଧାଯୋଗୁଁ ହେଉ ଆମ ନାଟକ ମଞ୍ଚସ୍ଥ ହେବାପାଇଁ ଯାହା ସବୁ ଦରକାର ଥିଲା ତାହା କିଣା ଯାଇ ପାରିଲା ।

ମୋର ଆନ୍ତରିକ ଇଚ୍ଛା ଥିଲା ଲକ୍ଷ୍ମୀରୋଡ଼ର ଦୟାଳୁ ଦୋକାନୀମାନଙ୍କର କଣା ପଇସା ସମେତ ସବୁ ଶୁଝିଦେବାକୁ । ନାଟକ ଅସଫଳ ହେଇପାରେ ଓ ଆମ ପଇସା ନଉଠିପାରେ – ଏକଥା ମୋ ମୁଣ୍ଡକୁ ଆଦୌ ଜୁଟିନଥିଲା । ସୌଭାଗ୍ୟବଶତଃ ନାଟକଟି ଅତ୍ୟନ୍ତ ସଫଳ ହୋଇଥିଲା ଓ ସଙ୍ଗେ ସଙ୍ଗେ ଋଣ ଶୁଝିଦିଆଯାଇଥିଲା । ପୁନେର ଶିଶୁ-ଥିଏଟର୍ ପ୍ରତି ଆପ୍ପାଙ୍କର ଏ ଅନନ୍ୟ ଅବଦାନରେ ସେ ନିଜେ ବିସ୍ମିତ ହେଇଯାଇଥିଲେ । ଆମର ଛୋଟ ଥିଏଟର୍ ଦଳ ଚମତ୍କାର କାମ କରୁଥିଲା । ପଣ୍ଡିତ ନେହେରୁ ଯେତେବେଳେ ଆମର ଲ୍ୟାଣ୍ଡ ଅଫ କାର୍ଡ଼ସ ଦେଖିବାକୁ ଆସିଲେ ଆମକୁ ଲାଗିଲା ଆମେ ସତରେ ବିଖ୍ୟାତ ହେଇଗଲୁ ।

ଅରୁଣ ଓ ମୋ ଭିତରେ ଏକ ସଂପର୍କ ଧୀରେ ଧୀରେ ଗଢ଼ିଉଠିବା ସ୍ୱାଭାବିକ ଥିଲା କାରଣ ଆମ ଦୁହିଁଙ୍କ ଭିତରେ ଥିଏଟର୍‌ପାଇଁ ସମାନ ଦୁର୍ବଳତା ଥିଲା । ଆମେ ଦୁହେଁ ବାହାହେଲୁ । ଆପ୍ପା ଏବଂ ମା ଦୁହେଁ ଏ ବିବାହରେ ହତାଶ ହେଇଥିଲେ । କିନ୍ତୁ ଆପ୍ପା ଆମକୁ ଆଶୀର୍ବାଦ କଲେ । ମା କଲେ ନାହିଁ । ଖୁବ୍ ଶୀଘ୍ର ମୁଁ ଗୋଟେ ଛାତ୍ର ବୃତ୍ତିପାଇ ରାଷ୍ଟ୍ରୀୟ ନାଟ୍ୟ ବିଦ୍ୟାଳୟ ଦିଲ୍ଲୀକୁ ଅଧ୍ୟୟନ ପାଇଁ ଗଲି ଓ ପୁନେକୁ ବିଦାୟ ଜଣେଇଲି । ବାଳ ଥିଏଟର୍ ବନ୍ଦ ହେଇଗଲା । ଅରୁଣ ମଧ୍ୟ ସେହି ବର୍ଷ ଗୋଟେ ଛାତ୍ରବୃତ୍ତି ପାଇଲେ, ଆମେ ଦୁହେଁ ଦିଲ୍ଲୀରେ ନୂଆ ଅଭିଜ୍ଞତା ହାସଲ କରି ନିଜକୁ ସମୃଦ୍ଧ କରିବାରେ ଲାଗିଲୁ ।

ଆବ୍ରାହମ ଆଲ୍‌କାଜୀ ରାଷ୍ଟ୍ରୀୟ ନାଟ୍ୟ ବିଦ୍ୟାଳୟରେ ନିର୍ଦ୍ଦେଶକ ଭାବରେ ଯୋଗଦେବାପୂର୍ବରୁ ଏହା ସଂପୂର୍ଣ୍ଣ ଦିଶାହୀନ ଥିଲା । ସେତେବେଳକୁ ମୁଁ ଦ୍ୱିତୀୟ ଓ ଶେଷ ବର୍ଷର ଛାତ୍ରୀ । ମାତ୍ର ଗୋଟିଏ ବର୍ଷରେ ଆଲ୍‌କାଜୀ ଆମକୁ ଥିଏଟର୍ ସଂପର୍କରେ ଅମୂଲ୍ୟ

ସଂପତ୍ତି ଦାନ କରିଥିଲେ । ତାଙ୍କର ବିସ୍ତୃତ ଦୃଷ୍ଟି, ବ୍ୟାପକ ଜ୍ଞାନ, ପ୍ରବଳ ଆବେଗଗତ ଆସକ୍ତି, ବାଗ୍ମିତା ଏବଂ ତାଙ୍କର ବହୁମୁଖୀ ପ୍ରତିଭାର ଯାଦୁଶକ୍ତିପୂର୍ଣ୍ଣ ବ୍ୟକ୍ତିତ୍ୱ ଛାତ୍ରଙ୍କୁ ମନ୍ତ୍ରମୁଗ୍ଧ କରିଦିଏ । ଅଲ୍‌କାଜୀଙ୍କର ଶକ୍ତିଶାଳୀ ନାଟ୍ୟପ୍ରସ୍ତୁତି ଆଜିପର୍ଯ୍ୟନ୍ତ ଭାରତରେ ପ୍ରସ୍ତୁତ ଥିଏଟରଠାରୁ ଭିନ୍ନ । ମାତ୍ର କାମ ଆଦାୟ କରିବାରେ ଯେତିକି କଡ଼ା ଥିଲେ ସେତିକି ଥିଲେ ଭୀଷଣ ଶୃଙ୍ଖଳା ପ୍ରିୟ ।

ଦିଲ୍ଲୀରେ ଟେଲିଭିଜନ୍ ସେଇ ମାତ୍ର ଆରମ୍ଭ ହେଇଥାଏ, ସେଥିରେ କେବଳ ସ୍କୁଲପାଇଁ ପ୍ରସାରଣ ହେଉଥିଲା । ସେ ବି ସପ୍ତାହରେ ୩ ଦିନ ଓ କିଛି ଘଣ୍ଟା ପାଇଁ କେବଳ । ସାଧାରଣ କାର୍ଯ୍ୟକ୍ରମ ଆରମ୍ଭ କରିବା ଉଦ୍ଦେଶ୍ୟରେ ସେମାନେ ନିର୍ମାତା ପଦ ପାଇଁ ବିଜ୍ଞାପନ ଦେଇଥିଲେ ଏବଂ ଭାରତୀୟ ଦୂରଦର୍ଶନ କାର୍ଯ୍ୟକ୍ରମର ପ୍ରଥମ ଛ'ଜଣ ନିର୍ମାତା ମଧ୍ୟରୁ ମୁଁ ଜଣେ ନିର୍ମାତା ଭାବରେ ଯୋଗ ଦେଇଥିଲି । ବି.ବି.ସି.ରୁ ଜଣେ ଚମତ୍କାର ଶିକ୍ଷକ ଆମକୁ ଶିକ୍ଷାଦେବା ପାଇଁ ଅଣାଯାଇଥିଲେ । ଆମେ ପ୍ରଥମଲୋକ ହେଇଥିବାରୁ ଅଦମ୍ୟ ଉତ୍ସାହର ସହିତ କାମ ଆରମ୍ଭ କରିଦେଲୁ । ସେତେବେଳେ ଟି.ଭି. କଳାଧଳା ଥିଲା । ଆଉ ଆମର ଛୋଟିଆ ଷ୍ଟୁଡ଼ିଓଟେ ଥିଲା, ନିୟମ କାନୁନ୍ ବି କମ୍ ଥିଲା । ଆମର କଳ୍ପନାକୁ ଆମେ ଯଥାସମ୍ଭବ ସାକାର କରିବାକୁ ଚେଷ୍ଟା କରୁଥିଲୁ । ମୁଁ ନାଟକ, ପ୍ରଶ୍ନୋତ୍ତର କାର୍ଯ୍ୟକ୍ରମ, ପିଲା ଓ ମହିଳାମାନଙ୍କ ନିମନ୍ତେ କାର୍ଯ୍ୟକ୍ରମ, ବୃତ୍ତ ଚିତ୍ର କରୁଥିଲି – ବସ୍ତୁତଃ ସମାଚାରକୁ ଛାଡ଼ି ସବୁପ୍ରକାର କାର୍ଯ୍ୟକ୍ରମ ପ୍ରସ୍ତୁତ କରୁଥିଲି ।

ମୁଁ ଦୂରଦର୍ଶନରେ ଆଠବର୍ଷ ଥିଲି ଓ ଯେତେବେଳେ ଅତୀତକୁ ଫେରିଚାହେଁ ତ ଅତ୍ୟନ୍ତ ଗର୍ବ ଓ ସନ୍ତୋଷରେ ଅନ୍ତର ଭରିଉଠେ । ମହିଳା କାର୍ଯ୍ୟକ୍ରମଗୁଡ଼ିକ –ବଧୂ-ପୋଡ଼ିଠାରୁ ଆରମ୍ଭକରି ମେହେନ୍ଦୀ ଲଗେଇବା ପର୍ଯ୍ୟନ୍ତ ବିଭିନ୍ନ ପ୍ରକାରର ବିଷୟ-ସମୃଦ୍ଧ ଥିଲା । ମୁଁ ଅସଂଖ୍ୟ ବୃତ୍ତଚିତ୍ର ଓ କ୍ଷୁଦ୍ର ଚଳଚ୍ଚିତ୍ର ନିର୍ମାଣ କରିଛି – ଦ ଲିଟ୍‌ଲ ଟି ସପ୍'କୁ ଏସିଆନ୍ ବ୍ରୋଡ୍‌କାଷ୍ଟିଂ ୟୁନିଅନ୍ ଆୱାର୍ଡ ମିଳିଛି । କିନ୍ତୁ ଆଜି ସେ ଫିଲ୍ମର ଚିହ୍ନବର୍ଣ୍ଣ ନାହିଁ । ମୋର ବିଶେଷ ଅବଶୋଷ ଯେ ପଙ୍କଜ ମଲ୍ଲିକ ଦାଦା ସାହେବ ଫାଲ୍‌କେ ପୁରସ୍କାର ପାଇବାପରେ କଲିକତାରେ ତାଙ୍କ ଉପରେ ମୁଁ ଯେଉଁ ବୃତ୍ତଚିତ୍ର ନିର୍ମାଣ କରିଥିଲି ତାହା ହଜିଗଲା । ଯେତେବେଳେ ସେ ରାଷ୍ଟ୍ରପତିଙ୍କଠାରୁ ପୁରସ୍କାର ଆଣିବାକୁ ଯାଉଥିଲେ ସେତେବେଳେ ତାଙ୍କ ଦ୍ୱାରା ପ୍ରଦତ୍ତ ସ୍ୱର 'ଆଇ ବାହାର' ବଜାଯାଇଥିଲା । ସେ ଫିଲ୍ମରେ ଆଉରି ବି କେତେକ ଅଦ୍‌ଭୁତ ଦୃଶ୍ୟଥିଲା – ଥରେ ତ ଟେରାସ୍‌ରେ ତାଙ୍କର ସତୁରୀ ପାର କରିଥିବା ପତ୍ନୀଙ୍କ ଉଦ୍ଦେଶ୍ୟରେ ପ୍ରେମପୂର୍ଣ୍ଣ ଭଙ୍ଗୀରେ ସେ ''ଦୋ ନୈନା ମତୱାଲେ'' ଗାଉଥିଲାବେଳେ କ୍ୟାମେରାରେ ଫଟୋ ଉଠାହେଇଥିଲା । ଅନେକ ଅମୂଲ୍ୟ ସଂରକ୍ଷଣ ଯୋଗ୍ୟ ପଦାର୍ଥ ଦମକାଏ ପବନରେ କୁଆଡ଼େ ସବୁ ଉଡ଼ିଗଲା ।

ମୋର ପରବର୍ତ୍ତୀ ଜୀବନରେ ସିନେମା ନିର୍ଦ୍ଦେଶକରେ ରୂପାନ୍ତର ଘଟିବା ମୂଳରେ ଦୂରଦର୍ଶନ ସହାୟକ ହୋଇଛି । ମୁଁ ଯେଉଁ ଟେଲି ନାଟକ ଲେଖିଲି ଓ ନିର୍ଦ୍ଦେଶନା ଦେଲି ତାହା ପ୍ରଥମେ ଦୂରଦର୍ଶନ ଦ୍ୱାରା ପ୍ରସାରିତ ହେଲା । ମୋର ଦୁଇଟି ଖୁବ୍ ଲୋକପ୍ରିୟ

ଚଳଚ୍ଚିତ୍ର ପ୍ରଥମେ ଦୂରଦର୍ଶନରେ ନାଟକ ଭାବେ ପ୍ରସାରିତ ହୋଇଛି ଓ ଏହାକୁ ଦର୍ଶକମାନେ ଖୁବ୍ ଆନନ୍ଦର ସହିତ ଗ୍ରହଣ କରିଥିଲେ । 'ରୈନା ବିତି ଯାଏ' ପରବର୍ତ୍ତୀ ସମୟରେ 'ସ୍ପର୍ଶ' ଏବଂ 'ଧୂଆଁ' ପରେ 'ଚଷମେ ବଦ୍ଦୁର୍' ସିନେମାରେ ପରିଣତ ହେଲା ।

ମୁଁ ଯେତେବେଳେ ଦୂରଦର୍ଶନରେ ନିଯୁକ୍ତି ପାଇଲି, ଅରୁଣ ଏବଂ ମୁଁ ଦୁହେଁ ଆମର ଖାଲି ସମୟରେ ଖୁବ୍ ବ୍ୟାପକଭାବେ ଥିଏଟର୍ କରିବାରେ ଲାଗିଥିଲୁ – ଏହାର ଏକ ସୌଖୀନ ନାଁ 'ନାଟ୍ୟଦ୍ୱୟୀ' ଦେଲୁ । ପ୍ରଥମେ ପ୍ରଥମେ ଆମେ କେବଳ ମରାଠୀରେ ନାଟକ କରୁଥିଲୁ, ମାତ୍ର ଖୁବ୍ ଶୀଘ୍ର ଆମେ ତାକୁ ହିନ୍ଦୀରେ କରିବାରେ ଲାଗିଲୁ । ମୁଖ୍ୟତଃ ଆମେ ଲୋକପ୍ରିୟ ମରାଠୀ ନାଟକଗୁଡ଼ିକୁ ନେଉଥିଲୁ – ତେନ୍ଦୁଲକରଙ୍କର 'ସଖାରାମ ବାଇଣ୍ଡର,' ଏଲକୁଞ୍ଚ୍ୱାରଙ୍କର 'ବାସନକାଣ୍ଡ', ବୃନ୍ଦାବନ ଦଣ୍ଡବତେଙ୍କର 'କୁଳ ବୃତ୍ତାନ୍ତ', ଏବଂ ମେରା ଅପନା ପଞ୍ଜେ' ଆଦି ପ୍ରମୁଖ । ମୁଁ ନୋଏଲ୍ କୋୱାର୍ଡଙ୍କର 'ବ୍ଲିଥ୍ ସ୍ପିରିଟ୍', ଗୋଗୋଲଙ୍କର 'ଇନ୍ସ୍ପେକ୍ଟର ଜେନେରାଲ୍, ଏବଂ ନେଇଲ୍ ସାଇମନ୍ଙ୍କର 'ଅଡ୍ କପଲ୍'କୁ ପ୍ରଥମେ ରୂପାନ୍ତରିତ କଲି ଓ ପରେ ନିର୍ଦ୍ଦେଶନା ଦେଲି । ଆମର ଥିଏଟର ପ୍ରତି ଆକର୍ଷଣକୁ ସହାୟକ ହେଲେ ଦଳେ ଚମତ୍କାର ଥିଏଟର୍ ପ୍ରେମୀ । ଯାହାଫଳରେ ଆମର ଏ କାର୍ଯ୍ୟ ବନ୍ଦ ନହେଇ ଚାଲିଲା ଅନବରତ । ମହାରାଷ୍ଟ୍ରର ଆନନ୍ଦଦାୟକ, ସରଳ, ଗ୍ରାମ୍ୟ, ଚମତ୍କାର ଲୋକନାଟ୍ୟ ରୂପ ତମାସାକୁ ଦିଲ୍ଲୀରେ ପରିଚିତ କରାଇବା ମୋର ସବୁଠାରୁ ବଡ଼ ସନ୍ତୋଷଜନକ ଅବଦାନ । ପ୍ରତିଭାଶାଳୀ ଦଳ ଗ୍ରାମ୍ୟ ଦର୍ଶକଙ୍କୁ ତାଙ୍କ ବାଦ୍ୟ, ସଙ୍ଗୀତ, ନୃତ୍ୟ, ପ୍ରତ୍ୟୁତ୍ପନ୍ନମତିତା ଏବଂ ଅମାର୍ଜିତ ହାସ୍ୟରସ ଦ୍ୱାରା ଆମୋଦିତ କଲେ । ତମାସାର କଳାକାରମାନଙ୍କ ମଧ୍ୟରୁ ଅଧିକାଂଶ ଅଶିକ୍ଷିତ ହୋଇଥିବାରୁ ତାଙ୍କର କୌଣସି ପକ୍କା ପାଣ୍ଡୁଲିପି ନ ଥାଏ । ସେମାନେ ଆନନ୍ଦରେ ଯୋଡ଼ାଯୋଡ଼ି କରିପାରନ୍ତି, ସାମାଜିକ ବ୍ୟଙ୍ଗ ଏବଂ ରାଜନୀତିକ ବିଷୟପ୍ରତି ଶାଣିତ ସମାଲୋଚନା ମଧ୍ୟ ସେଥିରେ ରହିଥାଏ ।

ମୁଁ ମଦ୍‌ଗୁଲ୍‌କରଙ୍କର 'ତୁ ବେଡ଼ା କୁମ୍ଭାର'ର ପଞ୍ଜାବୀ ରୂପାନ୍ତରଣ 'ଚକ୍କା ଚଲ୍ ଦାଏ'ର ମଧ୍ୟ ନିର୍ଦ୍ଦେଶନା ଦିଲ୍ଲୀରେ କରିଥିଲି । ଏ ଅନୁଭୂତି ଅତି ଅଦ୍‌ଭୁତ ଥିଲା । କାରଣ ମୁଁ ପଞ୍ଜାବୀ ଭାଷା ବୁଝିପାରେ କିନ୍ତୁ କହିପାରେନି, ଯାହା ଫଳରେ ସ୍ୱାଭାବିକ ଭାବରେ ମୋର କ୍ଷମତା ସୀମିତ ହେଇଯାଉଥିଲା । ନାଟକ ଅଭ୍ୟାସ ସମୟରେ ପ୍ରାୟତଃ ଏକ ସୂକ୍ଷ୍ମ ଉଚ୍ଚାରଣଗତ ପାର୍ଥକ୍ୟକୁ କେନ୍ଦ୍ରକରି ଅଭିନେତାମାନଙ୍କ ମଧ୍ୟରେ ବଡ଼ ଧରଣର ଝାମେଲା ହେଇଯାଉଥିଲା । ଶ୍ୟାମ ଆରୋରା, କୁଲଭୂଷଣ, ସୁଧା ଚୋପ୍ରା, କିମ୍‌ତି ଆନନ୍ଦ, ଖରାବନ୍ଦା, ଏବଂ ସୁଦେଶ ଶ୍ୟାଲ୍‌ଙ୍କପରି ମହାରଥୀମାନଙ୍କ ମଧ୍ୟରେ କେଉଁ ଉଚ୍ଚାରଣଟି ସଠିକ୍ ସେ ନେଇ ତର୍କବିତର୍କ ଆରମ୍ଭ ହେଇଯାଉଥିଲା ଓ ଯାହାଫଳରେ ଅଭ୍ୟାସ ବନ୍ଦ ରଖିବାକୁ ପଡୁଥିଲା । ଲୁଧିଆନା, ଅମୃତସର, ହୋଶିୟାର ପୁର, ଜଲନ୍ଧର ଏବଂ ପଟିଆଲା ସମସ୍ତେ ଉଚ୍ଚାରଣକୁ କେନ୍ଦ୍ରକରି ସତେଯେପରି ସତସତିକା ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେଇଯାଉଥିଲେ – ଆଉ ବିଚାରୀ ନିର୍ଦ୍ଦେଶିକା ମୂକପରି ଗୋଟେ କଣରେ ବସି ଅସହାୟଭାବରେ ଏ ତମାସା ଦେଖୁଥିଲେ ।

ବର୍ଷବର୍ଷ ଧରି ସକ୍ରିୟତାର ସହିତ କଠୋର ଭାବରେ ଥିଏଟର୍ ସହିତ ସଂଯୁକ୍ତ ରହିବାପରେ ମୁଁ ଅବଶେଷରେ ମରାଠୀ ରଙ୍ଗମଞ୍ଚର ବିଶୃଙ୍ଖଳତାରେ କ୍ଳାନ୍ତ ହେଇପଡ଼ିଥିଲି । ମୋ ରଚିତ ଅନ୍ୟ ଏକ ତାମସା 'ଧିମ୍ ତାକ୍'ର ନିର୍ଦ୍ଦେଶନାପରେ ମୁଁ ଏଥିରୁ ବିଦାୟ ନେବାପାଇଁ ସିଦ୍ଧାନ୍ତ ନେଲି । ମୋର ଚଳଚ୍ଚିତ୍ର ଜଗତସହିତ ସଂପୃକ୍ତ ଜୀବନ ଗମ୍ଭୀରତାର ସହିତ ଆରମ୍ଭ ହେଲା 'ସ୍ପର୍ଶ' ସିନେମାରୁ । (ଏଥି ପୂର୍ବରୁ ନିର୍ମିତ ବୃତ୍ତଚିତ୍ର, ଲଘୁ ଫିଚର, ଶିଶୁ ଚଳଚ୍ଚିତ୍ରକୁ ଗଣନାକୁ ନେଉନାହିଁ ।) ଯଦିଓ ଟେକନିକ୍ ଦୃଷ୍ଟିରୁ ମୋ ପୂର୍ବରୁ ମହିଳା ନିର୍ଦ୍ଦେଶିକା ଥିଲେ, ତେବେ ସେମାନଙ୍କର କୌଣସି ବିଶେଷ ବା ଉଲ୍ଲେଖଯୋଗ୍ୟ ପରିଚିତି ନ ଥିଲା । ହୁଏତ ସେମାନେ ଆଞ୍ଚଳିକ ସୀମାରେଖା ଅତିକ୍ରମ କରିପାରିନଥିଲେ ବା ସେମାନଙ୍କର ଉଦ୍ୟମ ଯଥେଷ୍ଟ ପ୍ରଭାବଶାଳୀ ନ ଥିଲା । 'ସ୍ପର୍ଶ' ତିନୋଟି ଜାତୀୟ ସ୍ତରୀୟ ଓ ତିନୋଟି ଫିଲ୍ମ ଫେଆର୍ ପୁରସ୍କାର ବିଜେତା ହେବାରୁ ଏହା ମୋ ପାଇଁ ଏକ ସଫଳ ପଦକ୍ଷେପଭାବେ ପରିଗଣିତ ହେଲା । ସୌଭାଗ୍ୟବଶତଃ ମୁଁ ସମସ୍ତଙ୍କ ଦୃଷ୍ଟିରେ ଭାରତର ପ୍ରଥମ ମହିଳା ନିର୍ଦ୍ଦେଶକଭାବରେ ପ୍ରସିଦ୍ଧି ଲାଭ କଲି । କିନ୍ତୁ ଅବଶୋଷର ବିଷୟ ଯେ ଆଜିପର୍ଯ୍ୟନ୍ତ ମୁଁ ମୋ ପଛରୁ ଏହି 'ମହିଳା' ଶବ୍ଦଟି ବାହାର କରିପାରିଲିନି । ପ୍ରାୟ କୋଡ଼ିଏ ବର୍ଷପରେ ଯେତେବେଳେ ଆମର ପ୍ରତିଦ୍ୱନ୍ଦ୍ୱୀ ମହିଳା ନିର୍ଦ୍ଦେଶକମାନଙ୍କର ଏକ ଦୀର୍ଘ ତାଲିକା ରହିଛି ଯେଉଁମାନେ ଗଭୀର ଆତ୍ମବିଶ୍ୱାସ ଓ ଉତ୍ସାହର ସହିତ ସିନେମା ନିର୍ଦ୍ଦେଶନା କରୁଛନ୍ତି ସେତେବେଳେ ବି ଜଣେ ମହିଳା ନିର୍ଦ୍ଦେଶକଭାବରେ କେଉଁ ମୁଖ୍ୟ ବାଧାବିଘ୍ନ ସମ୍ମୁଖୀନ ହୋଇଛନ୍ତି ବୋଲି ମତେ ପ୍ରଶ୍ନ ପଚରାଯାଉଛି । ଆଉ ସେମାନଙ୍କ ପାଇଁ ମୋର ଚିର ପ୍ରସ୍ତୁତ ଉତ୍ତର ହେଉଛି, ''ପ୍ରତ୍ୟେକ ସାକ୍ଷାତକାରରେ ଏହି ମୂଲ୍ୟହୀନ ପ୍ରଶ୍ନ ପଚରା ହେବା'' । 'ଚଶ୍‌ମେ ବଦ୍‌ଦୁର' ମୋର ଦ୍ୱିତୀୟ ଚଳଚିତ୍ର ଥିଲା ଯାହାକୁ କୌଣସି ପୁରସ୍କାର ମିଳିନଥିଲା । ତେବେ ଭାରତୀୟ ହାସ୍ୟ ସିନେମା କ୍ଷେତ୍ରରେ ଏହା ଏକ ଉଲ୍ଲେଖଯୋଗ୍ୟ କୃତି ଥିଲା ଓ ଏଇପରି ଏକ ଲଘୁ ସିନେମା ପାଇଁ ବକ୍ସ ଅଫିସରେ ଏତେ ସଫଳତା ପାଇବା ଇତିହାସ ସୃଷ୍ଟି କରିଥିଲା । ଏଥିରେ ଥିଲା ଯୁବ ସୁଲଭ ରସିକତା, ସତେଜତା, କୌତୁକ । ମୋ ମତରେ ଏହା ତା' ନିଜ ସ୍ତରରେ ଏକ ଅନନ୍ୟ ଫିଲ୍ମ ଥିଲା ।

ମୋର ପ୍ରଥମ ତିନୋଟି ଫିଲ୍ମ ଅନ୍ୟ ବ୍ୟାନ୍‌ରରେ ନିର୍ମିତ । ମୁଁ ସ୍ଥିର କରିଲି ଯେ ମୋର ଆଗାମୀ 'ଦିଶା' ଓ 'ପପିହା' ଫିଲ୍ମ ଦୁଇଟିପାଇଁ ମୁଁ ନିଜେ ନିର୍ମାତା ଓ ନିର୍ଦ୍ଦେଶକ ହେବି । ମୋର ଏପରି ଝୁଙ୍କ ନିର୍ବୋଧତା ଥିଲା । 'ଦିଶା'ର ନିର୍ମାଣ ଓ ନିର୍ଦ୍ଦେଶନା ମତେ ଖୁବ୍ ସନ୍ତୋଷ ଓ ପୂର୍ଣ୍ଣତା ଦେଇଛି । ଏହା ନିର୍ମାଣ କରିବାପାଇଁ ମତେ ଦୀର୍ଘତମ ସମୟ – ସତର ବର୍ଷ ଲାଗିଛି । ଓମ୍‌ପୁରୀ ପାଗଳ ପରଶୁରାମର ଭୂମିକାଟି ଚମତ୍କାର ଭାବରେ ଅତ୍ୟନ୍ତ ଦକ୍ଷତାର ସହ ଓ ଶବାନା ଆଜମୀ ତାଙ୍କ ସ୍ତ୍ରୀ ଭୂମିକାରେ ଆଉ ମୁଖ୍ୟ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ରଘୁବୀର ଯାଦବ ଓ ନାନା ପାଟେକର । ଆମେ ଲୋଓ୍ୱର ପାରେଲ୍‌ର ୪୦/୫୦ ଜଣ ମିଲ୍ ଶ୍ରମିକ ରହୁଥିବା ଡର୍ମିଟରୀରେ ସୁଟିଂ କରିଥିଲୁ । ନିର୍ଯ୍ୟାତିତ, ଶୋଷିତ

ଏଇ ମିଲ୍ ଶ୍ରମିକମାନଙ୍କର ଉତ୍ସାହର କିନ୍ତୁ ଅନ୍ତ ନ ଥିଲା । ଏ ଶ୍ରମିକମାନେ ଥିଲେ ସାହସର ପ୍ରତିମୂର୍ତ୍ତି । ମୋର ମନେ ଅଛି ଜଣେ ଶ୍ରମିକ ହସିହସି କହିଲା ଯେ ରାତିରେ ଶୋଇବାକୁ ତାକୁ ସେତିକି ଯାଗା ମିଳେ ଯେଉଁଥିରେ ସେ କଡ଼ ବି ଲେଉଟାଇ ପାରେନା । ମୁଁ ଏ ବାକ୍ୟଟିକୁ ସିନେମାରେ ବ୍ୟବହାର କରିଥିଲି ଓ ଏଥି ନିମନ୍ତେ ପ୍ରଶଂସିତ ହୋଇଥିଲି । ମୁଁ ପ୍ରକୃତରେ ବାସ୍ତବ ଜୀବନରୁ ଚୋରି କରୁଥିଲି ! 'ଦିଶା' ୧୯୯୧ରେ କାନ୍ସରେ ଆୟୋଜିତ କ୍ରିଟିକ୍ସ ଫେଷ୍ଟିଭାଲ୍‌ରେ ଦୁଇଟି ଚମତ୍କାର ପୁରସ୍କାର – ବେଷ୍ଟ ଜୁରୀ ଆୱାର୍ଡ ଓ ପିପୁଲ୍ସ ଚଏସ୍ ଆୱାର୍ଡ ପାଇଥିଲା । ପରେ ଏହି ସିନେମାଟି ବହୁ ଆନ୍ତର୍ଜାତିକ ଚଳଚ୍ଚିତ୍ର ଉତ୍ସବ – ଲଣ୍ଡନ, ମଣ୍ଟ୍ରିଅଲ୍, ସିଡ୍‌ନି, ଗେଟେନ୍‌ବର୍ଗ, ମିଲ୍ ଭ୍ୟାଲି, ତାଇୱାନ୍, ଫୁକୋକା, ନ୍ୟୁୟର୍କ କାଏରୋ, କାନ୍ସ, ଓକାୟାମା, ଗ୍ୱାଡେଲୁପ୍, ହୁଷ୍ଟନ୍, ଚେନ୍ନାଇ ଏବଂ ଦିଲ୍ଲୀରେ ଭାରତର ପ୍ରତିନିଧିତ୍ୱ କରିଛି । ତେବେ ମୋ ମନରେ ଏ କଥା ଦାଗ କାଟିଦେଲା ପରି ରହିଗଲା ଯେ ମୋ ନିଜ ଦେଶରେ 'ଦିଶା' ଜାତୀୟ ପୁରସ୍କାର ପାଇଁ ଉଦ୍ଦିଷ୍ଟ ଅନ୍ତିମ ପର୍ଯ୍ୟାୟର ବିଚାରକ ମଣ୍ଡଳୀଙ୍କ ସମ୍ମୁଖକୁ ଯିବାର ଯୋଗ୍ୟତା ହାସଲ କରିପାରିଲା ନାହିଁ !

'ପପିହା' ଗୋଟେ ରୋମାଣ୍ଟିକ୍ ପରିବେଶ ବିଷୟକ କାଳ୍ପନିକ ଗଳ୍ପ (ଫେବଲ) ଥିଲା । ଏହା ଜଣେ ବନ ଅଧିକାରୀ ଓ ଜଣେ ସମାଜ ନୃତତ୍ତ୍ୱବିଦ୍‌ଙ୍କ ମଧ୍ୟରେ ଘଟିଥିବା ପ୍ରେମ କାହାଣୀ, ଯେଉଁମାନେ ଆଦିବାସୀମାନଙ୍କ ଉପରେ ଗବେଷଣା କରୁଥିଲେ । ବମ୍ବେ ଚଳଚ୍ଚିତ୍ର ଉଦ୍ୟୋଗର ଦୁଇ ପ୍ରଚ୍ଛଦ ଗାୟିକା ଯିଏ କି ଦୁଇ ଭଉଣୀ – ତାଙ୍କ ଉପରେ ଆଧାରିତ ଥିଲା 'ସାଜ' ଚଳଚ୍ଚିତ୍ର । ଏହି ଚଳଚ୍ଚିତ୍ରକୁ କେନ୍ଦ୍ରକରି ବହୁ ବିବାଦ ସୃଷ୍ଟି ହେଇଥିଲା, କାରଣ ଏହା ବାସ୍ତବ ଜୀବନର ଖୁବ୍ ନିକଟବର୍ତ୍ତୀ ଥିଲା । ଶବାନା ଆଜମୀ ଓ ଅରୁଣା ଇରାନୀ ଦୁଇ ଭଉଣୀ ହେଇଥିଲେ ଓ ଚାରିଜଣ ସଙ୍ଗୀତ ନିର୍ଦ୍ଦେଶକ ଥିଲେ – ଆଉ ଚମତ୍କାର ଗୀତ ଥିଲା ଏଥିରେ । ଦୁର୍ଭାଗ୍ୟବଶତଃ ପ୍ଲସ ଚ୍ୟାନେଲ୍ ଯାହାପାଇଁ ଏ ସିନେମା ନିର୍ମିତ ହୋଇଥିଲା, ସେ ବାରମ୍ବାର ସମସ୍ୟା ପରେ ସମସ୍ୟାର ସମ୍ମୁଖୀନ ହୋଇ ଦେବାଳିଆ ହେଇଗଲା । ତେଣୁ 'ସାଜ' କେବଳ ଗୋଟିଏ ଟି.ଭି. ଚ୍ୟାନେଲର ପ୍ରଦର୍ଶନରେ ସୀମିତ ରହିଲା ।

ଗୋଟିଏ ପ୍ରଶ୍ନ ଲୋକଙ୍କ ତରଫରୁ ମୋ ପାଇଁ ଅନିବାର୍ଯ୍ୟ ଥିଲା । ମୁଁ କଳାତ୍ମକ ସିନେମା ନା ବ୍ୟବସାୟିକ ସିନେମା ସହିତ ସଂପର୍କିତ ! ମୋର ଉତ୍ତର – କୌଣସିଟି ନୁହଁ । କୌଣସି ବି ଲେବେଲ୍‌ର ଛାପକୁ ମୁଁ ଘୃଣା କରେ । ମତେ ଭାବିବାକୁ ଭଲଲାଗେ ଯେ ଏ ବିରାଟ କ୍ଷେତ୍ରରେ ମୁଁ ମୋ ନିଜ ପାଇଁ ଗୋଟିଏ ଛୋଟିଆ କୋଣ ତିଆରି କରିପାରିଛି ଯେଉଁଠି ମୁଁ ଆନନ୍ଦର ସହିତ କାମ କରୁଛି ।

ମୁଁ ମନୋରଞ୍ଜନକୁ ଗଭୀର ଭାବରେ ବିଶ୍ୱାସ କରେ । ମତେ ଲାଗେ ଯେ ଏହା ଶାଳୀନତା ଓ ଦର୍ଶକଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରି ନିର୍ମିତ ହେବା ଆବଶ୍ୟକ । କାରଣ ଏହା ଏକ ବ୍ୟୟବହୁଳ ମାଧ୍ୟମ ଏବଂ ଜନସାଧାରଣଙ୍କ ଅର୍ଥ ଏଥିରେ ବିନିଯୁକ୍ତ ହେଉଛି ।

ୟା ମାନେ ନୁହେଁ ଯେ ତୁମେ ସମ୍ବେଦନା ବିହୀନ ହୋଇଯିବ ବା ତଥାକଥିତ ସର୍ବସାଧାରଣଙ୍କୁ ଖୁସିକରିବାପାଇଁ ରକ୍ତ ଗରମ କରିବାପରି ହିଂସ୍ରତା ଅବଲମ୍ବନ କରି ଅମାର୍ଜିତ ଓ ଅଶ୍ଳୀଳ ସିନେମା ନିର୍ମାଣ କରିବ । ମୋର ଜନସାଧାରଣଙ୍କ ପ୍ରତି ଗଭୀର ଶ୍ରଦ୍ଧା ଅଛି ଏବଂ ମୁଁ ଜାଣେ ସେମାନେ ନୂତନ ସ୍ୱାଦକୁ ପ୍ରସାରିତ ବାହୁ ଓ ଉନ୍ମୁକ୍ତ ହୃଦୟରେ ସ୍ୱାଗତ କରନ୍ତି ।

ବର୍ତ୍ତମାନ ମୁଁ ପୁନର୍ବାର ଭାରତର ଶିଶୁ ଚଳଚ୍ଚିତ୍ର ସମାଜର ଅଧ୍ୟକ୍ଷ । ଭାରତର ଶିଶୁଙ୍କ ପାଇଁ ନୈତିକ ମୂଲ୍ୟବୋଧପୂର୍ଣ୍ଣ ଚଳଚ୍ଚିତ୍ର ନିର୍ମାଣ ଆମର ମୂଳ ଲକ୍ଷ୍ୟ । ଏ କାମ ଗୋଟିଏ ଆହ୍ୱାନ, ସମୟେ ସମୟେ ରୋମାଞ୍ଚକର ଓ ବେଳକେ ଭୀତିପ୍ରଦ ମନେହେଉଛି । ଭାରତୀୟ ପିଲାଙ୍କ ନିମନ୍ତେ ଚଳଚ୍ଚିତ୍ର ନିର୍ମାଣ ତ ଦୂରର କଥା ସେମାନଙ୍କର ପରିଚିତି ନିର୍ଦ୍ଧାରଣ ବି କଠିନ । ପ୍ରେକ୍ଷାଳୟ ଗୁଡ଼ିକରେ ଯେପରି ନିୟମିତଭାବରେ ସାଧାରଣ ଚଳଚ୍ଚିତ୍ର ପ୍ରଦର୍ଶିତ ହୁଏ ଶିଶୁ ଚଳଚ୍ଚିତ୍ରଗୁଡ଼ିକ ସେହିପରି ଦେଖାଯାଇପାରିବ ନାହିଁ । ପିଲାମାନେ ସ୍ୱାଧୀନ ଭାବରେ ଏ ବିଚାର କରିପାରିବେ ନାହିଁ । ତାଙ୍କର ସିନେମା ଯିବା ନଯିବା ବିଷୟ ସ୍କୁଲ କିମ୍ବା ପିତାମାତାଙ୍କ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ । ଆମେମାନେ ଗୋଟିଏ ଯୋଜନା ଆରମ୍ଭ କରିଛୁ ଯେଉଁଠି ପିଲାମାନେ ସପ୍ତାହରେ ଥରେ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନରେ ସିନେମା ଦେଖିପାରିବେ । ସୁତରାଂ ଆମର କେବଳ ପ୍ରତ୍ୟେକ ସହର ଓ ନଗରରେ ଗୋଟିଏ ଗୋଟିଏ ସିନେମା ହଲ୍ ଆବଶ୍ୟକ ଯିଏ ନିୟମିତ ଭାବେ ଆମ ସିନେମା, ସପ୍ତାହକୁ ଥରେ ଲେଖାଁ ପ୍ରଦର୍ଶିତ କରିବ । ଏ ସଂସ୍ଥାରେ ମୋର ଏହା ଦ୍ୱିତୀୟବାର କାର୍ଯ୍ୟକାଳ । ଜଣେ ଚଳଚ୍ଚିତ୍ର ନିର୍ମାତା ଭାବରେ ମୁଁ "ଭାଗୋ ଭୂତ" ବୋଲି ଗୋଟିଏ ଶିଶୁ ଚଳଚ୍ଚିତ୍ର ନିର୍ମାଣ କଲି । ଏଥିରେ ଗାଁର କେତେକ ମଜାଦାର ପିଲା ଓ ଅପ୍ରତିଦ୍ୱନ୍ଦ୍ୱୀ ମାଲୟଲୀ ଅଭିନେତା ନେଦୁମୁଦୀ ବେଣୁ ଅଭିନୟ କରିଥିଲେ । ଏହା ହିଁ ବର୍ତ୍ତମାନ ପର୍ଯ୍ୟନ୍ତ ମୋର ବୃତ୍ତି-ଜୀବନର କାହାଣୀ । ଆଉ ବର୍ତ୍ତମାନ ପାଇଁ, ବହୁତ ଯୋଜନା ମୁଣ୍ଡ ଭିତରେ କାମ କରୁଛି – ଗୋଟେ ରହସ୍ୟଜନକ ହତ୍ୟାକୈନ୍ଦ୍ରିକ ସିନେମା – ଖୁନ୍ ତୋ ହୋନା ହି ଥା, ଆଉ ଗୋଟିଏ ଦୂରଦର୍ଶନ ନିମିତ୍ତ ଧାରାବାହିକ – ହମ୍ ଦୋ ହମାରେ ସୌ ଏବଂ ଆଉ ଗୋଟେ ନାଟକ ବର୍ତ୍ତମାନ ଲେଖା ଚାଲିଛି ।

ମୁଁ ଭାବୁଛି ମୋର ବ୍ୟକ୍ତିଗତ ଜୀବନର କିଛି କଥା କୁହାଯାଇପାରେ । ମୁଁ ସବୁବେଳେ କିଛିନା କିଛି ରଚନା, ନିର୍ଦ୍ଦେଶନା ଅଥବା ଥିଏଟର୍, ଦୂର ଦର୍ଶନ ବା ସିନେମା ନିର୍ମାଣ ସହିତ ଗଭୀର ଭାବରେ ମଗ୍ନ ରହିଛି । ପରିଣାମ ସ୍ୱରୂପ ମୋ ବ୍ୟକ୍ତିଗତ ଜୀବନ ଏବଂ ବୃତ୍ତିଗତ ଜୀବନ ପୃଥକ ହୋଇ ରହିଲା ନାହିଁ, ଓତଃପ୍ରୋତଭାବେ ଜଡ଼ିତ ହେଇପଡ଼ିଲା । ପଛକୁ ଫେରିଚାହିଁଲେ ମୁଁ ଦୁଃଖର ସହିତ ଉପଲବ୍ଧି କରିପାରେ ଯେ ଜଣେ ଉତ୍ତମ ପତ୍ନୀ ବା ମା ହେବାପାଇଁ ମୁଁ ସମୟ ବାହାର କରିପାରିଲି ନାହିଁ । ଅରୁଣ ଓ ମୋ ମଧ୍ୟରେ ଗଭୀର ଅନ୍ତରଙ୍ଗତା ଓ ଶ୍ରଦ୍ଧା ସତ୍ତ୍ୱେ କେଜାଣି କେମିତି ଆମ ବୈବାହିକ ଜୀବନରେ ଫାଟ ସୃଷ୍ଟିହେଲା । ଆମେ ବନ୍ଧୁତ୍ୱପୂର୍ଣ୍ଣ ଭାବରେ ପୃଥକ ରହିବାକୁ – ଆଉ ଚିରଦିନ ପରସ୍ପର ମଧ୍ୟରେ ବନ୍ଧୁତା

ଦୃଢ଼ ରଖିବୁ ବୋଲି ସିଦ୍ଧାନ୍ତ ନେଲୁ । ଆମେ ଅଲଗା ହୋଇଯିବାପରେ ମଧ୍ୟ ପିଲାମାନଙ୍କ ସହିତ ଏକତ୍ର ଅନେକ କାମ ଯେପରି ନାଟକ ଦେଖିବାକୁ ଯିବା, ରେଷ୍ଟୁରାଣ୍ଟ, ବାଦ୍ୟ ସମାରୋହ ଆଦି ଯାଉଥିଲୁ । ଏହା ଦେଖି ଲୋକମାନଙ୍କର ଆଶ୍ଚର୍ଯ୍ୟର ସୀମା ରହୁନଥିଲା । ଅରୁଣଙ୍କର ଥଟ୍ଟାମଜା କରିବାର ଆଶ୍ଚର୍ଯ୍ୟଜନକ କ୍ଷମତା ଥିଲା । ଗୋଟେ ଘଟଣା ଏଠି ବର୍ଣ୍ଣନା କରିବାର ଲୋଭ ମୁଁ ସମ୍ବରଣ କରିପାରୁନି । ଥରେ ଦିଲ୍ଲୀରେ ଗୋଟେ ସଂଭ୍ରାନ୍ତ ପାର୍ଟିରେ ମଦ୍ୟ ବିତରଣ ହେବା ସଙ୍ଗେ ସଙ୍ଗେ ମୋ ହାତରୁ ଗ୍ଲାସ ପଡ଼ି ଭାଙ୍ଗିଗଲା । ଗ୍ଲାସ କ୍ରିଷ୍ଟାଲ୍‌ର ଥିଲା । ଆତିଥ୍ୟ ଦେଉଥିବା ବ୍ୟକ୍ତିଗଣ ଖୁବ୍ ଉଦାର ଓ ଶାଳୀନ ଥିଲେ । ତେଣୁ ମତେ ସ୍ୱାଭାବିକ ରଖିବାପାଇଁ ଅନୁକୂଳ କଥାସବୁ କହିଲେ । ମୋର ଦ୍ୱିତୀୟ ପାନୀୟଟି ମୋ ଶାଢ଼ୀରେ ଢାଳି ହେଇଗଲା । ଅରୁଣ ମୋ ପାଇଁ ତୃତୀୟ ଥର (ଯେଉଁଥିପାଇଁ ମୁଁ ଅଯୋଗ୍ୟ) ପାନୀୟ ଆଣିବାକୁ ଯାଇ ସେଇ ବାର୍‌ରୁ ଉଚ୍ଚ କଣ୍ଠରେ ପଚାରିଲେ, "ସାଇ, ଏଥର ପାନୀୟଟି କେମିତି ଢାଳିବାକୁ ଚାହୁଁଛ – ସୋଡ଼ା ନା ପାଣି ସହିତ ?" ୧୯୯୦ ମସିହାରେ ଅରୁଣ ଶାନ୍ତିପୂର୍ବକ ପରଲୋକ ଚାଲିଗଲେ ଯଦିଓ ଖୁବ୍ କମ୍ ବୟସରେ ।

ଓ୍ୱିନୀ (ଅଶ୍ୱିନୀ) ଏବଂ ଗୌତମ ମୋର ଦୁଇଟି ସନ୍ତାନ । ବିଶେଷ କରି ହାସ୍ୟମୂଳକ ବିଷୟ ପାଇଁ ଓ୍ୱିନି ଜଣେ ଭଲ ଅଭିନେତ୍ରୀ । ସେ କେତେଗୁଡ଼ିଏ ଦୂରଦର୍ଶନର ଧାରାବାହିକରେ ଚମତ୍କାର ଅଭିନୟ କରିବା ସହିତ ମୋ ସିନେମା 'ପପିହା'ରେ ମୁଖ୍ୟ ଭୂମିକାରେ ଅଭିନୟ କରିଛି । ସେ ତା'ର କ୍ୟାରିଅର୍ ପ୍ରତି କେବେ ବି ବ୍ୟାକୁଳ ନ ଥିଲା । ଯାହେଉ ବର୍ତ୍ତମାନ ସେ ତା'ର ଯଥାର୍ଥ ଭୂମିକାଟି ପାଇଛି – ବାସ୍ତବ ଜୀବନରେ ଗୃହିଣୀ ଓ ଜନନୀର । ସେ ଜଣେ ପ୍ରତିଭାବାନ୍ ଓକିଲ ଅଭୟଙ୍କ ସହିତ ଖୁବ୍ ସୁଖୀ ବୈବାହିକ ଜୀବନ ଅତିବାହିତ କରୁଛି ।

ମୁଁ ବ୍ୟକ୍ତିଗତଭାବରେ ଏକାକୀତ୍ୱ ପ୍ରିୟ, ବନ୍ଧୁ ବା ମିତ୍ରତା ମୁଁ ବହୁତ ଭାବି ଚିନ୍ତି କରେଁ । ମୋ ମା ସବୁବେଳେ କହୁଥିଲେ, "ନିଜ ସହିତ ବନ୍ଧୁତା କରି ଶିଖ ଆଉ ମୁଁ ଠିକ୍ ସେଇଆ ହିଁ କରେ । ତନ୍ମୟ କରିଲାଭଳି ବହି ଗୋଟେ, ଆକୃଷ୍ଟ କଲାଭଳି ଟି.ଭି.ର କାର୍ଯ୍ୟକ୍ରମ,କୋଳରେ ବିଲେଇଟିଏ... ବାସ୍ ମୁଁ ଆଉ ଗୋଟିଏ ଭିନ୍ନ ଜଗତରେ ହଜିଯାଏ । ମୁଁ ପଶୁଙ୍କୁ ଭଲପାଏଁ – ବିଶେଷକରି ବିଲେଇକୁ । ସେମାନେ ଉତ୍କୃଷ୍ଟତର ପ୍ରାଣୀ, ମୋର ମନେପଡୁନାହିଁ କେବେବି ମୋ ଘର ବିଲେଇ ରହିତ ରହିଛି ବୋଲି । ମୁଁ ଅଜ୍ଞେୟବାଦୀ, ଧର୍ମଉପରୁ ଦିନକୁଦିନ ମୋର ଆସ୍ଥା ତୁଟିଯାଉଛି । ଇତିହାସରୁ ଆମେ କିଛି ଶିକ୍ଷା ପାଇଲେ ନାହିଁ । ଧର୍ମ ନାମରେ ଏବେ ବି ଆମେ ଘୃଣା ଓ ହତ୍ୟା କରି ଚାଲିଛୁ, ଧର୍ମ ମାନବଜାତିକୁ 'ଆମେ' ଓ 'ସେମାନେ'ରେ ବିଭକ୍ତ କରିଛି । ମୋ ବିଚାରରେ କୌଣସି ନିରକ୍ଷର ବୟସ୍କ ବ୍ୟକ୍ତିକୁ ଅକ୍ଷର ଲେଖି ଶିଖାଇବା ବା ଅନ୍ଧକୁ ଖବର କାଗଜ ପଢ଼ି ଶୁଣାଇବାପରି ପୁଣ୍ୟକାର୍ଯ୍ୟ ବା ପ୍ରଭାବଶାଳୀ ପୂଜା ଆଉ କିଛି ନାହିଁ । ଏ ଦେଶ ମସ୍‌ଜିଦ୍, ଗୁରୁଦ୍ୱାରା ବା ମନ୍ଦିର ଅପେକ୍ଷା ଅଧିକରୁ ଅଧିକ ଚିକିତ୍ସାଳୟ, ଆଶ୍ରୟସ୍ଥଳ, ଉଦ୍ୟାନ ଏବଂ ଖେଳପଡ଼ିଆ ଦରକାର କରେ । ବିଦ୍ୟାଳୟକୁ ଶିକ୍ଷାର ମନ୍ଦିର ବୋଲି ବିବେଚନା କରାଯାଏ ନାହିଁ କି ?

ଏହି ଚିନ୍ତା ଏମିତି ଚାଲିଥିବ... ଚାଲିଥିବ । ମୁଁ ପରିବର୍ତ୍ତନ ପାଇଁ କ୍ୟାମେରାକୁ ମୋ ଆଡ଼କୁ ମୁହେଁଇ ଦେଇଥିଲି ଓ ଚିନ୍ତା ରାଜ୍ୟର ଦ୍ୱାର ଉନ୍ମୁକ୍ତ କରିଦେଇଥିଲି । ପ୍ରଖର ସ୍ରୋତ ପ୍ରବଳ ବେଗରେ ପ୍ରବାହିତ ହେଉଛି । ସେଥିରେ ମୁଁ ଭାସିଯିବାର ଆଶଙ୍କା ରହିଛି । ସମ୍ଭବତଃ ଏଇଟା ହିଁ ନିଜକୁ ପ୍ରତିରୋଧ କରିବାର ସଠିକ ମୁହୂର୍ତ୍ତ । ଆମ ସିନେମା ଭାଷାରେ ଯାହାକୁ କହନ୍ତି 'ପ୍ୟାକ୍ ଅପ୍' (କାର୍ଯ୍ୟ-ବିରତି) ।

ଇନ୍ଦିରା ଜୟସିଂହ (ଜନ୍ମ ୧୯୪୦) ପ୍ରଥମ ମହିଳା ଯାହାଙ୍କୁ ୧୯୮୬ରେ ବମ୍ବେ ହାଇକୋର୍ଟ ସିନିଅର୍ ଆଡ୍‌ଭୋକେଟ୍ ପଦରେ ନିଯୁକ୍ତ କରିଥିଲେ । ତାଙ୍କର ଓକିଲାତି ବୃତ୍ତିର ଆରମ୍ଭରୁ ହିଁ ସେ ମାନବ ଅଧିକାର, ମହିଳା ଅଧିକାର, ଗରିବ ଓ ଶ୍ରମିକ ଶ୍ରେଣୀର ସୁରକ୍ଷା ଅଧିକାର ଉପରେ ଦୃଷ୍ଟି ନିବଦ୍ଧ କରିଥିଲେ । ମହିଳାମାନଙ୍କ ପ୍ରତି ବୈଷମ୍ୟ ଓ ସଂପର୍କିତ ମେରୀ ରଏ ମାମଲା, ରୂପନ ଦେଓଲ ବଜାଜ ଉପରେ ହୋଇଥିବା ଲୈଙ୍ଗିକ ଅତ୍ୟାଚାର ମାମଲା, ହିନ୍ଦୁ ନିୟମ ଅନୁସାରେ ଅଭିଭାବକତ୍ୱ ନେଇ ଗୀତା ହରିହରନ୍ ଓ ବନ୍ଦନା ଶିବଙ୍କ ମାମଲାପରି ଅନେକ ଗୁରୁତ୍ୱପୂର୍ଣ୍ଣ କେଶ୍‌ରେ ସେ ବହୁ ଦକ୍ଷତାର ସହିତ ଲଢ଼ିଛନ୍ତି । ସେ ମଧ୍ୟ ଭାରତର ସୁପ୍ରିମକୋର୍ଟରେ ଆମେରିକୀୟ ବହୁରାଷ୍ଟ୍ରୀୟ କମ୍ପାନୀ, ୟୁନିୟନ୍ କାର୍ବାଇଡ୍ କର୍ପୋରେସନ୍ ବିରୁଦ୍ଧରେ ଭୋପାଳ ଗ୍ୟାସ ଦୁର୍ଘଟଣାଗ୍ରସ୍ତ ଲୋକମାନଙ୍କର କ୍ଷତିପୂରଣ ପାଇଁ ପ୍ରତିନିଧିତ୍ୱ କରିଥିଲେ ।

ଇନ୍ଦିରା ଜୟସିଂହ ବମ୍ବେର ଫୁଟ୍‌ପାଥିରେ ବସବାସ କରୁଥିବା ଗୃହହୀନଙ୍କ ପାଇଁ ମାମଲା ଲଢ଼ିଛନ୍ତି । ସେ ମଧ୍ୟ ଗୃହହୀନମାନଙ୍କର ବାସଗୃହ ଅଧିକାର ପ୍ରଚାରରେ ଅଂଶ ଗ୍ରହଣ କରିଥିଲେ । ସେ ବହୁ ପିପୁଲ୍‌ସ କମିଶନ ସହିତ ସଂଯୁକ୍ତ । ପଞ୍ଜାବରେ ୧୯୭୯–୧୯୯୦ ମଧ୍ୟରେ ଘଟିଥିବା ନ୍ୟାୟାଳୟ ବହିର୍ଭୂତ ହତ୍ୟା, ନିରୁଦ୍ଦିଷ୍ଟ ହୋଇଥିବା, ଗଣ ସଂସ୍କାର ହୋଇଥିବା ବ୍ୟକ୍ତିମାନଙ୍କର ଅନୁସନ୍ଧାନରେ ସହାୟକଭାବେ ପଞ୍ଜାବର ହିଂସାକାଣ୍ଡ ଉପରେ ଗଠିତ ପିପୁଲ୍‌ସ କମିଶନ୍‌ରେ ସଂପ୍ରତି କାର୍ଯ୍ୟରତ ।

ଇନ୍ଦିରା ଜୟସିଂହ 'ଦ ଲୟର୍ସ କଲେକ୍ଟିଭ'ର ପ୍ରତିଷ୍ଠାତା ସଂପାଦକ, ଏ ସଙ୍ଗଠନର ଓକିଲ ଏବଂ ଆଇନ୍ ଛାତ୍ରମାନେ ଶୋଷଣ ଶିକାର ହୋଇଥିବା ବ୍ୟକ୍ତିମାନଙ୍କର ଅପୂର୍ଣ୍ଣ ପ୍ରୟୋଜନୀୟ ବିଷୟର ପରିପୂରଣ ନିମନ୍ତେ ସେବାରତ । ସଂପ୍ରତି ସେ 'ଲୟର୍ସ କଲେକ୍ଟିଭ ଉମେନ୍‌ସ ରାଇଟ୍‌ସ ଇନିସିଏଟିଭ୍'ର ନିର୍ଦ୍ଦେଶିକା । ଏ ସଂଗଠନ ମହିଳାଙ୍କ ପ୍ରତି ହେଉଥିବା ହିଂସ୍ର ଆଚରଣ ଦୂର କରିବାରେ ଏବଂ ଘରୋଇ ହିଂସାଉପରେ ସିଭିଲ୍ ଲ ପ୍ରସ୍ତୁତିରେ ନିୟୋଜିତ ।

ଭ୍ରଷ୍ଟାଚାର ବିରୁଦ୍ଧରେ ସଂଗ୍ରାମ ଏବଂ ସମାଜର ଦୁର୍ବଳ ଶ୍ରେଣୀ ନିମିତ୍ତ ସ୍ୱର ଉତ୍ତୋଳନ କରି ସେ ଯେଉଁ ଦେଶ ସେବା କରିଛନ୍ତି ତା'ର ସ୍ୱୀକୃତି ସ୍ୱରୂପ ୧୯୯୮ରେ ତାଙ୍କୁ ରୋଟାରୀ ମାନବ ସେବା ପୁରସ୍କାରରେ ସମ୍ମାନିତ କରାଯାଇଛି ।

୮

# ଗଣତାନ୍ତ୍ରିକ ଓକିଲାତି

## ଇନ୍ଦିରା ଜୟସିଂହ

ମୁଁ ପ୍ରାୟତଃ ଏ ପ୍ରଶ୍ନର ସମ୍ମୁଖୀନ ହୁଏ : ଆପଣ ଆଜି ଯାହା ହୋଇଛନ୍ତି ତାହା କିପରି ହେଲେ ? ଗୋଟେ ପୁରୁଷ ଆଧିପତ୍ୟ ଥିବା କ୍ଷେତ୍ରରେ ଆପଣ କିପରି ନିଜକୁ ପ୍ରତିଷ୍ଠା କଲେ, ସାମାଜିକ ନ୍ୟାୟ ବିଷୟକ କ୍ଷେତ୍ରରେ ଆପଣ କିପରି ପ୍ରବେଶ କଲେ ? ପ୍ରକୃତରେ ମୁଁ ନିଜେ ଜାଣେନା – ସମ୍ଭବତଃ ଏ ପ୍ରଶ୍ନର ଯଥାର୍ଥ ଉତ୍ତର ନାହିଁ ବା ହୁଏତ ସବୁ ଉତ୍ତର ଜଣକର ଅତୀତ ଉପରେ ନିର୍ଭରଶୀଳ । ସ୍ଥାନାନ୍ତରୀକରଣର କିଛି ସ୍ମୃତି ସର୍ବଦା ମୋ ଭିତରେ ଅଭୁଲାହୋଇ ରହିଛି ଯେଉଁଥିପାଇଁ ମୁଁ ଆଇନ୍‌ର ସକ୍ରିୟ, ଆକର୍ଷଣୀୟ ଜଗତରେ ପାଦ ଦେଲି । ଆମେ ସିନ୍ଧ୍‌ବାସୀ ଥିଲୁ, ୧୯୪୭ର ଦେଶ ବିଭାଜନ ବା ସେଇ ପାଖାପାଖି ସମୟରେ ଭାରତକୁ ଚାଲି ଆସିଥିଲୁ । ମୋ ସ୍ମୃତିରେ ପାକିସ୍ଥାନରେ ଥିବା ପିତାମହଙ୍କ ଘର ଏବେ ବି ଜୀବିତ ଏବଂ ମୋ ଶୈଶବର ଘରଭାବରେ ମୁଁ ତାକୁ ହିଁ ମନେ ପକାଏ । ଦେଶ ବିଭାଜନର ଭୟାବହତା ମୋ ସ୍ମୃତିରୁ ପୋଛି ହୋଇଯାଇଛି କିନ୍ତୁ ପୂର୍ବପୁରୁଷଙ୍କ ଘରପ୍ରତି ମୋହ ଯାଇନାହିଁ । ବେଳେବେଳେ ମୁଁ ଚିନ୍ତିତ ହୋଇଯାଏଁ ଯେ ଅତୀତ ପ୍ରତି ମୋର ଏ ଆସକ୍ତି ପଳାୟନବାଦର ଏକ ଭିନ୍ନ ରୂପ ନୁହେଁ ତ, ନା ସତରେ ଅତୀତ ସହିତ ଏହା ମୋର ପ୍ରକୃତ ସଂପର୍କ ! ଦୀର୍ଘବର୍ଷପରେ ମୁଁ ପାକିସ୍ଥାନ ଯାତ୍ରା କଲି । ମୋ ପରିବାରର ମୁଁ ହିଁ ଏକମାତ୍ର ବ୍ୟକ୍ତି ଯିଏ ଏ ପଦକ୍ଷେପ ନେଲା ଏବଂ ଆମ ପରିବାରର କୌଣସି ବୟସ୍କ ବ୍ୟକ୍ତିଙ୍କର ବି ଏ ଇଚ୍ଛା ହୋଇନଥିଲା । ମୋର ଏବେ ବି ସେ ବିସ୍ମିତ ଭାବ ମନେପଡ଼େ ଯାହା ସରକାରୀ କାର୍ଯ୍ୟାଳୟର ଲୋକେ, ଭିସା ଅଫିସର, ପୋଲିସ୍ ଅଫିସର୍ ପରସ୍ପର ମଧ୍ୟରେ ଓ ମୋ ସହିତ ସିନ୍ଧିଭାଷାରେ କଥା କହିବା ବେଳେ ମୁଁ ଅନୁଭବ କରିଥିଲି । ପ୍ରଥମ ଥର ପାଇଁ ଜୀବନରେ ଉପଲବ୍ଧି କଲି ଯେ ମୋ ମାତୃଭାଷା ବିଶ୍ୱର କୌଣସି ଏକ ଅଞ୍ଚଳରେ ଏକ ପ୍ରମୁଖ ସଂପ୍ରଦାୟ ଦ୍ୱାରା ମଧ୍ୟ କଥିତ ହୁଏ । ଶୈଶବରୁ ମୁଁ ଜାଣିଛି ଯେ ଭାଷା ଭିତ୍ତିରେ ଏ ଦେଶରେ ରାଜ୍ୟ ବିଭାଜନ ଘଟିଛି, ଆଉ ମୁଁ ଯେଉଁ ଭାଷା କହେ ତା'ର କୌଣସି ରାଜ୍ୟ ନାହିଁ । ଏଣୁ ମୁଁ ରାଜ୍ୟହୀନ ଅନୁଭବ କରେ । ସ୍କୁଲ ଦିନରୁ ଏ ଅନୁଭବ ମୋ ଭିତରେ ରହିଆସିଛି । ବର୍ତ୍ତମାନ ମୁଁ ଏମିତି ଭାବିବାକୁ ଚେଷ୍ଟା କରେ ଯେ ଅନ୍ୟଦିଗରୁ

ଏହା ମତେ ଏକ ପ୍ରକାରର ଅପରିସୀମ ସ୍ୱାଧୀନତା ଦେଇଛି – ଗତିଶୀଳତା ଓ ପରିଚିତିର ସ୍ୱାଧୀନତା, ଯେଉଁ ପରିଚିତି ମୁଁ ମୋ ନିଜ ପାଇଁ ତିଆରି କରିଛି । ମୁଁ ଜାଣେ ଆମ ନିଜ ପରିବାରରେ ମୋ ପରବର୍ତ୍ତୀ ବଂଶଧର ଠିକ୍ ଏମିତି ଅନୁଭବ କରନ୍ତିନି କି ସେଇ ସମାନ ସ୍ମୃତି ତାଙ୍କୁ ଜାବୁଡ଼ି ଧରିନାହିଁ । ସମ୍ଭବତଃ ମୁଁ ମଧ୍ୟରାତ୍ରିର ସନ୍ତାନ (midnight's children) ଭାବରେ ଉତ୍ତରାଧିକାର ସୂତ୍ରରେ ଏହାକୁ ପାଇଥିଲି । ମୋଟା ମୋଟି ଭାବେ ମୋ ଶୈଶବ ବୈଚିତ୍ର୍ୟହୀନ ଥିଲା । ଗୋଟିଏ ବ୍ୟବସାୟିକ ପରିବାରରେ ଜନ୍ମଗ୍ରହଣ କରିଥିବାରୁ କରାଚୀ ବନ୍ଦରରୁ ବମ୍ବେ ବନ୍ଦର ଯାତ୍ରା କରିବାରେ ଅଭ୍ୟସ୍ତ ଥିଲି ।

ସିନ୍ଧୀ ପରିବାରର ସମସ୍ତ ଝିଅଙ୍କ ସଦୃଶ ମୋର ବି କମ୍ ବୟସରୁ ବିବାହ କରି, ପିଲା ଜନ୍ମ କରିବା ଓ ସଂସାର କରିବା କଥା । ମୁଁ ୟା ଭିତରୁ କୌଣସିଟି ବି କଲିନାହିଁ । (ମୁଁ ବହୁତ ପରେ ବାହାହେଲି । ଯେତେବେଳେ ମୋ ବୃତ୍ତି ନିମନ୍ତେ ମୁଁ ଏକ ନିର୍ଦ୍ଦିଷ୍ଟ ସୀମାପର୍ଯ୍ୟନ୍ତ ସ୍ୱାଧୀନତା ଓ ସ୍ୱାୟତ୍ତତା ହାସଲ କରିପାରିଛି ବୋଲି ଅନୁଭବ କଲି ।) ମୋ ବାପାମା ମୋ ବାହାଘର କଥା ଉଠେଇବା ସହିତ ଯୌତୁକ ବିଷୟ ଉଠିଲା । ମୋର ସ୍ପଷ୍ଟଭାବରେ ମନେ ଅଛି ମୋର ଭାବୀ ଶାଶୁଶ୍ୱଶୁର ମୋ ବାପା ମାଙ୍କ ସହିତ କିପରି ଯୌତୁକ ସୌଦା କରିଥିଲେ । ମୁଁ ଡରିଯାଇଥିଲି । ଆମେ ଯୌଥ ପରିବାରରେ ରହୁଥିଲୁ । ମୁଁ ମୋର ସଂପର୍କୀୟ ଭଉଣୀମାନଙ୍କୁ ଯୌତୁକ ମୂଲଚାଲ ପରେ ବାହାହେବାର ଦେଖିଥିଲି । ଆଉ ତା'ପରେ ପରିଣାମ ସ୍ୱରୂପ ସେଇ ପରିବାରଗୁଡ଼ିକରେ ଚିରନ୍ତନ ବାଦବିବାଦର ସୂତ୍ରପାତ ହୁଏ । ଯୌତୁକ ପ୍ରଥା ସିନ୍ଧି ସଂପ୍ରଦାୟରେ ଏତେ ଦୃଢ଼ ଯେ କେହି ଏ ବିଷୟରେ ମୁଣ୍ଡ ଖେଳାନ୍ତି ନାହିଁ । ମୋ ପିତାମାତା ମଧ୍ୟ ଏହାକୁ ସ୍ୱାଭାବିକ ଭାବରେ ଗ୍ରହଣ କରି ବାହାଘର ପ୍ରସ୍ତାବ ସ୍ଥିର କରିବାପାଇଁ ଏହାର ଯଥାର୍ଥତା ବିଷୟରେ ମତେ ବି ବୁଝେଇଥିଲେ । ସିନ୍ଧ୍‌ରେ ଏ କୁପ୍ରଥା ଏତେ ବେଶି ପ୍ରଚଳିତ ଯେ ୧୯୬୧ରେ ଯୌତୁକ ବିରୋଧୀ ନିୟମ ପ୍ରଣୟନ ହେବାର ଯଥେଷ୍ଟ ପୂର୍ବରୁ ସିନ୍ଧ୍‌ରେ ନିଜସ୍ୱ ଏକ ଯୌତୁକ ବିରୋଧୀ ନିୟମ ଥିଲା । ମନେହୁଏ ଏ ସଂପ୍ରଦାୟ ଦେଶ ବିଭାଜନ ପରେ ତା'ସହିତ ତାଙ୍କର ସବୁଠାରୁ ପଶ୍ଚାତଗାମୀ ପରମ୍ପରାକୁ ବୋହି ଆଣିଛନ୍ତି । ମୁଁ କିନ୍ତୁ ଜାଣିଥିଲି ଏ ପ୍ରକାର ଜୀବନ ମୋ ପାଇଁ ନୁହେଁ ।

ବିବାହ ବଜାରରେ ପଣ୍ୟ ସାମଗ୍ରୀ ହେବାକୁ ନାହିଁ କରିଦେବା ପରେ ଏହା ମତେ ମୋର ନିଜସ୍ୱ ମୂଲ୍ୟ ପ୍ରତି ସଚେତନ କରିଛି । କମ୍ ବୟସରେ ବିବାହ କରିବା, ପିଲା ଜନ୍ମ କରିବା ପରିବର୍ତ୍ତେ ମୋର ଅଭିଳାଷ ଥିଲା ମୁଁ ନିଜେ କାମ କରି ମୋ ନିଜର ଜୀବିକା ନିର୍ବାହ କରିବି । ମୁଁ ସେଇ ପଥରେ ଆଗେଇଲି ଏବଂ ଓକିଲ ବୃତ୍ତି ବାଛିନେଲି । ଆମ ପରିବାରରେ କେହି ଜଣେ ହେଲେ ବି ଓକିଲ ନଥିବାରୁ ପୁନର୍ବାର ମତେ ନିଜକୁ ଆବିଷ୍କାର କରିବାର ସ୍ୱାଧୀନତା ଓ ସାମର୍ଥ୍ୟ ମିଳିଲା । ମୁଁ ଦୃଢ଼ଭାବରେ ବିଶ୍ୱାସ କରେ ଯେ ମୋ ସଫଳତାର ଏକ ବିରାଟ ଅଂଶ ଏଇ ସତ୍ୟ-ତଥ୍ୟ ଉପରେ ନିର୍ଭରଶୀଳ । ଆମ ପରିବାରରେ କେହି ଜଣେ ହେଲେ ଓକିଲାତି କରୁନଥିଲେ ଯାହା ଫଳରେ ମୁଁ ମୋ ନିଜ ପାଇଁ ପରିବାରରୁ

ଜଣେ ଆଦର୍ଶର ବ୍ୟକ୍ତି ବାଛି ପାରିବି । ଦୁର୍ଭାଗ୍ୟ ଯେ ମୁଁ କାହାକୁ ବି ପାଇଲି ନାହିଁ । ମତେ ମୋ ନିଜ ପାଇଁ ଉଦ୍ଭାବନ କରିବାକୁ ପଡ଼ିଲା । ଆମେ ବିଂଶ ଓ ଏକବିଂଶ ଶତାବ୍ଦୀରେ ଜୀବନ ଅତିବାହିତ କରୁଛେ । ତିନି ପୁରୁଷ ଧରି କେତେ ପରିବାରର ଲୋକେ ଓକିଲାତି କରିଥିବାର ମୁଁ ଦେଖିଛି ବାପଠୁଁ ପୁଅ, ପୁଅଠୁଁ ନାତି – କିନ୍ତୁ କେବେ ଦେଖିନି – ମାଠୁଁ ଝିଅ (କିମ୍ବା ବାପଠୁଁ ଝିଅ) ଝିଅଠୁଁ ନାତୁଣୀ । ମୁଁ ଓକିଲାତି ବୃତ୍ତିକୁ ପାରିବାରିକ ବ୍ୟବସାୟରେ ରୂପାନ୍ତରିତ ହେବାର ଦେଖିଛି, ଏତିକି ନୁହେଁ ମୁଁ ସେଇ ଗୋଟେ ପରିବାର ଲୋକମାନଙ୍କୁ ଅର୍ଥାତ୍ ବାପା ପରେ ପୁଅକୁ ବିଚାରପତି ହେବାର ବି ଦେଖିଛି । ଏଟା ତ ମୋଟାମୋଟି ବିଚାରପତିଙ୍କର ଅଫିସ ନ ହେଇ ବଂଶ ପର୍ଯ୍ୟାୟକ୍ରମେ ଗୋଟିଏ ପରିବାରର ଅଫିସ୍ ହେଇଯିବା ପରି କଥା । ମୁଁ ଖୁବ୍ ଆଶ୍ଚର୍ଯ୍ୟ ହୁଏ ଗଣତନ୍ତ୍ରରେ ଏପରି ସତ୍ୟ ଘଟଣା ସମ୍ଭବ ହୁଏ କେମିତି ? ମୋର ସୌଭାଗ୍ୟ (ପୁନର୍ବାର ଏଇ ତଥ୍ୟ ସହିତ ଏହା ସଂଯୁକ୍ତ ଯେ ଆମ ପରିବାରରେ କେହି ଓକିଲ ନ ଥିଲେ ।) ମତେ ସେଇ ଫାନ୍ଦଭିତରୁ ମୁକୁଳିଯିବା ପାଇଁ ଏବଂ ପ୍ରତ୍ୟେକଟି ପରିସ୍ଥିତି ଓ ଘଟଣାକୁ ତା'ର ବାସ୍ତବ ଓ ସମାଲୋଚନାତ୍ମକ ପରିପ୍ରେକ୍ଷୀରୁ ଦେଖିବାକୁ ସାହାଯ୍ୟ କରିଛି ।

ମୁଁ ଯେତେବେଳେ ଏ ପେଶାରେ ପ୍ରବେଶ କଲି ସେତେବେଳକୁ ଏଥିରେ ଏକପ୍ରକାର ସ୍ଥାଣୁତା ଥିଲା । ପରିବର୍ତ୍ତନ ସଂପର୍କରେ ଏମାନେ ଚିନ୍ତା ବି କରୁନଥିଲେ । ଓକିଲାତି କରିବାର ଏକମାତ୍ର ରାସ୍ତା ହେଉଛି ବ୍ରିଟିଶ ଔପନିବେଶିକ ଶାସନତନ୍ତ୍ର କାଳରୁ ଉତ୍ତରାଧିକାର ସୂତ୍ରରେ ଚାଲି ଆସୁଥିବା ନିୟମ କାନୁନ୍ ମାନିବା । ବ୍ରିଟିଶମାନେ ଛାଡ଼ିଯାଇଥିବା ବିଭିନ୍ନ ଉପକରଣ, ଟେକ୍‌ନିକ୍ ଏବଂ ପ୍ରଣାଳୀକୁ ଭଲଭାବରେ କାର୍ଯ୍ୟରେ ଲଗେଇ ପାରିବା ହିଁ ଏଇ ଓକିଲାତି ବୃତ୍ତିର ଉନ୍ନତିର ସାମଗ୍ରିକ ପଦ୍ଧତି । 'ଆଡ୍‌ଭୋକେଟ୍ ଆକ୍ଟ'ର ମୁଖ୍ୟ ଉଦ୍ଦେଶ୍ୟ ହେଲା, ଦୃଷ୍ଟାନ୍ତ ସ୍ୱରୂପ ଓକିଲମାନଙ୍କର ଗୋଟେ ପ୍ରକାରର ଓକିଲ ବର୍ଗ ତିଆରି କରିବା ଯେଉଁମାନେ କି ଅନ୍ୟ ସମସ୍ତ ପ୍ରକାରର ସ୍ଥାନୀୟ ଆଇନ କାନୁନ୍ ବିଶେଷଜ୍ଞଙ୍କର ବାର ବଜେଇଦେବେ । ତିଳେମାତ୍ର ଚିନ୍ତା ନକରି ଆମେ ଏ ପେଶାର ଏକରୂପତାକୁ ଗ୍ରହଣ କରି ନେଇଥିଲୁ । କ୍ଷଣକ ପାଇଁ ମଧ୍ୟ ଆମେ ଚିନ୍ତାକରିଲୁନି ଯେ ଏଇ ସ୍ଥାଣୁତା ନେଇ ଏ ଦେଶର ବିରାଟ ଜନସମୁଦାୟର ଆବଶ୍ୟକତାକୁ ଏହା ପରିପୂର୍ଣ୍ଣ କରିପାରିବ ତ ! ଏହା ସେ ସମୟର କଥା ଯେତେବେଳେ ବିଚାରାଳୟ ବିଶେଷଭାବରେ ହାଇକୋର୍ଟ ଓ ସୁପ୍ରିମ କୋର୍ଟ ବି ନିଜର ସାମ୍ବିଧାନିକ ଦାୟିତ୍ୱ ସଂପର୍କରେ ଅବଗତ ନ ଥିଲେ ଏବଂ ବିଚାରକବର୍ଗଙ୍କୁ ବାଦବିବାଦ ସମାଧାନ କରିବାର ଏକ ମଞ୍ଚ ଛଡ଼ା ଅଧିକ କିଛି ଭାବୁନଥିଲେ ।

ମୁଁ ମୋର କାର୍ଯ୍ୟକୁ ପ୍ରାସଙ୍ଗିକ କରିବାପାଇଁ ପଥ ଓ ପାଥେୟ ଅନ୍ୱେଷଣରେ ସଂଗ୍ରାମରତ ହେଲି । ଏହା କେବଳ ମୋ ପାଇଁ ନୁହଁ ଅନ୍ୟମାନଙ୍କ ପାଇଁ ମଧ୍ୟ । ଗୋଟିଏ ଫେଲୋସିପ୍ ପାଇ ଲଣ୍ଡନର ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଆଡ୍‌ଭାନ୍ସ ଲେଗାଲ ଷ୍ଟଡ଼ିଜ୍‌ରେ ଯୋଗଦେଲି ଓ ସେଠାରେ ସାମାଜିକ ଲକ୍ଷ୍ୟ ପ୍ରାପ୍ତିପାଇଁ ସକ୍ରିୟତାବାଦୀଙ୍କ ବିବିଧ ପନ୍ଥା ସହିତ ପରିଚିତ ହେଲି । ସେଠି ମୁଁ ଏପରି ବହୁବ୍ୟକ୍ତିଙ୍କର ସାକ୍ଷାତ ପାଇଲି ଯେଉଁମାନେ ଆଇନ ଶାସ୍ତ୍ର

ସହିତ ଏପରି ଏକ ଉଦ୍ଦେଶ୍ୟନେଇ ସଂପୃକ୍ତ ଯାହା ତାଙ୍କଠାରୁ ବୃହତ୍ତର ଥିଲା । ଏହା ଷାଠିଏ ଦଶକର ମଧ୍ୟବର୍ତ୍ତୀ ସମୟର କଥା ଯେଉଁ ସମୟରେ କି ସକ୍ରିୟତାବାଦ ସମଗ୍ର ବିଶ୍ୱରେ ଖୁବ୍ ପ୍ରଭାବଶାଳୀ ଥିଲା ।

୧୯୭୫ ମସିହାରେ ଜରୁରୀକାଳୀନ ପରିସ୍ଥିତି ପରି ମର୍ମ ବିଦାରକ ଘୋଷଣା ହେବାପରେ ଭାରତୀୟ ସମାଜ ଦ୍ୱିଧାବିଭକ୍ତ ହେଲା ଏବଂ ଆମେ ସମସ୍ତେ କୌଣସି ଏକ ରାଜନୀତିକ ଦଳକୁ ସମର୍ଥନ କରିବାକୁ ବାଧ୍ୟ ହେଲୁ । ମୁଁ ଜରୁରୀକାଳୀନ ପରିସ୍ଥିତିକୁ ବିରୋଧ କରିବାକୁ ପସନ୍ଦ କଲି । ଯାବତୀୟ ନାଗରିକ ଏବଂ ରାଜନୈତିକ ଅଧିକାର ଯାହା ଉପରେ ନିଷେଧାଜ୍ଞା ଜାରି ହୋଇଥିଲା ଏବଂ ଅନେକ ବ୍ୟକ୍ତି ଯାହାକୁ ବିରୋଧ କରୁଥିଲେ ସେମାନଙ୍କ ସହିତ କାମ କଲି । ଏହା ମୋ ଜୀବନର ଏକ ମୋଡ଼ ପରିବର୍ତ୍ତନକାରୀ ଘଟଣା ଏବଂ ମୋର ଓକିଲାତି ଜୀବନର ମଧ୍ୟ । ଏହି ନ୍ୟାୟ ବ୍ୟବସ୍ଥା କିପରି ରାଜନୀତି ଶକ୍ତି ସାମର୍ଥ୍ୟ ସମ୍ମୁଖରେ ଧୂଳିସାତ୍ ବା ଚୂର୍ଣ୍ଣବିଚୂର୍ଣ୍ଣ ହେଇଯାଇଛି, ମୁଁ ମୋ ନିଜ ଆଖିରେ ଦେଖିଛି । ନ୍ୟାୟମୂର୍ତ୍ତି ଚନ୍ଦ୍ରଚୂଡ଼ଙ୍କର ବର୍ତ୍ତମାନ ପ୍ରସିଦ୍ଧ ହୋଇଯାଇଥିବା ଉଦ୍ଧୃତି ''ହୀରା ପରି ଉଜ୍ଜ୍ୱଳ ଓ ହୀରା ପରି ବଳିଷ୍ଠ'' ଆଶା ଥିଲା ଯେ ରାଜ୍ୟ ତା'ର ରାଜନୈତିକ ବନ୍ଦୀମାନଙ୍କୁ ନିଜର ସନ୍ତାନ ପରି ବ୍ୟବହାର କରିବ । ଏହାର ପ୍ରଳୟଙ୍କରୀ ପରିଣତିର ସମ୍ମୁଖୀନ ହେଲା ଦେଶ । ସେ ଏବଂ ଅନ୍ୟାନ୍ୟ ସମସ୍ତ ବିଚାରପତି ଯେଉଁମାନେ ତାଙ୍କ ସହିତ ଏକମତ ଥିଲେ, ସେମାନେ ସମସ୍ତେ ଯେଉଁ ଜନସାଧାରଣଙ୍କୁ ସୁରକ୍ଷା ଦେବା କଥା ତାଙ୍କୁ ପ୍ରତାରିତ କଲେ ।

ଜରୁରୀକାଳୀନ ପରିସ୍ଥିତି ସମୟରେ ହିଁ ଆମେ ଯେଉଁମାନେ ଏହାକୁ ବିରୋଧ କରୁଥିଲୁ, ଆମରି ମନରେ ଏକ ଧାରଣା ସୃଷ୍ଟି ହେଲା ଯେ ଆମ ଓକିଲମାନଙ୍କର ଏକ ସଙ୍ଗଠନ ରହିବା ଆବଶ୍ୟକ ଯେଉଁଠି ଆମେ ଏକାଠି ହେବୁ ଏବଂ ଏହା ଶ୍ରମିକ ସଂଘର ସକ୍ରିୟ ସଦସ୍ୟ ଯେଉଁମାନଙ୍କୁ ବନ୍ଦୀ କରାଯାଇଛି ଓ ଦମନ କରାଯାଉଛି ତାଙ୍କ ପାଇଁ ଲଢ଼ିବୁ । ଆମେ ଶ୍ରମିକମାନଙ୍କ ନିମନ୍ତେ କାନୁନ୍‌କେନ୍ଦ୍ର ଗଠନ କଲୁ । ରେଳବାଇ ଧର୍ମଘଟ, ଜରୁରୀକାଳୀନ ପରିସ୍ଥିତିର ତାତ୍‌କ୍ଷଣିକ ବିଷଦୃଷ୍ଟିର ଶିକାର ହେବାରୁ ସେମାନେ ଚାକିରିରୁ ବହିଷ୍କୃତ ଏବଂ ଦଣ୍ଡିତ ହେଲେ । ରେଳବାଇ ତଥା ଅନ୍ୟ କର୍ମଚାରୀମାନଙ୍କୁ କାନୁନ୍ ସଂପର୍କିତ ସାହାଯ୍ୟ ଯୋଗାଇ ଦେବାରେ ଲାଗି ପଡ଼ିଲୁ । ଏହି କେନ୍ଦ୍ର ୧୯୮୦ରେ ସ୍ଥାପିତ ଲୟର୍ସ କଲେକ୍ଟିଭ୍‌କୁ ଜନ୍ମଦେଇଛି । ଯାହାର ଲକ୍ଷ୍ୟ ଏବଂ ଉଦ୍ଦେଶ୍ୟ କେନ୍ଦ୍ର ସହିତ ସମାନ । ଏହା ଉପରୋକ୍ତ କାମ ବ୍ୟତୀତ ସମାଜର ଅନ୍ୟଶ୍ରେଣୀ ଯଥା – ମହିଳା, ଶିଶୁ ତଥା ବିଚାରାଧୀନମାନଙ୍କୁ ମଧ୍ୟ ସାହାଯ୍ୟ କରିଥିଲା । ୧୯୮୬ରେ ଏହି ସଂସ୍ଥା ଦେଶର ପ୍ରଥମ ମାସିକ ଆଇନ୍ କାନୁନ୍ ସମ୍ବନ୍ଧିତ ମାସିକ ପତ୍ରିକା ପ୍ରକାଶନ ଆରମ୍ଭ କଲା । ପ୍ରଥମ ସଂପାଦକୀୟରେ ଏହାର ଲକ୍ଷ୍ୟ ସଂପର୍କରେ ଉଲ୍ଲେଖ କରାଯାଇଥିଲା ଯେ ନ୍ୟାୟପାଳିକା ଚର୍ତୁପାର୍ଶ୍ୱରେ ବିରାଜମାନ ଥିବା ''ନୀରବତାର ସଂସ୍କୃତିକୁ ଭଙ୍ଗ କରିବା'' ଏବଂ ସରଳ ଭାଷାରେ ଆଇନ୍ କାନୁନ୍ ସଂପର୍କିତ ଲେଖା ଯୋଗାଇଦେବା ଏହାର ଉଦ୍ଦେଶ୍ୟ । ସମାଜର

ନିଗୃହୀତ ଶ୍ରେଣୀର ବ୍ୟକ୍ତି ଯେଉଁମାନଙ୍କର ଏହା ଖୁବ୍ ପ୍ରୟୋଜନ ସେମାନଙ୍କର ନ୍ୟାୟିକ ସମସ୍ୟା ସମାଧାନ କରାଯିବ । କ୍ରମାଗତଭାବରେ ଅଦ୍ୟାବଧି ଏହି ପତ୍ରିକାର ମାସିକ ପ୍ରକାଶନ ଚାଲିଛି ଏବଂ ଏହାର ଲକ୍ଷ୍ୟ ମଧ୍ୟ ଅବିଚଳିତ ରହିଛି । 'ଲୟର୍ସ କଲେକ୍ଟିଭ୍' ପରିବର୍ତ୍ତନର ବହୁ ସ୍ତର ଦେଇ ଗତିକରିଛି । ଏହା ଅନ୍ୟ ସଙ୍ଗଠନର ଏକ ଆଦର୍ଶ ସ୍ଥାନୀୟ ପ୍ରତିମୂର୍ତ୍ତି ହୋଇପାରିଛି । ଏହାର ଏକ ମହିଳା ଅଧିକାର ପ୍ରକଳ୍ପ, ଏକ ଏଚ୍ ଆଇଭି/ଏଡ୍ସ୍ ପ୍ରକଳ୍ପ ତଥା ଏକ ମାନବ ଅଧିକାର ବିଭାଗ ରହିଛି । ମାତ୍ର ଅଧିକାଂଶ ସଙ୍ଗଠନ ସଦୃଶ ଏହା ମଧ୍ୟ ନେତୃତ୍ୱର ଅଭାବର ସମସ୍ୟା ଭୋଗୁଛି । ଆମେ ଏ ସମସ୍ୟାର ସମାଧାନ ପାଇଁ ପ୍ରୟାସରତ ।

ପ୍ରଶିକ୍ଷିତ ଓକିଲମାନେ ବ୍ୟକ୍ତିବାଦୀ ହୋଇଉଠନ୍ତି, ତେଣୁ ସଙ୍ଗଠନ ମୂଳକ କାର୍ଯ୍ୟପାଇଁ ସମର୍ଥ ହୁଅନ୍ତି ନାହିଁ । ଲୟର୍ସ କଲେକ୍ଟିଭ ମଧ୍ୟ ଏ ସମସ୍ୟାରୁ ବଞ୍ଚିତ ନୁହେଁ । ଏହାର ସ୍ଥିତି ବା ଅସ୍ତିତ୍ୱ ରକ୍ଷାର ସମସ୍ୟା ସମାଧାନ ଏକ ଚିରନ୍ତନ ସଂଗ୍ରାମ । ଏହାକୁ ବଞ୍ଚେଇ ରଖିବାର ସମସ୍ୟାର ସମାଧାନ ନିମନ୍ତେ ନିରନ୍ତର ସଂଗ୍ରାମ ଚାଲିଛି । ସଂପ୍ରତି ଏହି ସଂଗଠନ ଯେଉଁମାନେ ଏହାସହିତ ଓ ଆଇନ୍ ସଂଶୋଧନ ସହିତ ସଂପୃକ୍ତ ସେମାନଙ୍କୁ ନ୍ୟାୟିକ ପରାମର୍ଶ ଓ ସାହାଯ୍ୟ ଦେବାରେ ବିନିଯୁକ୍ତ । ଆଇନ୍ ସଂଶୋଧନ ସଂପର୍କିତ ଏକ ଉଦାହରଣ ହେଲା ଘରୋଇ ହିଂସା ଆଚରଣ ବିରୋଧ ନିମନ୍ତେ ଆମର ନୂତନ ନିୟମ ପ୍ରଣୟନ ଅଭିଯାନ । ଏତେ ଦିନକେ କେନ୍ଦ୍ର ସରକାରର ମନ୍ତ୍ରୀମଣ୍ଡଳ ଘରୋଇ ହିଂସା ଉପରେ ଏକ ନାଗରିକ ଆଇନ୍ ପ୍ରଣୟନ ନିମନ୍ତେ ନିଷ୍ପତ୍ତି ନେଇଛି । ଏ ସଂଗଠନ ଏହି ଅଭିଯାନକୁ ନଥିଭୁକ୍ତ କରିବାର ସ୍ଥାନ ନୁହେଁ କେବଳ ପୃଥକ ପୃଥକ କେଶ୍ ସମାଧାନ କରିବା ଅପେକ୍ଷା ଏହା ନୀତି ପ୍ରଣୟନ ସ୍ତରରେ ହସ୍ତକ୍ଷେପ କରିବା ପ୍ରୟାସରେ ଥାଏ ।

ଏପରି କାର୍ଯ୍ୟପ୍ରଣାଳୀର ଅର୍ଥ ହେଲା ନିଜର ସ୍ୱାୟତ୍ତତା ଅକ୍ଷୁଣ୍ଣ ରଖି ସରକାରଙ୍କ ସହିତ ଏକ ନୂତନ ସମୀକରଣ ସ୍ଥାପନ କରିବା ।

ରାଜନୈତିକ ସ୍ତରରେ ଜରୁରୀକାଳୀନ ପରିସ୍ଥିତି ଅନ୍ତହେବା ପରେ ନ୍ୟାୟପାଳିକା ଏକ ନୂତନ ପଥରେ ଅଭିଯାନ ଆରମ୍ଭ କଲା । ଏହା ଗଣତାନ୍ତ୍ରିକ ସ୍ଥାନ ସୃଷ୍ଟି କରିବାରେ ଲାଗିଲା ଯେଉଁଠାରୁ କି ବଞ୍ଚିତ ମନୁଷ୍ୟର ବି ସ୍ୱର ଶୁଣାଯାଇପାରିବ । ଏହା ଜନସାଧାରଣଙ୍କ ସ୍ୱାର୍ଥକୈନ୍ଦ୍ରିକ ମକଦ୍ଦମା ଗ୍ରହଣ କରିବା ଆରମ୍ଭ କଲା ଯାହାର ପରିସର ଭିତରେ ନାଗରିକର ମୌଳିକ ଅଧିକାରର ଅପବ୍ୟବହାରଗତ ସ୍ୱର ଉତ୍ତୋଳନ କରାଯାଇପାରେ । ପ୍ରାରମ୍ଭିକ ସମୟରେ ନ୍ୟାୟମୂର୍ତ୍ତି ପି.ଏନ୍ ଭଗବତୀ ଜନହିତ ମାମଲାର ସୈଦ୍ଧାନ୍ତିକ ଆଧାରକୁ ସ୍ପଷ୍ଟଭାବେ ପ୍ରକାଶ କରିବାକୁ ଚେଷ୍ଟା କରିଥିଲେ, ବର୍ତ୍ତମାନ ତାହା ପରିତ୍ୟକ୍ତ । ନ୍ୟାୟମୂର୍ତ୍ତି ଭଗବତୀ ହିଁ କହିଥିଲେ ଯେ ଜନହିତ ମାମଲାର ଆବଶ୍ୟକତା ରହିଛି । କାରଣ ବ୍ରିଟିଶ ଢାଞ୍ଚାର ପ୍ରତିକୂଳାତ୍ମକ ନ୍ୟାୟ ବ୍ୟବସ୍ଥା ଭାରତୀୟ ପରିବେଶ ପାଇଁ ଉପଯୁକ୍ତ ନୁହେଁ । ସେ କହିଲେ ଯେ ଏହି 'ନ୍ୟାୟ ବ୍ୟବସ୍ଥା'ରେ ଜଣକର ନିଜ ଅଧିକାର ସଂପର୍କରେ ଅତି ଉଚ୍ଚମାନର ଜ୍ଞାନ ଓ ତଥ୍ୟଗତ ଖବର ଆଗରୁ ଥିବା ଦରକାର । ଏହା ନିଜ କ୍ଷତିର ପରିମାଣ ଚିହ୍ନଟ

କରିପାରିବା ଓ କ୍ଷତିପୂରଣର ଉପାୟ ନିର୍ବାଚନ କରିବାପରି ତଥ୍ୟଉପରେ ଆଧାରିତ ଥିଲା । ଭାରତ ପରି ଦେଶରେ ଜନ ସମୁଦାୟର ଏକ ବିଶାଳ ଅଂଶ ନିରକ୍ଷରତା ଓ ଦାରିଦ୍ର୍ୟ ହେତୁ ଏହି ସୁଯୋଗ ଗ୍ରହଣ କରିବାର କ୍ଷମତା ରଖନ୍ତି ନାହିଁ । ଏହି କାରଣରୁ ଯେଉଁମାନଙ୍କର ଅଧିକାର ଅପବ୍ୟବହୃତ ହୋଇଛି ସେମାନଙ୍କ ତରଫରୁ ସାଧାରଣ ନାଗରିକ ସମାଜକୁ ଜନହିତ ବିଷୟରେ ହସ୍ତକ୍ଷେପ କରିବାକୁ ଅନୁମତି ମିଳିବା ଏକାନ୍ତ ଆବଶ୍ୟକ । ତା ସତ୍ତ୍ୱେ ଜାତୀୟ ଇତିହାସର ଏଇ ପର୍ଯ୍ୟାୟଟିକୁ ମୁଁ ବିଲୁପ୍ତ ହେବାର ଦେଖିଛି । ଏହା ଗଭୀର ଦୁଃଖ ଓ ପରିତାପର ବିଷୟ ଯେ ଜନହିତ ମାମଲା ପଛରେ ଥିବା ଯୌକ୍ତିକତାକୁ କେବେ ବି ନ୍ୟାୟସଙ୍ଗତ ପରିଣାମ ପର୍ଯ୍ୟନ୍ତ ବିଚାର କରାଯାଇନି । ଏଥିପାଇଁ କାନୁନ୍ କ୍ଷେତ୍ରରେ ଔପନିବେଶିକ ପରମ୍ପରାର ସଂପୂର୍ଣ୍ଣ ମୂଳୋତ୍ପାଟନ କରିବା ଆବଶ୍ୟକ, ଯାହା ହେଲା ନାହିଁ । ପରିଣାମ ସ୍ୱରୂପ ଆଜି ମଧ୍ୟବିତ୍ତ ଶ୍ରେଣୀ ଜନହିତ ମାମଲାକୁ ଅପହରଣ କରି ନିଜ ଅକ୍ତିଆରଭୁକ୍ତ କରିଛି ଓ ବିଚାରାଳୟର ସମସ୍ତ କୌଶଳକୁ ଶ୍ରମିକଶ୍ରେଣୀଠାରୁ ଅଧିକ କୁଶଳତା ସହିତ ପ୍ରୟୋଗ କରୁଛି । ବିଚାରପତିମାନେ ମଧ୍ୟ ଜନହିତ ମାମଲାର ନ୍ୟାୟସମ୍ମତ ଆଧାର ବୁଝିନାହାନ୍ତି । ହଜମ କରିନାହାନ୍ତି ଏହାର ମଞ୍ଜ, ତେଣୁ ସର୍ବଦା ଉଚ୍ଚଶ୍ରେଣୀ ନିମନ୍ତେ ନ୍ୟାୟାଳୟର ଦରଜା ଖୋଲିବାକୁ ତତ୍ପର ହୋଇ ଉଠନ୍ତି । ଏହି ଶ୍ରେଣୀ ଜନହିତ ମାମଲାକୁ ସଂକୀର୍ଣ୍ଣ ସ୍ୱାର୍ଥ ଓ ଲକ୍ଷ୍ୟ ପ୍ରାପ୍ତିର ମାଧ୍ୟମଭାବେ ଗ୍ରହଣ କରିନେଇଛନ୍ତି ।

ଅଶୀଦଶକର ପ୍ରାରମ୍ଭରେ ଅଧିକାର ସହିତ ମୌଳିକ ଅଧିକାରର ଅପପ୍ରୟୋଗ ଘଟୁଛି କି ନାହିଁ ତାହା ପରୀକ୍ଷା କରିବା ପାଇଁ ବିଚାରାଳୟଗୁଡ଼ିକ ପ୍ରକୃତ ତଥ୍ୟ ଅନୁସନ୍ଧାନରେ ଏକ ସକ୍ରିୟ ଭୂମିକା ନେବାପାଇଁ ଆଗ୍ରହୀ ହେଲେ । ଗୋତିଶ୍ରମିକ, ଶିଶୁ ଶ୍ରମିକ ତଥା ବିଚାରାଧୀନମାନଙ୍କର ନିଜ ଦୁଃଖ, ଆପତ୍ତି ଅଭିଯୋଗ ଜଣାଇବାର କୌଣସି ମାଧ୍ୟମ ନାହିଁ । ତେଣୁ ତାଙ୍କ ତରଫରୁ ଅନ୍ୟମାନଙ୍କୁ ଏହା କରିବାକୁ ଅନୁମତି ମିଳିବା ଆବଶ୍ୟକ । ବିଚାରାଳୟ ଦ୍ୱାରା ନିର୍ମିତ ଐତିହାସିକ ପ୍ରକ୍ରିୟାର ମୁଁ ଏକ ଅଂଶ ଥିଲି ଓ ଏହି ଭାବଧାରାକୁ କେନ୍ଦ୍ରକରି ମୁଁ ରୋମାଞ୍ଚିତ ଥିଲି । ମୁମ୍ବାଇର ଗୃହହୀନ ପାର୍ଶ୍ୱପଥ ବାସୀମାନଙ୍କର ବିଷୟକୁ ନେଇ ମୋର ସକ୍ରିୟତା, ଜୀବନର ଏଇ ସମୟ ସହିତ ସମ୍ବନ୍ଧିତ । ବିଚାରାଳୟଦ୍ୱାରା ଉନ୍ମୁକ୍ତ ହୋଇଥିବା ଗଣତାନ୍ତ୍ରିକ ଦ୍ୱାରଦେଶରେ ମୁଁ ଅବିଳମ୍ବେ ପାଦଦେଲି କାରଣ ମୁଁ ଏଥିପାଇଁ ପ୍ରସ୍ତୁତ ଥିଲି । ଆମେ ଯେଉଁମାନେ ବିଶ୍ୱାସ କରୁଥିଲୁ ଯେ ଆମେ ଏପରି ଏକ ପେଶା ବା ବୃତ୍ତିରେ ଅଛୁ ଯାହାର ଏକ ସାମାଜିକ ଦାୟିତ୍ୱପୂର୍ଣ୍ଣ ଦିଗ ରହିଛି, ସେମାନଙ୍କ ପାଇଁ ଏହାଥିଲା ଶୁଭାରମ୍ଭ । ଏହା କେବଳ ଅନ୍ୟ ବ୍ୟବସାୟ ସଦୃଶ ନୁହେଁ । ପୂର୍ବରୁ ଯେତେବେଳେ ନ୍ୟାୟାଳୟ ନାଗରିକ ଅଧିକାର ସଂପର୍କିତ କାର୍ଯ୍ୟ କରୁଥିଲା ସେତେବେଳେ ସାମାଜିକ ଓ ଆର୍ଥିକ ଅଧିକାର ସଂପର୍କରେ ଚିନ୍ତା କରିବାକୁ ବହୁତ କମ୍ କାହିଁକି ଆଦୌ ସମୟ ନ ଥିଲା । ଜରୁରୀକାଳୀନ ପରିସ୍ଥିତି ପରେ ଭାରତର ସର୍ବୋଚ୍ଚ ନ୍ୟାୟାଳୟ ମଧ୍ୟ ଏଇ ବିଷୟ ଉପରେ କାର୍ଯ୍ୟ ଆରମ୍ଭ କରିଛନ୍ତି ।

ମୁଁ ମୋ ପସନ୍ଦର ବିଷୟ ଉପରେ ଗଭୀର ଆବେଗର ସହିତ କାର୍ଯ୍ୟ ଆରମ୍ଭ କଲି । ମୋର କାର୍ଯ୍ୟକାଳ ମଧ୍ୟରେ ମହିଳା ଏବଂ ପରିବାର କାନୁନ୍ କ୍ଷେତ୍ରରେ ମହିଳାମାନଙ୍କର ସମସ୍ୟା ସର୍ବଦା ମୋର ଚିନ୍ତାର କାରଣ ହେଉଥିଲା । ନ୍ୟାୟାଳୟଦ୍ୱାରା ବର୍ତ୍ତମାନ ସମାନତା ସଂପର୍କିତ ସାମ୍ବିଧାନିକ ଅଧିକାରକୁ ଗୁରୁତ୍ୱ ସହକାରେ ଗ୍ରହଣ କରାଯାଇପାରନ୍ତା । ଏହି ସମୟରେ ବିଚାରାଧୀନବ୍ୟକ୍ତି, ଗୋତି ଶ୍ରମିକ ଓ ବାଳଶ୍ରମିକ ତଥା ପାର୍ଶ୍ୱପଥବାସୀମାନଙ୍କର ଅଧିକାର ସମ୍ବନ୍ଧିତ ବିଷୟ ଜନ୍ମ ନେଲା । ସେ ସମୟର ସପକ୍ଷ ବା ବିପକ୍ଷରେ ବିଚାର କରିବାର ନା ଏହା ଉପଯୁକ୍ତ ସମୟ ନା ସ୍ଥାନ । ଅସଲରେ ମୁଁ ଏହା କହିବାକୁ ଚାହେଁ ଯେ ନ୍ୟାୟାଳୟ ବର୍ତ୍ତମାନ ବଞ୍ଚିତମାନଙ୍କ ପାଇଁ ଅପହଞ୍ଚ ନୁହେଁ । ଏହି ପ୍ରକ୍ରିୟାରେ ମୋପରି ଅନେକ ଯେଉଁମାନେ ଅନୁଭବ କରୁଥିଲେ ନ୍ୟାୟବ୍ୟବସ୍ଥାରେ ସେମାନଙ୍କର ସ୍ଥାନ ନାହିଁ, ସେମାନେ ଦେଖିଲେ ଯେ ଆମେ ଗଣତାନ୍ତ୍ରିକ ଏବଂ ଔଚିତ୍ୟପୂର୍ଣ୍ଣ ନ୍ୟାୟିକ ସଂସ୍କୃତି ନିର୍ମାଣ ବା ଗଠନପରି ଏକ ଦୁଃସାହସିକ କାର୍ଯ୍ୟରେ ଯୁକ୍ତ ହୋଇପାରୁଛୁ ।

ସେ ଦିନଗୁଡ଼ିକ ବଡ଼ ରୋମାଞ୍ଚକର ଥିଲା । ଆମେମାନେ ବିଚାରାଳୟର ଇତିହାସ ଲେଖିବା କ୍ରିୟାରେ ବ୍ୟସ୍ତ ଥିଲୁ । ବହୁ ବିଖ୍ୟାତ ନ୍ୟାୟାଧୀଶଙ୍କ ସଂସ୍ପର୍ଶରେ ଆସିଲୁ । କିନ୍ତୁ ଗୋଟେ କଥା ମତେ ସର୍ବଦା ଖଟ୍‌କା ଲାଗେ ଯେ ବର୍ତ୍ତମାନ ଯେଉଁ ନ୍ୟାୟାଧୀଶଗଣ ମାନବ ଅଧିକାର ସୁରକ୍ଷା ସଂପର୍କରେ ଉଚ୍ଚକୋଟୀର ବିଚାର ଲେଖୁଛନ୍ତି ସେଇ ସମାନ ବ୍ୟକ୍ତି ଜରୁରୀକାଳୀନ ପରିସ୍ଥିତି ସମୟରେ ମଧ୍ୟ ରାୟ ଦେଇଥିଲେ । ତେଣୁ ମୁଁ କେବେ ବି ମୋର ପୂର୍ଣ୍ଣ ଆସ୍ଥା ନ୍ୟାୟପାଳିକା ଉପରେ ରଖିପାରିନାହିଁ । ସମ୍ଭବତଃ ଗୋଟେ ଦୃଷ୍ଟିରୁ ଏହା ମୋପାଇଁ ମଙ୍ଗଳକର ଥିଲା କାରଣ ଏହି ସମସ୍ତ ବିଷୟରେ ମୋର ଭୂମିକା କ'ଣ ହେବା ଉଚିତ୍ ସେ ସଂପର୍କରେ ମୋର ଧାରଣା ସୃଷ୍ଟି ହେଲା । ଆଜିପର୍ଯ୍ୟନ୍ତ ନ୍ୟାୟକ୍ଷେତ୍ରରେ ତିଷ୍ଠି ରହିଥିବା ଅନାଚାର ଓ ଏହାର ପୃଷ୍ଠପୋଷକତା ଧାରାରୁ ମଧ୍ୟ ଏହା ମତେ ସ୍ୱାୟତ୍ତତା ଓ ପ୍ରକୃତ ସ୍ୱାଧୀନତା ଦେଇପାରିଛି । କ୍ଷମତାସୀନ ଲୋକଙ୍କଠୁଁ ଏହା ମତେ ଦୂରରେ ରଖିବାରେ ସମର୍ଥ ହେଇଛି । ଯାହାଫଳରେ ମୁଁ କେବେ ବି ସାର୍ବଜନୀନ ପଦପଦବୀ ପାଇଁ ଇଚ୍ଛୁକ ହୋଇନାହିଁ ଏବଂ ଖୁବ୍ ଆରାମରେ ଜଣେ ବାହାର ଲୋକ ଭାବରେ ମୋର କାର୍ଯ୍ୟ ତୁଲାଇ ପାରିଛି ଓ ଏଥିରୁ ପ୍ରାପ୍ୟ ସମସ୍ତ ପ୍ରକାର ସୁବିଧା ପାଇପାରିଛି ।

ମୋର ମହିଳା ମହକିଲମାନଙ୍କ ଦ୍ୱାରା ମୁଁ ଗଭୀର ଭାବରେ ପ୍ରଭାବିତ ହୋଇଛି । କେରଳରେ ରହୁଥିବା ସିରୀୟ ଖ୍ରୀଷ୍ଟିଆନ୍‌ମାନଙ୍କ ଉପରେ ଲାଗୁ ହେଉଥିବା ଏକ ଅନ୍ୟାୟପୂର୍ଣ୍ଣ କାନୁନ୍‌କୁ ମାନିବାକୁ ଅସ୍ୱୀକାର କରିଦେଲା ମେରୀ ରାୟ ଏହି ନିୟମ ଅନୁସାରେ ଝିଅମାନେ ସମସ୍ତେ ପୈତୃକ ସଂପତ୍ତିରୁ ବଞ୍ଚିତ ହୁଅନ୍ତି କାରଣ ତାହା ତାଙ୍କ ଭାଇଙ୍କୁ ମିଳେ । ତା'ପାଇଁ ତଥା ଅନ୍ୟାନ୍ୟ ଅନେକ ମହିଳାମାନଙ୍କ ନିମିତ୍ତ ସମାନତାର ଆବଶ୍ୟକତା ରହିଛି । ତା'ର ବିବାହ ସଫଳ ନହେବାରୁ ସେ ତା'ର ପୈତୃକ ଘରକୁ ଫେରିଆସିଲା ଏବଂ ତାକୁ ସେଠାରେ କୁହାଗଲା ଯେ ସଂପତ୍ତି ଉପରେ ତା'ର କୌଣସି ଅଧିକାର ନାହିଁ । ସମାନତା ସଂପର୍କରେ

ତା'ର ଏକ ଅବିଚଳିତ ବିଶ୍ୱାସ ରୂପକ ଅସ୍ତ୍ର ସହିତ ସେ ସର୍ବୋଚ୍ଚ ନ୍ୟାୟାଳୟରେ ନ୍ୟାୟ ନିମିତ୍ତ ଦ୍ୱାରସ୍ଥ ହେଲା । ସେଇ ସମୟରେ ମୋର ତା'ସହିତ ଦେଖା ଏବଂ ଆମେ ଦୁହେଁ ଏକାଠି କାମ କରି ସମାନତା ଅଧିକାରକୁ ତା'ପାଇଁ ବାସ୍ତବତାରେ ପରିଣତ କଲୁ । ଆମେ ବିଚାରରେ ସଫଳତା ପାଇଲୁ । ଅପେକ୍ଷାକୃତ ଅଧିକ ସମାନତାବାଲା ଆଇନ ତିଆରି ହେଲା ଯାହା ବଳରେ ସେ ତା'ର ଅନ୍ୟାନ୍ୟ ଭାଇ ଭଉଣୀଙ୍କ ପରି ଉତ୍ତରାଧିକାର ସୂତ୍ରରେ ସମାନ ସଂପତ୍ତି ପାଇପାରିବ । ମେରୀ ରାୟ ମତେ ସମ୍ବିଧାନ ପ୍ରଦତ୍ତ ସମାନତା ଅଧିକାର ସଂପର୍କରେ ଜ୍ଞାନଦେଲା, ମାତ୍ର ତା'ର ସଂଘର୍ଷ ବିଚାର ସହିତ ଶେଷ ହେଇଗଲାନି । ମତେ ଲାଗୁନି ମେରୀ ରାୟ ଆଜିପର୍ଯ୍ୟନ୍ତ ତା'ଦ୍ୱାରା ଲାଭବାନ ହେଇଛି ବୋଲି, ମାତ୍ର ସେ ଜାଣେ ସମାନ ଅବସ୍ଥାର ଅନ୍ୟାନ୍ୟ ଅନେକ ମହିଳା ଲାଭାନ୍ୱିତ ହୋଇଛନ୍ତି । ୧୯୮୬ରେ ମୁସଲମାନ ମହିଳା ନିୟମ (ଛାଡ଼ପତ୍ର କ୍ଷେତ୍ରରେ ସୁରକ୍ଷା ଓ ଅଧିକାର) ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଥିବା ପ୍ରଥମ ମହିଳା ହେଉଛନ୍ତି ପି.କେ. ସାବୁ, ତାଙ୍କ ମାମଲା ଲଢ଼ିବାରେ ସୁଯୋଗ ମତେ ମିଳିଥିଲା । ସେ ମଧ୍ୟ ନ୍ୟାୟ ପାଇବାରେ ସଫଳ ହେଲେ । ମେରୀ ରାୟ ଓ ତାଙ୍କ ଭିତରେ ଗୋଟିଏ ବିଷୟ ସମାନ ଥିଲା, ତା'ହେଲା ଅନ୍ୟାୟ ନିୟମକୁ ନାହିଁ କହିବାର ସାମର୍ଥ୍ୟ । ହିନ୍ଦୁ ନିୟମ ଅନୁସାରେ ବାପା ହେଉଛନ୍ତି ସନ୍ତାନର ସ୍ୱାଭାବିକ ଅଭିଭାବକ । ବିଷୟଟିକୁ ବହୁ ବର୍ଷ ପରେ ଗୀତା ହରିହରନ୍ ଏବଂ ବନ୍ଦନା ଶିବା ଉଭୟ ନିଜ ନିଜ ରାସ୍ତାରେ ଅସ୍ୱୀକାର କରିବା ସହିତ ଏହାକୁ ବିରୋଧ କରିବାକୁ ଜୋର ଦେଲେ । ବନ୍ଦନା ଶିବା ଯୁକ୍ତି କରିଥିଲେ ଯେ କାନୁନ୍ ଅଧିକାର ଓ ଦାୟିତ୍ୱବୋଧ ମଧ୍ୟରେ ଏକ ଅନ୍ୟାୟପୂର୍ଣ୍ଣ ବିଭାଜନ କରିଛି । ଏହା ପୁରୁଷମାନଙ୍କୁ ଅଧିକାର ଓ ମହିଳାମାନଙ୍କୁ ଦେଇଛି ଦାୟିତ୍ୱ । ଏ ମହିଳାଗଣ ଭିନ୍ନ ଭିନ୍ନ ବିଶ୍ୱାସ ବା ଚଳଣିର । ତେବେ ସେମାନେ ଯେଉଁ ବିଷୟଗୁଡ଼ିକ ଉତ୍‌ଥାପନ କଲେ ତାହା ଦେଶର ସମଗ୍ର ମହିଳାଜାତିସହ ସମ୍ବନ୍ଧିତ । ପ୍ରତ୍ୟେକ ତାଙ୍କର ଭିନ୍ନ ଭିନ୍ନ ଶୈଳୀରେ ମତେ ଶିକ୍ଷା ଦେଇଛନ୍ତି ଯେ ଏ ଦେଶର ମହିଳାମାନଙ୍କର ନିଜର ଅଧିକାର ସପକ୍ଷରେ ଲଢ଼ିବାପାଇଁ ଯଥେଷ୍ଟ ଶକ୍ତି ସାମର୍ଥ୍ୟ ଓ ଆବେଗଗତ ଆନ୍ତରିକତା ଅଛି ।

ଭୋପାଳ ଗ୍ୟାସ୍ ଲିକ୍ ଦୁର୍ଘଟଣା ଯୋଗୁଁ ମତେ ଦିଲ୍ଲୀରେ ଘର ନେଇ ରହିବାକୁ ପଡ଼ିଲା । ଯାହାଫଳରେ ମୁଁ ପ୍ରତ୍ୟେକ ଦିନର ଶୁଣାଣିରେ ଯୋଗଦେଇପାରେ । ଏ ସହର ଓକିଲମାନଙ୍କର ଚୂଡ଼ାନ୍ତ ଲକ୍ଷ୍ୟର ପ୍ରତିନିଧିତ୍ୱ କରେ । ଭାରତର ସର୍ବୋଚ୍ଚ ନ୍ୟାୟାଳୟ ସମ୍ଭବତଃ ପୃଥିବୀର ସବୁଠାରୁ ଶକ୍ତି ସଂପନ୍ନ ନ୍ୟାୟାଳୟ । ଏହାର କେବଳ ଆଇନ ପ୍ରଣୟନ ବା ଭଙ୍ଗ କରିବାର କ୍ଷମତା ନାହିଁ, ଏହା ସମ୍ବିଧାନ ପ୍ରଣୟନ ବା ଭଙ୍ଗ ମଧ୍ୟ କରିପାରେ । ଏହା ନିର୍ଦ୍ଧାରଣ କରେ ସମ୍ବିଧାନର ମୌଳିକ ଲକ୍ଷଣ କ'ଣ, କେଉଁମାନଙ୍କୁ ସର୍ବସାଧାରଣ କାର୍ଯ୍ୟରୁ ବହିଷ୍କାର କରାଯିବ, ମହିଳାମାନଙ୍କର କି କି ଅଧିକାର ରହିଛି, ସହରଗୁଡ଼ିକୁ କିପରି ପରିଷ୍କାର ରଖାଯାଇପାରିବ ଓ ଏଥିରୁ ପ୍ରଦୂଷଣ ହ୍ରାସ ପାଇବ, ବନ୍ଧ କିପରି ନିର୍ମିତ

ହେବା ଉଚିତ୍ ବା ଜଙ୍ଗଲ ସଂରକ୍ଷଣ ତଥା ଶିକ୍ଷାକୁ କିପରି ମୌଳିକ ଅଧିକାର କରାଯିବ । ସଫଳତମ ଓକିଲମାନେ ସର୍ବସାଧାରଣ ଅଫିସ ଯଥା ମୁଖ୍ୟ ଆଇନ ପରାମର୍ଶଦାତା ବା ଆଇନ ବିଷୟକ ପରାମର୍ଶଦାତା ପଦ ପାଇ ବା ସାଂସଦ ହେଇ ଦିଲ୍ଲୀକୁ ବାସସ୍ଥାନ କରିସାରିଲେଣି । ଓକିଲ ଏବଂ ରାଜନୀତି ମଧ୍ୟରେ ଚିରକାଳ ଏକ ଘନିଷ୍ଠ ସଂପର୍କ ରହିଆସିଛି । କିନ୍ତୁ ମୋ କ୍ଷେତ୍ରରେ ଏ ଦୁଇ ଜଣାଶୁଣା ରାସ୍ତା ମଧ୍ୟରୁ କୌଣସିଟି ନୁହଁ ବରଂ ୟୁନିୟନ୍ କାର୍ବାଇଡ୍ ଯୋଗୁଁ ମୁଁ ଦିଲ୍ଲୀ ଆସିଲି । ୧୯୮୫ ମସିହାରୁ ଗ୍ୟାସ୍ ଦୁର୍ଘଟଣାଜନିତ ମାମଲା ଯୋଗୁଁ ମୁଁ ଭୋପାଳ ଯାଉଛି । ୧୯୮୯ରେ ଭୋପାଳ ଗ୍ୟାସ ଲିକ୍ ଦୁର୍ଘଟଣା ଅଧିନିୟମକୁ ଚାଲେଞ୍ଜ କରି ସର୍ବୋଚ୍ଚ ନ୍ୟାୟାଳୟରେ ଶୁଣାଣି ଆରମ୍ଭ ହେଲା । ଏହାର ଅର୍ଥ ଦିଲ୍ଲୀରେ ମୋର ରହଣିକୁ ବଢ଼ାଇବାକୁ ମତେ ନିଷ୍ପତ୍ତି ନେବାକୁ ପଡ଼ିଲା । ମୋର ଜୀବନ ବଞ୍ଚିବାର ଧାରା ସାଧାରଣତଃ ମୋର କର୍ମ ପଦ୍ଧତି ବା ଶୈଳୀକୁ ଅନୁସରଣ କରିଥାଏ ।

ମତେ ଅନେକ ସମୟରେ ପଚରାଯାଇଥାଏ ବିଶେଷ ଭାବେ ମହିଳା ଓକିଲମାନେ ପଚାରନ୍ତି, "ପୁରୁଷ ଆଧିପତ୍ୟଥିବା ବୃତ୍ତିରେ ତୁମେ କିପରି ତିଷ୍ଠି ରହିଛ ?" ମୁଁ ଭାବୁଛି ଯେଉଁ ପ୍ରକାରର ବିଷୟଗୁଡ଼ିକୁ ମୁଁ ନ୍ୟାୟାଳୟ ସମ୍ମୁଖରେ ଉତ୍‌ଥାପନ କରିଛି ତା' ମଧ୍ୟରେ ରହିଛି ଏହାର ଉତ୍ତର । ବଞ୍ଚିତ ଲୋକମାନଙ୍କର ଅତ୍ୟାବଶ୍ୟକତାର ପ୍ରତିନିଧିତ୍ୱ କରିଛି ମୁଁ, ଯେଉଁ ଅଧିକାରର ହକ୍‌ଦାର ହେବାପାଇଁ ନ୍ୟାୟାଳୟର କାନୁନ୍‌ର ଦ୍ୱାରସ୍ଥ ହେବାଛଡ଼ା ଅନ୍ୟ ଉପାୟ ନ ଥାଏ । ମୁଁ କେତେକ ସମୟରେ ଏପରି ଯୁକ୍ତି ଶୁଣିଛି ଯେ ମହିଳା ଏବଂ ଅନ୍ୟାନ୍ୟ ଗଣତାନ୍ତ୍ରିକ ଆନ୍ଦୋଳନ ନ୍ୟାୟାଳୟର ଦ୍ୱାରସ୍ଥ ହେବା ଉଚିତ୍ ନୁହେଁ ବରଂ ଅନ୍ୟ କୌଣସି ମଞ୍ଚରେ ଏ ସଂଗ୍ରାମ ଲଢ଼ାଯିବା ଉଚିତ୍ । ସେମାନଙ୍କ ଉଦ୍ଦେଶ୍ୟରେ ମୋର ଉତ୍ତର — ଧନୀ ଏବଂ ଅଧିକାର ପ୍ରାପ୍ତମାନେ ଆଇନ୍ କାନୁନ୍ ଦରକାର କରନ୍ତି ନାହିଁ । କେବଳ ନିଗୃହୀତମାନଙ୍କର ଏହା ଆବଶ୍ୟକ । କାରଣ ଯୁଦ୍ଧ କରିବାପାଇଁ ସେମାନଙ୍କ ନିକଟରେ ଅନ୍ୟକୌଣସି ଅସ୍ତ୍ର ନାହିଁ । ସେଇ ଦୃଷ୍ଟିରୁ ଏବଂ କେବଳ ସେହି ଦୃଷ୍ଟିରୁ କାନୁନ୍‌ର ନିୟମ ମୋ ପାଇଁ କୌଣସି ମୂଲ୍ୟ ରଖେ ନାହିଁ । ଗୋଟିଏ ପୁରୁଷ ପ୍ରାଧାନ୍ୟ ଥିବା ପେଶାରେ ତିଷ୍ଠିରହିବା ପାଇଁ ଆବଶ୍ୟକତା ହେଉଛି – ତୁମେ ସଂଶୟବାଦୀ ହୁଅନାହିଁ କାରଣ ସଂଶୟର ପରିଣାମ ବିଫଳତା । ମୁଁ କାନୁନ୍‌ର ନିୟମ ଉପରେ ଆସ୍ଥାରଖି ଏହାକୁ ଦୂରେଇ ରଖିବାପାଇଁ ସମର୍ଥ ହେଇଛି । ମୋର ଏଥିରେ ତିଷ୍ଠିରହିବା ଏବଂ ସଫଳତା ପାଇବା ଉଭୟ ମୋର ପେଶା ବହିର୍ଭୂତ ଜୀବନ ଓ ବିଶ୍ୱାସ ଅର୍ଥାତ୍ ସକ୍ରିୟତା ଓ ମହିଳାହେବା ଉପରେ ନିର୍ଭରଶୀଳ । ଅନ୍ୟଏକ ଅଜବ ଦୃଷ୍ଟିରୁ ପୁରୁଷ ଆଧିପତ୍ୟ ଥିବା ବୃତ୍ତିରେ ନାରୀ ହେବା ହିଁ ମୋ ସଫଳତାର ଚାବିକାଠି ବୋଲି ମୁଁ ମନେକରେ ।

ଆଜି ମୁଁ ଯେଉଁ ନ୍ୟାୟାଳୟରେ କାର୍ଯ୍ୟକରୁଛି ତାହା ଜରୁରୀ କାଳୀନ ପରିସ୍ଥିତି ପରବର୍ତ୍ତୀ ନ୍ୟାୟାଳୟ ସହିତ ସମାନ ନୁହେଁ । ଆମେ ଏକ ଜଗତୀକରଣ ଓ ଉଦାରୀକରଣର

ଯୁଗରେ ବଞ୍ଚୁଛେ ଏବଂ ଏହା ଆମର ନ୍ୟାୟଗତ ବିଚାରଧାରାକୁ ପ୍ରଭାବିତ କରୁଛି ବୋଲି ନିଃସନ୍ଦେହରେ କହିପାରେଁ । ସମୟ ଥିଲା ଯେତେବେଳେ ଜଣେ ରାଜ୍ୟର ନୀତି ନିର୍ଦ୍ଦେଶକ ସିଦ୍ଧାନ୍ତ ଉପରେ, ଜନ କଲ୍ୟାଣକାରୀ ରାଜ୍ୟଗଠନ, ସ୍ୱଳ୍ପ ମାତ୍ରାରେ ଥିବା ସଂସାଧନର ଜାତୀୟକରଣ, ଭୌତିକ ସଂସାଧାନର ପୁନର୍ବିତରଣ, କର୍ମପାଇଁ ନ୍ୟାୟସଂଗତ ଓ ମାନବୀୟ ପରିବେଶ ସୃଷ୍ଟିକରିବା, ସମ୍ବିଧାନରୁ ଧାରକରା ଏକ ଉକ୍ତି 'ଅନ୍ୱଡିଜର୍ଭଡ଼ୁ ଓ୍ୱାଣ୍ଟ'ର ଶିକାର ହୋଇଥିବା ଲୋକଙ୍କର ଆବଶ୍ୟକତା ପାଇଁ ସ୍ୱର ଉତ୍ତୋଳନ ଆଦିକୁ ନେଇ କୋର୍ଟରେ ହେଉଥିବା ତର୍କ ବିତର୍କକୁ ଶୁଣିପାରୁଥିଲା । ବର୍ତ୍ତମାନ ତୁମେ ଏଇ ନିୟମ ଉଲ୍ଲେଖ କରିଲେ ବିଚାରାଳୟର ସମସ୍ତେ ହସିବେ । ବର୍ତ୍ତମାନ ରାଜ୍ୟର ନୀତି ନିର୍ଦ୍ଦେଶକ ତତ୍ତ୍ୱରେ ଏକ ଅଲିଖିତ ପରିବର୍ତ୍ତନ ହୋଇଛି; ସଂପ୍ରତି 'ବିନିବେଶ', 'ଉଦାରୀକରଣ' ଏବଂ 'ଜଗତୀକରଣ' ହେଉଛି ଦେଶ ଏବଂ ନ୍ୟାୟପାଳିକାର ନୂତନ ମନ୍ତ୍ର । ସେଗୁଡ଼ିକର ପ୍ରୟୋଗ ବିନାଶକାରୀ । ଦାସ ପ୍ରଥା ସଦୃଶ ଠିକାଦାରୀ ବା ଗୋତି ଶ୍ରମିକ ସର୍ତ୍ତ ମୁତାବକ କାମ କରୁଥିବାରୁ ଏହା ଉପରେ ନିଷେଧ ଜାରି ନେଇ ତର୍କ ବିତର୍କ ଚାଲିଛି । ସେତେବେଳେ ମୁଁ ଶୁଣିଛି ଉଦାରୀକରଣ ଏବଂ ବିଦେଶୀ ପୁଞ୍ଜି ଆକର୍ଷିତ କରିବାପାଇଁ ଶ୍ରମଠିକାଦାରୀ ବିନିଯୁକ୍ତିର ଅନିବାର୍ଯ୍ୟତା ସପକ୍ଷରେ ଯୁକ୍ତିତର୍କ । ସହରକୁ ପରିଷ୍କାର ରଖିବାପାଇଁ ନଗର ନିଗମର ଦାୟିତ୍ୱ ସଂପର୍କରେ ଏକ ମାମଲାରେ କାମ କରିବାବେଳେ ଏ ତର୍କ ବି କରାଯାଇଥିଲା ଯେ ସଫେଇ କରିବାକୁ ଥିବା କର୍ମଚାରୀମାନେ ନିଜ କାମକରୁନାହାନ୍ତି କାରଣ ଅନୁସୂଚିତ ଜାତି ଏବଂ ଜନଜାତି ପ୍ରତି ନିଷ୍ଠୁର ଆଚରଣ ନିଷେଧ ଅଧିନିୟମ ଅନୁସାରେ ସେମାନେ ସୁରକ୍ଷିତ । ତେଣୁ ଆମେ ଆମ ସହରକୁ ପରିଷ୍କାର ରଖିବାପାଇଁ ହେଲେ ଏ ଅଧିନିୟମ ପରିବର୍ତ୍ତନ ଆବଶ୍ୟକ । ଏ ପ୍ରକାର ତର୍କ ମଧ୍ୟ ହେଲା ଯେ ଜଣେ ସଫେଇ କର୍ମଚାରୀକୁ ତା' ଜାତି ନାଁରେ ଡାକିଲେ ଅଧିନିୟମ ଅନୁସାରେ ଆପଣଙ୍କ ଉପରେ ମକଦ୍ଦମା ମଧ୍ୟ କରାଯାଇପାରିବ । ତେଣୁ ସହର ପରିଷ୍କାର ରଖିବା ପାଇଁ ହେଲେ ଏ ଅଧିନିୟମ ପ୍ରତ୍ୟାହାର କରିବା ଦରକାର । ଏଥିରୁ ପ୍ରତୀୟମାନ ହୁଏ ଯେ ନ୍ୟାୟାଳୟରେ ଉଦାରୀକରଣ ଓ ଜାତିଆଣଭାବ ଏକାସାଙ୍ଗରେ ଚାଲିଛି ।

ଆଜି ନ୍ୟାୟାଳୟ ସମ୍ମୁଖରେ କେବଳ ବାଳଶ୍ରମିକ ଓ ଗୋତି ଶ୍ରମିକଙ୍କ ମାମଲା ନାହିଁ । ଯଦି ବି ଅଛି ତ ଏହାକୁ ଜନ କଲ୍ୟାଣକାରୀ ଦୃଷ୍ଟିରୁ ଦେଖାଯାଇପାରୁନାହିଁ – ଏହାକୁ ରାଜନୀତି ମାଧ୍ୟମରେ ସମାଧାନ କରାଯାଉଛି । ଏମାନଙ୍କ କମ୍ପାନୀ ଦ୍ୱାରା ପରୀକ୍ଷଣର ପଦ୍ଧତି ନଥାଇ ଆନୁବଂଶିକ ପଦାର୍ଥକୁ ପରିବେଶ ମଧ୍ୟରେ ବିତରଣ କରିବା, ସର୍ଦ୍ଦାର ସରୋବର ବନ୍ଧ ନିର୍ମାଣର ଯାଥାର୍ଥ୍ୟ ନେଇ ପ୍ରଶ୍ନ, ଟ୍ରିପସ (ଟି ଆର୍ ଆଇ ପି ଏସ୍) ଚୁକ୍ତିରେ ସ୍ୱାକ୍ଷର ସଂପର୍କିତ ସମସ୍ୟା, ସ୍ୱତ୍ୱ ଆଇନ ଔଷଧର ପ୍ରବର୍ତ୍ତନ ଏବଂ ଏହାକୁ ଜନସାଧାରଣଙ୍କ ପହଞ୍ଚଠାରୁ ଦୂରରେ ରଖିବା ଆଦି ନ୍ୟାୟାଳୟର ପରିସରଭୁକ୍ତ ହେଇପଡ଼ିଛି । ନଚେତ୍ ଜନସାଧାଣଙ୍କ ସ୍ୱାସ୍ଥ୍ୟ ଏକ ଗଭୀର ଓ ଗମ୍ଭୀର ଚିନ୍ତାର ବିଷୟ ହେଇଉଠିବ । ବହୁ

ରାଷ୍ଟ୍ରୀୟ ସଂସ୍ଥା ଯେପରି ବିଶ୍ୱବ୍ୟାପାର ସଂସ୍ଥା ଏବଂ ବିଶ୍ୱ ବ୍ୟାଙ୍କ ସମ୍ମୁଖରେ ଦେଶର ସାର୍ବଭୌମତା ଉତ୍ସର୍ଗ କରିଦେବାପରି ଦାବି ମଧ୍ୟ ନ୍ୟାୟାଳୟ ଅନ୍ତର୍ଭୁକ୍ତ । ମୋର ସକ୍ରିୟତା ଏବଂ କେତେକ ମହିଳାଙ୍କ ସହିତ ଗଢ଼ିଉଠିଥିବା ସଂପର୍କ ମତେ ଏ ସମସ୍ତ ବିଷୟରେ ଥିବା ଜଟିଳତାକୁ ବୁଝିବାରେ ସାହାଯ୍ୟ କରିଛି । ଅନେକ ସମୟରେ ନ୍ୟାୟାଧୀଶଗଣ ଏସବୁ ବିଷୟରେ କାରବାର କରିବା ପାଇଁ ଠିକ୍ ଭାବରେ ପ୍ରସ୍ତୁତ ହୋଇ ନ ଥାନ୍ତି । ସେମାନେ ସହଜ ସରଳ ରାସ୍ତାଟିଏ ବାଛି ନିଅନ୍ତି । ସାଧାରଣତଃ ସମସ୍ୟାକୁ ରାଜନୈତିକ ଦୃଷ୍ଟିକୋଣରୁ ବା ପକ୍ଷପାତିତା ଦ୍ୱାରା ପ୍ରଭାବିତ ହୋଇ ସମାଧାନ କରନ୍ତି ଏଇ ସବୁ କାରଣରୁ ସର୍ବୋଚ୍ଚ ନ୍ୟାୟାଳୟ ସହିତ ଯୁକ୍ତରହିବା ବିତୃଷ୍ଣା ସୃଷ୍ଟି କରେ । ତେବେ ଏଇ କାରଣରୁ ହିଁ ମତେ ଯିବାକୁ ହୁଏ । ଏମିତି ସମୟ କେବେ ଆସେ ନାହିଁ ଯେତେବେଳେ ମୁଁ କହିପାରିବି ଯେ ମୋ କାମ ସଂପୂର୍ଣ୍ଣ ହେଲା ।

ମୋର ଏହି ସନ୍ତୋଷଜନକ, ପରିପୂର୍ଣ୍ଣ ବୃତ୍ତି ଅନ୍ତିମ ପର୍ଯ୍ୟାୟକୁ ଆଲୋଚନା କଲେ ମୁଁ ମୋର ସଫଳତା ବା ବିଫଳତାକୁ ବିବେଚନା କରେଁ । ମୁଁ ମୋ ସମୟର ଏକ ସୃଷ୍ଟି । ପ୍ରକୃତରେ ମୋର କୌଣସି ନିର୍ଦ୍ଦିଷ୍ଟ ଆଦର୍ଶ ନ ଥିବାରୁ ନିଜର ଏକ ଆଦର୍ଶ ସୃଷ୍ଟିପାଇଁ ମୁଁ ସ୍ୱାଧୀନ ଥିଲି ଏବଂ ଏଇଥିରୁଁ ହିଁ ମୋର ସ୍ୱତନ୍ତ୍ର ବିଚାରଧାରା ବା ସ୍ୱାତନ୍ତ୍ର୍ୟ ସୃଷ୍ଟି । ମୋ ପଥରେ ବହୁ ବାଧାବିଘ୍ନ ଥିଲା। ଏକ ପୁରୁଷ ପ୍ରାଧାନ୍ୟ ଥିବା ବିଶ୍ୱରେ ମୁଁ ଥିଲି ଜଣେ ମହିଳା । ଯେଉଁମାନେ ସମାଜରେ ନିଗୃହୀତ ମୁଁ ସେମାନଙ୍କ ପ୍ରତିନିଧିତ୍ୱ କରିବାପାଇଁ ନିଷ୍ପତ୍ତି ନେଲି ଏବଂ ସେମାନଙ୍କର ଏହି ଅଭାବବୋଧକୁ ଦୂର କରିବାର ଦାୟିତ୍ୱ ମୋ କାନ୍ଧ ଉପରେ ପଡ଼ିଲା । ଆମେ ଏହି ପେଶାର 'ବାଛନ୍ଦ' ସଦସ୍ୟ । ମୁଁ ମୋ ଜୀବନପ୍ରତି ସିଂହାବଲୋକନ କଲେ ଉପଲବ୍ଧି କରେ ଯେ ବାଛନ୍ଦ ଭାବରେ ମୋର ଯେଉଁ ପଦମର୍ଯ୍ୟାଦା ତାହା ମତେ ମୋ ପେଶାରେ ସଂଘର୍ଷରତ ରହିବାକୁ ବାଧ କରିଛି ଏବଂ ମୋର ଏ ସଂଘର୍ଷ ସଫଳ ହେଇଛି । ଇତିହାସ ମୋ ସପକ୍ଷରେ ଥିଲା । ଆମ ସମୟ ପ୍ରତି ଅନୁରୂପ ପ୍ରତିବଦ୍ଧ ଓକିଲମାନଙ୍କର ଏକ ଛୋଟ ଗୋଷ୍ଠୀ ଓ ମୁଁ, ଏକତ୍ର ମିଶି ଗଣତାନ୍ତ୍ରିକ ଓକିଲାତିର ଏକ ପରମ୍ପରା ନିର୍ମାଣ କଲୁ । ଆମେ ଆଶା କରୁଁ ଏ ପରମ୍ପରା ଜୀବିତ ରହିବ । ଏହା କଦାପି ଅଶି ଦଶକର ଦଶାରେ ପରିଣତ ହେବନାହିଁ । କାରଣ ଦେଶର ଇତିହାସରେ ସେ ପର୍ବର ଅନ୍ତ ଘଟିଛି । ଚଳିତ ଶତାବ୍ଦୀର ଓକିଲମାନେ ଯଦି ଗଣତାନ୍ତ୍ରିକ ପରମ୍ପରା ମଧ୍ୟରେ ଜୀବିତ ରହିବାକୁ ଚାହାଁନ୍ତି ତେବେ ସେମାନଙ୍କୁ ରାଜନୈତିକ ପ୍ରାଣୀ ହେବାକୁ ପଡ଼ିବ କାରଣ ବର୍ତ୍ତମାନର ଦାବିଗୁଡ଼ିକ ରାଜନୀତିକ ।

କିଛି ବର୍ଷ ପୂର୍ବରୁ ଗୋଟେ ସମୟ ଥିଲା, ଯେତେବେଳେ ମୁଁ ଭାବୁଥିଲି ମୋର ବ୍ୟକ୍ତିଗତ ଯାତ୍ରା ସମାପ୍ତ । ବର୍ତ୍ତମାନ ମୁଁ ହୃଦୟଙ୍ଗମ କରୁଛି ଯେ ସେପରି ସମୟ କେବେ ନଆସୁ ଯେତେବେଳେ ମୁଁ ସେକଥା କହିପାରିବି । ମୁଁ ଭଲପାଉଥିବା କାମଗୁଡ଼ିକ କରିବା ପାଇଁ ବ୍ୟାକୁଳ ଅଥଚ ବହୁବର୍ଷ ହେଲା କରିନାହିଁ, ପକ୍ଷୀମାନଙ୍କୁ ନିରୀକ୍ଷଣ କରିବା, ବନ୍ଧୁ

ବାନ୍ଧିବା, କିଛି ଅର୍ଥପୂର୍ଣ୍ଣ ସଂପର୍କ ଗଢ଼ିବା ଏବଂ ପିତାମାତା ଓ ପରିବାର ସହିତ ସମୟ ବିତେଇବା । ମୋର ବୃତ୍ତି ଓକିଲାତି ବୋଲି ନୁହେଁ ବାସ୍ତବରେ ମୁଁ ଅନୁଭବ କରେଁ ଯେ ଏହାକୁ ମୁଁ ସବୁଠୁ ବେଶୀ ଭଲପାଏଁ । ଏଇ ପଦ୍ଧତି ଓ ପେଶାରେ ଯେଉଁ ଅଧପତନ ଘଟୁଛି ତାକୁ ବିରୋଧ କରିବାର ଆବଶ୍ୟକତା ମତେ ବ୍ୟସ୍ତ ରଖୁଛି । ମତେ ମୋ ଜୀବନକୁ ଆନନ୍ଦମୟ କରି ରଖିବାର ପଥ ଅନ୍ୱେଷଣ କରିବାକୁ ପଡ଼ିବ ।

ମୋ ସହିତ ପକ୍ଷପାତିତା ହେଉଛି କି ? ହଁ, କିନ୍ତୁ ଲକ୍ଷ୍ୟ ସ୍ଥଳରେ ପହଞ୍ଚି ନପାରିବା ମୂଳରେ ଏହା କଦାପି ଏକ ବାହାନା ହୋଇ ପାରେନା । ପକ୍ଷପାତିତା ସତ୍ତ୍ୱେ ମୁଁ ସଫଳ – ମୁଁ କେବଳ ଏ ସବୁକୁ ଉପେକ୍ଷା କରିଛି ଓ ଆଗେଇ ଚାଲିଛି ।

*ଅଂଜଲି ଇଲା ମେନନ୍ (ଜନ୍ମ : ୧୯୪୦) ଭାରତର ପ୍ରସିଦ୍ଧ ଚିତ୍ରଶିଳ୍ପୀମାନଙ୍କ ମଧ୍ୟରୁ ଅନ୍ୟତମ । ପ୍ରୟୋଗଧର୍ମିତା ତଥା ନୂତନ ପ୍ରବର୍ତ୍ତନ ନିମନ୍ତେ ସୁଖ୍ୟାତ ଅଂଜଲି ଭାରତ ତଥା ସମଗ୍ର ବିଶ୍ୱରେ ଚିତ୍ର-ପ୍ରଦର୍ଶନୀ କରିଛନ୍ତି । ତାଙ୍କର ଚିତ୍ରକଳା ସାରା ପୃଥିବୀରେ ବିବିଧ ବ୍ୟକ୍ତିଗତ ସଂଗ୍ରହ ଓ ସଂଗ୍ରହାଳୟର ଶୋଭାବୃଦ୍ଧି କରୁଛି । ସେ ୧୯୯୯ ମସିହାରେ ପଦ୍ମଶ୍ରୀ ଉପାଧି ଦ୍ୱାରା ସମ୍ମାନିତା । ୨୦୦୨ ମସିହାରେ ମୁମ୍ବାଇ 'ନେସନାଲ ଗ୍ୟାଲେରୀ ଅଫ ମଡର୍ଣ୍ଣ ଆର୍ଟ' ରେ ତାଙ୍କର ପୂର୍ବ ଅଙ୍କିତ ବିଶିଷ୍ଟ ଚିତ୍ରକଳାଗୁଡ଼ିକର ପ୍ରଦର୍ଶନୀ କରାଯାଇ ତାଙ୍କୁ ସମ୍ମାନିତ କରାଯାଇଥିଲା ।*

୯

# ଚିତ୍ରକୃତି

## ଅଂଜଲି ଇଲା ମେନନ୍

ମତେ ସେତେବେଳକୁ ଏଗାର ବର୍ଷ ହେଇଥିବ ଯେତେବେଳେ ଏକ ସ୍ନେହୀ ପରିବାରର ନିରାପଦ ଓ ଅନ୍ତରଂଗ ବଳୟ ମଧ୍ୟରୁ ମିଲିଟାରୀ ଆବାସିକ ସ୍କୁଲର ରୁକ୍ଷ, ବାସ୍ତବ ପରିବେଶ ଭିତରକୁ ନିର୍ମମଭାବରେ ପଠେଇ ଦିଆଯାଇଥିଲା । ଲଭ୍‌ଡେଲ୍‌ର ଲରେନ୍ସ ସ୍କୁଲର ପ୍ରଥମ କେଇ ମାସର ଭୀଷଣଭାବେ ଘରକୁ ଝୁରିବା ମଧ୍ୟରେ ସ୍କୁଲର ଉତ୍ପୀଡ଼ନ, ଅନୁଶାସନ ଓ ନିୟମ ମାନିବାର ବାଧ୍ୟବାଧକତାକୁ ଯୁଝିବା ଭିତରେ ମୋ ପାଇଁ ଚିତ୍ରକଳା ବିଭାଗ ଥିଲା ଆଶ୍ଚର୍ଯ୍ୟଜନକ ଭାବେ ଶାନ୍ତ ଶୀତଳ ଆଶ୍ରୟ ସ୍ଥଳ । ସେଠି ସୁଶୀଲ ମୁଖାର୍ଜୀଙ୍କର କାବ୍ୟିକ ବ୍ୟକ୍ତିତ୍ୱ ମତେ ପ୍ରଭାବିତ କରୁଥିଲା । ପରବର୍ତ୍ତୀ ପାଞ୍ଚବର୍ଷ ମଧ୍ୟରେ ମୁଁ ସେଇ ଉଲ୍ଲେଖନୀୟ ଶିକ୍ଷକଙ୍କଠାରୁ ସମାନ୍ତରାଳ ଭାବେ ଚିତ୍ର ଅଙ୍କନ ଶିକ୍ଷା ପାଇଲି । ତେରବର୍ଷ ହେବା ପୂର୍ବରୁ ମୁଁ ତୈଳଚିତ୍ର ଆଙ୍କୁଥିଲି । ମୁଁ ସ୍କୁଲଛାଡ଼ି ମୁମ୍ବାଇର ଜେ. ଜେ. ଆର୍ଟ ସ୍କୁଲରେ ଯୋଗଦେବା ପୂର୍ବରୁ ଶ୍ରୀଯୁକ୍ତ ମୁଖାର୍ଜୀ ମୋ ମନରେ ପ୍ରତ୍ୟୟ ସୃଷ୍ଟି କରିଥିଲେ ଯେ ମୁଁ ଜଣେ ଚିତ୍ରଶିଳ୍ପୀ ହେବି, ବାପା ମା ଙ୍କ ଅଭିଳାଷ ଅନୁସାରେ ଡାକ୍ତର ନୁହେଁ ।

ଯଦିଓ ସେଇ ସ୍ୱଳ୍ପ ବୟସର ସଫଳତାର ସ୍ୱାଦରେ ଗୋଟେ ଦୁର୍ବଳ ଦିଗଥିଲା । ମୁଁ ଜେ. ଜେ. ସ୍କୁଲରେ ନିରସ ହୋଇଗଲି, ସେଠି ବେଶ୍ ଦୃଢ଼ ଭାବରେ ଅନୁଭବ କରୁଥିଲି ଯେ ଏସବୁ ମୁଁ ଆଗରୁ କରିସାରିଛି, ଏସବୁ ମୁଁ ଜାଣିଛି । କୈଶୋର-ଚାପଲ୍ୟଜନିତ ପଦକ୍ଷେପଯୋଗୁଁ ମୋର ପଢ଼ା ଛାଡ଼ିଦେବାଟାକୁ କିନ୍ତୁ ମୋ ପରିବାର ଆଦୌ ମାନିବାକୁ ରାଜି ନଥିଲେ । ପରିବର୍ତ୍ତରେ ମତେ ଇଂରାଜୀ ସାହିତ୍ୟରେ ବି. ଏ. ପଢ଼ିବାକୁ ବାଧ୍ୟ କରାଗଲା । ତା'ର ପ୍ରତିରୋଧରେ ଅବଜ୍ଞାପୂର୍ବକ ମୋର ବି.ଏ. ଶେଷ ବର୍ଷ ପରୀକ୍ଷାର ମାସେ ପୂର୍ବରୁ ଦିଲ୍ଲୀର ଏକ ଉଦ୍ୟାନରେ ଏମ୍. ଏଫ୍. ହୁସେନ୍ ଯିଏ କି ମୋର ବନ୍ଧୁ ଓ ଦିଗଦର୍ଶକ, ତାଙ୍କର ତତ୍ତ୍ୱାବଧାନରେ ମୋ ଦ୍ୱାରା ଅଙ୍କିତ ୫୫ଟି ଚିତ୍ରର ପ୍ରଦର୍ଶନୀ କଲି । ସେ ମୁମ୍ବାଇର ଭୋଲାଭାଇ ଇନ୍‌ଷ୍ଟିଚ୍ୟୁଟ୍‌ରେ ପ୍ରଦର୍ଶନ କରିବା ପାଇଁ ଶ୍ରେଷ୍ଠ ୨୦ଟି ଚିତ୍ର ନିର୍ବାଚନ କଲେ । ପଛକୁ ଚାହିଁଲେ ଆଶ୍ଚର୍ଯ୍ୟ ଲାଗେ ମୁଁ କେମିତି ସେଇ ପ୍ରଥମ ପ୍ରଥମ ପ୍ରଦର୍ଶନୀଗୁଡ଼ିକରେ ପାଇଥିବା ତୋଷାମଦର ପ୍ଲାବନ ଓ ପ୍ରଶଂସାର ଜୁଆର ହଜମ କଲି ।

ରିଚାର୍ଡ ବାର୍ଥୋଲୋମିଭଙ୍କ ପରି ସମାଲୋଚକଙ୍କର ‘‘ଶେର ଗିଲ୍‌ଙ୍କ ପରେ ଏପରି ପ୍ରତିଭା ଦେଖିନି’’.... ଇତ୍ୟାଦି ଉଚ୍ଛ୍ୱସିତ ପ୍ରଶଂସା । ଗୋଟିଏ ଅଠର ବର୍ଷର ଝିଅକୁ ବିହ୍ୱଳ କରିବା ପାଇଁ ଯଥେଷ୍ଟ ଥିଲା । ଅତି ସହଜରେ ମୋର ଏଇ କିଶୋର ପ୍ରତିଭାର ଅକାଳ ମୃତ୍ୟୁ ଘଟିପାରିଥାନ୍ତା ।

ଏକ ଫରାସୀ ବୃତ୍ତିପାଇ ବର୍ଷେ ପରେ ମୁଁ ପ୍ୟାରିସ୍ ଗଲି ଓ ସେଠାରେ ମୁଁ ମୋର ଦକ୍ଷତାର ଦାରିଦ୍ର୍ୟକୁ ବୁଝିପାରିଲି । ଫ୍ରେସ୍କୋ ଏଟ୍‌ଲିଏର୍‌ର ପ୍ରଫେସର ଆଜେମ୍‌ଙ୍କ ନିକଟରେ ଇକୋଲେ ଡେସ୍ ବ୍ୟୁଜ୍ ଆର୍ଟସର କଠୋର ଅନୁଶାସନର ଅର୍ଥ ଥିଲା ମଞ୍ଚ ଉପରେ ଘଣ୍ଟା ଘଣ୍ଟା କାମ କରିବା ଏବଂ ସନ୍ତସନ୍ତିଆ ଛାତତଳେ ଶୀତ ଦିନେ ବରଫ ପରି ଜମିଯାଇଥିବା ଚୂନ-ପ୍ଲାଷ୍ଟର ବାଲ୍‌ତିରେ କାମ କରିବା । ମୋର ପୂର୍ବ ଅଭିଜ୍ଞତା ଦ୍ୱାରା ପରିପୁଷ୍ଟ ହୋଇଥିବା ଏକ  ଉଦୀୟମାନ କଳାକାରର ରଂଗୀନ ରୋମାଞ୍ଚକର ସ୍ୱପ୍ନ ବା ଧାରଣାକୁ ସଂପୂର୍ଣ୍ଣଭାବେ ଧୂଳିସାତ୍ କରି ଦେଉଥିଲା ମୋର ଫୋଟକା ହେଇଯାଇଥିବା ହାତ ଓ ଲାଲ ହେଇ ଉଠୁଥିବା ନାକ । ମୁଁ ଏପରି ଏକ ପରିମଣ୍ଡଳ ମଧ୍ୟକୁ ନିକ୍ଷିପ୍ତ ହେଉଥିଲି ଯେଉଁଠି ମୋର ଶିକ୍ଷାଗତ ଯୋଗ୍ୟତାର ଅଭାବ ମତେ ବାରମ୍ବାର ମନେ ପକେଇ ଦେଉଥିଲା ଯେ ମୁଁ  ପର୍ଯ୍ୟାପ୍ତ ନୁହେଁ । ଯେତେବେଳେ ଅସ୍ତିତ୍ୱବାଦୀ ଚିନ୍ତାଧାରା ବିଷୟରେ ଧାରଣା, କାମ୍ୟୁ, ବ୍ରେଟନ୍ ଏବଂ ପ୍ରାଉଷ୍ଟ ଆଦିଙ୍କ କୃତି ତଥା ପୁଦଓ୍ୱକିନ, ଏଣ୍ଟୋନିଅନି ଏବଂ ବର୍ଗମ୍ୟାନ୍‌ଙ୍କ ଚଳଚିତ୍ର ଜଗତ ବିଷୟରେ ଜ୍ଞାନଆଦିର ସେ ସମୟରେ ଖୁବ୍ ମହତ୍ତ୍ୱପୂର୍ଣ୍ଣ ପ୍ରଭାବ ଥିଲା । ‘ବ୍ୟୁଜ୍ ଆର୍ଟସ’ରେ ମୋର ବହୁ ବନ୍ଧୁ ଆର୍କିଟେକ୍ଟ (ସ୍ଥପତି) ଥିଲେ । ଏଲେନ୍ ପେଷ୍କିନ୍ ନାମକ ବନ୍ଧୁଙ୍କର ଏକ ଛୋଟ ମହଲରେ ଆମେ ଅଧିକାଂଶ ଗ୍ରୀଷ୍ମଦିନ କଟାଉଥିଲୁ । ଗୋଟିଏ ଟ୍ରାକ୍ଟରର ପଛଡାଲାରେ ଆମେ ପୂରା ଦଳଟି ବସି ‘ଲୋଏର୍’ ଉପତ୍ୟକାକୁ ବୁଲିବାକୁ ଯାଉଥିଲୁ । ସନ୍ଧ୍ୟା ସମୟ ଭୀଷଣ ତର୍କ ବିତର୍କରେ ଶେଷ ହେଉଥିଲା – ଆମ ସମସ୍ତଙ୍କ ଭିତରେ ଅତୀବ ଭାବପ୍ରବଣତା ଥିଲା । ତେବେ ଆମ ଦଳରେ ପ୍ରଚଣ୍ଡ ପ୍ରତିଭାଶାଳୀ ବ୍ୟକ୍ତି ବି ଥିଲେ । ଏକ କଳାତ୍ମକ ତଥା ଖାମ୍‌ଖେୟାଲୀ ଦିଶିବା ପାଇଁ ମୋ ଛଡ଼ା ସମସ୍ତେ ଚେଷ୍ଟା କରୁଥିଲେ । ମୁଁ କେବଳ ଖାମଖିଆଲିଆ ଦିଶିବା ପାଇଁ ମୋ ନିଜ ପ୍ରକୃତ ରୂପରେ ଆତ୍ମ ପ୍ରକାଶ କରୁଥିଲି । ଉଜ୍ଜ୍ୱଳ ରଙ୍ଗର ଶାଢ଼ୀ, ଲମ୍ବା କେଶ ଏବଂ ବଡ଼ ଏକ ବିନ୍ଦି ପର୍ଯ୍ୟାପ୍ତ ଥିଲା । ଯୁବ ସମାଜ ନିକଟରେ ଘନକ୍ଷେତ୍ରୀୟ ଓ ଭାବାତ୍ମକ ଅଭିବ୍ୟକ୍ତିବାଦ କଳାଶିକ୍ଷାର ମୁଖ୍ୟ ସୂଚକ ଥିଲା, ଯେଉଁ ସାମ୍ପ୍ରତିକ କଳାତ୍ମକ ଧାରାକୁ ମୁଁ ସାମୟିକଭାବେ ପାଦରେ ଆଡ଼େଇ ଦେଇଥିଲି । ସେତେବେଳକୁ ମୌଁତମାର୍ତ୍ରେରୁ ମୌଁତପାର୍ଣ୍ଣାସେ ଆଡ଼କୁ ସମସ୍ତଙ୍କ ଦୃଷ୍ଟି ନିବଦ୍ଧ ହେଇସାରିଥିଲା । ଗୋଟିଏ ନୂତନ ପ୍ରକାରର ପରଂପରାବିଚ୍ୟୁତି ବା ସ୍ୱଚ୍ଛନ୍ଦତାର ଫେଶନ ଚାଲିଥିଲା । ଏହା ଷାଠିଏ ଦଶକର ରାଜନୀତି, ଜେନେଟ୍ ଓ ଆଇନେସ୍କୋଙ୍କ ଥିଏଟର ଅଫ ଦି ଆବ୍‌ସର୍ଡ଼ ଏବଂ ଜାଁ ଲୁଇ ବେରାଲ୍ଟ ଏବଂ ସାର୍ତ୍ରେଙ୍କ ଚତୁପାର୍ଶ୍ୱରେ ଏକ ବୌଦ୍ଧିକ ପରିବେଶ ଦ୍ୱାରା ଉତପ୍ରେରିତ ହେଉଥିଲା । ସାଇମନ୍ ଡି ବେଭୋର୍‌ଙ୍କ ବ୍ୟକ୍ତିତ୍ୱକୁ କେନ୍ଦ୍ରକରି ନାରୀବାଦର ସ୍ୱର ପରିସ୍ଫୁଟ ହେଉଥିଲା । ତଥାପି ସମସାମୟିକ ପରିମଣ୍ଡଳ

ଅନୁରୂପ ହେବାରେ ମୋର କୌଣସି ଆଗ୍ରହ ନଥିଲା କାରଣ ସର୍ବଦା ମୁଁ ଏକ ଆଶଙ୍କାରେ ଆନ୍ଦୋଳିତ ହେଉଥିଲି ଯେ ଆର୍ଥିକ ସଂକଟ ଯୋଗୁଁ ମୋର ୟୁରୋପ ରହଣି କାଳ ସଂକ୍ଷିପ୍ତ ହୋଇଯିବାର ସମ୍ଭାବନା ରହିଛି । ମୋର ମଧ୍ୟଯୁଗୀୟ ଖ୍ରୀଷ୍ଟିଆନ୍ ବିଶେଷଭାବେ ରୋମାନ ଯୁଗୀୟ କଳାପ୍ରତି ଏକ ଅପ୍ରତିରୋଧୀୟ ଆକର୍ଷଣ ଯୋଗୁଁ ମୁଁ ଘଣ୍ଟା ଘଣ୍ଟା ଧରି ପ୍ୟାରିସର ଗୀର୍ଜା ଏବଂ କ୍ୟାଥେଡ୍ରାଲ୍ ଏବଂ 'ମୁସିଗୁମେ' ଗୁଡ଼ିକରେ ସମୟ କଟେଇଛି । ଅନ୍ୟ ରୋମାନ୍ ସାମ୍ରାଜ୍ୟ ଯୁଗୀୟ କଳା ଥିବା ସ୍ଥାନଗୁଡ଼ିକୁ ମଧ ଯାତ୍ରା କରିବି ବୋଲି ଦୃଢ଼ ପ୍ରତିଜ୍ଞ ଥିଲି ।

ଠିକ୍ ଏହି ସମୟରେ ମିରାଣ୍ଡା ହାଉସର ମୋ ସାଙ୍ଗ ଶମା ଜୈଦିର ଆକସ୍ମିକ ଆବିର୍ଭାବ ଘଟିଲା ପ୍ୟାରିସରେ । ମୁଁ ଏବଂ ଶମା ଚାର୍‌ଟ୍ରେସ୍, ଆଟୁନ୍ ଏବଂ ଓ୍ୱିଝ୍‌ଲେ ଯାତ୍ରାରେ ବାହାରିଲୁ । ପରେ ପରେ ଆମେ ସ୍ପେନ୍ ଗଲୁ କାରଣ ବାର୍ସେଲୋନାରେ ରୋମାନ ସାମ୍ରାଜୀୟ ଚିତ୍ରକଳା ପ୍ରଦର୍ଶନୀ ଚାଲିଥିଲା । ସୌଭାଗ୍ୟବଶତଃ ସେ ସମୟରେ ବିନା ଭଡ଼ାରେ ଗାଡ଼ିରେ ଲିଫ୍ଟ ମାଗି ଯିବାଟା ନିରାପଦ ଥିଲା ଏବଂ ଯୁବ ହଷ୍ଟେଲ (Youth Hostel) ଗୁଡ଼ିକରେ ମାତ୍ର ଗୋଟିଏ ଫ୍ରାଙ୍କ୍ ବିନିମୟରେ ରାତିଏ ବିତେଇ ହେଉଥିଲା । ଆମେ ସ୍ପେନ୍ ଏବଂ ଇଟାଲୀର ବହୁ ସ୍ଥାନ ଘୂରିଲୁ, ଅନେକ ସମୟରେ କେଉଁ ଆଭ୍ୟନ୍ତରୀଣ ଗ୍ରାମ୍ୟ ଚର୍ଚ୍ଚର ଶୀତଳ ପ୍ରସ୍ତର ଚଟାଣରେ ବିନା ବିଛଣାରେ ଖାଲି ପିଠିରେ ଶୋଉଥିଲୁ ଓ ଚର୍ଚ୍ଚ ଛାତରେ ଅଙ୍କିତ ହୋଇଥିବା ଚିତ୍ର ଅଧ୍ୟୟନ କରୁଥିଲୁ । ଏ ଯାତ୍ରାର ଗଭୀର ପ୍ରଭାବ ମୋର କାମ ଉପରେ ରହିଛି । କଳାକାର ସମ୍ମୁଖରେ ବିବିଧ ପ୍ରୋତ୍ସାହନ ମୂଳକ ଦୃଶ୍ୟର ଭଣ୍ଡାର ସତେ ଯେପରି ବିଚ୍ଛୁରିତ ହୋଇ ପଡ଼ିଥାଏ ଏବଂ ସେ ବୟସରେ ତାକୁ ଧୀରେ ଧୀରେ ବିଷୟ ବାଛିବାକୁ ପଡ଼େ, ଯାହା ପରେ ତା'ର ନିଜର ବ୍ୟକ୍ତିଗତ ଦିଗ ନିର୍ଣ୍ଣୟ କରେ । ହିଏରୋନିମସ ବାଶ୍‌ର ବିମୁଗ୍ଧ ଆବିଷ୍କାର ପରେ ପ୍ରାରମ୍ଭିକ ସମୟର ଖ୍ରୀଷ୍ଟିଆନ୍ କଳାର ମ୍ଲାନ ରଙ୍ଗ, ଗାମ୍ଭୀର୍ଯ୍ୟ ଏବଂ ସଂପୂର୍ଣ୍ଣ ପ୍ରତିକୃତି ପ୍ରତି ମୋର ଆଗ୍ରହ ଆଉରି ଅଧିକ ବୃଦ୍ଧିପାଇଲା । ବ୍ୟଙ୍ଗ ଏବଂ ବ୍ୟକ୍ତିତ୍ୱବାଦର ସ୍ପଷ୍ଟ ଛାପ ଶିଳ୍ପୀଙ୍କର ଔଜଲ୍ୟକୁ ଚିହ୍ନିତ କରୁଛି ଯିଏ କି ନିଃସନ୍ଦେହରେ ତାଙ୍କ ସମୟର ପ୍ରଥମ ଯଥାର୍ଥ ଚିତ୍ରଶିଳ୍ପୀ ଥିଲେ ଏବଂ ନିଜ ସମୟଠୁଁ ଶତାବ୍ଦୀ ଆଗରେ ଥିଲେ । ଶମା ଏବଂ ମୁଁ ୟାପରେ ଆମ ଫେରନ୍ତା ଯାତ୍ରାରେ ତୁର୍କ ଏବଂ ଗ୍ରୀସ୍‌ରେ ମାସାଧିକ କାଳ ବ୍ୟତୀତ କଲୁ । ବାଇଜେଣ୍ଟାଇନ୍‌ର ମହାନ ପାରମ୍ପରିକ ପ୍ରତୀକାତ୍ମକ ନିରାଡ଼ମ୍ବର ମୂର୍ତ୍ତିକଳା, ସ୍ୱର୍ଣ୍ଣାଳଂକାର ଓ ପ୍ରତୀକବାଦ ଦ୍ୱାରା ସଜ୍ଜିତ ହୋଇ ଆମର ଦୃଶ୍ୟାନୁଭୂତିର ଶବ୍ଦ ଭଣ୍ଡାରକୁ ସମୃଦ୍ଧ କରିଲା ।

ପ୍ୟାରିସ୍‌ରେ ମୋର ଦ୍ୱିତୀୟ ବର୍ଷ ବେଳକୁ ଏଟ୍‌ଲିୟର ଫ୍ରେସ୍କରେ ମୋ କାମ ବ୍ୟତୀତ ମୁଁ ଏପରି ଏକ ସ୍ଥାନର ଆବଶ୍ୟକତା ଅନୁଭବ କଲି ଯେଉଁଠି ପ୍ରକୃତରେ ଆଙ୍କିହେବ । ମେକ୍‌ସିକୋର ଜଣେ ଚିତ୍ରକର, ତାମାୟୋଙ୍କ ଶିଷ୍ୟା, ଫ୍ରାନ୍‌ସିସ୍କୋ ଟୋଲେଡୋଙ୍କ ସହିତ ଗୋଟିଏ ଷ୍ଟୁଡ଼ିଓରେ ମୁଁ କିଛି କାଳ କାମ କଲି । ଆମେ ଦିଜଣ ଦେଖିବାକୁ ଏକାପରି ଏବଂ

ଆମର ଜନ୍ମତାରିଖ ମଧ୍ୟ ଏକ । ଲୋକେ ଆମକୁ ଭୁଲ୍‌ରେ ଭଉଣୀବୋଲି ଭାବନ୍ତି । ଟୋଲେଡ଼ୋଙ୍କର ସ୍ୱପ୍ନିଳ ଜଳରଂଗରେ ଥିଲା ସ୍ୱଚ୍ଛତା ଏବଂ ଏହା ଅଦୃଶ୍ୟ ଆଲୋକରେ ପରିପୂର୍ଣ୍ଣ ଥିଲା । ପରିଶେଷରେ ଯଦିଓ ଏକ ଶକ୍ତ ସମତଳ ଉପରେ ତୈଳ (ଚିତ୍ର) କାର୍ଯ୍ୟର ପ୍ରବିଧିକୁ ମୁଁ ବିକଶିତ କଲି ସେଥିରେ ତାଙ୍କ ଦ୍ୱାରା ଅନୁପ୍ରେରିତ ଇଷତ୍ ସ୍ୱଚ୍ଛ (ଆଲୋକ ଭେଦ୍ୟ ଅସ୍ୱଚ୍ଛ) ସ୍ପର୍ଶ ଦେବା ସହିତ ପ୍ରାଚୀନ ଭିତ୍ତିଚିତ୍ରରୁ କାଠ ଉପରେ ଜମିଥିବା ଚିକ୍କଣକୁ ସଂଗ୍ରହ କରି ଯୋଗ କଲି । ଆମ ଭିତରେ ଭାବ ବିନିମୟ ପାଇଁ କୌଣସି ସାଧାରଣ ଭାଷା ନ ଥିଲା କିନ୍ତୁ ଚିତ୍ରକଳା ପ୍ରତି ଆମର ଦୃଷ୍ଟିକୋଣରେ ଏକ ସମାନତା ପରିଲକ୍ଷିତ ହେଉଥିଲା । ମୋର ମନେହୁଏ ଆମେ ପରସ୍ପରକୁ ବେଶ୍ ପ୍ରଭାବିତ କରୁଥିଲୁ, ତା' ଛଡ଼ା ଆମ ଭିତରେ ଥିବା ଯୌବନର ଚାଞ୍ଚଲ୍ୟ, ଉଦ୍ଦାମତା ଓ ସ୍ପର୍ଦ୍ଧା ମଧ୍ୟ ଥିଲା ସମାନ ଧରଣର । କାରଣ ନିଜ ନିଜ ଦେଶର ସମାନ ସାଂସ୍କୃତିକ ପରିମଣ୍ଡଳରେ ପିଲାଦିନରୁ ବଢ଼ି ଆସିଛୁ ।

ୟୁରୋପରେ ମୋର ସ୍ୱଳ୍ପକାଳ ରହଣି ପରେ ଭାରତକୁ ଫେରି ଆସିବା ଥିଲା କଠିନ । ମୁଁ ମୋର ଲଭ୍‌ଡେଲ୍‌ର ପୁରୁଣା ସ୍କୁଲରେ ପ୍ରାୟ ଦୁଇ ବର୍ଷ କାଳ ଶିକ୍ଷକତା କଲି, ସେଇ ସମୟରେ ମୁଁ ମୋର ପିଲାଦିନର ବନ୍ଧୁ ରାଜା ମେନନ୍‌ଙ୍କୁ ବିବାହ କଲି ଯିଏ ଏବେ ଜଳ ସେନା ବିଭାଗରେ ଅବସ୍ଥାପିତ । ଆମର ଗାର୍ହସ୍ଥ୍ୟ ଜୀବନ ଦୀର୍ଘ ବର୍ଷଧରି ଠିକ୍‌ଠାକ୍ ଚାଲିଥିଲା । କିନ୍ତୁ ଆମକୁ ସବୁବେଳେ ଯାଯାବର ଜୀବନ ପରି ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ଯିବାକୁ ପଡୁଥିଲା ଓ ଆମେ ସେମିତି ପଇସାବାଲା ବି ନଥିଲୁ । ପିଲାଙ୍କର ଜନ୍ମ ମୋର ଭାବ ଜଗତରେ ଗୋଟିଏ ବିଶେଷ ପରିବର୍ତ୍ତନ ଆଣିଲା । ମୁଁ ଶ୍ମଶ୍ରୁ ଯୁକ୍ତ ଧର୍ମ ପ୍ରଚାରକ ଓ ସନ୍ଥର ଚିତ୍ରରୁ ଉଲଗ୍ନ ଶିଶୁ ଓ ମା ଓ ପିଲାଙ୍କର ଯୋଡ଼ି ଭିତରକୁ ଗତିକଲି । ସେ ସମୟର ଅବିଚଳିତ ଭାବପ୍ରବଣତା (ରୋମାଣ୍ଟିସିଜମ୍)ର ଅପ୍ରତିହତ ଧାରାରୁ ମୁଁ ନିଜକୁ ଦୂରେଇ ନେଲି । ୟା ଭିତରେ ଆମେ ବର୍ଷକ ପାଇଁ ଇଂଲଣ୍ଡ ଓ ଦୁଇବର୍ଷ ଭ୍ଲାଦିଭୋଷ୍ଟୋକ୍‌ରେ ଦୁଇ ଛୋଟ ଛୁଆଙ୍କ ସହିତ ରହିଲୁ । କେହି ଜଣେ ବି ସାହାଯ୍ୟ କରିବାକୁ ନଥିଲେ । ସେହି ସମୟରେ ହିଁ ମୋର ହୃଦବୋଧ ହେଲା ଯେ ପରିସ୍ଥିତି ଯାହା ହେଉନା କାହିଁକି ଚିତ୍ରକଳା ହିଁ ମୋର ଲକ୍ଷ୍ୟ । ମୋ ଭିତରେ ଥିବା ସୃଜନଶୀଳତାର ପ୍ରଖର ସ୍ରୋତ ଓ ଏହାକୁ ପ୍ରକାଶ କରିବାର ଅଦମ୍ୟ ଆଗ୍ରହକୁ ଅବଦମନ କରିବାର କୌଣସି ଯଥେଷ୍ଟ ଦୃଢ଼ ଆଧାର ମୁଁ ଖୋଜି ପାଇଲି ନାହିଁ । ମୁଁ କୌଣସି ପ୍ରକାରେ "ଦୋମା ଖୁଦୋଝ୍ନିକୋଭ ବା କଳାକାରମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ଗୃହରେ ଭର୍ତ୍ତି ହେଲି । ସେଠି କେବେ ବି ଏକକ ଚିତ୍ର ପ୍ରଦର୍ଶନୀ ଆଗରୁ ହୋଇନଥିଲା । ସେଠାରେ ବ୍ୟକ୍ତି ସଂସ୍କୃତିକୁ ପ୍ରୋତ୍ସାହିତ କରାଯାଉନଥିଲା ଏବଂ ସାମ୍ୟବାଦୀ ସୋଭିଏତ୍ ପ୍ରଚାରର ଆଦେଶ ମଧ୍ୟରେ ବ୍ୟକ୍ତି ଅଭିବ୍ୟକ୍ତି ଅନ୍ତର୍ଭୁକ୍ତ ହୋଇଯାଏ । ତେଣୁ ଚିତ୍ରକର ଗୋଷ୍ଠୀ ସାମୂହିକ ରୂପରେ ନିଜକୁ ପ୍ରକାଶ କରନ୍ତି । ସେଇ ରଂଗହୀନ ଉଷର ସହରରେ ଏକମାତ୍ର ସୌନ୍ଦର୍ଯ୍ୟର ଉତ୍ସ

ଥିଲା କାଠ ନିର୍ମିତ ସେ ସ୍ଥାନୀୟ ଚର୍ଚ୍ଚଟି । ରବିବାର ଦିନ ମୁଁ ସେଠିକି ଯାଉଥିଲି । ସେ ଚର୍ଚ୍ଚର କାନ୍ଥ, ଚଟାଣଠୁଁ ଛାତ ପର୍ଯ୍ୟନ୍ତ ଆଶ୍ଚର୍ଯ୍ୟଜନକ ମୂର୍ତ୍ତିକଳା ମଣ୍ଡିତ ଥିଲା, ଏହା ମୋର କାମ ଉପରେ ପଡ଼ିଥିବା ପ୍ରାଥମିକ ପ୍ରଭାବକୁ ପୁନର୍ବାର ଅଧିକ ପରିପୁଷ୍ଟ କଲା । ମୁଁ ମୋ ପିଠିରେ ଦଶମାସର ଛୁଆକୁ ଝୁଲେଇ ଶିଢ଼ି ଘର ତଳେ ଥିବା ଝାଡୁରଖା ଆଲମାରୀକୁ ଷ୍ଟୁଡ଼ିଓରେ ପରିଣତ କରି ୩୫ଟି ଚିତ୍ର ଶେଷ କରିଲି । ଶେଷ ସୁଦ୍ଧା ନଗ୍ନ ଚିତ୍ରଗୁଡ଼ିକ ପ୍ରଦର୍ଶନୀ ପାଇଁ ଅନୁମତି ପାଇଲା ନାହିଁ । ବିଜ୍ଞାପନ ଉପରେ ନିଷେଧାଜ୍ଞା ଥିବା ସତ୍ତ୍ୱେ ପ୍ରଦର୍ଶନୀରେ ଅଭୂତପୂର୍ବ ଲୋକଗହଳିର ଥିଲା ପ୍ଲାବନ । ଦର୍ଶକମାନେ ମୋ ପାଇଁ ବିବିଧ ଉପହାର – ହରିଣ ଶିଙ୍ଗ, କବିତା, ପଶୁଲୋମ ଟୋପି, ଭୋଦ୍‌କା ବୋତଲ, ଏପରିକି ହାତବୁଣା ହଳେ ମୋଜା ପର୍ଯ୍ୟନ୍ତ ଆଣିଥିଲେ ! ଜୀବନରେ ସେଇ ଥରକ ପାଇଁ କେବଳ ମୋର ଅଧିକାଂଶ ଚିତ୍ର ଛାତ୍ର ଓ ଶ୍ରମିକ ଶ୍ରେଣୀର ଲୋକ କିଣିଥିଲେ । ଏହା ଏକ ଭିନ୍ନ ଜଗତ, ସେ ଅନୁଭବ ମୋ ଭିତରେ ଆଜିଯାଏ ସଂଜୀବିତ ।

ସତୁରୀ ଦଶକର ଆରମ୍ଭରେ ଦେଶକୁ ଫେରିବାପରେ ଦିଲ୍ଲୀ ଓ କଲିକତାରେ ଅନେକ ପ୍ରଦର୍ଶନୀ ହେଲା । ଆର୍ଥିକ ଦୃଷ୍ଟିକୋଣରୁ ସେତେ ସଫଳତା ପାଇନଥିଲେ ମଧ୍ୟ ଭଲ ସମୀକ୍ଷା ହେଇଥିଲା । ସେ ସବୁ ଦିନରେ ଅଧିକାଂଶ ବିଦେଶୀ ନହେଲେ ଟାଟା ଓ ବର୍ମା ଶେଲ ପରି ବ୍ୟବସାୟୀ ପରିବାର ଚିତ୍ର କିଣୁଥିଲେ । ଆର୍ଥିକ ଦୃଷ୍ଟିକୋଣରୁ ଏହା ସଂଘର୍ଷମୟ କାଳ ଥିଲା ସତ କିନ୍ତୁ ଏକ ବ୍ୟକ୍ତିଗତ ଅଭିବ୍ୟକ୍ତି ବିକାଶ ଓ ସ୍ୱନାମଧନ୍ୟ ପରିଚିତ ନିମିତ୍ତ ସମୟ ଥିଲା ଅତ୍ୟନ୍ତ ଜଟିଳ । ସେ ଯାହା ହେଉ ଏହା ସ୍ପଷ୍ଟ ଥିଲା ଯେ ବିବିଧ କାରଣରୁ ମତେ ଅପାରମ୍ପରିକ ମନେ କରାଯାଉଥିଲା । ମୋର ଚିତ୍ରାଙ୍କନ ନିଃସନ୍ଦେହରେ ମୂର୍ତ୍ତ ଥିଲା ଯେତେବେଳେ କି ବିମୂର୍ତ୍ତନ ଶୈଳୀ ଲୋକପ୍ରିୟତାର ଶୀର୍ଷରେ ଥିଲା । ଏକଦା ମୋ ଚିତ୍ରକଳାକୁ ଅତ୍ୟଧିକ ୟୁରୋପୀୟ ଶୈଳୀର ମନେ କରାଯାଉଥିଲା, ସେତେବେଳେ ଭାରତୀୟ ଚିତ୍ରକାରଗଣ ନିଜ୍‌ର ଉତ୍ସ ଅନ୍ୱେଷଣ ଏବଂ ସ୍ୱଦେଶୀ ପରିଚିତି ନିମନ୍ତେ ସ୍ୱାଧୀନତାତ୍ତୋର କାଳରେ ଭାରତୀୟକରଣ ପାଇଁ ସଚେତନ ପ୍ରୟାସ କରୁଥିଲେ । ଏପରିକି ଡେସ୍‌ମଣ୍ଡ ଡଇଗ୍ ଷ୍ଟେଟସ୍‌ମ୍ୟାନ୍‌ରେ ଲେଖିଥିଲେ, "ଅଞ୍ଜଲି ମେନନ୍ ତ୍ରୟୋଦଶ ଶତାବ୍ଦୀରେ କଣ କରୁଛନ୍ତି ?" ଏ ପ୍ରକାର ପରସ୍ପର ବିରୋଧୀ ମନ୍ତବ୍ୟ ମତେ ସଫଳତା ପରିବର୍ତ୍ତେ ବିଫଳତା ଆଡ଼କୁ ଟାଣି ନେଇଥାନ୍ତା । ମୁଁ କିନ୍ତୁ ପରିଣାମ ପ୍ରତି ସଂପୂର୍ଣ୍ଣ ଉଦାସୀନ ହୋଇ ମୋ ନିର୍ବାଚିତ ପଥରେ ଆଗେଇ ଚାଲିଲି । କୌଣସି ବିପରୀତ କାରଣ ବା ଯେଉଁ କାରଣରୁ ହେଉ ମୋର ଅପାରମ୍ପରିକ ଶୈଳୀ କିଛି ଲୋକଙ୍କ ମନରେ କୌତୂହଳ ସୃଷ୍ଟିକରିବା ପରି ମନେହେଲା ଏବଂ ବେଶୀ ନ ହେଲେ ମଧ୍ୟ ମତେ କିଛି ସଂଖ୍ୟାରେ ଲୋକ ଅନୁସରଣ କଲେ ।

ସତୁରୀ ଦଶକର ମଧ୍ୟଭାଗରେ ଆମର ବମ୍ବେକୁ ବଦଳି ହେଲା । ଏହା ଭାରତର କଳା ଜଗତର ପୀଠ ସ୍ଥଳ ଏବଂ ମୁଁ ସେହି ସ୍ୱଳ୍ପ କେଇବର୍ଷକୁ ଉପଯୋଗକରି ଗୋଟିଏ ମର୍ଯ୍ୟାଦାପୂର୍ଣ୍ଣ ସ୍ଥାନରେ ନିଜର କଳା ପ୍ରତିଭାକୁ ପ୍ରଦର୍ଶନ କରିବାପାଇଁ ବ୍ୟାକୁଳ ଥିଲି ।

ପ୍ରାୟ ସେଇ ସମୟରେ ମୁଁ ସ୍ୱାମୀ ରଙ୍ଗନାଥ ଆନନ୍ଦଙ୍କ ଦ୍ୱାରା ଭଗବଦ୍ ଗୀତା ଉପରେ ପ୍ରଦତ୍ତ ପ୍ରବଚନ ଘରକୁ ଆଣିଥିଲି । ସେ କହିଛନ୍ତି – ଫଳରେ ଆଶା ନ ରଖି କରାଯାଇଥିବା କର୍ମ ହିଁ ସତ୍‌କର୍ମ । ଫଳର କାମନା ପରିତ୍ୟାଗ କଲେ ମନୁଷ୍ୟ ଚିରନ୍ତନ ଶାନ୍ତି ପ୍ରାପ୍ତ ହୁଏ । ଏହା ମୋ ଜୀବନ ଏବଂ ବୃତ୍ତି ଉଭୟର ମୋଡ଼ ପରିବର୍ତ୍ତନରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କଲା । ମୁଁ ସୃଜନାତ୍ମକ କାମ ଆରମ୍ଭ କରିଦେଲି, ମୋ ପ୍ରୟାସର ଫଳାଫଳ ବା ପରିଣତି କଣ ହେବ ସେ ବିଷୟରେ ସାମାନ୍ୟ ବି ଚିନ୍ତା କରିନି । ପ୍ରଦର୍ଶନୀ ପାଇଁ, ବିକ୍ରୀ ପାଇଁ, ଏପରିକି ସମୀକ୍ଷାତ୍ମକ ବିଶ୍ଳେଷଣ ପାଇଁ ଉଦ୍ଦେଶ୍ୟ ନରଖି ଆଙ୍କିଗଲି । ରଙ୍ଗ ଏବଂ କ୍ୟାନଭାସ୍ ପାଇଁ ଟଙ୍କା ଯୋଗାଡ଼ କରିବା ଉଦ୍ଦେଶ୍ୟରେ ମୁଁ ଟି–ସାର୍ଟରେ ଡିଜାଇନ୍ ଆଙ୍କିବା ପାଇଁ ୬ଟଙ୍କା ହିସାବରେ ନେବାଠୁଁ ଆରମ୍ଭ କରି ଦୋକାନର ଝର୍କାରେ ଡିଜାଇନ୍ ଆଙ୍କିବାପର୍ଯ୍ୟନ୍ତ ବିଭିନ୍ନ ପ୍ରକାର ବିରକ୍ତିକର କାମ କଲି । ତଥାପି ସେଥିରେ ମୂର୍ତ୍ତିମନ୍ତ ହେଉଥିବା କଳାକୁ ଦେଖି ମୁଁ ଉତ୍ତେଜନା ଅନୁଭବ କରୁଥିଲି । ସେତେବେଳେ ମତେ ସର୍ବଦା ସ୍ୱର୍ଗସୁଖ ମିଳୁଥିଲା ପରି ଲାଗୁଥିଲା ଓ ପିଲାମାନେ ଶୋଇପଡ଼ିବାପରେ ମୁଁ ସାରାରାତି ଚେଇଁକାମ କରୁଥିଲି ।

ଦିନେ ଯେତେବେଳେ କିକୁ ଗାନ୍ଧୀ ମୋ କବାଟର ଘଣ୍ଟି ବଜାଇଲେ । ତାଙ୍କୁ ଦେଖି ମୁଁ ହତଚକିତ ହେଇଗଲି । କିନ୍ତୁ ସୌଭାଗ୍ୟକୁ ତାଙ୍କୁ ଦେଖାଇବାକୁ ମୋ ପାଖରେ ପ୍ରଚୁର କାମ ଥିଲା । ଯାହା ଫଳରେ ଭାରତର ସବୁଠାରୁ ପ୍ରସିଦ୍ଧ ଗ୍ୟାଲେରୀ – ଶେ ମୋଲ୍ଡ ଗ୍ୟାଲେରୀରେ ମୋର ଏକକ ଚିତ୍ର ପ୍ରଦର୍ଶନ କରିବାର ସୁଯୋଗ ମତେ ତତ୍‌କ୍ଷଣାତ୍ ମିଳିଗଲା । ଏହାପରେ ପଛକୁ ଫେରିବାକୁ ପଡ଼ିନି । ଏହାପରେ ପରବର୍ତ୍ତୀ ଗୋଟିଏ ଦଶକ ଧରି ମୋର ପ୍ରଦର୍ଶନୀ କ୍ରମାଗତଭାବରେ ଲୋକମାନଙ୍କୁ ମୋ କଳା ପ୍ରତି ଆକୃଷ୍ଟ କରିଛି । ଶେଷରେ ମୋଟା ଅଙ୍କର ଅର୍ଥପ୍ରାପ୍ତି ସହିତ ସର୍ବସାଧାରଣ ସ୍ଥାନ, ହୋଟେଲ୍ ଏବଂ ଗଣ ମାଧ୍ୟମରେ ଚିତ୍ର ସ୍ଥାନପାଇବାରୁ ବେଶ୍ ଟଙ୍କା ମଧ୍ୟ ମିଳିଲା । ଇଣ୍ଡିଆ ଟୁଡେର ସେଣ୍ଟର ସ୍ପ୍ରେଡ୍‌ରେ ସ୍ଥାନ ମିଳିବାରୁ ତାହା ବହୁଗୁଣିତ ହେଲା । ସଫଳତା ଅନାୟାସରେ ମିଳିଥିବାରୁ ମୋ ଚିତ୍ରକଳା ସଂପର୍କରେ ମୁଁ ସଦା ସନ୍ଦିହାନ ଥିଲି । ମୋର ମନେ ହେଉଥିଲା ଏହା ବିଭିନ୍ନ ପରୀକ୍ଷଣ କଷଟି ମାଧ୍ୟମରେ ଅଧିକ ସମୀକ୍ଷାତ୍ମକ ଓ ପ୍ରତିଦ୍ୱନ୍ଦ୍ୱାତ୍ମକ ପରିବେଶ ମଧ୍ୟରେ ଉତ୍ତୀର୍ଣ୍ଣ ହେବା ଆବଶ୍ୟକ । ତେଣୁ ୧୯୮୦ ମସିହାରେ ଆମେରିକାରେ ଏକ ପ୍ରଦର୍ଶନୀର ଆୟୋଜନ ମୁଁ କଲି । ମାତ୍ର ଏହା ଭାରତୀୟ କଳାକାରମାନଙ୍କର ନିରୀହତାର ନମୁନା ଯେ ସେମାନେ ବିଦେଶରେ ପ୍ରଦର୍ଶନକୁ ବଡ଼ ମାନନ୍ତି । ମୁଁ ବି ମୋର ଚିତ୍ର ପ୍ରଦର୍ଶନୀ ଭାରତ ସରକାରଙ୍କ ଦ୍ୱାରା ନିୟୁଅର୍କର କନ୍‌ସୁଲେଟ୍ ଏବଂ ୱାଶିଂଟନ୍‌ରେ ଥିବା ଦୂତାବାସରେ ପ୍ରୟୋଜିତ କରି ନିଜକୁ ଯଥେଷ୍ଟ ସଫଳ ମନେ କରୁଥିଲି । ଦୁଇ ଦଶନ୍ଧି ପରେ ମଧ୍ୟ ବିଦେଶରେ କୌଣସି ବ୍ୟବସାୟିକ ମଞ୍ଚ ବା ମୁଖ୍ୟଧାରାର ଗ୍ୟାଲେରୀର ସହଯୋଗିତା ଭାରତୀୟ କଳାକୁ ମିଳିନାହିଁ । ନାନା ପ୍ରକାର ଏଜେନ୍ସିର ଇତସ୍ତତଃ କିଛି ପ୍ରୟାସ ବ୍ୟତୀତ ବୈଶ୍ୱିକ ପରିବେଶରେ ଆମର ସାମୂହିକ ପ୍ରୟାସ ସୌଖୀନ ମନେହୁଏ ।

ବୈଶ୍ୱିକ ପରିବେଶ ନିଜେ ବଜାର ଦ୍ୱାରା ନିୟନ୍ତ୍ରିତ । ବିଭିନ୍ନ ସଂସ୍ଥା ବିଶେଷରେ ଫାଇଦାକୁ ସମର୍ଥନ କରିବାପାଇଁ ସେମାନେ ଏ ବ୍ୟାପାରରେ ଭୀଷଣ ଗୋପନୀୟତା ଅବଲମ୍ବନ କରନ୍ତି । ଏବେ ମଧ୍ୟ ପ୍ରବାସୀ ଭାରତୀୟ ସମାଜ ହିଁ ଭାରତୀୟ କଳାକୁ ସମର୍ଥନ କରନ୍ତି ଏବଂ ମୁଁ ନିଶ୍ଚିତ ଯେ କ୍ରିଷ୍ଟିଜ୍ ଏବଂ ସୋଥେବିଜ୍ ଏହାର ପ୍ରମାଣ ଦେବେ । ଗୋଟିଏ ଆମୂଳ ପରିବର୍ତ୍ତନ ଆଜି ବି ପ୍ରତୀକ୍ଷିତ ।

ଅଶୀଦଶକର ପ୍ରାରମ୍ଭିକ ଭାଗରେ ଆମେ ଆଉଥରେ ଯାତ୍ରା ପଥରେ ବାହାରିଲୁ – ତିନି ବର୍ଷ ରହିଲୁ ଜର୍ମାନୀରେ । ମୋର କର୍ମମୟ ଜୀବନରେ ଏ ସମୟ ଥିଲା ସର୍ବାଧିକ ବନ୍ଧ୍ୟା । ଏକ ଦିଗରେ ଯେତେବେଳେ ସୋଭିଏତର କଠୋର ଦୁର୍ଦ୍ଦଶା, କଡ଼ାକଡ଼ି ନିୟମ ମୋ ଭିତରେ ସୃଜନଶୀଳତାକୁ ପ୍ରବଳ ପରିମାଣରେ ଅନୁପ୍ରାଣୀତ କରିଥିଲା ସେତେବେଳେ ଜର୍ମାନୀର ପ୍ରାସାଦୋପମ ଭିଲା, ମର୍ସଡିଜ୍ ଗାଡ଼ି, ଭାରତୀୟ ବବର୍ଚ୍ଚି ଆଦିର ବିଳାସପୂର୍ଣ୍ଣ ଜୀବନ ସଂପୂର୍ଣ୍ଣ ଅପ୍ରତ୍ୟାଶିତ ଭାବରେ ମୋ ଆଖିକୁ ଆଚ୍ଛନ୍ନ କରିଦେଲା । ଚିତ୍ରକଳା ମତେ ପରିତ୍ୟକ୍ତ କରି ଚାଲିଗଲା ଯେପରି ! ପ୍ରାୟ ଏକବର୍ଷ ଏହିପରି ଦାରୁଣ ମାନସିକ ଯନ୍ତ୍ରଣା ଭୋଗିବା ପରେ ମୁଁ ଉଡ଼ାଜାହାଜରେ ଘରକୁ ଫେରି ଆସିଲି, ମୋ ପିଲାଦିନର ସାଙ୍ଗ ପ୍ରୀତି ଘରେ ରହିଲି । ତା' ବିଛଣା ତଳେ ମୁଁ ସର୍ବଦା ରଙ୍ଗ ଓ କ୍ୟାନ୍‌ଭାସ ଜରୁରୀ ପ୍ରୟୋଜନ ପାଇଁ ଲୁଚେଇ ରଖୁଥିଲି । ଚାକଚକ୍ୟପୂର୍ଣ୍ଣ ବା ଆଡମ୍ବରପୂର୍ଣ୍ଣ ଜୀବନ ଭିତରୁ ମୁକୁଳି ଆସି ମୁଁ ବ୍ୟଗ୍ରତା ଓ ଆକୁଳତାର ସହିତ କାମ କରି ମାସକ ଭିତରେ କୋଡ଼ିଏଟି ଚିତ୍ର ଶେଷକଲି । ପରେ ବନ୍‌ର ଏକ ଗ୍ୟାଲେରୀରେ ଏଗୁଡ଼ିକ ପ୍ରଦର୍ଶିତ ହେଲା ।

ଏହା ଚରମ ସତ୍ୟ ଯେ ଆମେ ସମସ୍ତେ ଆମ ସମୟର ଏକ ଏକ ସୃଷ୍ଟି । ତା ହେଲେ କାଳ ଓ ଭୂଗୋଳର ମାପକାଠି ଅନେକ ସମୟରେ ଜଣେ ଶିଳ୍ପୀର ମୂଲ୍ୟାଙ୍କନ କରେ । ଭାରତୀୟ କଳା ପରିମଣ୍ଡଳର ପରିପ୍ରେକ୍ଷୀରେ ଯେଉଁଠି ମୁଁ କାର୍ଯ୍ୟକରେ ସେଠି ମୂଲ୍ୟାଙ୍କନର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ସୌନ୍ଦର୍ଯ୍ୟ ପ୍ରତି ଦୃଷ୍ଟିକୋଣ । ଗୋଟେ ସମୟ ଥିଲା ଯେତେବେଳେ ପଶ୍ଚିମରେ ଆଧୁନିକ କଳା ଜଗତରେ ସୌନ୍ଦର୍ଯ୍ୟବୋଧ ବାସ୍ତବିକ ଏକ ଅପଶବ୍ଦରେ ପରିଣତ ହେଇଗଲା, ଭାରତୀୟ ଶିଳ୍ପୀମାନେ ଗୋଟେ ପୁରୁଷ ଧରି ସୁନ୍ଦରତା ଏବଂ ମୋଟାମୋଟିଭାବେ ପାରମ୍ପରିକ ଚିତ୍ରାଧାର (ଇଜେଲ୍) ଅଙ୍କନକୁ ଧରିରଖିଥିଲେ । ମୁଁ ମଧ୍ୟ ଏହାର ବ୍ୟତିକ୍ରମ ନଥିଲି । ତେଣୁ ଏହା କେବଳ ସଂଯୋଗ ବଶତଃ ନୁହେଁ ସୌନ୍ଦର୍ଯ୍ୟବୋଧ ପ୍ରତି ଆମର ପୂର୍ବ ଦୃଷ୍ଟିକୋଣ ଯାହା ଗୋଟେ ବଜାରକୁ ସମୃଦ୍ଧ କରିବାରେ ସାହାଯ୍ୟ କଲା । ଏଥିରେ ଆମର କୌଣସି ତ୍ରୁଟି ନଥିଲା । ଏହା ମୋ ସହିତ ବି ଘଟିଲା, ଯେଉଁଠି ଜନସାଧାରଣଙ୍କ ଖୋସାମଦ ହଠାତ୍ ମତେ ମଧ୍ୟ ବିହ୍ୱଳ କରିବାକୁ ଲାଗିଲା । ଅଶୀ ଦଶକର ପ୍ରାରମ୍ଭିକ ଭାଗରେ ଏହା କିଛି ପରିମାଣରେ ସନ୍ତୁଷ୍ଟ କରୁଥିଲା । କ୍ରମେ ଏସବୁ ମ୍ଳାନ ହେବାରେ ଲାଗିଲା ଏବଂ ଏଥିରୁ ଆସିଲା ମୋହ ଭଙ୍ଗର ସମୟ, ପରେ ପରେ ଆତ୍ମଅନୁଶୀଳନ ଓ ପଶ୍ଚାତଅବଲୋକନ । ଯେତେବେଳେ ଅର୍ଦ୍ଧସ୍ୱପ୍ନରେ ମରୀଚିକା ଓ ବାସ୍ତବତା ଏକୀଭୂତ ହୋଇ ଗୋଟିଏ ମୂର୍ତ୍ତି ଗଠନ କରେ, ଦୃଷ୍ଟି ତାକୁ ସ୍ପଷ୍ଟ

କରେ । ଦେଖୁଥିବା ଦୃଶ୍ୟରାଜି ମନ ମଧ୍ୟରେ ଏକ ସ୍ୱଷ୍ଟ ଓ ମହତ୍ତର ରୂପ ନିଏ । ଅଭିଜ୍ଞତା ଏବଂ ନିର୍ଦ୍ଦିଷ୍ଟ କଳାର ସର୍ଜନାତ୍ମକ ପ୍ରକ୍ରିୟାରେ ସେହି ଦୃଶ୍ୟକୁ କାଏମ୍ ରଖିବାର ସାମର୍ଥ୍ୟ ହିଁ ଜଣେ କଳାକାରର ପ୍ରକୃତ ସଂଘର୍ଷ । ମୁଁ ଅନେକ ସମୟରେ ଛାତରେ ଚିତ୍ର କରିଛି । ତୁଳନାତ୍ମକଭାବେ ଏହା କଠିନ ଓ ଦୁରୂହ ସର୍ଜନା ପ୍ରକ୍ରିୟାଠୁଁ ସହଜ । ଏ ସଂଘର୍ଷ କେବେ ବି ଲୁପ୍ତ ହୁଏ ନାହିଁ ବରଂ ଅନେକ ସମୟରେଅଧିକ କଠିନ ହୁଏ, ଯେତେବେଳେ କି ଉଭୟ ଅଭ୍ୟସ୍ତ ଆଖି ଓ ଅଭିଜ୍ଞ ହାତ ପରସ୍ପରର ପରିପୂରକ ହେଇଉଠନ୍ତି ବା ଏକତାଳରେ କାମ କରନ୍ତି । ଜଣେ କଳାକାର ଖୁବ୍ ଶୀଘ୍ର ବୁଝିପାରେ ଯେ ଅଙ୍କନ ପ୍ରତିଭା ବାସ୍ତବିକତାର ବିକଳ୍ପ ନୁହେଁ ।

୧୯୮୮ ମସିହାରେ ଦୁଇଟି ଘଟଣା ଘଟିଲା । ପ୍ରଥମ ଥର ପାଇଁ ବମ୍ବେରେ ବ୍ୟବସାୟିକ ସ୍ତରରେ ଚିତ୍ରକଳାର ନିଲାମ କରାହେଲା । ଏଥିରେ ଆମମାନଙ୍କ ମଧ୍ୟରୁ ଅନେକଙ୍କୁ ଏ ଯାବତ୍ ଅଜଣା, ଆକାଶଛୁଆଁ ମୂଲ୍ୟ ମିଳିଲା । ମୁଁ ନିଜେ ଏକ କଳାକାରଭାବେ ଆମର ଅପେକ୍ଷାକୃତ ପ୍ରାଇଭେଟ ପ୍ରାକ୍‌ଟିସ୍‌ର ଆଖିଦୃଶିଆ ବ୍ୟବସାୟୀକରଣ ଦେଖିଲି । ସେଇ ଏକାବର୍ଷ ଟାଇମ୍ସ ଅଫ ଇଣ୍ଡିଆ ଜାହାଙ୍ଗୀର ଗ୍ୟାଲେରୀରେ ମୋ କଳାକୃତିର ଏକ ପଶ୍ଚାତ ଅବଲୋକନ ପ୍ରଦର୍ଶନୀ କରିଥିଲା । ମୋ କଳାକୃତିରେ ପୂର୍ବରୁ ଥିବା ଖ୍ରୀଷ୍ଟିଆନ୍ ପ୍ରଭାବ ଦୂରେଇ ଯାଇଥିଲା ଏବଂ ତା' ସ୍ଥାନ ନେଇଥିଲା ଅପେକ୍ଷାକୃତ ଅଧିକ ଧର୍ମନିରପେକ୍ଷ ବିଷୟ । ମୋ ଚିତ୍ରରେ ଆକସ୍ମିକ ଭାବରେ ସୌଭାଗ୍ୟବଶତଃ ଅଶୀ ଦଶକର ପ୍ରକୃତ ବିଷୟ ପରିବର୍ତ୍ତେ ପ୍ରକୃତ ଶୈଳୀ ସ୍ଥାନ ଗ୍ରହଣ କରିଛି। ଦୃଶ୍ୟକୁ ଦୃଶ୍ୟର ଝଲକ ପରିବର୍ତ୍ତେ ସ୍ଥାନିତ କରିଛି । କେରଳରେ ଥିବା ମୋ ସ୍ୱାମୀଙ୍କ ଘରର ମାଟିଆ ରଙ୍ଗର ପ୍ରଭାବ ଥିବା ଚିତ୍ର ମତେ ନୂଆ ବିଷୟ ଆଡ଼କୁ ଉତ୍ସାହିତ କରିଲା ଯାହାର ଉତ୍ସ ଅଧିକ ଭାରତୀୟ ଥିଲା । ମୁଁ ଅତିବେଶୀରେ ମୋର ଏକ ସ୍ୱତନ୍ତ୍ର ପରିଚୟ ବା ଛାପ ପ୍ରତିଷ୍ଠା କରିପାରିଛି । ଆଉ ଅନେକ ଚିତ୍ରକଳା ଆଙ୍କିଛି ଯାହାର ପ୍ରାୟ ୩୦ଟି ଏକକ ପ୍ରଦର୍ଶନୀ ନ୍ୟୁୟର୍କ, ୱାଶିଙ୍ଗଟନ୍, ବନ୍ ଆଦିରେ ହୋଇଛି । ଏବଂ ସେ ଚିତ୍ରକଳା ସୂଚୀରେ ସତ୍ୟତା ପୂର୍ବକ ଲେଖିଥିଲି ଯେ – ''୩୦ ବର୍ଷର ସାଧନା ଜଣକୁ କେବଳ ଦ୍ୱାରବନ୍ଧ ପର୍ଯ୍ୟନ୍ତ ଆଣିପାରିଛି ।

୧୯୮୯ ମସିହାରେ ସମ୍ମାନନୀୟ ସାଓ ପାଉଲୋ ବାଇନେଲ୍ ପ୍ରଦର୍ଶନୀରେ ମୁଁ ଭାରତର ପ୍ରତିନିଧିତ୍ୱ କରିଥିଲି ଓ ଗଭୀର କ୍ଷୁବ୍ଧ ହୋଇଥିଲି । ଆମ ଦେଶକୁ ଅତ୍ୟନ୍ତ ସାଧାରଣ ସ୍ତରରେ ରଖାଯାଇଥିଲା । ଆନ୍ତର୍ଜାତିକ କଳା ଜଗତରେ ଯେଉଁ ଘୃଣ୍ୟ ରାଜନୀତି ଚାଲିଛି ଏବଂ ଧନୀ ରାଷ୍ଟ୍ରର କଳାକାରମାନଙ୍କ ପ୍ରଚେଷ୍ଟାକୁ ସହଯୋଗ କରିବା ଉଦ୍ଦେଶ୍ୟରେ ପାଣିପରି ବୁହାଇ ଦେଉଥିବା ପଇସାର କରାମତି ମଧ୍ୟ ଦେଖିଲି । ଏପରିକି ଭାରତୀୟ କଳାକୃତିଗୁଡ଼ିକ ଖୋଲାଯାଇ ପ୍ରଦର୍ଶିତ ହେବା ପୂର୍ବରୁ ବିଚାରକ ମଣ୍ଡଳୀଙ୍କ ବୈଠକ ସରିଯାଇଥିଲା । ସମଗ୍ର ବ୍ୟାପାରଟିରେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଜାଲିଆତି ଚାଲିଥିଲା ଏବଂ ନିର୍ଦ୍ଦେଶକଙ୍କ ଅଫିସର ଗାଲିଚା ଉପରେ ୨୪ ଘଣ୍ଟା ଧାରଣା ଦେବାସତ୍ତ୍ୱେ ଭାରତୀୟ ବିଭାଗଟି ବିନା ଆଲୋକରେ, ଅଳିନ୍ଦରେ ପ୍ରଦର୍ଶିତ ହୋଇଥିଲା ।

ବହୁ କଳାକାରଙ୍କ କୃତିରେ ବିଷୟବସ୍ତୁ ଗତ ବୈଶିଷ୍ଟ୍ୟ (motif) ରୁ ପ୍ରତୀକ, ପ୍ରତୀକରୁ ଗତାନୁଗତିକ ପୁନରାବୃତ୍ତିର ଏକ ସ୍ୱାଭାବିକ ରୂପାନ୍ତର ପରିଲକ୍ଷିତ ହୁଏ । ମୁଁ ଉପଲବ୍ଧି କରିଥିଲି ମୋର ବି ଏଇଆ ହେବାକୁ ଯାଉଛି । ବହୁ ବିଷୟବସ୍ତୁଗତ ବୈଶିଷ୍ଟ୍ୟ (motif) ମୁଁ ମୋ କାମରେ ଯାହା ପ୍ରୟୋଗ କରିଥିଲି, ସେଥିମଧ୍ୟରୁ କେତୋଟି ଉଲ୍ଲେଖ କରାଯାଇପାରେ – ଚେଆର୍, ଝରକା, କାଉ, ଝିଟିପିଟି, ଗୁଡ଼ି, ଉଡୁଥିବା ପଦାର୍ଥ, ପିଲାଙ୍କ ଖେଳଣା, ଚେସ୍ ବୋର୍ଡ ଢାଞ୍ଚାର ଅଳଙ୍କରଣ ଆଦି ଗୋଟେ ଗୋଟେ ପ୍ରତୀକ ବା ରୂପକର ମର୍ଯ୍ୟାଦା ପାଇଲେ । ମାତ୍ର ଏହାର ସହଜ, ସ୍ୱାଭାବିକ ପୁନରାବୃତ୍ତିରେ ମୋର କୃତିରେ ଏକ ଗତାନୁଗତିକତା ଆସିଯାଉଥିଲା । ନବେ ଦଶକରେ ମୁଁ ଏଇ ଫାଶରୁ ମୁକୁଳିଯିବାର ପ୍ରୟାସ କଲି । ବର୍ତ୍ତମାନ ପର୍ଯ୍ୟନ୍ତ ମୋର କଳା କୃତିରେ ପ୍ରତିଷ୍ଠିତ ଶୈଳୀଠାରୁ କିଛି ଭିନ୍ନ କରିବାରେ ମନଯୋଗ କଲି । ମୋର ବାନ୍ଧବୀ ଶର୍ନା ଆସ୍ୱାରାଓ ଜଣେ ନିର୍ଭୀକ କଳା ବ୍ୟବସାୟୀ। ସେ ମୋର ଏହି ଅଜଣା କ୍ଷେତ୍ରର ଆକସ୍ମିକ ପଦକ୍ଷେପକୁ ଉତ୍ସାହ ଏବଂ ବାସ୍ତବ ସାହାଯ୍ୟ ଦେଇ ସହଜ କରିଦେଲେ । ତାଙ୍କ ସାହାଯ୍ୟରେ ମୁଁ ଏକ କଳା ସମୁଦାୟ ସୃଷ୍ଟି କରିଲି ଯାହାର ନାମ ଥିଲା ‘‘ଫଲିଜ୍ ଇନ୍ ଫାଣ୍ଟାଷ୍ଟିକାଲ୍ ଫର୍ଣ୍ଣିଚର୍ ।’’ ଯାହା ରଦ୍ଦି ବା ଆବର୍ଜନା ସଂଗ୍ରହର ସମଷ୍ଟିରେ ସଂରଚିତ ଓ ସଂଜୀବିତ ହୋଇଥିଲା – ‘‘ଏକ ରହସ୍ୟହୀନ କଳା, ଯାହା ଉପରେ ଆପଣ ବସି ପାରିବେ ।’’ ମୁଁ ଏ ଧାରଣା ମଧ୍ୟ ଦେଲି ଯେ ଏହା କଳା ସ୍ଥାପନାର ସଂପୂର୍ଣ୍ଣ ବିପରୀତଧର୍ମୀ । ନଷ୍ଟ ହେବା ଅପେକ୍ଷା ଆବର୍ଜନାରୁ ଉଦ୍ଧାର କରାଯାଇଥିବା ଜିନିଷରେ ନିର୍ମିତ ହୋଇଥିବାରୁ ଆମ ପରିବେଶ ଓ ସାମାଜିକ ଇତିହାସପାଇଁ ଅଧିକ ଉପଯୁକ୍ତ । ଏଇ ପ୍ରଦର୍ଶନୀରୁ ହିଁ ମୋର କଳା ପ୍ରତି ସଉକ ବଢ଼ିଲା । କାରଣ ବହୁତ ଜିନିଷ ସିନେମା ପୋଷ୍ଟର୍, କ୍ୟାଲେଣ୍ଡର ଆଦିର ଉଜ୍ଜ୍ୱଳ ଦୃଶ୍ୟ ଦ୍ୱାରା ରଂଜିତ ହୋଇଥିଲା ।

ମୋ କମ୍ପ୍ୟୁଟର ପାଗଳ ପୁଅ ଆଦିତ୍ୟ ମତେ ବାରମ୍ବାର କହୁଥିଲା କମ୍ପ୍ୟୁଟରର ସୃଜନଶୀଳତାକୁ ପରଖିବାକୁ । ମୁଁ ଯେତେବେଳେ ଇନ୍ଦିରା ଦୟାଲଙ୍କ ଦ୍ୱାରା ସଂକଳିତ (ଅଞ୍ଜଳି ଇଳା ସେନନ : ପେଣ୍ଟିଂସ୍ ଇନ୍ ପ୍ରାଇଭେଟ୍ କଲେକ୍ସନ୍) ପୁସ୍ତକ ପାଇଁ ଚିତ୍ରଗୁଡ଼ିକର କ୍ରମବୀକ୍ଷଣ (ସ୍କାନିଂ) ଦେଖିଲି, ମତେ ତା’ କଥା ସ୍ୱୀକାର କରିବାକୁ ପଡ଼ିଲା । ଯା ପରେ ୧୯୯୬ ମସିହାରେ ନ୍ୟୁୟର୍କରେ ‘ମ୍ୟୁଟାସନ୍ସ’ ନାମରେ ଏକ ପ୍ରଦର୍ଶନୀ ହେଲା ଯେଉଁଠି ମୋର କଳାକୃତିର ରୂପାନ୍ତରଣ କରି ନୂଆ ଚିତ୍ର ସୃଷ୍ଟି କରାଯାଇଥିଲା ଓ ଏକ ନୂଆ ଧାରାର ସଂବେଦନା ମିଳିପାରିଥିଲା । ଶୀର୍ଷକ କୃତିଟିରେ ଗୋଟିଏ ନାରୀ ପାଂଚଟି ଭିନ୍ନ ଅବତାରରେ ପ୍ରକଟ ହେଇଛି । ନ୍ୟାସନାଲ୍ ଗ୍ୟାଲେରୀ ଅଫ୍ ମଡର୍ଣ୍ଣ ଆର୍ଟରେ ଏହା ଟଙ୍ଗାଯାଇଛି । କମ୍ପ୍ୟୁଟର ଉପରେ ଆଧାର କରି କଳାକୃତି ଉଦ୍‌ଭବ କରିବାରେ ଭାରତରେ ନିଶ୍ଚିତଭାବେ ଏହା ପ୍ରଥମ ପ୍ରୟାସ । ଇଶାନା ମୂର୍ତ୍ତି ଲେଖିଥିଲେ, ‘‘ସମକାଳୀନ ମାଧ୍ୟମରେ କୁଶଳ ପ୍ରୟୋଗ ଦ୍ୱାରା ନିର୍ମିତ କଳାଗୁଡ଼ିକ ଏକ ନୂଆ ବାଦ ସୃଷ୍ଟି କରିବାର କ୍ଷମତା ରଖେ ।’’

୧୯୯୭ ମସିହାରେ ଲଦାଖର ବୌଦ୍ଧ ମୂର୍ତ୍ତିକଳା ମୋର ପ୍ରଥମ ଅମୂର୍ତ୍ତ (ଭାବ ପ୍ରଧାନ) ଶୈଳୀର ପ୍ରୟୋଗକୁ ପ୍ରଭାବିତ କଲା । ଗୋଟିଏ ଏକକ ଚିତ୍ର (ପ୍ରତିମୂର୍ତ୍ତି)ର ପୃଥକୀକରଣ ଏବଂ ମନ୍ତ୍ରପାଠ ସମୟରେ ଯେପରି ଧ୍ୟାନମଗ୍ନତା ପ୍ରକାଶ ପାଏ ସେହିପରି

ଧ୍ୟାନ ମଗ୍ନ ହୋଇ କୌଣସି ମନ୍ତ୍ର ସଦୃଶ ଏହାର ପୁନରାବୃତ୍ତି କରିବା ହିଁ ଏହି ସଂଗ୍ରହର ମୂଳ ବିଷୟ ବସ୍ତୁଗତ ବୈଶିଷ୍ଟ୍ୟ ଥିଲା । ବୋଧିସତ୍ତ୍ୱ ଚିତ୍ର ଉପରେ ଏକ ସାଧାରଣ ତ୍ରିଭୂଜ ଏବଂ ଏଥିରେ ଏକଲୟାତ୍ମକତା ସୃଷ୍ଟିପାଇଁ ତା'ର ପୁନରାବୃତ୍ତି କରାଯାଏ ଯେଉଁଥିରୁ ସୃଷ୍ଟିହୁଏ ଏକ ଜଟିଳ ଛାଞ୍ଚ ଓ ସେଥିରୁ ତା'ର ପୁନରାବୃତ୍ତି କରାଯାଏ ଯେଉଁଥିରୁ ସୃଷ୍ଟିହୁଏ ଏକ ଜଟିଳ ଛାଞ୍ଚ ଓ ସେଥିରୁ ତା'ର ନିଜସ୍ୱ ଗତିପଥ ନିର୍ଦ୍ଧାରିତ ହୁଏ । ୧୯୯୮ ମସିହାରେ ଗାୟତ୍ରୀ ରୁଇଆଙ୍କ ସହିତ ମୋର ଆକସ୍ମିକ ସାକ୍ଷାତ ମତେ ଏକ ନୂଆ ପଥ ପ୍ରଦର୍ଶିତ କଲା । ତାଙ୍କ ସାହାଯ୍ୟରେ ମୁଁ ଇଟାଲୀରେ ମ୍ୟୁରାନ୍-ଗ୍ଲାସ-ଓ୍ୱର୍କସରେ ଚାରିବର୍ଷ କାମ କରିବା ଭିତରେ ମୁଁ ଗୋଟେ ପର୍ଯ୍ୟାୟ କାଚମୂର୍ତ୍ତି ତିଆରି କରିଲି । ସେଇ ସମସ୍ତ ମୂର୍ତ୍ତି ସଂଗ୍ରହକୁ ''ଦ ସାକ୍ରେଡ୍ ପ୍ରିଜ୍ମ'' ଭାବେ ନାମିତ କରାହେଲା ଓ ମୁମ୍ୱାଇର ନ୍ୟାସନାଲ୍ ଗ୍ୟାଲେରୀ ଅଫ ମଡ଼ର୍ଣ୍ଣ ଆର୍ଟରେ ଏହା ପ୍ରଦର୍ଶିତ ହେଲା । ଏହି ପ୍ରକଳ୍ପ ମତେ ଗଭୀର ଆନନ୍ଦ ଓ ସନ୍ତୋଷ ଦେଇଛି ।

ଏ ସବୁଥିର ସମନ୍ୱୟରେ ଚିତ୍ରକଳା ସାଂପ୍ରତିକ ଧାରାର ସୃଷ୍ଟି କିଚ୍.କଳା. ପ୍ରତି ମୋର ପୂର୍ବ ଅନୁରାଗ ପରିଶେଷରେ ମୋର ବର୍ତ୍ତମାନର ଚିତ୍ରକଳାରେ ଅଭିବ୍ୟକ୍ତ ହେଲା । ଏଥିରେ ଆମ ସମୟର ଦୃଶ୍ୟକୁ ନେଇ ଶ୍ରେଷ୍ଠ ଓ ନିମ୍ନମାନର କଳା ମଧ୍ୟରେ ଥିବା ବାଧାକୁ ପ୍ରତିହତ କରିବାର ପ୍ରୟାସ ମୁଁ କରିଛି । ସ୍ଥାନୀୟ ବଜାରର ସର୍ବତ୍ର ମିଳୁଥିବା ଧାର୍ମିକ ଚିତ୍ର ବା ସିନେମା ପୋଷ୍ଟରରେ ବା ରାଜନୈତିକ ଚିତ୍ରର ଆପାଦମସ୍ତକଚିତ୍ରର ବିଷୟ ଓ ଶୈଳୀ ଉଭୟ ଦୃଷ୍ଟିରୁ ଅତିରିକ୍ତ ଭେର୍‌ସିଆମି ଥାଏ । ତା' ସହିତ ଥାଏ ତାଞ୍ଜାଉର୍ ଚିତ୍ରକଳାର ପାରମ୍ପରିକ ସ୍ୱର୍ଣ୍ଣସଜ୍ଜା । ଏହାର ସମନ୍ୱୟରେ ସାଂପ୍ରତିକ ଚିତ୍ରକଳା ଧାରାର ସୃଷ୍ଟି । ଯା ସହିତ ଏହା କୁହାଯାଇପାରେ ଯେ ଏ ଉତ୍ସଗୁଡ଼ିକ ନିର୍ଦ୍ଦିଷ୍ଟଭାବରେ ଆମ ପାଖରେ ସ୍ୱଦେଶୀ ଓ ଆମ ସମ୍ମୁଖରେ ନୂତନ ସ୍ୱାଗତଯୋଗ୍ୟ ପଥ ଉନ୍ମୁକ୍ତ କରିଦେଉଛି । ଗାୟତ୍ରୀ ସିନ୍‌ହା ଲେଖିଛନ୍ତି, ''ଭାରତୀୟ ଲୋକପ୍ରିୟ ପ୍ରଚଳିତ କଳା ସଂଗ୍ରହ ଏବେ ଏକ ନୂଆ ଚାଲେଞ୍ଜ ପାଇଁ ପ୍ରସ୍ତୁତ ଏବଂ ଏଇ ଉଦ୍‌ଭୁତ ବିବାଦରେ ମେନନ୍‌ଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ ।''

୧୯୮୩ ମସିହାରେ ଆମର ବଡ଼ ପୁଅ ଆଦିତ୍ୟ ଆମେରିକା ଚାଲିଗଲା ଏବଂ ତା' ପର ୮ ବର୍ଷଯାକ ପ୍ରତ୍ୟେକ ଖରାଛୁଟିରେ ମୁଁ ତା' ପାଖକୁ ଯାଇଛି । ଯେତେବେଳେ ସେ ପଢୁଥାଏ ବା କାମ କରୁଥାଏ ଓ୍ୱେଷ୍ଟଚେଷ୍ଟରର ତା' ଘର ବାରଣ୍ଡାରେ ମୁଁ ସାରାଦିନ ଚିତ୍ର ଆଙ୍କୁଥାଏ । ଏମିତିରେ ଆଙ୍କୁ ଆଙ୍କୁ ଅନେକ ଚିତ୍ର ଜମା ହେଇଯାଇଥିଲା ଯାହା ଏବେ ଭାରତ ଫେରିଆସିଛି । ସେଗୁଡ଼ିକ ବର୍ତ୍ତମାନ ରେଟ୍ରୋସ୍ପେକ୍ଟିଭ୍ (୨୦୦୨)ର ଅଂଶ ଓ ବଢ଼େରା ଗ୍ୟାଲେରୀ ଦ୍ୱାରା ସଂକଳିତ । ଏଗୁଡ଼ିକ ନ୍ୟାସ୍‌ନାଲ୍ ଗ୍ୟାଲେରୀ ଅଫ ମଡ଼ର୍ଣ୍ଣ ଆର୍ଟ, ମୁମ୍ବାଇରୁ ଆରମ୍ଭ ହୋଇ ଅନ୍ୟ ଅନେକ ସହରରେ ପ୍ରଦର୍ଶିତ ହେବ । ଯଦି 'ରେଟ୍ରୋସ୍ପେକ୍ଟିଭ୍'ର କିଛି ମୂଲ୍ୟ ଥାଏ ତାହା ହେଉଛି ନିଶ୍ଚିତ ଭାବେ ଏହା ଏକ ନୂଆ ଆରମ୍ଭର ସୂଚନା। ପ୍ରାୟ ୪ ଦଶନ୍ଧିରୁ ଅଧିକ କାଳ ପରେ ଗୋଟିଏ ଶୂନ୍ୟ କ୍ୟାନ୍‌ଭାସ୍ ମତେ ପୁନର୍ବାର ଇସାରା ଦେଉଛି ।

ସୋନାଲ ମାନସିଂହ (ଜନ୍ମ ୧୯୪୪) ଭାରତୀୟ ପ୍ରାଚୀନ ଓ ନିତ୍ୟନୂତନ ନୃତ୍ୟ ପରଂପରାର ଅପ୍ରତିଦ୍ୱନ୍ଦ୍ୱୀ ପ୍ରତିନିଧି । ସେ ୧୯୬୪ ମସିହାରୁ ନୃତ୍ୟଶିଳ୍ପୀ ଭାବେ ମଞ୍ଚ ସହିତ ଜଡ଼ିତ । ତାଙ୍କର ନୃତ୍ୟ ସହିତ ସମାଜ ସେବା, ଦାର୍ଶନିକ, ଗବେଷକ, ବକ୍ତା, ନୃତ୍ୟ ନିର୍ଦ୍ଦେଶକ ଏବଂ ଶିକ୍ଷକର ଭୂମିକା ସେହି ପରଂପରାକୁ ଅଧିକ ସମୃଦ୍ଧ କରିଛି । ସେ ୧୯୭୭ରେ ଦିଲ୍ଲୀରେ ଭାରତୀୟ ଶାସ୍ତ୍ରୀୟ ନୃତ୍ୟ କେନ୍ଦ୍ର (ସିଆଇସିଡ଼ି) ପ୍ରତିଷ୍ଠା କରିଛନ୍ତି । ସେ ବହୁ ଯୁବକ ଯୁବତୀଙ୍କୁ ପ୍ରଶିକ୍ଷଣ ଦେଇଛନ୍ତି ଯେଉଁମାନଙ୍କ ମଧ୍ୟରୁ ଅନେକ ପ୍ରସିଦ୍ଧି ପାଇସାରିଛନ୍ତି । ସେ ଭାରତର କଳାକାରମାନଙ୍କ ମଧ୍ୟରୁ ପଦ୍ମଭୂଷଣ ସମ୍ମାନ ପାଇବାରେ କନିଷ୍ଠତମ ।

ସେ ଓଡ଼ିଶାର ପ୍ରାଚୀନ ଏବଂ ପାରମ୍ପରିକ ନୃତ୍ୟଶୈଳୀ ଓଡ଼ିଶୀର ଜଣେ ପ୍ରମୁଖ ନୃତ୍ୟାଙ୍ଗନା ତଥା ବ୍ୟାଖ୍ୟାକାର । ତାଙ୍କର ଦଶନ୍ଧିଧରି ଭାରତନାଟ୍ୟମ୍, ଛଉ ଏବଂ ଭାରତୀୟ ସଂଗୀତ ପ୍ରଶିକ୍ଷଣର ଅଭିଜ୍ଞତା ଅଛି । ସେ ଭାରତୀୟ ପୌରାଣିକ ମିଥ୍ ଆଧାରିତ ତଥା ସମସାମୟିକ ପ୍ରସଙ୍ଗ ଆଧାରିତ ମୌଳିକ ନୃତ୍ୟ ନିର୍ଦ୍ଦେଶନା ଦେଇଛନ୍ତି । ପରେ ସେ ମହିଳା ଓ ପରିବେଶ ସଂକ୍ରାନ୍ତୀୟ ବିଷୟରେ ଅଧିକରୁ ଅଧିକ ମନୋନିବେଶ କରିଛନ୍ତି । ସେ ୧୨ଟିରୁ ଅଧିକ ପୁରସ୍କାର ବିଜେତା । ତନ୍ମଧ୍ୟରୁ ସମ୍ମାନଜନକ ସିଙ୍ଗାରମଣି ହରିଦାସ ସଙ୍ଗୀତ ସମ୍ମେଳନ (୧୯୬୭), ମେଡାଲ ଅଫ ଫ୍ରେଣ୍ଡସିପ୍, ଭିଏତ୍‌ନାମ (୧୯୮୩); ସାହିତ୍ୟ କଳା ପରିଷଦ ପୁରସ୍କାର, ନୂଆଦିଲ୍ଲୀ (୧୯୮୫), ନାଟ୍ୟକଳା ରତ୍ନ (୧୯୮୫); ବିଶ୍ୱ ଗୁର୍ଜ୍ଜରୀ ପୁରସ୍କାର, ଗୁଜରାଟ ସରକାର (୧୯୮୯); ଶିରୋମଣି ପୁରସ୍କାର, ନିଉଦିଲ୍ଲୀ (୧୯୮୯); ଭାଇ ବୀର ସିଂହ ପୁରସ୍କାର, ନୂଆଦିଲ୍ଲୀ (୧୯୮୯); ରାଜୀବ ଗାନ୍ଧୀ ଏକ୍ସେଲେନ୍ସ ପୁରସ୍କାର, ନୂଆଦିଲ୍ଲୀ (୧୯୯୧); ପଦ୍ମ ଭୂଷଣ (୧୯୯୨); ଇନ୍ଦିରା ପ୍ରିୟଦର୍ଶିନୀ ପୁରସ୍କାର, ନୂଆଦିଲ୍ଲୀ (୧୯୯୪) ଏବଂ ମେଡାଲ୍ ଅଫ୍ ଫ୍ରେଣ୍ଡସିପ୍, କ୍ୟୁବା ଷ୍ଟେଟ୍ କାଉନ୍‌ସିଲ (୧୯୯୫) ।

## ୧୦

# ମୁଁ ମୋର ସର୍ବୋତ୍ତମ ସମୀକ୍ଷକ

### ସୋନାଲ ମାନସିଂହ

ନାରୀ ଜନ୍ମ ବହୁତ ସୁନ୍ଦର । ମୁଁ ଯଦି ଜଣେ ନାରୀ ହୋଇନଥାନ୍ତି ତେବେ ଜୀବନକୁ ଏତେ ଗଭୀର ଭାବେ ଉପଲବ୍ଧ କରିପାରି ନ ଥାନ୍ତି । ଜଣେ ନାରୀ ଓ କଳାକାର ଭାବରେ ମୋ ଜୀବନ ସମତାଳରେ ବିକଶିତ ହୋଇଛି । ମୋର ଅଭିଜ୍ଞତା ଓ ବୁଦ୍ଧିମତା ସବୁକିଛି ମୁଁ ସେଇଥିରୁ ହିଁ ପାଇଛି । ମାତ୍ର ବର୍ତ୍ତମାନ ପର୍ଯ୍ୟନ୍ତ ମୁଁ ସେଇ ସ୍ତରରେ ପହଞ୍ଚି ପାରିନାହିଁ ଯେ ନିଜର ମୂଲ୍ୟାଙ୍କନ କରିପାରିବି । ମତେ ଭାବିବାକୁ ଭଲଲାଗେ ଯେ ମୁଁ ବହୁତ ସୁନ୍ଦର, ଭଲ ଲାଗେ ଭାବିବାକୁ ଯେ ମୁଁ ଖୁବ୍ ସ୍ପଷ୍ଟବାଦୀ ଓ ସଙ୍କୋଚ । ମାତ୍ର ଅନ୍ୟମାନେ ମୋ ବିଷୟରେ କ'ଣ ଭାବନ୍ତି ? ମୁଁ ମଧ୍ୟ ମୋର ସର୍ବୋତ୍ତମ ସମାଲୋଚକ । ମୁଁ ମୋର ପିତୃମହଙ୍କ ପରି କ୍ଷଣକୋପୀ । ଗୋଟେ ଦୃଷ୍ଟିରୁ ଭଲ, କାରଣ ପାଞ୍ଚମିନିଟ୍ ଭିତରେ ମୁଁ କ୍ଷମା କରିଦିଏ, ଭୁଲିଯାଏଁ ଏବଂ ସେକଥା ପୂରା ମୋ ମନରୁ ପୋଛିଦିଏଁ । ମୁଁ ମନ ଭିତରେ ରାଗ ପୋଷି ରଖେନା । ବିସ୍ତୃତ ଅର୍ଥରେ ମୁଁ ଆଦୌ ଖରାପ ନୁହେଁ । ଗୋଟିଏ ସଂସ୍କୃତି ସଂପନ୍ନ ପରିବେଶର ଲାଳନପାଳନର ଏହା ଅବଦାନ । ତୁମେ ତୁମର ପ୍ରକୃତ ରୂପକୁ ଲୁଚାଇ ରଖିପାରିବ ନାହିଁ । ଶୈଶବରୁ ଆତ୍ମସ୍ଥ ହୋଇଯାଇଥିବା ସଂସ୍କାର ତୁମ ବ୍ୟକ୍ତିତ୍ୱକୁ ଗଢ଼େ, ରୂପ ଦିଏ । ମୁଁ ପ୍ରକୃତରେ ଯେଉଁ ସଂସ୍କାର ପାଇଛି ସେଥିନିମନ୍ତେ ମୁଁ ମୋ ପରିବାର ନିକଟରେ କୃତଜ୍ଞ ।

ମୁମ୍ବାଇର ଗୋଟିଏ ଗୁଜରାଟୀ ପରିବାରରେ ମୋର ଜନ୍ମ । ମୋର ବାପା ସୁରଟ ଓ ମା' ସୌରାଷ୍ଟ୍ରର । ମୋ ମା' ତାଙ୍କ କାକା ଅମୃତଲାଲ୍ ସେଠଙ୍କ ଦ୍ୱାରା ଲାଳିତ ପାଳିତ । ସେ ଇଂରେଜ ଅମଳରେ ଜଜ୍ ଓ ଦୈନିକ 'ଜନ୍ମଭୂମି'ର ମାଲିକ ଥିଲେ । ମୋ ମା ଥିଲେ ଖୁବ୍ ସୁନ୍ଦରୀ ଓ ନିର୍ଭୀକା । ସେ ସ୍ୱାଧୀନତା ଆନ୍ଦୋଳନରେ ଭାଗନେଇ ମୃଦୁଳା ସାରାଭାଇଙ୍କ ସହିତ ଲାଠିଚାଳନା ମଧ୍ୟ କରିଥିଲେ । ସେ ଜେଲ୍‌ରେ କସ୍ତୁରବାଙ୍କ ସହିତ ଗୋଟିଏ କୋଠରୀରେ ଥିଲେ । ଏପରିକି ଏବେ ମଧ୍ୟ ସେ ଗୁଜୁରାଟର ଭିଲ୍‌ଙ୍କ ନିମନ୍ତେ ଗୋଟିଏ ଗୁରୁକୁଳ ପରିଚାଳନା କରନ୍ତି । ସେ ଅଶୀତିପର ବର୍ଷ ବୟସରେ ମଧ୍ୟ ସଂପୂର୍ଣ୍ଣ ସୁସ୍ଥ । ମୁଁ ନତମସ୍ତକ ହୋଇ ତାଙ୍କୁ ସମ୍ମାନ ଜଣାଉଛି । ମୋର ପିତୃମହ ମଙ୍ଗଲ ଦାସ ପକୱାସା ଜଣେ ଖ୍ୟାତନାମା ବ୍ୟକ୍ତି । ଏକଦା ରାସ୍ତାକଡ଼ର ଆଲୋକରେ ପାଠପଢ଼ି ଆଇନ୍ ପରୀକ୍ଷାରେ

(ସେ ସମୟରେ ପରୀକ୍ଷା ଖାତା ଇଂଲଣ୍ଡରେ ଦେଖାଯାଉଥିଲା) ପ୍ରଥମ ସ୍ଥାନ ଲାଭ କରିଥିଲେ । କିନ୍ତୁ ଗାନ୍ଧିଜୀ ଓ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ୍‌ଙ୍କ ସଂସ୍ପର୍ଶରେ ଆସି ଓକିଲାତି ପରିତ୍ୟାଗ କଲେ । ତା'ମାନେ ମାସକୁ ୩୦,୦୦୦ ଟଙ୍କାର ରୋଜଗାର ! ସେ ସ୍ୱାଧୀନ ଭାରତର ପ୍ରଥମ ପାଞ୍ଚଜଣ ରାଜ୍ୟପାଳଙ୍କ ମଧ୍ୟରୁ ଅନ୍ୟତମ । ୧୯୪୭ ମସିହାରୁ ୧୯୫୬ ମସିହା ପର୍ଯ୍ୟନ୍ତ ସେ ସେଣ୍ଟ୍ରାଲ୍ ପ୍ରୋଭିନ୍‌ସେସ୍ ଓ ବେରାର୍‌ର ରାଜ୍ୟପାଳ ଥିଲେ । ଯାହା ପରେ ମଧ୍ୟପ୍ରଦେଶ ଓ ମହାରାଷ୍ଟ୍ର ରୂପ ନେଲା । ୧୯୫୯ ମସିହାରୁ ୧୯୬୨ ପର୍ଯ୍ୟନ୍ତ ସେ କର୍ଣ୍ଣାଟକର ଗଭର୍ଣ୍ଣର ଥିଲେ ।

ମୋ ପିତାମହ ତାଙ୍କର ସୁରାଟ, ଖଣ୍ଡାଲା ଏବଂ ମୁମ୍ବାଇସ୍ଥିତ ସମସ୍ତ ସଂପତ୍ତି ଦେଶକୁ ଦାନ କରିଦେଇଥିଲେ । (ମୋ ବାପା ମା ଗୋଟେ ଭଡ଼ାଘରେ ରହୁଥିଲେ, ଏପରିକି ତାଙ୍କ ପାଖରେ କାର୍‌ଟିଏ ବି ନ ଥିଲା ।) ମୋ ପିତାମହଙ୍କର ଦୃଢ଼ ଆତ୍ମପ୍ରତ୍ୟୟ ଥିଲା । ସେ କହିବାର ମୋର ମନେଅଛି ଯେ ଲର୍ଡ଼ ମାଉଣ୍ଟବେଟନ୍‌ଙ୍କର ଭାରତ ଛାଡ଼ିବା ପୂର୍ବରୁ ବମ୍ବେ ଆସିବାର ଥାଏ । ତାଙ୍କ ପାଇଁ ପ୍ରସ୍ତୁତ ହେବାକୁ ଥିବା ଖାଦ୍ୟର ଏକ ତାଲିକା ପିତାମହଙ୍କ ପାଖକୁ ପଠା ହେଇଥିଲା । ମୋ ପିତାମହ ସେ ତାଲିକା ଫେରସ୍ତ ପଠେଇଥିଲେ ଏହା କହି ଯେ ସେ ଶୁଦ୍ଧ ଶାକାହାରୀ ଏବଂ ମଦ୍ୟ ମଧ ସେବନ କରନ୍ତି ନାହିଁ । ତେଣୁ ଏହି ତାଲିକାରେ ପରିବର୍ତ୍ତନ କରିବାକୁ ଅନୁରୋଧ କରିଥିଲେ । ଲର୍ଡ ମାଉଣ୍ଟବ୍ୟାଟେନ୍ ସେ ଚିଠି ପଣ୍ଡିତ ନେହରୁଙ୍କୁ ଦେଖାଇବାରୁ ସେ ଭୀଷଣ କ୍ରୁଦ୍ଧ ହୋଇ ମୋ ପିତାମହଙ୍କୁ ତ୍ୟାଗପତ୍ର ଦେବାକୁ କହିଲେ । କିନ୍ତୁ ଯେତେବେଳେ ପଣ୍ଡିତଜୀ ଗାନ୍ଧିଜୀଙ୍କୁ ଏ ବିଷୟରେ କହିଲେ ଗାନ୍ଧିଜୀ କହିଲେ, "ଏଥିରେ ଭୁଲ୍ କ'ଣ ରହିଲା ? ପକୱାସା ଠିକ୍ କହିଛନ୍ତି ।" ମାଉଣ୍ଟବେଟେନ୍‌ଙ୍କୁ ଯେତେବେଳେ କୁହାଗଲା ଯେ ମୋ ପିତାମହ ତ୍ୟାଗପତ୍ର ପଠଉଛନ୍ତି, ସେ କହିଲେ – "ଏ କି ଅଦ୍‌ଭୁତ କଥା, ଏକଦମ୍ ନୁହେଁ ! ମୁଁ ଯଦି ତିନିଦିନ ପାଇଁ ମାଂସ ଓ ମଦ୍ୟ ଆହାର କରିବିନି, ମୋର ମୃତ୍ୟୁ ଘଟିବନି । କିନ୍ତୁ ମୁଁ କାହାର ଭାବାବେଗକୁ ଆଘାତ ଦେବାକୁ ଚାହେଁନି ।"

ମୋ ପିତା ଶାନ୍ତ ସ୍ୱଭାବର । ସେ ଜଣେ ଖାଣ୍ଟି ସୁରଟବାସୀ । ତାଙ୍କର ଅଭ୍ୟାସ ଓ ରୁଚି ଥିଲା ସରଳ । ତଥାପି ସେ ମଜାଳିଆ ସ୍ୱଭାବ ଓ ଉପସ୍ଥିତି ବୁଦ୍ଧି ସଂପନ୍ନ ବ୍ୟକ୍ତି ଥିଲେ । ଅନେକ ଲୋକ ମତେ ମୋର ଏ ସବୁଗୁଣ ପାଇଁ ପ୍ରଶଂସା କରନ୍ତି, ତାଙ୍କଠୁଁ ପାଇଛି ବୋଲି କହନ୍ତି । ସେ ସୂତା ବ୍ୟବସାୟ କରୁଥିଲେ, ସେଆର୍ କିଣା ବିକା ମଧ କରୁଥିଲେ । କିନ୍ତୁ ତାଙ୍କର ପ୍ରକୃତ ପ୍ରିୟ ବିଷୟ ଥିଲା ଡାକ ଟିକଟ ସଂଗ୍ରହ । ସେ ଏ ସଂଗ୍ରହ ପାଇଁ କେତେକ ଆନ୍ତର୍ଜାତିକ ସମ୍ମାନ ମଧ ପାଇଛନ୍ତି ।

ମୋ ପିତାମହଙ୍କର ଗୋଟେ ବିରାଟ ପୁସ୍ତକାଗାର ଥିଲା । ମୋର ଅବକାଶକାଳରେ ମୁଁ ପ୍ରଚୁର ସମୟ ଏଠି ପଢ଼ାପଢ଼ି ଓ ପୌରାଣିକ ବିଷୟର ଗଭୀର ଅଧ୍ୟୟନରେ ବ୍ୟତୀତ କରୁଥିଲି ବୋଲି ମନେଅଛି । ମୁଁ ମହାଭାରତ ବହୁତ ଭଲ ଭାବରେ ଜାଣେ । (ସାଧାରଣତଃ ପ୍ରତ୍ୟେକେ ରାମାୟଣ ବିଷୟରେ ଜାଣିଥାନ୍ତି ।) ସବୁପ୍ରକାର ଲୋକ ଆମ ଘରକୁ ଆସୁଥିଲେ – ମୁଁ ଜୈନ ମୁନିସ୍, ଆଚାର୍ଯ୍ୟ ତୁଳସୀ, ବୋହରା ପ୍ରମୁଖ, ମୁସଲମାନ କାଜି

ଏପରିକି ଯୁବରାଜ ଅଲ୍ଲି ଖାଁ ଆଦି ଅନେକଙ୍କୁ ଭେଟିଛି । ମୋ ପିତାମହଙ୍କ ଆକର୍ଷଣୀୟ ବ୍ୟକ୍ତିତ୍ୱରେ ସେମାନେ ଏତେ ମୁଗ୍ଧ ହେଇଯାଉଥିଲେ ଯେ ସେ ରାଜ୍ୟପାଳ ନ ଥିବା ସମୟରେ ମଧ୍ୟ ସେମାନେ ଆସୁଥିଲେ ଓ ସାକ୍ଷାତ କରୁଥିଲେ ।

ମୋର ଲାଳନ ପାଳନ ସଂପୂର୍ଣ୍ଣ ଭାରତୀୟ ରୀତିରେ ହୋଇଥିଲେ ମଧ୍ୟ ବଡ଼ ବ୍ୟାପକ ଓ ସ୍ୱଦେଶୀ ସଂକୀର୍ଣ୍ଣତା ମୁକ୍ତ ଥିଲା । ଚପରାଶିମାନଙ୍କୁ ମଧ୍ୟ ଚୁନିଲାଲଜୀ ଡାକିବାକୁ ପଡୁଥିଲା – ଅର୍ଥାତ ରାଜଭବନରେ ଜୀ ସମ୍ବୋଧନ ଏକ ନିଶ୍ଚିତ ପରଂପରା ଥିଲା ! ଆମେ ତିନି ଜଣ ଥିଲୁ – ମୋ ବଡ଼ ଭଉଣୀ, ସାନ ଭାଇ ଓ ମୁଁ । ମୋ ଭଉଣୀକୁ ଏବଂ ମତେ କେବେ ଝିଅବୋଲି ଅନୁଭବ କରିବାକୁ ଦିଆଯାଇ ନାହିଁ । ଆମେ ଖେଳାଖେଳି, ନୃତ୍ୟ–ସଂଗୀତ ଏବଂ ଚିତ୍ରକଳା ଆଦି ଯାହାସବୁ ଜଣେ ଶିଖେ – ଶିଖୁଥିଲୁଁ । ମତେ ସଂପୂର୍ଣ୍ଣ ସ୍ୱାଧୀନତା ଦିଆଯାଇଥିବାରୁ ମୋର ସେଦିନର ସ୍ମୃତି ସବୁ ସୁଖଦ । ମୁଁ ଆରମ୍ଭରୁ ସହଶିକ୍ଷାଯୁକ୍ତ ବିଦ୍ୟାଳୟ ଓ କଲେଜ୍‌ରେ ପଢ଼ିଛି । ମୁଁ ମୁମ୍ବାଇର ଗୁଜରାଟୀ ମାଧ୍ୟମର ‘‘ଫେଲୋସିପ୍’’ ସ୍କୁଲରେ ପଢୁଥିଲି । ଭାରତଛାଡ଼ ଆନ୍ଦୋଳନର ସ୍ୱର ଏହାର ପ୍ରାଙ୍ଗଣରୁ ଆରମ୍ଭ ହୋଇଥିଲା ଏବଂ ମୁଁ ସବୁବେଳେ ଗର୍ବ କରେ ଯେ ମୁଁ ସେଇ ପ୍ରାଙ୍ଗଣରେ ଖେଳିଛି । ଆମେ ନାସିକ ଭୋସ୍‌ଲେ ମିଲିଟାରୀ ସ୍କୁଲ୍‌ରୁ ସୈନ୍ୟ–ଶିକ୍ଷା ମଧ୍ୟ ପାଇଥିଲୁ । ଯେତେବେଳେ ଛୁଟିରେ ମୁଁ ଘରକୁ ଫେରେଁ ‘ମା’ଙ୍କ ଦ୍ୱାରା ପରିଚାଳିତ ମହିଳା ଶିବିରରେ ଯୋଗଦିଏଁ । ସେଇଠାରୁ ମୁଁ ଘୋଡ଼ାଚଢ଼ା, ବନ୍ଧୁକ ଚାଳନା ଓ ଡ୍ରିଲ୍ ଆଦି ଶିଖିଲି ।

ସେତେବେଳର ସମସ୍ତ ଖ୍ୟାତନାମା ବ୍ୟକ୍ତି ରାଜଭବନରେ ଆମର ଅତିଥି ହେଉଥିଲେ । ଏମ୍.ଏସ୍.ସୁବୁଲକ୍ଷ୍ମୀ, ବଡ଼େ ଗୁଲାମ ଅଲୀଖାନ୍, ବିଶମିଲ୍ଲା ଖାନ୍, ପଣ୍ଡିତ ଓଁକାର ନାଥ ଠାକୁର, ଉଦୟ ଶଙ୍କର, ବାଲୁଶର, ସ୍ୱଦେଶ୍ୱରୀ ବାଇ ପ୍ରମୁଖ । ରାତିରେ ଏମାନଙ୍କ କୋଳରେ ଶୁଏ ତ ଆଖି ଖୋଲେ ବଡ଼େ ଗୁଲାମ ଅଲୀଖାନ୍‌ଙ୍କ ରିଆଜରେ । ସେ ସମୟରେ ରୁକ୍ମିଣୀଦେବୀ ମୋର ଆଦର୍ଶ ଥିଲେ । ମୋ ନିମନ୍ତେ ବାଲ୍ ସରସ୍ୱତୀ କଳା ଓ ଶାନ୍ତା ରାଓ ସାମ୍ରାଜ୍ୟର ମୂର୍ତ୍ତିମନ୍ତ ପ୍ରତୀକ ଥିଲେ । ମୁଁ ମୁମ୍ବାଇର ଜାହାଙ୍ଗୀର ଆର୍ଟଗ୍ୟାଲେରୀକୁ ପଶି ଯାଉଥିଲି ଓ ଡ.ମୋତିଚନ୍ଦ୍ରଙ୍କ ପରି ପ୍ରସିଦ୍ଧ ବିଦ୍ୱାନଙ୍କ ସହିତ ସେ ବିଷୟରେ ଆଲୋଚନା କରୁଥିଲି । ମୁଁ ମୋ ଜୀବନର ପ୍ରଥମ କଥକଳୀ ପ୍ରଦର୍ଶନ ବିଖ୍ୟାତ ବ୍ୟାଖ୍ୟାକାର ଭାରତ ଆୟାର୍‌ଙ୍କ ସାଙ୍ଗରେ ଦେଖିଥିଲି । ଏହି ନୃତ୍ୟଶିଳ୍ପ ଉପରେ ତାଙ୍କ ରଚିତ ପୁସ୍ତକ ଏକ ଦିଗ ନିର୍ଣ୍ଣୟକ ଗ୍ରନ୍ଥ । ଦମୟନ୍ତୀ ଜୋଶୀ, ଝାବେରୀ ଭଉଣୀ ଏବଂ ସିତାରା ଦେବୀ ଆମର ପାରିବାରିକ ବନ୍ଧୁ ଥିଲେ ।

ମୋର ନୃତ୍ୟପ୍ରତି ଆକର୍ଷଣ ବିଷୟରେ ସମସ୍ତଙ୍କୁ ସ୍ପଷ୍ଟ ରୂପେ ଜଣାଥିଲା । ଆମେ ଦି ଭଉଣୀଯାକ ଆରତୀ ଓ ମୁଁ ନୃତ୍ୟ ଶିଖିଥିଲୁ । ଶିକ୍ଷକ ଆସିବା ପୂର୍ବରୁ ମୁଁ ଏକ ପ୍ରକାର ଅଦମ୍ୟ ଉତ୍ସାହରେ ପ୍ରସ୍ତୁତ ହେଇଯାଉଥିଲି । କିନ୍ତୁ ସଙ୍ଗୀତ ଶିକ୍ଷା ସମୟରେ ମୋର ସବୁବେଳେ କିଛି ନା କିଛି ମିଛ ବାହାନା ଥିଲା – ଆଜି ନୁହେଁ କାଲି,. ପେଟ କାଟୁଛି ଆଦି । ସେ ସମୟରେ ଆମେ ବାଙ୍ଗାଲୋର୍‌ରେ ଥିଲୁ ଓ ମୋର ଗୁରୁଥିଲେ ପ୍ରଫେସର ୟୁ.ଏସ୍.କୃଷ୍ଣା

ରାଓ ଏବଂ ତାଙ୍କର ପତ୍ନୀ ଚନ୍ଦ୍ରବାଳା ଦେବୀ । ସେମାନେ ବଡ଼ ଚମତ୍କାର ଲୋକ ଥିଲେ । ମୁଁ ମୋର ପ୍ରଥମ ଲୋକପ୍ରିୟ ଯୁଗଳ ନୃତ୍ୟ ଗୁରୁଙ୍କ ସହିତ କରିଛି । ସେମାନେ ବଡ଼ ପୁଣ୍ୟାତ୍ମା ଓ ଉତ୍ତମ ଦମ୍ପତି ଥିଲେ । ସେ ବିଶ୍ୱବିଦ୍ୟାଳୟରେ ରସାୟନ ଶାସ୍ତ୍ର ପଢ଼ଉଥିଲେ ଆଉ ତାଙ୍କ ପତ୍ନୀ ଥିଲେ ଏକ ବିଖ୍ୟାତ କନ୍ନଡ଼ ସାହିତ୍ୟିକ ପରିବାରର ।

ମୋର ଶିକ୍ଷକଗଣ ଯେତେବେଳେ ନିଷ୍ପତ୍ତି ନେଲେ ଯେ ମୋର 'ଅରଂଗେତ୍ରମ' ସମୟ ଆସିଯାଇଛି ବୋଲି ସେମାନେ ମୋ ବାପାମାଙ୍କୁ ଖବର ଦେଲେ ଓ ଏବେ ମତେ ଦିନରେ ଦୁଇଥର ନୃତ୍ୟ ଶିଖିବାକୁ ଯିବାକୁ ପଡ଼ିଲା । ଆମ ଘରେ ଆମେ ଗୁରୁଜନଙ୍କୁ ଯିବା ପୂର୍ବରୁ କୁଆଡ଼େ ଯାଉଛୁ ଓ କେତେବେଳେ ଫେରିବୁ କହିଯାଉଁ । ମୁଁ ମୋ ପିତାମହଙ୍କ ଅଫିସ୍‌କୁ ସେଇ ଅଧାଶାଢ଼ୀ ପିନ୍ଧା ରୂପରେ ଗଲି ଓ କହିଲି, "ଦାଦାଜୀ, ମେଁ ଜାଉଁ ଛୁ ।" ସେ ମୁଣ୍ଡ ଉପରକୁ ଉଠେଇ ଗୁଜୁରାଟୀରେ ମତେ ପଚାରିଲେ, "କୁଆଡ଼େ ଯାଉଛୁ ?" ମୁଁ କହିଲି, "ମୋ ନାଚ କ୍ଲାସକୁ ।" ସେ କହିଲେ, "କିନ୍ତୁ ତୁ ସକାଳେ ଯାଇଥିଲୁ ଯେ" । ତାପରେ ସେ ଗାଳିଦେଇ କହିଲେ, "ତୁ କୁଆଡ଼େ ଯାଇପାରିବୁନି, ନିଜ ରୁମ୍‌କୁ ଯା ।" ମୁଁ ପଚାରିଲି, "କାହିଁକି ?" ଏବଂ ସେ କହିଲେ, "ଆମ ଘରେ ମୁଁ ଗୋଟେ ନାଚବାଲୀ ଚାହେଁନା ।"

ମତେ ଭୀଷଣ ବାଧିଲା । ମୁଁ ତାଙ୍କ ପରି ଜିଦିଆ । ମୁଁ କାର୍‌ରେ ବସି ନାଚ କ୍ଲାସ୍‌କୁ ଗଲି ଓ ମନଇଚ୍ଛା କାନ୍ଦିଲି । ତାପରେ ଯାହା ହେବା କଥା – ଟେଲିଫୋନ୍‌ର ଘଣ୍ଟି ବାଜିଲା, ରାଜଭବନରୁ ଡକରା ଆସୁଥିଲା । ମୁଁ କାର୍ ପଠେଇଦେଲି ଓ ଗାଡ଼ି ଫେରିଆସିଲା ଗୋଟିଏ ସମ୍ବାଦ ନେଇ ଯେ ତାକୁ ନେଇକି ଆସ । ମୁଁ କହିଲି – "ମୁଁ ଫେରିବି ନାହିଁ ।" ମୋ ଶିକ୍ଷକମାନେ ତାଙ୍କୁ ଫୋନ୍‌କରି କହିଲେ, ଆମେ ତାକୁ କ୍ଲାସ୍ ପରେ ଘରେ ପହଞ୍ଚେଇ ଦେବୁ ।"

ଯାପରେ ମୋ ପିତାମହ ମୋ ସହିତ ତିନିଦିନ ଧରି କଥା ହେଲେ ନାହିଁ ଏବଂ ମୁଁ ବି ତାଙ୍କ ସହିତ କଥା ହେଲିନି । ମୁଁ ଖାଇବାକୁ ମନା କରିଦେଲି । ଶେଷରେ ସେ ଜିଦି ଛାଡ଼ି କହିଲେ, "ଆ, ଗୋଟେ ଆପୋଷ କରିନେବା । କହ, ମତେ କହ ।" "ଆପଣ ଆଗେ କୁହନ୍ତୁ ଯେ ଆପଣ ମତେ ନାଚ ଶିଖେଇଲେ, ମତେ ଉତ୍ସାହିତ କଲେ ଆଉ ତାପରେ ଏସବୁ କ'ଣ ? ଆପଣ ଅନ୍ୟମାନଙ୍କ ଆଗରେ ମତେ କାହିଁକି ଗାଳିଦେଲେ ?" ତାପରେ ସେ ମତେ ଦେବଦାସୀମାନଙ୍କ ସଂପର୍କରେ ବୁଝେଇଲେ । ମୁଁ କହିଲି, "ମୁଁ ସେସବୁ କିଛି ଜାଣେନା । ଗୋଟେ ପଟେ ଆପଣ ରୁକ୍ମିଣୀ ଦେବୀଙ୍କର ଉଚ୍ଛ୍ୱସିତ ପ୍ରଶଂସା କରନ୍ତି ଓ ଅନ୍ୟପଟରେ ଆପଣ ଏସବୁ କହୁଛନ୍ତି ।" ତାପରେ ସେ ମତେ ବହୁତ ମଧୁର ସ୍ୱରରେ ସୁନ୍ଦର ଭାବରେ ବୁଝେଇ କହିଲେ ଯେ ମୁଁ କେବେହେଲେ ବି ଯେପରି କଳାକୁ ବ୍ୟବସାୟିକ ବା ବାଣିଜ୍ୟିକ ଉଦ୍ଦେଶ୍ୟରେ ପ୍ରୟୋଗ ନ କରେ । "ତୁ ଏକଥା ଭଲଭାବରେ ବୁଝିବା ଉଚିତ୍ ଓ ମତେ ସେଇ ଅନୁସାରେ କଥା ଦେ ।" ମୁଁ କହିଲି, "ଅବଶ୍ୟ, ମୁଁ କଥା ଦେଉଛି ।" ଏ କ'ଣ ବା ବଡ଼ କଥା ? ନାଚପାଇଁ ମୁଁ କୌଣସି ପ୍ରକାର ପ୍ରତିଜ୍ଞା କରିପାରିଥାନ୍ତି । ଆଜି ମୁଁ ଜାଣେ, ମୁଁ ତାଙ୍କ କଥାର ଅର୍ଥ ଉପଲବ୍ଧ କରିପାରିଛି ।

ମୁଁ ଜର୍ମାନ ସାହିତ୍ୟରେ ଏଲଫିନ୍‌ଷ୍ଟୋନ୍ କଲେଜରୁ ଗ୍ରାଜୁଏସନ୍ କରିସାରିବା ପରେ ପ୍ରଶ୍ନ ଉଠିଲା : ବର୍ତ୍ତମାନ ମୁଁ କ'ଣ କରିବି ? ବିବାହ କରିବି, ଗୋଟେ ଛାତ୍ର ବୃତ୍ତିନେଇ ବିଦେଶ ଯିବି ଅଥବା ଭାରତୀୟ ପ୍ରାଶାସନିକ ସେବାର ପରୀକ୍ଷା ଦେବି ? କେଉଁ ଶକ୍ତି ମତେ ସେଇ ପ୍ରସିଦ୍ଧ ଚାରୋଟି ଶବ୍ଦ "ମୁଁ ନୃତ୍ୟ କରିବାକୁ ଚାହେଁ" କୁହେଇଲା – ମୁଁ ଜାଣେନା । ସବୁକିଛି ସ୍ତବ୍ଧ ହେଇଗଲା ଯେପରି । ମୋ ବାପା, ମା, ପିତାମହ ସମସ୍ତେ ମୋ ନାଚକୁ ନେଇ, ତା'ର ପରିଣତି ନେଇ ଚିନ୍ତିତ ହେଇପଡ଼ିଲେ । ସେ ଦୃଶ୍ୟ ମୋର ଏବେ ବି ମନେ ଅଛି । ସେମାନେ କହିଲେ, "ତୁମେ ଏ ସବୁ କରିକି ବି ନାଚ କରିପାର ।" ମୋର ପିତାମହ କହିଲେ ମୋର ଜଣେ ଓକିଲର ବୁଦ୍ଧି ଅଛି, ତେଣୁ ମୁଁ ଓକିଲାତି ପଢ଼ିବା ଉଚିତ୍ । ଯେତେବେଳେ କି ମୋ ବାପା କହିଲେ, ନା, ସେ କମ୍ପିଟେଟିଭ୍ ପରୀକ୍ଷା ଦେଉ । ଅନ୍ୟ ପକ୍ଷରେ ଜର୍ମାନୀରେ ଅଧିକ ଶିକ୍ଷାପାଇଁ ମତେ ଶିକ୍ଷା ବୃତ୍ତି ମିଳୁଥିଲା । ସ୍ୱାଭାବିକ କଥା, ସେମାନେ ବୁଝିପାରୁ ନ ଥିଲେ ମୁଁ କାହିଁକି ଏସବୁକୁ ପଦାଘାତ କରିଦେଉଛି । ମୁଁ କହିଲି, ନା, ମୁଁ ଆଉ କିଛି ନୁହେଁ କେବଳ ନୃତ୍ୟ କରିବାକୁ ଚାହେଁ । ମୋ ନିଜ ପରିବାରର ଏକାନ୍ତ ଆତ୍ମୀୟ ସ୍ୱଜନ ବ୍ୟସ୍ତ ବିବ୍ରତ ହେଇପଡ଼ିଲେ । ବମ୍ବେରେ ଆମେ ଖୁବ୍ ଭଲଭାବରେ ପରିଚିତ । ମତେ ଲାଗୁଛି ବହୁତ ଲୋକ କୁହାକୁହି ହେଲେ, ଏ କ'ଣ ହେଲା, ଏମିତି ତ ହେବା କଥା ନୁହେଁ । ମୁଁ ଛଅ ମାସ ପାଇଁ ବାଙ୍ଗାଲୋର ମୋ ଗୁରୁଙ୍କପାଖକୁ ଫେରିଗଲି ଓ ଏ କଥା ଚାରିଆଡ଼େ ପ୍ରଘଟ ହେଇଗଲା ।

ଏତେବେଳକୁ ମୁଁ ପ୍ରଚୁର ଯାତ୍ରା କରୁଥାଏଁ । ନୃତ୍ୟ ପ୍ରଦର୍ଶନ ପାଇଁ ନିମନ୍ତ୍ରଣକୁ ସ୍ୱୀକାର କରୁଥିବାରୁ ହାଇଦ୍ରାବାଦ, ବାଙ୍ଗାଲୋର, ଗୁଲବର୍ଗା ଏବଂ ଦୂରାନ୍ତରରେ ଥିବା ବିଳାସପୁର ପରି ସ୍ଥାନକୁ ମଧ୍ୟ ଯାଉଥାଏଁ । ସର୍ବଭାରତୀୟ ସ୍ତରର ସ୍ୱୀକୃତି ମତେ ୧୯୬୮ ମସିହାରେ ମିଳିଲା ଯେତେବେଳେ ମୁଁ ଜାତୀୟ ଚଳଚ୍ଚିତ୍ର ଉତ୍ସବ ଉପଲକ୍ଷେ ରାଷ୍ଟ୍ରପତି ଭବନରେ ନୃତ୍ୟ କଲି । ତାପରେ ପ୍ରଥମ ଥର ଆଇସିସିଆର୍ ମତେ ଆଫଗାନିସ୍ଥାନ ଯିବାପାଇଁ ମନୋନୀତ କଲେ । ଏଥିରେ ଇନ୍ଦିରା ଗାନ୍ଧୀଙ୍କ ସହିତ ଗୋଟିଏ ପ୍ରତିନିଧି ଦଳ ଯେଉଁଥିରେ ବେଗମ୍ ଅଖତାର୍, ରାମ ନାରାୟଣ ଷଡଙ୍ଗୀ ଏବଂ ଦମୟନ୍ତୀ ଯୋଷୀ ମଧ୍ୟ ଯାଉଥିଲେ । ସେମାନଙ୍କ ମଧ୍ୟରେ ମୁଁ ଥିଲି କନିଷ୍ଠତମ ।

ମୁଁ ସର୍ବଦା ପୁରୁଷ ଓ ମହିଳା ଉଭୟଙ୍କ ପ୍ରତି ଶାରୀରିକ ଏବଂ ଆବେଗିକ ସ୍ତରରେ ଖୁବ୍ ସ୍ପର୍ଶକାତର ଥିଲି । ମୋ ଭିତରେ ଏକ ଦୁଃସାହସିକ ପ୍ରବୃତ୍ତି ଅଛି । (ମୋ ପିତାମହଙ୍କଠୁଁ ମୁଁ ଏହା ପାଇଛି) ଏପରିକି ମାନବ ସଂପର୍କକୁ ଆବିଷ୍କାର କରିବାର ଇଚ୍ଛା ମୋର ପ୍ରଗାଢ଼ଭାବରେ ରହିଛି । ମୁଁ ସଂପୂର୍ଣ୍ଣ ଆନନ୍ଦରେ, ଆବେଗ ସହକାରେ ସନ୍ତୋଷର ସହିତ ନୃତ୍ୟ କରୁଥିଲି । ତାପରେ ଦିଲ୍ଲୀରେ (୧୯୬୪) ସାପ୍ରୁ ହାଉସଠାରେ ମୋର ପ୍ରଥମ ନୃତ୍ୟ ପ୍ରଦର୍ଶନ ସମୟରେ ମୁଁ ଜଣେ ଭଦ୍ରବ୍ୟକ୍ତି ଲଳିତ ମାନସିଂହଙ୍କୁ ଭେଟିଲି । ସେ ଓଡ଼ିଶାର ଏବଂ ଭାରତୀୟ ବିଦେଶ ସେବା ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିଥିଲେ ।

ନୃତ୍ୟ ପ୍ରଦର୍ଶନ ପରେ ଡ.ଚାର୍ଲସ ଫାବ୍ରି ତାଙ୍କୁ ନେଇ ମଞ୍ଚ ପଛପଟକୁ ଆସିଲେ । ତାଙ୍କ ବାପା ଓ ଫାବ୍ରି ଖୁବ୍ ଭଲ ବନ୍ଧୁ । ସେ ଶ୍ୟାମଳ ବର୍ଣ୍ଣର କିନ୍ତୁ ଖୁବ୍ ଆକର୍ଷଣୀୟ ଚେହେରାର ବ୍ୟକ୍ତି । ତାଙ୍କର ଶାନ୍ତ ସ୍ୱଭାବ, ଗାମ୍ଭୀର୍ଯ୍ୟ, ଲାଜୁଆଭାବ ଏବଂ ଚମତ୍କାର ହସ ମତେ ମୁଗ୍ଧ କଲା ।

ସେ ସମୟରେ ଜଣେ ଡୁନ୍ ବା ସେଣ୍ଟ ଷ୍ଟିଫେନ୍ସ ସ୍କୁଲର ଛାତ୍ର ନ ହୋଇ ମଧ ଏହି ପରୀକ୍ଷାରେ କୃତିତ୍ୱ ଅର୍ଜନ କରିବା ଏକ ବିରଳ ଘଟଣା ଥିଲା । ଯାହା ତାଙ୍କ କ୍ଷେତ୍ରରେ ଘଟିଥିଲା । ମୁଁ ସ୍ୱର୍ଣ୍ଣ ସରସ୍ୱତୀଙ୍କଠାରୁ କିଛି ପଦମ୍ ଶିକ୍ଷା କରିବାପାଇଁ ଦିଲ୍ଲୀରେ କିଛିଦିନ ଥାଏ କାରଣ ବେଶ୍ କିଛି ବର୍ଷପରେ ମୁଁ ଦିଲ୍ଲୀ ଆସିଥିଲି । ସେତେବେଳେ ସେ ଜେନେଭାରେ ନିଯୁକ୍ତ ଥିଲେ । ମୁଁ ଏକ ନୃତ୍ୟ ପ୍ରଦର୍ଶନ ସଂକ୍ରାନ୍ତରେ ଏଠି ଥିଲି । ସେ ଦିଲ୍ଲୀରେ ପହଞ୍ଚିବା ମାତ୍ରେ ମୋତେ ଫୋନ୍ କଲେ ଏବଂ ମୁଁ ମୋର ନୃତ୍ୟ ପ୍ରଦର୍ଶନ ଦେଖିବାପାଇଁ ତାଙ୍କୁ ନିମନ୍ତ୍ରଣ କଲି । ମୁଁ ମୋର ପିତାମାତାଙ୍କୁ ଏକଥା କହିଲି । ସେମାନେ କହିଲେ, ‘‘ହେ ଭଗବାନ, ପୁଣି ଏ କିଏ ?’’ ଆପଣ ତ ଜାଣନ୍ତି ନିଜ ଝିଅମାନଙ୍କ ସଂପର୍କରେ ବାପା ମା କେମିତି ହୁଅନ୍ତି ! ତା ପରଦିନ ଭୋରୁ ମୋ ଭାଇକୁ ସାଙ୍ଗରେ ନେଇ ଲଳିତଙ୍କୁ ତାଙ୍କ ହୋଟେଲ୍‌ରେ ଛାଡ଼ିଦେଇ ଆସିଲୁ । ଆଠମାସ ପର୍ଯ୍ୟନ୍ତ ଆମେ ପରସ୍ପରକୁ ଚିଠି ଲେଖିଲୁ ଏବଂ ଶେଷରେ ବାହାହେବାକୁ ସିଦ୍ଧାନ୍ତ ନେଲୁ । ୧୯୬୫ ମସିହାରେ ଜେନେଭାରେ ଆମର ବିବାହ ଅନୁଷ୍ଠିତ ହେଲା । ମୁଁ ଅଢ଼େଇ ବର୍ଷ ୟୁରୋପରେ କଟେଇଲି । ସ୍ପେନ୍, ଫ୍ରାନ୍ସ, ଜର୍ମାନୀ, ହଲାଣ୍ଡ ଏବଂ ଲକ୍‌ସେମବର୍ଗରେ ନୃତ୍ୟ କରିଲି ଓ ଶିଖେଇଲି । ମୁଁ ସମଗ୍ର ଭାରତୀୟ ନୃତ୍ୟ କଳାକୁ ବିଦେଶରେ ପରିଚିତ କରେଇଲି । ଏହା ପୂର୍ବରୁ ୧୯୪୦ରେ ଉଦୟ ଶଙ୍କରଜୀ କେବଳ ନୃତ୍ୟ କରିଥିଲେ । ତାପରେ ୩୦ ବର୍ଷ ଧରି କିଛି ନ ଥିଲା – ବାସ୍ ନୀରବତା ।

୧୯୬୮ ମସିହା ଜୁଲାଇ ମାସରେ ଆମେ ଦିଲ୍ଲୀକୁ ଫେରି ଆସିଲୁ । ଆମେ ବିଦେଶ ମନ୍ତ୍ରଣାଳୟ ଛାତ୍ରାବାସରେ ରହୁଥାଉ ଓ ମୁଁ ପ୍ରତ୍ୟେକ ଦିନ ତ୍ରିବେଣୀକୁ ଚାଲି ଚାଲି ଯାଉଥିଲି ଓ ଚାଲିକି ଫେରୁଥିଲି । ଲଳିତଙ୍କ ବାପା ଜଣେ ବିଶିଷ୍ଟ କବି, ଶିକ୍ଷାବିତ୍ ଓ ଜଣେ ଉଚ୍ଚକୋଟୀର ମଣିଷ ଡ. ମାୟାଧର ମାନସିଂହ ଦିଲ୍ଲୀକୁ ଆସିଲେ । ମୁଁ ତାଙ୍କୁ ପୂରାପୂରି ପୂଜା କରୁଥିଲି । ମୁଁ ଓଡ଼ିଶୀ ନୃତ୍ୟ ଶିକ୍ଷାପାଇଁ ମୋର ଶ୍ୱଶୁରଙ୍କୁ କୃତଜ୍ଞତା ଜଣାଏଁ । ସେ କହିଲେ, ‘‘ତୁମେ ଭାରତ ନାଟ୍ୟମ ଶିଖିଛ, ଜଣେ ବିଖ୍ୟାତ ନର୍ତ୍ତକୀ ତୁମେ, ବର୍ତ୍ତମାନ ଓଡ଼ିଶୀ ଶିଖ ।’’ ସେ ମତେ ଗୁରୁ କେଳୁଚରଣଙ୍କ ପାଖକୁ ନିଜେ ନେଇଗଲେ ଓ କହିଲେ, ‘‘ଏ ମୋ ବୋହୂ, ଆପଣଙ୍କୁ ୟାକୁ ନାଚ ଶିଖାଇବାକୁ ପଡ଼ିବ’’ । ସେମାନେ ଘନିଷ୍ଠ ବନ୍ଧୁ ଥିଲେ । ସେ ମୋ ନୃତ୍ୟ ଶିକ୍ଷା ସମୟରେ ମତେ ଘରକୁ ଆଣିବାପାଇଁ ସେଠି ବସି ରହୁଥିଲେ । ମୁଁ ତାଙ୍କୁ ଭକ୍ତି କରେ ।

ଜଣେ ନର୍ତ୍ତକୀ ଭାବରେ ମୋର ବ୍ୟସ୍ତତା ବଢ଼ିବାରେ ଲାଗିଲା । ଭାରତ ଫେରି ଆସିବାପରେ ମୁଁ ହୃଦୟଙ୍ଗମ କରିଲି ଯେ ଜନସାଧାରଣଙ୍କ ସ୍ମୃତି ବାସ୍ତବରେ ଊଣା, ସେମାନେ

ଭୁଲିଯା'ନ୍ତି । ଏପରିକି ଅଢ଼େଇ ବର୍ଷ ଏକ ପାର୍ଥକ୍ୟ ସୃଷ୍ଟି କରିପାରେ । ଲୋକେ ମତେ ଭୁଲିଯାଇଥିବାରୁ ମତେ ନିଜକୁ ଆଉଥରେ ପ୍ରତିଷ୍ଠିତ କରିବାକୁ ପଡ଼ିଲା । ଆଉ ଗୋଟେ ବିଷୟ ହେଲା ଯେ ପୂର୍ବେ ମୁମ୍ବାଇ ମୋର କର୍ମକ୍ଷେତ୍ର ଥିଲା – ଯେଉଁଠି ମୁଁ ନୃତ୍ୟ କରୁଥିଲି । ମୋ ଜୀବନରେ ପ୍ରଥମ ଥରପାଇଁ ଦିଲ୍ଲୀକୁ ସ୍ଥାନାନ୍ତରିତ ହେବାପରେ ମୁଁ ସହରର ମାତ୍ର ଦୁଇଜଣଙ୍କୁ ଜାଣିଥିଲି – ଡ. ଚାର୍ଲସ ଫାବ୍ରି ଓ ମୋରାରଜୀ ଦେଶାଇ । ଚାର୍ଲସ କ'ଣ କରିପାରିବେ ? ସେ ଅତ୍ୟନ୍ତ ମଧୁର ସ୍ୱଭାବର ଓ ସାହାଯ୍ୟ କରିବାକୁ ଆଗଭର । ମୋରାରଜୀ କିଛି ସାହାଯ୍ୟ କରିପାରିଲେନି । ନୃତ୍ୟ ପ୍ରଦର୍ଶନ ପାଇଁ ପ୍ରସ୍ତାବ ଧୀରେ ଧୀରେ ଆସିବାକୁ ଲାଗିଲା । କିନ୍ତୁ ଏଇ ସମୟରେ ମୋ ବିବାହ ବିଚ୍ଛେଦ ଘଟିଲା । ଗୋଟିଏ ସଂପର୍କ ଭାଙ୍ଗିଯିବାମାନେ ବାସ୍ତବରେ ଏହା ତୁମଭିତରେ କିଛି ଭାଙ୍ଗିଦିଏ, ଆଉ ତାକୁ ଅତିକ୍ରମ କରିବାପାଇଁ ସମୟ ଲାଗେ । ଏ କ୍ଷତ ଗଭୀର ଥିଲା । ମୁଁ ସଂପୂର୍ଣ୍ଣ ରିକ୍ତ ହୋଇଗଲି । ମୁଁ କିଛି ବି ଦାବି କରିଲିନି । ଭରଣ ପୋଷଣ ଖର୍ଚ୍ଚ ନୁହେଁ, କିଛି ବି ନୁହେଁ । ମତେ ସେତେବେଳେ ୩୧ ବର୍ଷ । ମୋର ସମସ୍ତ ତଥାକଥିତ ବନ୍ଧୁ ମୋ ଆଡୁ ମୁହଁ ଫେରେଇ ନେଲେ ।

ମୋ ଜିଦିଖୋର ସ୍ୱଭାବ ପାଇଁ ମୁଁ ନିଜକୁ ଧନ୍ୟବାଦ ଜଣାଏଁ । ମୁଁ ଯଦି ନାଚ କରିବି ତ କରିବି । ମୁଁ କାହାରିକୁ ମୋର ଭାବପ୍ରବଣତା ନେଇ ଖେଳିବାକୁ ପ୍ରଶ୍ରୟ ଦେଇନାହିଁ । ନୃତ୍ୟ ମୋର ସର୍ବୋତ୍ତମ ସାନ୍ତ୍ୱନା ଓ ମୋ ଜୀବନର ପ୍ରକୃତ କେନ୍ଦ୍ରବିନ୍ଦୁ । ମତେ ଯେତେବେଳେ ବି ଛୋଟ କରିଦିଆଯାଇଛି ଓ ଅନ୍ୟ ନଜରରେ ହୀନ କରିବାକୁ ଚେଷ୍ଟା କରାଯାଇଛି ନାଚ ହିଁ ମତେ ଭାଙ୍ଗିପଡ଼ିବାରୁ ରକ୍ଷା କରିଛି । ଆପଣ ଜାଣନ୍ତି, ୟାପରେ ମୁଁ ଯାଇ କେଉଁଠି ରହିଲି – ମୋର ଗାୟକଙ୍କ ଘରେ । ସେ ତାଙ୍କ ପିଲାଙ୍କ ଘରେ ଗୋଟିଏ ଛୋଟ ଖଟିଆ ମୋ ପାଇଁ ପକେଇଦେଲେ । ମୋ ପିତାମାତା ଆସୁଥିଲେ, ତେଣୁ ମତେ ପୁନର୍ବାର ଇଣ୍ଡିଆ ଇଣ୍ଟର ନ୍ୟାସନାଲ ସେଣ୍ଟର୍‌କୁ ଉଠିଯିବାକୁ ପଡ଼ିଲା । ମୁଁ ପ୍ରଚଣ୍ଡ ଉଦ୍‌ଭ୍ରାନ୍ତ ହେଇ ପଡୁଥିଲି । ମୋ ପାଖରେ ନା ଥିଲେ ବନ୍ଧୁ ନା ଅର୍ଥ । ମୋର ସହକର୍ମୀଗଣ ଗୁଜବ ରଟେଇ ଦେଇଥିଲେ ଯେ ମୁଁ ଆଉ ନୃତ୍ୟ କ୍ଷେତ୍ରକୁ ଫେରୁନାହିଁ । ମତେ ଲୋକମାନଙ୍କୁ ଫୋନ୍ କରି କହିବାକୁ ପଡ଼ିଥିଲା ଯେ ଦେଖ, ମୁଁ କେବଳ ଛୁଟି କଟେଇବାକୁ ଯାଇଥିଲି ଏବଂ ସବୁଦିନ ପାଇଁ ଫେରି ଆସିଛି । ଲୋକମାନଙ୍କର ଏପରି ବ୍ୟବହାରରେ ମୁଁ ଅତିମାତ୍ରାରେ ବ୍ୟସ୍ତବିବ୍ରତ ଓ ହତାଶ ହେଇ ପଡ଼ିଥିଲି । ସେ ସମୟରେ ଲୋକମାନଙ୍କ ବ୍ୟବହାର ଏତେ ଖରାପ ଥିଲା ଯେ ମୁଁ ଚିରଦିନ ପାଇଁ ନାଚ ଛାଡ଼ି, ଦେଶଛାଡ଼ି ଚାଲିଯାଇ ପାରିଥାନ୍ତି । ମୋ ପିତାମାତା ମୋ'ଠୁଁ ଦୂରେଇ ଯାଇଥିଲେ କାରଣ ସେ ସମୟରେ ବିବାହ ବିଚ୍ଛେଦ ବିଷୟ ଚାଲିଥିଲା । କୌଣସି ରାସ୍ତା ନ ଥିଲା ମୋ ପାଖରେ । ସେ ସମୟ ଥିଲା ଚରମ ଦୁର୍ଦ୍ଦିନର ।

ୟା ପରେ ମୁଁ ଏମିତି ଜଣେ ବ୍ୟକ୍ତିଙ୍କୁ ଭେଟିଲି ଯିଏ ମତେ ଆବେଗିକ ସ୍ତରରେ ସମର୍ଥନ ଦେବାକୁ ଆରମ୍ଭ କଲେ । ମୁଁ ମ୍ୟାକ୍ସମୁଲାର ଭବନରେ ଗୋଟିଏ କର୍ମଶାଳା ପରିଚାଳନା କରୁଥିବା ସମୟରେ ଡ.ଜର୍ଜ ଲେଚନେରଂକ ସହିତ ଦେଖାହେଲା । ସେ

ମୋତେ ମନେ ପକେଇ ଦେଲେ ଯେ ୧୯୭୦ରେ ମୋ ସହିତ ତାଙ୍କର ଦେଖା ହୋଇଥିଲା । ମୋର କିଛି ମନେ ପଡ଼ିଲାନି କାରଣ ସେ ସମୟରେ ଏହା ଗୋଟେ ଗୁରୁତ୍ୱପୂର୍ଣ୍ଣ ଘଟଣା ନ ଥିଲା ।

ଯା'ପରେ ମୋ ଜୀବନରେ ଆଉ ଏକ ଘଟଣା ଘଟିଲା । ମଣ୍ଟ୍ରିଏଲ୍‌ରେ ଗୋଟେ ଦୁର୍ଘଟଣାରେ ମୁଁ ସମଗ୍ର ଜୀବନ ପାଇଁ ପଙ୍ଗୁ ହୋଇଯାଇଥାନ୍ତି । ଗୋଟେ ରବିବାର ଥିଲା । ୧୯୭୪ ମସିହା ଅଗଷ୍ଟ ୨୪ ତାରିଖ । ଆମେ ନ୍ୟୁରେଂବର୍ଗ ଯାଇଥିଲୁ ଯାହା ବେରୁଥିରୁ ୫୦ କି.ମି. ଦୂର । ଆମେ ସାରାଦିନ ସେଠି କଟେଇଲୁ, ମୋର ସକାଳେ ଗୋଟେ କର୍ମଶାଳାରେ ଯୋଗଦେବାର ଥିଲା, ତେଣୁ ପ୍ରାୟ ଗୋଟାଏ ବେଳକୁ ଫେରୁଥିଲୁ । ବର୍ଷା ହେଉଥିଲା, ଗଭୀର ଅନ୍ଧକାର ରାତ୍ରି, ଚାରିଆଡ଼େ ଘନ ଜଙ୍ଗଲ, ପୂର୍ବ ଜର୍ମାନ ସୀମାନ୍ତକୁ ଛୁଇଁ ସେ ରାସ୍ତା, ତେଣୁ କଦବା କ୍ୱଚିତ ଗୋଟେ ଅଧେ କାର୍ ଯାଉଥାଏ । ହଠାତ୍ ଆମେ ଦେଖିଲୁ ଗୋଟେ କ'ଣ ଜନ୍ତୁ ଦୌଡ଼ିକି ରାସ୍ତା ପାର ହେଉଛି । ଆମେ ଗୋଟେ ଭୋକ୍ସ୍ ୱାଗନ୍‌ରେ ଯାଉଥିଲୁ ଓ ସେଥିରେ ସେ ସମୟରେ ସେଫ୍ଟିବେଲ୍ଟ ରହୁ ନ ଥିଲା । ସ୍ୱତଃସ୍ଫୂର୍ତ୍ତ ଭାବରେ ଜଣେ ବ୍ରେକ୍ ଦେବା କଥା – ଯଦିଓ ଗାଡ଼ି ତୀବ୍ର ବେଗରେ ଥିବା ସମୟରେ ପୁଣି ଭିଜା ରାସ୍ତାରେ, ଜଣେ ଆଦୌ ବ୍ରେକ୍ ଦେବା କଥା ନୁହେଁ । କାର୍ ତିନିଚାରି ଥର କଚ୍ଛପ ପରି ଗଡ଼ି ଓଲଟି ପଡ଼ିଲା, ମୁଁ ବାହାରକୁ ଛିଟ୍‌କି ପଡ଼ିଲି, ଅଚେତ ହୋଇଯାଇଥିଲି । କିନ୍ତୁ ଆମ ଦେଶଠୁଁ ସଂପୂର୍ଣ୍ଣ ବିପରୀତ ରୀତିରେ ପୋଲିସ୍ ଓ ଆମ୍ବୁଲାନ୍ସ କେଇ ମିନିଟ୍ ମଧ୍ୟରେ ପହଞ୍ଚିଗଲା । ମୋର ମେରୁଦଣ୍ଡ ଭାଙ୍ଗିଯାଇଥିଲା, ମୋର ବାମ ଅକ୍ଷକାସ୍ଥି ଓ ଚାରିଟି ପଞ୍ଜରା ହାଡ଼ ଭାଙ୍ଗିଯାଇଥିଲା । ଜର୍ଜ ଆଶ୍ଚର୍ଯ୍ୟଜନକ ଭାବରେ ରକ୍ଷା ପାଇଯାଇଥିଲେ । ଡ. ପିୟର୍ ଗ୍ରାବେଲଙ୍କ ନିକଟରେ ମୁଁ ମୋର ନୂତନ ଜନ୍ମପାଇଁ ଋଣୀ । ମଣ୍ଟ୍ରିଏଲ୍‌ରେ ପୂରାପୂରି ଠିକ୍ ୧୧ ମାସ ପ୍ଲାଷ୍ଟର୍ ଥିବା ଅବସ୍ଥାରେ ଥିଲି । ସମଗ୍ର ଜୀବନପାଇଁ ଅକର୍ମଣ୍ୟ ହୋଇଯାଇଥାନ୍ତି ।

ଆବେଗିକ ସ୍ତରରେ ଏ ଦୁର୍ଘଟଣା ଏକାବେଳକେ ମୋ ଉପରେ ବିବିଧ ପ୍ରକାରର ପ୍ରଭାବ ପକାଇଲା । ମୁଁ ଅଧିକ ଚିନ୍ତାଶୀଳ, ସଂବେଦନଶୀଳ ଓ ଭାବପ୍ରବଣ ହୋଇ ଉଠିଲି । ସେ ଭୟଙ୍କର ସମୟ ଅତିକ୍ରମ କରିବାପରେ ମୋର ଯେପରି ନୂତନ ଜନ୍ମ ଘଟିଲା । ମୁଁ ଦୁନିଆଁକୁ ଦେଖି ହସୁଥାଏ, ସବୁକିଛି କେତେ ଆନନ୍ଦଦାୟକ ମନେହେଉଥାଏ । ମୁଁ ବିର୍‌ଜୁ ମହାରାଜଙ୍କୁ ସ୍ମରଣ କଲି, ତାଙ୍କୁ ଅଭିବାଦନ ଜଣେଇବାକୁ ଗଲି ଓ ତାଙ୍କ ଆଶୀର୍ବାଦ ନେଲି । ସିତାରା ଦେବୀ ମୁମ୍ବାଇରୁ ମତେ ଫୋନ୍ କଲେ । ଏବଂ ମତେ ଲାଗିଲା ସବୁକିଛି କେତେ ସୁନ୍ଦର । ମୁଁ ଦିଲ୍ଲୀରେ ପହଞ୍ଚିବା ପରେ ପରେ ମୋର ପ୍ରଥମ ନୃତ୍ୟ ପ୍ରଦର୍ଶନ ଅଶୋକ ହୋଟେଲ୍‌ରେ ନିର୍ଦ୍ଧାରିତ ହେଲା । ଟିକେଟ୍ ସବୁ ଚଟାପଟ୍ ବିକ୍ରୀ ହୋଇଯାଉଥାଏ । ପ୍ରତ୍ୟେକେ ଯେଉଁମାନଙ୍କର ଅଳ୍ପ ନାଁ ହୋଇଥାଏ ସେମାନେ ମଧ୍ୟ ଆସିଥିଲେ ଦେଖିବାକୁ – ଏହା କ'ଣ ସତ୍ୟ, ସତରେ କ'ଣ ମୁଁ ମୋ ନିଜଗୋଡ଼ରେ ଠିଆହୋଇ ପାରୁଛି, କାରଣ ଚାରିଆଡ଼େ ଗୁଜବ ପ୍ରଘଟ ହୋଇଯାଇଥିଲା ଯେ ମୋର ଅନେକ ମେଦ ବୃଦ୍ଧି ହୋଇଛି ଏବଂ (ଉସ୍‌କୀ ତୋ ହଡ୍ଡୀ ଟୁଟ୍ ଗଇ ହୈ ।) ତାର ତ ହାଡ଼ ଭାଙ୍ଗିଯାଇଛି । ସେ ଯାହାହେଉ

ନୃତ୍ୟ ପ୍ରଦର୍ଶନ ଚମତ୍କାର ଥିଲା । ମୁଁ ମୋ ପୁରୁଣା ଅବସ୍ଥାକୁ ଫେରିପାଇ ପାରିଥିଲି ଆଉ ସତରେ ମତେ ଲାଗୁଥିଲା ଯେମିତି ମୋ ପାଦ ମଞ୍ଚକୁ ଛୁଇଁନଥିଲା । ଏହା ପରେପରେ ମୁମ୍ବାଇର ରଙ୍ଗଭବନରେ ମୋର କାର୍ଯ୍ୟକ୍ରମ ଥିଲା ଓ ସେଠି ସିତାରା ଦେବୀଙ୍କର ମଧ୍ୟ ପ୍ରୋଗ୍ରାମ ଥିଲା । ମୋର ଶେଷ ହେବା ମାତ୍ରେ ହିଁ ସେ ମଞ୍ଚ ଉପରକୁ ଚାଲି ଆସିଲେ ଓ ମତେ କୁଣ୍ଢେଇ ପକେଇ କାନ୍ଦି ପକେଇଲେ । ସେ ତାଙ୍କର କଳାସୂତା ବାହାର କରି ମୋ ହାତରେ ବାନ୍ଧି ଦେଲେ । ମୁଁ ସତରେ ଦୁଃଖର ସହିତ ଅନୁଭବ କରେ ଯେ ଆଜିକାଲି ସେ ପ୍ରକାର ଭାବପ୍ରବଣତାର ଘୋର ଅଭାବ ଆଉ ଯଦି ବା ଦେଖେଇଲ ତେବେ ଲୋକେ ତାକୁ ଭୁଲ ବୁଝନ୍ତି । ଦି'ମାସ ପରେ ମୁଁ ଆଉ କିଛି ଏକ୍ସରେ ପାଇଁ ଗଲି ଏବଂ ଦେଖାଗଲା ଯେ ପ୍ରକୃତି ତା'ର ଚମତ୍କାରିତା ଦେଖେଇଛି । ଯେଉଁ ମେରୁଦଣ୍ଡ ସମ୍ପୂର୍ଣ୍ଣ ଭାଙ୍ଗି ଯାଇଥିଲା ସେଠି ଦୁଇ ମେରୁଦଣ୍ଡ ହାଡ଼ ମଧ୍ୟରେ ଗୋଟିଏ ନୂଆ ବନ୍ଧ ସଦୃଶ ଯୋଡ଼ ଲାଗିଯାଇଛି । ଗୋଟିଏ ନୂଆ ହାଡ଼ ତିଆରି ହୋଇଯାଇଛି । ଆମର ଶରୀର ଏକ କଳ୍ପବୃକ୍ଷ ସଦୃଶ, ସବୁକିଛି ଆମ ନିଜ ଭିତରେ ହିଁ ବିଦ୍ୟମାନ ।

ଆଗରୁ ମୁଁ ଭାବୁଥିଲି ପିଲାମାନେ ଗୋଟେ ଜଂଜାଳ, ମାତ୍ର ବର୍ତ୍ତମାନ ମୁଁ ସେମାନଙ୍କୁ ଭଲ ପାଏଁ । ପିଲାମାନେ ଭଗବାନଙ୍କର ଏକ ସୁନ୍ଦର ସୃଷ୍ଟି । କିନ୍ତୁ ମୋ ପ୍ରସଙ୍ଗରେ ମୁଁ କହିବି ଯେ ମୁଁ ଯେମିତି ଅଛି ସୁଖୀ ଅଛି । ମୁଁ ଚାହେଁନି ଯେ ମୋର ଗୋଟିଏ ପିଲା ଥିବ ଓ ମୁଁ ତାକୁ ମୋ ସମୟ ଦେଇନପାରି ନିଜକୁ ଅପରାଧୀ ମଣୁଥିବି । ମୋର ପିଲା ଜନ୍ମ କରିବାର ଏକ ସ୍ୱାଭାବିକ ଲାଳସା ନାହିଁ । ପ୍ରତ୍ୟେକ ନାରୀ ଜଣେ ମା' ହେବ ଏହାର କୌଣସି ମାନେ ନାହିଁ । କେହି କେବେ କହନ୍ତି ନାହିଁ ଯେ ପ୍ରତ୍ୟେକ ପୁରୁଷ ପିତା ହେବା ଆବଶ୍ୟକ । ମୁଁ ଭାବେ ଯେ ମୋର ଛାତ୍ରମାନଙ୍କ ମଧ୍ୟରେ ସୁସ୍ଥ ଜାଗୃତି ସୃଷ୍ଟି କରି ମୁଁ ଅପେକ୍ଷାକୃତ ଭାବରେ ଭଲ ମା'ଟିଏ ପ୍ରମାଣିତ ହୋଇପାରିଛି । ମୋର ପୁତୁରା, ଝିଆରୀ ଏବଂ ବନ୍ଧୁମାନଙ୍କର ପିଲାପିଲି ଅଛନ୍ତି । ଏପରିକି ଯେତେବେଳେ ମୁଁ ଉଡ଼ାଜାହାଜ ବା ରେଳଗାଡ଼ିରେ ଯାଉଥାଏ ପିଲାମାନେ ମୋ ସହିତ ଖୁବ୍ ମଧୁର ବ୍ୟବହାର କରନ୍ତି । ପଶୁମାନଙ୍କ ପରି ପିଲାମାନଙ୍କ ନିକଟରେ ମଧ୍ୟ ଏକ ପ୍ରକାର ଜାଣିବାର ଶକ୍ତି ରହିଛି । ସେମାନେ ଯେତେବେଳେ ଆପଣଙ୍କୁ ସେଇ ଆଭ୍ୟନ୍ତରୀଣ ଶକ୍ତି ଯୋଗୁଁ ବିଶ୍ୱାସ କରନ୍ତି, ସେମାନେ ହସନ୍ତି ଓ ପାଖକୁ ଆସନ୍ତି ।

୧୯୭୭ରେ ମୁଁ ଭାରତୀୟ ଶାସ୍ତ୍ରୀୟ ନୃତ୍ୟକେନ୍ଦ୍ର (CICD) ସ୍ଥାପନ କଲି । ମୋର ଉଦ୍ଦେଶ୍ୟ ଥିଲା ପ୍ରଶିକ୍ଷଣ, ପ୍ରଦର୍ଶନ ତଥା ଭାରତୀୟ ଶାସ୍ତ୍ରୀୟ ନୃତ୍ୟ ପ୍ରସାର ପାଇଁ ସମସ୍ତ ସୁବିଧା ସୁଯୋଗ ପ୍ରଦାନ । ମୋ ପାଖରେ ନୂଆଦିଲ୍ଲୀର ଭଡ଼ାଘରର ଗ୍ୟାରେଜ୍ ଛଡ଼ା କିଛି ନ ଥିଲା । ୨୫ ବର୍ଷର ଗୌରବ, ସଫଳ (ନୈରାଶ୍ୟ ମଧ୍ୟ ଅଛି) ଯାତ୍ରାପରେ ମଧ୍ୟ ସେ କେନ୍ଦ୍ର ସେଇ ଛୋଟିଆ ଗ୍ୟାରେଜରେ କାର୍ଯ୍ୟରତ । ସବୁ ପରିସ୍ଥିତିରେ ଏହାକୁ ସଫଳ କୁହାଯିବ, କାରଣ ଶୃଙ୍ଖଳା ତଥା ସୃଜନ ଶକ୍ତିର ମଧୁର ସମନ୍ୱୟର ଧ୍ୱନି କେବେ ବି ସେହି ସ୍ୱଳ୍ପ ସ୍ଥାନ ବିଶିଷ୍ଟ ଅନୁଷ୍ଠାନରେ ଗୁଞ୍ଜରିତ ହେବା ବନ୍ଦ ହୋଇନାହିଁ, ଗୌରବମୟ

କାରଣ କାର୍‌ଗିଲ ଯୁଦ୍ଧପରି ବିଷମ ସମୟରେ ଛାତ୍ରମାନେ ପ୍ରଶିକ୍ଷଣ ନେଇ ଗୁରୁଙ୍କ ପଦାଙ୍କ ଅନୁସରଣ କରି ସତ୍‌ସାହସର ସହିତ ଦେଶପାଇଁ ସର୍ବୋତ୍ତମ ତ୍ୟାଗ କରୁଥିବା ସୈନ୍ୟ ତଥା ଲଢୁଆ ବିମାନ ଚାଳକଙ୍କ ସମ୍ମୁଖରେ ନୃତ୍ୟ ପ୍ରଦର୍ଶନ କରି ତାଙ୍କୁ ଉତ୍ସାହିତ କରିଥିଲେ । ନୈରାଶ୍ୟଜନକ କାରଣ ଯେତେବେଳେ ସମଗ୍ର ବିଶ୍ୱ ବକ୍ର କଣ୍ଠରେ ବର୍ଷ ପରେ ବର୍ଷ ପ୍ରଶଂସା ନିର୍ଘୋଷ କରୁଛି ସେତେବେଳେ ଏହିପରି ଏକ ଚମତ୍କାର କେନ୍ଦ୍ର ପାଇଁ ଅନୁକୂଳ ସ୍ଥାନ ମିଳିପାରିଲା ନାହିଁ ।

୧୯୮୦ ମସିହାରେ ଭାରତ ସରକାର ପ୍ରାୟ ଅଧ ଏକର ସାଂସ୍ଥାନିକ ଜମି ଦିଲ୍ଲୀର ଏକ ସୁନ୍ଦର କେନ୍ଦ୍ରସ୍ଥାନରେ ଆମ କେନ୍ଦ୍ରକୁ ଦେଲେ । ଏହି ଅନୁଦାନ କେନ୍ଦ୍ରର ଶିକ୍ଷକ, ଛାତ୍ର ଏବଂ ପିତାମାତାଙ୍କ ମଧ୍ୟରେ ଏକ ଆନନ୍ଦର ଲହରୀ ଖେଳାଇ ଦେଲା । ସମସ୍ତେ ପ୍ରତିଜ୍ଞା କଲେ ଯେ ପ୍ରତ୍ୟେକେ ପାରୁପର୍ଯ୍ୟନ୍ତ ଏ କେନ୍ଦ୍ରର ପ୍ରାଣ ପ୍ରତିଷ୍ଠା ପାଇଁ ଚେଷ୍ଟା କରିବେ । ଆମର ଆଧୁନିକ ଶିକ୍ଷା ବ୍ୟବସ୍ଥାରୁ ଏହି ଦିଗଟିକୁ ବହିଷ୍କାର କରିବା ଅତ୍ୟନ୍ତ ଦୁର୍ଭାଗ୍ୟଜନକ । ଏ କେନ୍ଦ୍ର ସେହି ବିଷୟଉପରେ ଗୁରୁତ୍ୱ ଦିଏ – ଭାରତୀୟ ସଂସ୍କୃତିରେ ଏପରି ଅନେକ ସୂକ୍ଷ୍ମ ଜିନିଷ ରହିଛି ଯାହା ଆମର ଜୀବନ ଅବବୋଧକୁ ଏକ ସଂପୂର୍ଣ୍ଣ ନୂତନ ଦିଗ ପ୍ରଦର୍ଶିତ କରେ । କେବଳ ଭଲ ପଢ଼ିବା ଆଦୌ ଯଥେଷ୍ଟ ନୁହେଁ । ଆପଣ ଯେତେ ବେଶୀ ଭାରତୀୟ ପୌରାଣିକ ବିଷୟ, ମିଥ୍ ସୃଷ୍ଟି ପ୍ରକ୍ରିୟା ପଢ଼ିବେ ସେତେ ବେଶୀ ଆପଣଙ୍କର ଜାଣିବାର ଉତ୍ସୁକତା ବଢ଼ିବ । ତେଣୁ ଆପଣ ନିଜ କାହାଣୀ, କିମ୍ବଦନ୍ତୀ ଏବଂ ଯାହା ଘଟୁଛି ଓ ବିଭିନ୍ନ ଘଟଣା ସହିତ ଭଲଭାବେ ପରିଚିତ ହୁଅନ୍ତୁ । ଯାହାଫଳରେ କିମ୍ବଦନ୍ତୀର ଅନ୍ତର୍ନିହିତ ନିର୍ଯ୍ୟାସ ଓ ପ୍ରତୀକକୁ ବୁଝିପାରିବେ । ଆପଣ ଏହାକୁ ଏକ ପିଆଜ ରୂପରେ ଦେଖନ୍ତୁ, ତା'ର ସ୍ତର ପରେ ସ୍ତର ଛଡ଼ାନ୍ତୁ ଆଉ ତା'ର କେନ୍ଦ୍ରସ୍ଥଳ କେବେ ବି ଆପଣ ପାଇପାରିବେନି । ମାତ୍ର ଏ ଚୋପା ଛଡ଼େଇବା ପ୍ରକ୍ରିୟା ହିଁ ଏକ ଯାତ୍ରା, ଏକ ଅଦ୍‌ଭୁତ ରହସ୍ୟମୟ ଯାତ୍ରା ।

ଜୀବନର ଗୋଟେ ପର୍ଯ୍ୟାୟ ଥିଲା ଯେତେବେଳେ ମୋର ଅଧିକରୁ ଅଧିକ ନୃତ୍ୟ ପ୍ରଦର୍ଶନ କାର୍ଯ୍ୟକ୍ରମପାଇଁ ଅଭିଳାଷ ଥିଲା । ଯାଠୁଁ ଉର୍ଦ୍ଧ୍ୱରେ କିଛି ଦେଖିପାରୁନଥିଲି । ଏସିଆ ଉପମହାଦେଶ, ୟୁରୋପ, ଭାରତର ଆଭ୍ୟନ୍ତରୀଣ ଅଞ୍ଚଳର କୋଣ ଅନୁକୋଣରେ ପ୍ରଦର୍ଶନ କରିସାରିବା ପରେ ଆଉ ନୃତ୍ୟ ପ୍ରଦର୍ଶନ ମୋ ପାଇଁ ଚରମ ଲକ୍ଷ୍ୟହୋଇ ରହିଲାନି । ଏହା ମୋର ଅନ୍ତରାତ୍ମାର ବିକାଶ ସହିତ ଜନ୍ମ ନେଲା । ଯଦି କାଲି ଲୋକ କହିବେ, ଆମେ ତାଙ୍କୁ ଆଉ ଦେଖିବାକୁ ଚାହୁଁ ନାହୁଁ, ତାହେଲେ ମୋ ପୃଥିବୀ ଓଲଟ ପାଲଟ ହେଇଯିବନି କି ମୁଁ କହିବିନି – ହେ ଭଗବାନ, ମୋର ସବୁ ସରିଗଲା । ନୃତ୍ୟର ଅଭିଜ୍ଞତା ମତେ ବହୁ ପରିମାଣରେ ସମୃଦ୍ଧ କରିଛି, କିନ୍ତୁ ଜୀବନ ତାଠୁଁ ଯଥେଷ୍ଟ ମହତ୍ତର ।

ନୃତ୍ୟ ମୋ ଜୀବନରେ ଉତ୍ସାହର ଏକ ଚିରନ୍ତନ ପ୍ରଜ୍ୱଳିତ ଶିଖା ଏବଂ ମୁଁ କେବେ ବି ଏହାକୁ ଦୃଷ୍ଟିପଥରୁ ଅନ୍ତର ହେବାକୁ ଦେଇନି । ମୁଁ ସବୁବେଳେ ମଞ୍ଚର କେନ୍ଦ୍ରବିନ୍ଦୁ ହୋଇ ଲୋକଙ୍କର ଦୃଷ୍ଟି ଆକର୍ଷଣ କରିଛି ମାତ୍ର ଏହା ମାନେ ନୁହେଁ ଯେ ମୁଁ ଆତ୍ମରତି ମଗ୍ନ । ଏହାର ଅର୍ଥ ମୁଁ ମୋ ଜୀବନର କେନ୍ଦ୍ରବିନ୍ଦୁ । ତୁମେ ଜୀବନ ସଚେତନ ଭାବରେ ମାତ୍ର ଆତ୍ମମର୍ଯ୍ୟାଦାର ସହିତ ବଞ୍ଚ ।

ପ୍ରୀତି ସେନ୍‌ଗୁପ୍ତ (ଜନ୍ମ : ୧୯୪୫) ଅଦମ୍ୟ ଭ୍ରମଣ ପିପାସାର ଜ୍ୱଳନ୍ତ ଦୃଷ୍ଟାନ୍ତ । ସେ ତିନି ଦଶକରୁ ଊର୍ଦ୍ଧ୍ୱ ସମୟଧରି ସମଗ୍ର ବିଶ୍ୱ ଏକାକୀ ଭ୍ରମଣ କରିଛନ୍ତି । ସେ ବିଶ୍ୱର ୬ଟିଯାକ ମହାଦେଶର ଶତାଧିକ ଦେଶ ଏବଂ ସପ୍ତମ ମହାଦେଶ ଆଣ୍ଟାର୍କଟିକା ମଧ ଭ୍ରମଣ କରିଛନ୍ତି । ୧୯୯୨ରେ ଦୁଃସାହସୀ ଆବିଷ୍କାରକ କ୍ରିଷ୍ଟୋଫର୍ କଲମ୍ବସଙ୍କର ୫୦୦ ବର୍ଷ ପୂର୍ତ୍ତି ଅବସରରେ ସେ ସୁଉଚ୍ଚ ସୁମେରୁ ବୃତ୍ତ ଅଞ୍ଚଳର ଚୁମ୍ବକୀୟ ଉତ୍ତରମେରୁ ଯାତ୍ରା କରିଥିଲେ । ସେ ଏ ସ୍ଥାନ ଭ୍ରମଣ କରିବାରେ ପ୍ରଥମ ଭାରତୀୟ ଓ ଶାକାହାରୀ ଯାତ୍ରୀ ଥିଲେ । ଭ୍ରମଣପ୍ରତି ତୃଷ୍ଣା ଓ ମୋହ ତାଙ୍କୁ ଲେଖନୀ ଧାରଣ କରିବାକୁ ଉତ୍ସାହିତ କରିଛି । ତାଙ୍କର ଇଂରାଜୀ ଓ ଗୁଜୁରାଟୀରେ ୨୫ରୁ ଅଧିକ ପ୍ରବନ୍ଧ ଏବଂ କବିତା ଗ୍ରନ୍ଥ ପ୍ରକାଶିତ । ତନ୍ମଧ୍ୟରୁ ଆଠଟି ସର୍ବଶ୍ରେଷ୍ଠ ରଚନା ନିମନ୍ତେ ବିଭିନ୍ନ ସାହିତ୍ୟିକ ପୁରସ୍କାର ଲାଭ କରନ୍ତି । ଖ୍ରୀ. ୧୯୯୩ରେ ପ୍ରୀତି ସେନ୍‌ଗୁପ୍ତଙ୍କୁ ଗୁଜରାଟ ସରକାର ସୁପ୍ରସିଦ୍ଧ ବିଶ୍ୱ ଗୁର୍ଜରୀ ପୁରସ୍କାରରେ ସମ୍ମାନିତ କରିଛନ୍ତି ।

## ୧୧

# ଶୂନ୍ ମାଇଲ୍‌ରୁ ଆରମ୍ଭ

## ପ୍ରୀତି ସେନ୍‌ଗୁପ୍ତ

ମୁଁ ଦେଖିଥିବା ଗୋଟିଏ ସ୍ଥାନର ବହୁ ସୁନ୍ଦର ଚିତ୍ରପଟ୍ଟ ମଧ୍ୟରୁ ଗୋଟିଏ ଦୃଶ୍ୟ ମୋ ସ୍ମୃତିରେ ବାରମ୍ବାର ଉଦ୍‌ଭାସିତ ହୁଏ – ଦୁଇଟି ନଦୀର ସଙ୍ଗମ ସ୍ଥଳ । ଗୋଟିଏ ଉଠାଣିଆ ରାସ୍ତାର ପାହାଡ଼ିଆ ଧାରରେ ଗୋଟିଏ ଛୋଟ ମନ୍ଦିର ଭିତରେ ଭଗବାନ ଶିବ : ଗୋଟିଏ ଲିଙ୍ଗ, ତ୍ରିଶୂଳଟିଏ ଆଉ ପବନରେ ଫରଫର ହେଇ ଉଡୁଥିବା ତିନିକୋଣିଆ ପତାକାଟିଏ । ଅଣଓସାରିଆ, ତୀଖ ପାହାଚ ଓହ୍ଲେଇ ଯାଇଛି ଗୋଟିଏ ଗଡ଼ାଣିଆ ପ୍ରାନ୍ତର ଆଡ଼କୁ । ସ୍ଥାନଟି ଗଡ଼ୱାଲ ଜିଲ୍ଲାର ରୁଦ୍ରପ୍ରୟାଗ । ନଦୀ ଦୁଇଟି ମନ୍ଦାକିନୀ ଓ ଅଳକାନନ୍ଦା – ଗୋଟିଏ କୃଷ୍ଣବର୍ଣ୍ଣା, ଗଭୀର ଓ ଶାନ୍ତ ବୋଲି ଭ୍ରମ ସୃଷ୍ଟି କରେ; ଅନ୍ୟଟି ଫେଣଯୁକ୍ତ, ଶୁଭ୍ର ଓ ଚଞ୍ଚଳା । ଦୁଇଟି ଯାକର ଜଳଧାରା କିଛି ଦୂରଯାଏ ସ୍ପଷ୍ଟରୂପେ ଅଲଗା ବହିଯାଇ ଧୀରେ ଧୀରେ ମିଶିଯାଇ ଜଳର ଏକ ପୂର୍ଣ୍ଣ ପ୍ରବାହ ସୃଷ୍ଟି କରିଛନ୍ତି ।

ପ୍ରାୟ ଦୁଇ ଦଶନ୍ଧି ଧରି ମୋ ଜୀବନ ଦୁଇଟି ବିଷୟଉପରେ କେନ୍ଦ୍ରୀଭୂତ : ଶବ୍ଦ ଏବଂ ଜଗତ । ଅନ୍ୟ କଥାରେ କହିଲେ ଲେଖା ଓ ଯାତ୍ରା । ଦୁଇଟି ନଦୀ ସଦୃଶ ଏ ଦୁଇଟି କ୍ରିୟା ମଧ୍ୟ ସଂପୂର୍ଣ୍ଣ ପୃଥକ । ଗୋଟିକରେ ନିର୍ଜ୍ଜନତା, ମଗ୍ନତା ଓ ଘର ମଧ୍ୟରେ ରହିବାର ଆବଶ୍ୟକତା ରହିଛି । ଅନ୍ୟଟିରେ ଦୃଢ଼ତା, ପ୍ରତିଜ୍ଞାବଦ୍ଧତା, ଧୈର୍ଯ୍ୟ ଓ ସର୍ବଦା ଅପରିଚିତଙ୍କ ସହିତ ମିଳାମିଶା କରିବାର ଅପରିହାର୍ଯ୍ୟତା । ଏ ଦୁଇଟିକୁ ଦୁଇ ଅସମ୍ଭବ ବିପରୀତ ମେରୁ ମନେ କରିବା ଅପେକ୍ଷା ମୁଁ ସେ ଦୁଇଟିକୁ ୟିନ୍ ଓ ୟାଙ୍ଗ୍ ସ୍ୱୀକାର କରିବାକୁ ପସନ୍ଦ କରିବି ଯାହାର ସମନ୍ୱୟରେ ଏକ ଭାରସାମ୍ୟ ରକ୍ଷିତ ହେଉଥିବା ପୂର୍ଣ୍ଣତା ସୃଷ୍ଟିହୁଏ । ବାସ୍ତବରେ ମୋ ଜୀବନରେ ଦୁଇଧାରାର ମିଳନ ଘଟିଛି – ଯେତେବେଳେ ମୁଁ ଲେଖେଁ ମୁଁ ବହିର୍ଜଗତଠାରୁ ବିଚ୍ଛିନ୍ନ ହୋଇଯାଇନଥାଏ ଏବଂ ଯେତେବେଳେ ମୁଁ ଯାତ୍ରା କରେଁ ସେତେବେଳେ ଆତ୍ମ ଅନ୍ୱେଷଣ କରେ ।

ଶୈଶବରୁ ମୋର ସମସ୍ତ ମୌଳିକ ଆବଶ୍ୟକତା ପୂର୍ଣ୍ଣ କରାଯାଇଛି ଏବଂ ଜୀବନ ମୋ ପାଇଁ ଖୁବ୍ ସୁଖପ୍ରଦ ବା ଆରାମଦାୟକ ଥିଲା । ସଂଗୀତ, ଚିତ୍ରକଳା, ନୃତ୍ୟ, ଅଭିନୟ, ସୂଚୀକର୍ମ, ବାଟିକ୍, ପଢ଼ିବା ଆଦିରେ ମୋର ରୁଚି ତଥା ମୋର ସୌନ୍ଦର୍ଯ୍ୟବୋଧ ବଡ଼

ହେବା ସହିତ ସମୃଦ୍ଧ ହେଲା । ମୋ ପାଇଁ ଆବେଗ ସ୍ତରରେ ସଂଘର୍ଷ ଥିଲା ଓ ରହିଛି । ସମ୍ଭବତଃ ଖୁବ୍ ଛୁଆବେଳୁ ବାପାଙ୍କୁ ହରାଇଥିବା ଯୋଗୁଁ ଏ ଆବେଗଗତ ଆବଶ୍ୟକତା ଅନୁଭବ କରେଁ । ଝିଅଟିଏ ହେଇଥିବାରୁ ମୋର ଇଚ୍ଛାନୁସାରେ ନିର୍ବାଚନ କରିବା, କାମ କରିବା ବା ଏପରିକି ଚିନ୍ତା କରିବାର ସ୍ୱାଧୀନତାରୁ ବଞ୍ଚିତ ଥିଲି । ଆରମ୍ଭରୁ ହିଁ ବୈପରୀତ୍ୟ ଭାବ ସ୍ପଷ୍ଟ ରୂପେ ଥିଲା, ଏକ ପକ୍ଷରେ ନିରାପଦ ଓ ପ୍ରାଚୁର୍ଯ୍ୟପୂର୍ଣ୍ଣ ଜୀବନ ଅନ୍ୟପକ୍ଷରେ ନାନା କଟକଣା । ମୁଁ ଖୁବ୍ ପିଲାବେଳୁ ପ୍ରବନ୍ଧ ଓ କବିତା ଲେଖୁଥିଲି ଏବଂ ପ୍ରତ୍ୟେକ ବର୍ଷ ସ୍କୁଲ ପିଲାଙ୍କ ସହିତ ଓ ପରିବାର ସହିତ ଭାରତ ଭିତରେ ବୁଲିବାକୁ ଯାଉଥିଲି । ମୁଁ ଲଜ୍ଜ୍ୟାଶୀଳ ଓ ଅନ୍ତର୍ମୁଖୀ ବ୍ୟକ୍ତିତ୍ୱ ସଂପନ୍ନ ଥିଲି । ଏପରିକି ମୋର ହୀନମନ୍ୟତା ଥିଲା । ସମାନ୍ତରାଳଭାବେ ମୁଁ ଅନ୍ୟମାନଙ୍କଠୁ ପୃଥକ ହେବି, ସେ ଲକ୍ଷଣ ବି ଦେଖାଯାଉଥିଲା । ଲୋକଦେଖାଣିଆ ବା ଉପରଠାଉରିଆ ପରଂପରାକୁ ମୁଁ ଅସ୍ୱୀକାର କରୁଥିଲି । ମୁଁ ଭାବୁଛି ମୋ ମା ଏ ବିଷୟ ବୁଝିପାରିଥିଲେ, ତେଣୁ ଏ ନେଇ ଚିନ୍ତିତ ଥିଲେ ।

ନିଃସନ୍ଦେହରେ ଆମେରିକା ଯିବାପରେ ମୋର ବ୍ୟକ୍ତିତ୍ୱର କ୍ରମବିକାଶ ଘଟିଲା ଓ ମୋର ଏକ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ ଗଠିତ ହେଲା । ଗୋଟେ ନୂଆ ସ୍ଥାନରେ ମୁଁ ଜଣେ ଏକାକୀ ଛାତ୍ର – ବହୁ ଚାଲେଞ୍ଜର ସମ୍ମୁଖୀନ ହେଇଛି, ସଂଗ୍ରାମ କରି ବଞ୍ଚିବାକୁ ହେଇଛି । ଆମେରିକାରେ ହିଁ ଜାଣ ମୁଁ ମଣିଷ ହେଲି, ନିଜପାଇଁ ନିଜେ ନିଷ୍ପତ୍ତି ନେବାକୁ ଆରମ୍ଭ କଲି । ମୁଁ କେବେ ବି ଗୋଟେ ସ୍ଥାୟୀ, ଅର୍ଥକାରୀ ବୃତ୍ତି ଆପଣେଇ ପାରିଲିନି । କିନ୍ତୁ ମୋର ଏ ସଂସାରକୁ ଦେଖିବାର ଦୃଷ୍ଟିକୋଣ ଓ ଏହାର ଅବଦାନ କ୍ରମାଗତ ଭାବେ ବ୍ୟାପ୍ତ ବା ପ୍ରସାରିତ ହେବାରେ ଲାଗିଲା । ମୋର ପ୍ରଥମ ସଂପୂର୍ଣ୍ଣ ଏକାକୀ ଯାତ୍ରା ଥିଲା ଆମେରିକା, ବସ୍‌ରେ ତିନିମାସ ଧରି ଭ୍ରମଣ । ମୁଁ ଯାହା ଗଭୀରଭାବରେ ଦରକାର କରେ – ବୁଝାମଣା, ଭଲପାଇବା, ତାହା ସମ୍ଭବତଃ ମୁଁ ଏହି ଯାତ୍ରାପରେ ହିଁ ପ୍ରତ୍ୟେକ ସ୍ଥାନ ଓ ଲୋକଙ୍କୁ ଦେବାରେ ଲାଗିଲି । ଏବଂ ଏହିଠାରୁ ହିଁ ଆରମ୍ଭ ମୋର ଭ୍ରମଣ ମଧ୍ୟରେ ତଲ୍ଲୀନ ହୋଇଯିବା ।

ଭାରତ ପ୍ରତି ମୋର ଗଭୀର ଅନୁରକ୍ତି ଯୋଗୁଁ ମତେ ଦଶବର୍ଷ ଲାଗିଗଲା ଆମେରିକାରେ ସ୍ୱଚ୍ଛନ୍ଦ ଅନୁଭବ କରିବାକୁ । ଯଦିଓ ଇତି ମଧ୍ୟରେ ମୁଁ ଭ୍ରମଣ କରିବା ଆରମ୍ଭ କରିଦେଇଥିଲି । ମୁଁ ଚଳିବାପାଇଁ ୬ ମାସ କାମକରେ, ତାପରେ ଚାକିରି ଛାଡ଼ି ଆଉ ଛଅ ମାସ ଭ୍ରମଣ କରେ । ମୋର ଏକାକୀ ଯାତ୍ରା କରିବା ଅସ୍ୱାଭାବିକ ଥିଲା । ମୁଁ ଏମିତି କାହାକୁ ଜାଣିନଥିଲି ଯିଏ ମୋ ସହିତ ଯିବାକୁ ଚାହିଁବ, ତା'ଛଡ଼ା ମୁଁ କାହାକୁ ପଚାରିନି ମଧ୍ୟ । ଆମେରିକାକୁ ଲୋକ ଟଙ୍କା ରୋଜଗାର କରିବାକୁ ଆସନ୍ତି ତେଣୁ କେହି ଭ୍ରମଣ କରନ୍ତିନି – ଅନ୍ତତଃ ୧୯୭୦ ବେଳକୁ ତ ଆଦୌ ନୁହଁ ।

ପ୍ରଥମଥର ପାଇଁ ଯେତେବେଳେ ୟୁରୋପ ଗଲି ମୁଁ ଏକ ଅଣଇଂରାଜୀଭାଷୀ ଅଞ୍ଚଳରେ ପାଦ ଥାପିଲି । ମୁଁ ଫ୍ରେଞ୍ଚ ପଢ଼ିଲି, ଯେଉଁସବୁ ଦେଶ ବୁଲିଯିବାର ଯୋଜନା କରିଥିଲି ସେ ବିଷୟରେ ସବୁ ପଢ଼ି ଜାଣିଲି । ମାନଚିତ୍ରରୁ ଟିକିନିଖି ଦେଖିଲି । ତଥାପି ବି ମୁଁ ଏକାକୀ, ଅନଭିଜ୍ଞ, ଅନୁଭବହୀନ ଓ କିଛି ପରିମାଣରେ ଆତଙ୍କିତ ଥିଲି । ମୁଁ ବୋଟ୍‌ରେ

ଇଂଲିଶ୍ ଚାନେଲ ପାରହୋଇ ଭୋର ତିନିଟାରେ ବେଲ୍‌ଜିୟମ୍‌ରେ ପହଞ୍ଚିଲି ଆଉ ଗୋଟିଏ ଛୋଟ ଷ୍ଟେସନ୍‌ର କାଠ ବେଞ୍ଚଉପରେ କିଛି ଘଣ୍ଟା ପାଇଁ ଶୋଇ ପଡ଼ିଲି । ଯେତେବେଳେ ଆଖି ଖୋଲିଲି ଷ୍ଟେସନ୍ ଗହଗହ ଡାକୁଥିଲା, ଲୋକେ କାମକୁ ଯାଉଥିଲେ, ପିଲା ସ୍କୁଲକୁ । ସେମାନଙ୍କ ଆଖିକୁ ମୁଁ କେତେ ଅଡୁଆ ଦିଶିନଥିବି । ପରେ ସେଇଦିନ ମଧ୍ୟଯୁଗୀୟ ସହର ବ୍ରୁଗେସ୍‌ର ଛୋଟ ଏକ ଟୁରିଷ୍ଟ ଅଫିସ୍‌ରେ ଜଣେ ଆମେରିକୀୟ ଛାତ୍ରଙ୍କ ସହିତ ଆଳାପ ହେଲା । ତାକୁ ବି ଏକା ଭ୍ରମଣ କରିବାକୁ ଡର ଲାଗୁଛି ବୋଲି ସେ କହିଲା । ତା'କଥା ସତେ ଯେପରି ମୋ ପାଇଁ ଗୋଟିଏ ଗୁପ୍ତ ତଥ୍ୟ ଉନ୍ମୋଚନ କଲା । ମୁଁ ଉପଲବ୍ଧି କଲି ଯଦି ଜଣେ ପୁରୁଷ ଲୋକ ଆତଙ୍କିତ ଅନୁଭବ କରୁଛି, ତେବେ ଜଣେ ସୁନ୍ଦରୀ ଯୁବତୀ ମହିଳାଙ୍କ ପକ୍ଷେ କିଛିଟା ଆଶଙ୍କିତ ହେବା ନିଶ୍ଚିତ ଭାବେ ସ୍ୱାଭାବିକ ।

ମୁଁ ଯେତେ ଅଧିକରୁ ଅଧିକ ଦୁରୂହ ସ୍ଥାନ ଭ୍ରମଣ କରିବାରେ ଲାଗିଲି, ଅଳ୍ପ କେତୋଟି ସ୍ଥାନର ନାଁ ଦୃଷ୍ଟାନ୍ତ ସ୍ୱରୂପ କହିପାରେଁ – ଜୋର୍ଡ଼ାନ, ସିରିଆ, ମ୍ୟାନ୍‌ମାର୍, କାମ୍ବୋଡ଼ିଆ, ତିବ୍ବତ, ଗ୍ରୀନ୍‌ଲାଣ୍ଡ ଆଦି – ମୁଁ ନିଜକୁ ଅବିଚଳିତ ରଖିବା ଶିଖିଲି, ଶିଖିଲି ଭୀତତ୍ରସ୍ତ ହେବାପୂର୍ବରୁ ପ୍ରକୃତିସ୍ଥ ହେବାନିମନ୍ତେ ନିଜକୁ ପାଞ୍ଚ ମିନିଟ୍ ସମୟ ଦେବାକୁ । ପ୍ରତ୍ୟେକ ଥର ଯାତ୍ରା ସହିତ ମୋର ଆତ୍ମବିଶ୍ୱାସ ଏବଂ ଅପରିଚିତକୁ ସମ୍ମୁଖୀନ ହେବାର ଦୃଢ଼ତା ମଧ ବୃଦ୍ଧି ପାଇଲା । ବର୍ତ୍ତମାନ ପର୍ଯ୍ୟନ୍ତ ପ୍ରାୟ ୨୫ ବର୍ଷରୁ ଊର୍ଦ୍ଧ୍ୱ ହେଲାଣି ମୁଁ ବିନା ଯୋଗାଯୋଗ, ସଂରକ୍ଷଣ ଏବଂ କୌଣସି ପୂର୍ବ ବ୍ୟବସ୍ଥା ବିନା ଏକାକୀ ଯାତ୍ରା କରିଆସୁଛି । ମୁଁ ଗୋଟେ ସ୍ଥାନରେ ପହଞ୍ଚିଯାଏ ଓ ଆଶା କରେଁ ଯେ ଯାହା ହେବ ବଢ଼ିଆ ହେବ । ଏ ସଂପର୍କରେ ମୁଁ ମଜାରେ କହେଁ ଯେ ମୁଁ ସ୍ଥାନୀୟ ଠାକୁରଙ୍କୁ ପ୍ରାର୍ଥନା କରେଁ ଓ ତାଙ୍କ ଦାୟିତ୍ୱରେ ନିଜକୁ ଛାଡ଼ିଦିଏ ।

୧୯୮୦ ଦଶକରେ ମୁଁ ବଡ଼ ସକ୍ରିୟ ଯାତ୍ରୀ ଥିଲି । କାରଣ ଏଇ ସମୟରେ ମୁଁ ପୃଥିବୀର ସାତଟିଯାକ ମହାଦେଶ ଭ୍ରମଣ କଲି । ଦେଶପରେ ଦେଶ ଯାତ୍ରା କରି ମୁଁ ଅମାପ ଆନନ୍ଦ ଅନୁଭବ କରିଛି, ଯାତ୍ରାକାଳୀନ କଠିନତା ଓ ଅସୁବିଧାକୁ ଭ୍ରୂକ୍ଷେପ କରିନାହିଁ । ଉଦାହରଣ ସ୍ୱରୂପ ନିରାମିଷାଶୀ ହୋଇଥିବାରୁ ଏହା ମୋପାଇଁ ଗୋଟେ ଚାଲେଞ୍ଜ ଥିଲା । ମୁଁ ଅଳ୍ପଖାଦ୍ୟରେ ଏପରିକି ଅନେକ ସମୟରେ ବିନା ଖାଦ୍ୟରେ ବଞ୍ଚିବାକୁ ଶିଖିଗଲି ଏବଂ କ୍ରମଶଃ ମୋର ରୁଚି ଅରୁଚି ସବୁ ଭୁଲିଗଲି । ମୁଁ ଆମେରିକାର ଗୋଟିଏ ପ୍ରାନ୍ତରୁ କାନଡ଼ା, ୟୁରୋପ, ଏସିଆ, ସାଉଥ୍ ଆମେରିକା, ଆଫ୍ରିକା, ଅଷ୍ଟ୍ରେଲିଆ ଏବଂ ନିଉଜିଲ୍ୟାଣ୍ଡର ଅନ୍ୟପ୍ରାନ୍ତ ପର୍ଯ୍ୟନ୍ତ ଭ୍ରମଣ କରିବାପରେ ନିଜକୁ ଗୋଟିଏ ସ୍ଥାନ ପାଇଁ ଯୋଗ୍ୟ ମନେକଲି । ଯାହା ମତେ ଏବେ ବି ଅସାଧାରଣ ଲାଗେ । ଏହା ଆଣ୍ଟାର୍କଟିକା, ଦକ୍ଷିଣ ମେରୁକୁ ଘେରି ରହିଥିବା ବିଶାଳ ବରଫୀକୃତ ମହାଦେଶ । ମୁଁ ଗୋଟିଏ ଜାହାଜରେ ଆର୍ଜେଣ୍ଟିନାର ଦକ୍ଷିଣ ପ୍ରାନ୍ତରୁ ବାହାରିଲି । ଏକ ସହରପରି ବିଶାଳ ଆକୃତିର ଆଇସବର୍ଗ, ବହୁ ଗ୍ଲାସିଅର୍ସ, କେହି ସ୍ପର୍ଶ କରି ନ ଥିବା ତୁଷାରମୟ ନଦ–ନଦୀ ତଥା ବହୁବିଧ ବିସ୍ମୟକର ଜିନିଷ ମତେ ଆଶ୍ଚର୍ଯ୍ୟ ଚକିତ କରିଦେଲା । ଏ ଜଳଯାତ୍ରା ମୋପାଇଁ ଏତେ ବୈଶିଷ୍ଟ୍ୟମୟ ଥିଲା ଯେ ମୁଁ ଆଣ୍ଟାର୍କଟିକା ଯାତ୍ରାର ପୂର୍ବବର୍ତ୍ତୀ ଜୀବନ ଓ ଉତ୍ତରବର୍ତ୍ତୀ ଜୀବନ କଥା କହିବାକୁ ବସିଯାଏଁ ।

ଏହାପରେ ମୋର ଦୃଷ୍ଟି ସୁଉଚ୍ଚ ଆର୍କଟିକ୍ ଆଡ଼କୁ ଆକର୍ଷିତ ହେଲା । ମୁଁ ସେଇ ବିଶାଳ ଭୂଖଣ୍ଡକୁ ଏକ ମହାଦେଶର ଅନ୍ତତଃ ଅର୍ଦ୍ଧ ଆୟତନ ବିଶିଷ୍ଟ ମନେ କରୁଥିଲି ଓ ସେଠାକୁ ଯିବାପାଇଁ ନିଷ୍ପତ୍ତି ନେଲି । ୧୯୯୨ ମସିହାରେ ମୁଁ ଚୁମ୍ବକୀୟ ଉତ୍ତର ମେରୁ ଉଦ୍ଦେଶ୍ୟରେ ଯାଉଥିବା ଗୋଟିଏ ଅଭିଯାନ ଦଳରେ ଯୋଗଦେଲି । ସଂଯୋଗବଶତଃ ଏହା ଖ୍ରୀଷ୍ଟୋଫର କଲମ୍ବସଙ୍କଦ୍ୱାରା ପଶ୍ଚିମ ଜଗତର ଆବିଷ୍କାରର ୫୦୦ ବର୍ଷ ପୂର୍ତ୍ତି ଥିଲା । ମୁଁ ନିଜେ ଜୀବନରେ କୌଣସି ଜଣେ ଦୁଃସାହସିକ ଅଭିଯାତ୍ରୀଙ୍କ ନାଁରେ କିଛି ଗୋଟେ ଉଲ୍ଲେଖନୀୟ କାମ କରିବାକୁ ଚାହୁଁଥିଲି । ମୁଁ ଯା ବି କହୁଥାଏଁ ଯେ ଦୁଇମେରୁ ଆଣ୍ଟାର୍କଟିକା ଓ ଆର୍କଟିକାକୁ ଯିବା ଅର୍ଥ ସମଗ୍ର ପୃଥିବୀକୁ ଆଲିଙ୍ଗନ କରିବା । ମୋ କଥା ଗୋଟେ ପାଗଳ ମହିଳାର ପ୍ରଳାପ ପରି ଶୁଣାଯାଉଥିବ ମାତ୍ର ମୋ ପାଇଁ ଏହା ଥିଲା ବାସ୍ତବ – ଭ୍ରମଣ କରିବାର ଗଭୀର ଅଦମ୍ୟ, ପିପାସାର ଅଭିବ୍ୟକ୍ତି । ମୁଁ ଚୁମ୍ବକୀୟ ଉତ୍ତର ମେରୁରେ ପହଞ୍ଚିପାରିଥିବା ପ୍ରଥମ ଭାରତୀୟ ମହିଳା ତଥା ପ୍ରଥମ ନିରାମିଷାଶୀ ବ୍ୟକ୍ତି । ମୁଁ ସେ ବରଫ ଅଧିକୃତ ରାଜ୍ୟରେ ଭାରତର ତ୍ରିରଙ୍ଗା ଉଡ଼ାଇଲି । ଏହା ଅତିମାତ୍ରାରେ ଦୁଃସାଧ ଯାତ୍ରା ଥିଲା । – ୭୦° ପର୍ଯ୍ୟନ୍ତ ହିମଶୀତଳ ତାପମାତ୍ରାକୁ ସହ୍ୟ କରିବାପାଇଁ ମୁଁ ମୋର ସମସ୍ତ ଆତ୍ମଶକ୍ତି ବିନିଯୋଗ କରିଦେଇଥିଲି । ଶହଶହ ମାଇଲ୍ ବିସ୍ତୃତ ବିଶୁଦ୍ଧ ଶୁଭ୍ରତା ଏବଂ ବିଳମ୍ବିତ ରାତିର ଆଲୋକ ସତରେ ଅଦ୍‌ଭୁତ । ବରଫର ମହାସମୁଦ୍ର ଉପରେ ମୁଁ ସ୍ଲେଜ୍ ଗାଡ଼ିରେ ଯାତ୍ରା କରୁଥାଏଁ । ଏବଂ ମୋର କୌଣସି ସନ୍ଦେହ ନାହିଁ ଯେ କୌଣସି ଏକ ଦିବ୍ୟ ଅପାର୍ଥିବ ଶକ୍ତିର ଉପସ୍ଥିତି ମୋର ନିରାପଦ ପ୍ରତ୍ୟାବର୍ତ୍ତନ ପାଇଁ ମୋ ଉପରେ ଦୃଷ୍ଟି ରଖିଥିଲା ।

ଏହା ପ୍ରକୃତରେ ମୋର ବିଭିନ୍ନ ଯାତ୍ରାଜନିତ ପ୍ରଚେଷ୍ଟାର ଚକ୍ରବୃଦ୍ଧି ସୁଧ ସଦୃଶ ଥିଲା; କାରଣ ଯାଠୁଁ ଅଧିକ ଦୁର୍ଗମ ଲକ୍ଷ୍ୟସ୍ଥଳକୁ ମୁଁ କେବେ ଯାଇନାହିଁ । ମାତ୍ର ମୁଁ ମୋର ଯାତ୍ରା ଅବ୍ୟାହତ ରଖିଛି, ବର୍ତ୍ତମାନ ପର୍ଯ୍ୟନ୍ତ ମୁଁ ଶତାଧିକ ଦେଶ ଯାତ୍ରା କରିସାରିଛି – କେତେକ ଦେଶ ଥରେ, ଦୁଇଥର ଏପରିକି ତିନିଥରରୁ ଅଧିକ । ମୁଁ କେବେ ତରତର ହୋଇନି । ବରଂ ସଂପୂର୍ଣ୍ଣ ବିପରୀତ – ଖୁବ୍ ମନ୍ଦମନ୍ଥର ଗତିରେ ଯାତ୍ରା କରିଛି, ଯେଉଁ ସ୍ଥାନକୁ ଯାଇଛି ସର୍ବଦା ତା'ପ୍ରତି ମୋର ଶ୍ରଦ୍ଧା ଜ୍ଞାପନ କରିଛି । ମୋ ଆକର୍ଷଣର କେନ୍ଦ୍ରବିନ୍ଦୁ ସେ ସ୍ଥାନ ସ୍ୱୟଂ । ମତେ ସବୁବେଳେ ପଚରାଯାଏ, ମୁଁ ଏକା ଏକା ବିରକ୍ତ ବୋଧ କରେ କି ନାହିଁ ! ମୋର ସଂକ୍ଷିପ୍ତ ଉତ୍ତର "ନାଁ" ।

ମୋର ଏକାକୀ ଯାତ୍ରା କରିବା ଓ ଏହା କିପରି ମୋ ପାଇଁ ଲାଭଜନକ ହୋଇଛି, ସେ ବିଷୟରେ ଅନେକ କିଛି କହିବାର ଅଛି । ମୋର ଜେରୁଜେଲମ୍ ଯାତ୍ରାକୁ ମୁଁ ତୀର୍ଥଯାତ୍ରା କହିଥାଏଁ, ଯାହା ମତେ ଗୋଟେ ପ୍ରବନ୍ଧ ଲେଖିବାକୁ ପ୍ରେରଣା ଦେଲା ଓ ଯାହାଫଳରେ ଆଜି ମୁଁ ଜଣେ ସୃଜନଶୀଳ, ଭ୍ରମଣ ସାହିତ୍ୟ ଲେଖିକା ଭାବେ ପରିଚିତ । କ୍ରମଶଃ କିଛି ବର୍ଷ ମଧ୍ୟରେ ମୋର କେତେକ ପୁସ୍ତକ ନିମନ୍ତେ ମୁଁ ଅନେକ ପୁରସ୍କାର ପାଇଲି, ଏହା ମତେ ପ୍ରଚୁର ଆତ୍ମସନ୍ତୋଷ ଦେଇଛି । ମୁଁ ଏକା ଏକା ଯାତ୍ରା କରୁଥିବାରୁ, ନିଜ ଭିତରେ

ନିଜେ ଲୀନ ରହୁଥିବାରୁ ମୁଁ ଓ ସେ ସ୍ଥାନର ମହତ୍ତ୍ୱ ବ୍ୟତୀତ ଆମ ଭିତରେ କିଛି ନ ଥିବାରୁ ସେ ସ୍ଥାନ ମୋ ନିକଟରେ ଏକ ବିଶେଷରୂପରେ ଉନ୍ମୋଚିତ ହୁଏ । ମୋ ଆଖିରେ ଅନେକ ବିସ୍ମୟନେଇ ମୁଁ ଏହାକୁ ଦେଖେଁ ଏବଂ ସମାନଭାବରେ ଘରେ ଥିବାପରି ଆତ୍ମୀୟତା ଅନୁଭବ କରେଁ । ମତେ ଯେପରି ମୁହୂର୍ତ୍ତକ ମଧ୍ୟରେ ମୁଁ ଜଣେ ବାହାରର ଓ ସେ ସ୍ଥାନର ବ୍ୟକ୍ତି, ଜଣେ ତୀର୍ଥଯାତ୍ରୀ ଓ ଏକାଧାରରେ ସେ ସ୍ଥାନକୁ ପ୍ରସିଦ୍ଧି ଦେବା ବ୍ୟକ୍ତି ପାଲଟି ଯାଏ । ମୁଁ ନିଜକୁ ଭୁଲିଯାଏଁ ।

ମାତ୍ର ଏସବୁ ଯେତେ ସହଜ ମନେହେଉଛି ତା'ଆଦୌ ନୁହେଁ । ବହୁଦୃଷ୍ଟିକୋଣରୁ ମନୁଷ୍ୟ ସମାଜ ଓ ବିଭିନ୍ନ ସଂପ୍ରଦାୟ ଅନେକ ପରିମାଣରେ ଏକାପରି । ପ୍ରତ୍ୟେକ ସ୍ଥାନର ନିଜସ୍ୱ ଗୁଣାଗୁଣ ଅଛି, ଯାକୁ ଚିହ୍ନିବାପାଇଁ ସତେଯେପରି ତୁମେ ତୁମ ମସ୍ତିଷ୍କର ପ୍ରତ୍ୟେକ ଉପାଦାନକୁ ବିନିଯୋଗ କରିଦେବାର ଆବଶ୍ୟକତା ଅଛି ! ଆଉ ତା'ଉପରେ ପୁଣି ନାରୀ ! ମୋ ସମସ୍ୟା ତ୍ରିଶୂଳ ପରି ଅର୍ଥାତ ତିନିମୁନିଆଁ : ଜଣେ ନାରୀ, ପୁଣି ଭାରତୀୟ ନାରୀ, ତା'ଉପରେ ପୁଣି ଏକାକୀ ଯାତ୍ରା କରୁଥିବା ଭାରତୀୟ ନାରୀ । ବୋଝ ଉପରେ ନଳିତା ବିଡ଼ାପରି ବିବାହିତା । ଏପରିକି ଯେତେବେଳେ ସେମାନେ ମତେ ବିଦ୍ରୂପ କରନ୍ତି ବା ଠକନ୍ତି ସେତେବେଳେ ବି ସେମାନେ ଜାଣିବାକୁ ଚାହାଁନ୍ତି ମୁଁ ଏକା କାହିଁକି ଓ ମୋ ସ୍ୱାମୀଙ୍କୁ ଛାଡ଼ି ମୁଁ ଏକା ଆସିପାରିଲି କିପରି ? ସେମାନେ ମତେ ସହଜରେ ଶିକାର କରିପାରିବା ପରି ଜଣେ ଖରାପ ଏମିତିକି ଦୁଶ୍ଚରିତ୍ର ମହିଳା ମନେ କରନ୍ତି।

ଜଣେ ଭ୍ରମଣକାରୀ ଭାବରେ ମୋର ଅଭିଯୋଗ କରିବାର ଅଧିକାର ନାହିଁ । କାରଣ ମୋର କୌଣସି କଥା ବା ଶାରୀରିକ କଷ୍ଟ ବା ଏକାକୀତ୍ୱ ବା ଅଚିହ୍ନା ଲୋକମାନଙ୍କର ସେଇ ଅଦ୍‌ଭୁତ ବ୍ୟବହାର ହେଉ ଶୁଣିବା ମାତ୍ରେ ଯେ କୌଣସି ଲୋକ କହିବ – "ତୁମେ ଯାଅ ବା କାହିଁକି ?" ଭ୍ରମଣ କରିବାର ସମସ୍ତ ସକାରାତ୍ମକ ଦିଗ – ସାହସ, ଦୃଢ଼ତା, ଯାତ୍ରା କରିବାର ନିଶା ସବୁଥିରେ ଯେମିତି ଗ୍ରହଣ ଲାଗିଯାଏ । ତା'ପରେ ତ ଭାରତୀୟ ହେବା ବିଷୟ ଅଛି । ଦେଶର ସୀମାନ୍ତରେ ଲୋକଙ୍କୁ ଜଣେ ଜଣେ ସନ୍ଦିଗ୍ଧ ଚରିତ୍ର ଦୃଷ୍ଟିରେ ଦେଖାଯାଏ । ମଧ୍ୟ ପ୍ରାଚ୍ୟ ଯୁଦ୍ଧ ସମୟରେ ମୁଁ ପ୍ରାୟ ଦେଢ଼ବର୍ଷକାଳ ଏହା ଭୋଗିଛି । କାରଣ କିଛି ମାସ ପୂର୍ବରୁ ମୁଁ ଟ୍ୟୁନିସିଆ ଯାଇଥିଲି । କହିବା ଅନାବଶ୍ୟକ ଯେ ୟୁରୋପୀୟ ଓ ଆମେରିକୀୟ ସୀମାନ୍ତ ଅଫିସର୍‌ମାନଙ୍କ ମନରେ ମୋ ସଂପର୍କରେ ବହୁ ପ୍ରକାର ସନ୍ଦେହ ଜାତ ହେଲା ଏବଂ ସେମାନେ ବାରମ୍ବାର ମତେ ଏମିତିଆ ପ୍ରଶ୍ନ ପଚାରୁଥିଲେ – " ତୁମେ କାହିଁକି ଯାଇଥିଲ ? ତୁମେ କ'ଣ କଲ ? ତୁମେ କେଉଁଠି ରୁହ ? କାହାକୁ କାହାକୁ ସେଠି ଦେଖା କଲ ? ସତେ ଯେପରି ମୁଁ ଜଣେ ଗୁପ୍ତଚର । ସେମାନେ କୌଣସି ପ୍ରକାରେ ବିଶ୍ୱାସ କରିବାକୁ ପ୍ରସ୍ତୁତ ନଥିଲେ ଯେ ଜଣେ ଭାରତୀୟ ନାରୀ ଖାଲିଟାରେ, ଏମିତି ଜଣେ ଭ୍ରମଣକାରୀ ହୋଇପାରେ ।

ମଧ୍ୟ ଆମେରିକା ଯାତ୍ରା କାଳରେ ଗୁଏଟ୍‌ମାଲା ମତେ ପ୍ରବେଶ କରିବାକୁ ଅନୁମିତ ଦେଲାନାହିଁ । ଯଦିଓ ମୋ ପାଖରେ ଭିସା ଥିଲା ଓ ମୁଁ ଆମେରିକାରେ ରହୁଥିଲି । କାରଣ

ସ୍ୱରୂପ ମତେ କୁହାଗଲା ଯେ ମୁଁ ଭାରତରେ ଜନ୍ମ । ହଠାତ୍ ମୁଁ ସମସ୍ତ ଭାରତୀୟଙ୍କ ତରଫରୁ ଦାୟୀ ହେଇଗଲି ଯେଉଁମାନେ ମେକ୍ସିକୋ ଯିବା ପାଇଁ ଗୁଏତ୍‌ମାଲା ଜଙ୍ଗଲକୁ ମାଧ୍ୟମଭାବେ ବ୍ୟବହାର କରୁଥିଲେ ଓ ସେଠାରୁ ଆମେରିକାରେ ଅନୁପ୍ରବେଶ କରୁଥିଲେ । ତା ସତ୍ତ୍ୱେ ମୁଁ କହିବି ଯେ ଜଣେ ଭାରତୀୟ ନାରୀ ପକ୍ଷରେ ଭାରତରେ ଏକାକିନୀ ଭ୍ରମଣ କରିବା ସର୍ବାଧିକ କଠିନ କାର୍ଯ୍ୟ । ଯା ପରେ ବି ମୁଁ ଭ୍ରମଣ କରୁଛି ବୋଲି ଯଦି ମୂର୍ଖ ହୁଏ ତେବେ ମୁଁ ଜଣେ ଆବେଗପ୍ରବଣ ମୂର୍ଖ ଏବଂ ମୁଁ ଭାରତର ଯତ୍ରତତ୍ର ତଥା ଅନ୍ୟ କେଉଁଠି ବି ଭ୍ରମଣ କରିବା ଛାଡ଼ିପାରିବିନି ।

ମତେ ସଦାସର୍ବଦା ସବୁଠାରୁ ଭଲ ଲାଗିଥିବା ଓ ସବୁଠାରୁ ଖରାପ ଲାଗିଥିବା ଅନୁଭୂତି ସମ୍ପର୍କରେ ପଚରା ଯାଇଥାଏ । ଯାର ଉତ୍ତର ଦେବା ବଡ଼ କଠିନ କାରଣ ମୁଁ ମୋ ସ୍ମୃତିପଟରୁ ଖରାପ ଦୃଷ୍ଟାନ୍ତଗୁଡ଼ିକୁ ପୋଛି ଦେଇଥାଏ । ଯେତେବେଳେ ମୁଁ ମଧ୍ୟ-ଆମେରିକାର ସାତଟି ଦେଶ ଦେଖିବାକୁ ଯାଇଥିଲି ସେତେବେଳେ ପ୍ରାୟ ୨ ମାସ ଧରି ପ୍ରତ୍ୟେକ ଦିନ ସତରେ ଭୀଷଣ କଷ୍ଟପ୍ରଦ ଥିଲା । ଗରମ ହେଉ ବା ଦୀର୍ଘ ବସଯାତ୍ରା ବା ସୀମା ଅତିକ୍ରମ କରିବାରେ ପ୍ରତ୍ୟେକ ଦିନ ଅତ୍ୟଧିକ କ୍ଳାନ୍ତିପୂର୍ଣ୍ଣ ଓ ଅନବରତ ଶବ୍ଦ ହେତୁ ପ୍ରତ୍ୟେକ ରାତି ବିନିଦ୍ର ଥିଲା । ଏହା ବାସ୍ତବରେ ଶ୍ରମସାଧ୍ୟ ଆନନ୍ଦ ଥିଲା । ମାତ୍ର ଫେରିବା ପରେ ମତେ ଯେତେବେଳେ ତା' ବିଷୟରେ ପଚରାଗଲା ମୁଁ କେତେ ଚମତ୍କାର ବୋଲି ବର୍ଣ୍ଣନା କରିବାରେ ଲାଗିଲି । ପ୍ରକୃତରେ ମୁଁ ଭୋଗିଥିବା ସେ ସମସ୍ତ ଯନ୍ତ୍ରଣା କଥା ଭୁଲି ସାରିଥିଲି । ଅଦ୍ୟାବଧି ସେ ଯାତ୍ରା ଏବଂ ତା' ଉପରେ ଲେଖିଥିବା ବହି ମୋର ପ୍ରିୟ ତାଲିକାଭୁକ୍ତ ।

ମାତ୍ର ପ୍ରକୃତ ବିପଦକୁ ତୁଚ୍ଛ ଜ୍ଞାନ କରାଯାଇ ପାରିବ ନାହିଁ । ମୁଁ ଭାଗ୍ୟଶାଳୀ ଯେ ବହୁବାର ମରୁ ମରୁ ବଞ୍ଚିଯାଇଛି । ଉଲୁରୁରେ ଘଟଣାଟିଏ ଘଟିଥିଲା । ମଧ୍ୟ ଅଷ୍ଟ୍ରେଲିଆର ଲୋହିତ ମରୁଭୂମିରେ ଏହା ୯ କି.ମି. ପରିଧି ବିଶିଷ୍ଟ ଏକ ବିଶାଳ ଅଖଣ୍ଡ ପଥର । ଏହାର ଉଚ୍ଚତା ଏକ ହଜାର ଫୁଟ । ଏହାକୁ ଆରୋହଣ କରିବା ଅର୍ଥ ଶାରୀରିକ ଶକ୍ତି ଓ ସ୍ଫୂର୍ତ୍ତିର ପରୀକ୍ଷା । ଏହାର ଶିଖର ଦେଶରୁ ତୁମେ ଭୂମି ଦେଖିପାରିବନି । ମୁଣ୍ଡ ଉପରେ ଈଷତ୍ ନୀଳାଭ ଆକାଶ ଏବଂ ଚତୁର୍ଦ୍ଦିଗରେ ପବନର ସନ୍‌ସନ୍ ପ୍ରବାହ । ମୁଁ ସେ ପରିବେଶରେ ଝୁଲନ୍ତ ଅବସ୍ଥାରେ ଥିବାପରି ଅନୁଭବ କରୁଥିଲି । ଅବରୋହଣ କରିବା ଅଧିକତର କଠିନ ଥିଲା । ଗୋଟେ ସ୍ଥାନରେ ମୋ ପାଦ ଖସିଗଲା ଏବଂ ମୁଁ ତୀବ୍ରଗତିରେ ଖସିବାରେ ଲାଗିଲି । ମୁଁ ଉଚ୍ଚ ସ୍ୱରରେ ଅନ୍ୟମାନଙ୍କ ଉଦ୍ଦେଶ୍ୟରେ ପାଖେଇ ଯିବାକୁ କହିଲି । ଜଣେ ସ୍ୱିଡ଼ିସ୍ ମହିଳା ଯିଏ ଇଂରାଜୀ ବୁଝୁନଥିଲେ ଆଡ଼େଇ ଯିବା ପରିବର୍ତ୍ତେ ତେଣୁ ଦୁଇବାହୁ ବିସ୍ତାର କରିଦେଲେ । ସେଇ ମୁହୂର୍ତ୍ତକର ସହାୟତା ମତେ ପଡ଼ିଯିବାରୁ ବଞ୍ଚେଇଦେଲା ଏବଂ ହାତଗୋଡ଼ ଭାଙ୍ଗିବା ବା କୌଣସି ଗମ୍ଭୀର ଆପାତରୁ ରକ୍ଷା କରିଦେଲା । ମୁଁ ତାଙ୍କୁ ଧନ୍ୟବାଦ ଜଣେଇଲି ଏବଂ ସେ (ଅନ୍ୟ ଜଣକ ମାଧ୍ୟମରେ) କହିଲେ ଯେ ଆରଜନ୍ମରେ ସେ କୌଣସି ଇଂରାଜୀଭାଷୀ ଦେଶରେ ଜନ୍ମ ନେବାକୁ ଚାହାଁନ୍ତି । ଯଦିଓ ଏଇ ଥର ପାଇଁ ଅନ୍ତତଃ ସେ ଇଂରାଜୀ ଭାଷୀ ନୁହଁନ୍ତି ବୋଲି ମୁଁ କୃତଜ୍ଞ ଥିଲି ।

ବିପଜ୍ଜନକ ପରିସ୍ଥିତି ବିଷୟରେ କହିଲେ ମତେ ଆଉ ଏକ ଦୁର୍ଘଟଣା ବିଷୟରେ ଉଲ୍ଲେଖ କରିବାକୁ ହେବ । ଏ ଘଟଣା ଗଭୀର, ତିମି ଅଧ୍ୟୁଷିତ ହିମଶୀତଳ ଜଳ ଅସୀମ ଆଣ୍ଟାର୍କଟିକା ମହାସମୁଦ୍ରରେ ଘଟିଥିଲା । ଯାତ୍ରାର ଦ୍ୱାଦଶ ଦିନ ମୁଁ ଥିବା ଜାହାଜ ପାଣିରେ ଲୁକ୍କାୟିତ କେଉଁ ପାହାଡ଼ ଦେହରେ ଧକ୍କା ଲାଗିବା ସଙ୍ଗେ ସଙ୍ଗେ ଫାଟ ସୃଷ୍ଟି ହେଲା ଏବଂ ପାଣି ପଶିବାରେ ଲାଗିଲା । ଇଞ୍ଜିନ୍ କୋଠରୀଟି ପ୍ଲାବିତ ହେଇଗଲା, ବିଦ୍ୟୁତ ଚାଲିଗଲା, ଜାହାଜ ଗୋଟେ କଡ଼କୁ ଢ଼ଳିଗଲା ଏବଂ ଏକ ଅପ୍ରତ୍ୟାଶିତ ସଂକଟ ଦେଖାଦେଲା । ଯାତ୍ରୀ ଏବଂ ନାବିକ ସମସ୍ତଙ୍କୁ ସମଭାବେ ଜାହାଜ ଉପରୁ, ନିଜର ସମସ୍ତ ଜିନିଷ ଛାଡ଼ି, ଛୋଟ ତମ୍ବୁ ସଦୃଶ ଅପରିଷ୍କାର ଡଙ୍ଗାର ଚଉକୋଣିଆ ସ୍ଥାନ ଉପରକୁ ଡ଼େଇଁବାକୁ ପଡ଼ିଲା । ଶେଷ ପର୍ଯ୍ୟନ୍ତ ଆମେ କିପରି ଉଦ୍ଧାର ପାଇଲୁ ତାହା ଏକ ଦୀର୍ଘ କାହାଣୀ ମାତ୍ର ଏଥିରେ ଆଶ୍ଚର୍ଯ୍ୟ ହେବାରେ କିଛିନାହିଁ ଯେ ସେ ଚରମ ଦୁର୍ଦ୍ଦଶାରୁ ରକ୍ଷା ପାଇବା ପରେ ମୋର ପୁନର୍ଜନ୍ମ ଘଟିଲା ବୋଲି ମୁଁ ଭାବିଲି । ମୋର ଲୁଗାପଟା, ଅଳଂକାର, ଟଙ୍କା ପଇସା ଏବଂ କାଗଜ ପତ୍ର ସହିତ ମୁଁ ଦୁଇଟି କ୍ୟାମେରା ଓ ପ୍ରାୟ ଦୁଇଶହ ସ୍ଲାଇଡ଼ସ୍ ବା ଫଟୋ ହରେଇଲି । ଏବେ ବି ମୁଁ ପସ୍ତାଏ ଏବଂ ଏଇଥିପାଇଁ ମୁଁ ଏବେ ବି ମୋ ମନ ଉପକୂଳରେ ପୁନର୍ବାର ଆଣ୍ଟାର୍କଟିକା ଯିବାର ଅଭିଳାଷ ପୋଷଣ କରେଁ । ସେ ଦୃଶ୍ୟକୁ ମୋ କ୍ୟାମେରା ଲେନ୍ସରେ ଓ ମୋ ଆଖିରେ ଆଉ ଥରେ ଧରି ରଖିବାକୁ ଚାହେଁ ।

ମତେ ଯଦି କାହା ଉଦ୍ଦେଶ୍ୟରେ କୌଣସି ବାର୍ତ୍ତା ଦେବାକୁ କୁହାଯାଏ ମୁଁ ଗୁରୁତ୍ୱ ସହକାରେ କହିବି ଯେ ଜଣେ ଯେଉଁ ଦେଶର ହେଉନା କାହିଁକି ବା ଯାହା କରନା କାହିଁକି ଜଣକର ବିବିଧ ବିଷୟପ୍ରତି ରୁଚି ବିକଶିତ ହେବା ଆବଶ୍ୟକ ଏବଂ ଜୀବନରେ କୌଣସି ଏକ ବିଷୟ ପ୍ରତି ଦୀର୍ଘସ୍ଥାୟୀ ଓ ଗଭୀର ରୁଚି ରହିବା ବା ବଢ଼େଇବା ଜରୁରୀ । ବିରକ୍ତିବୋଧ ପାଇଁ ଜୀବନରେ ସାମାନ୍ୟତମ ସ୍ଥାନ ନରହିବା ଉଚିତ୍ । କାରଣ ସମୟ ଅତ୍ୟନ୍ତ ମୂଲ୍ୟବାନ୍ ଓ ଜ୍ଞାନ ଅପରିସୀମ । ନିର୍ଭୀକତା-ଦୃଢ଼ତା, ସନ୍ତୋଷ ଓ ଆତ୍ମବିଶ୍ୱାସ ପରି କେତେକ ଗୁଣ ବଂଶଗତ ଭାବେ ନଥାଇପାରେ ମାତ୍ର ତା'ର ବିକାଶ କରାଯାଇପାରେ । ଅଧିକାଂଶ ଲୋକ କହନ୍ତି ଯେ ସେମାନେ ଏକାକୀ ରହିବାକୁ ବା ଭ୍ରମଣ କରିବାକୁ ଭୟ କରନ୍ତି ମାତ୍ର ସେମାନେ ଡରନ୍ତି କାହାକୁ ? ନିଜକୁ ? ଅଧିକାଂଶ କ୍ଷେତ୍ରରେ ସେମାନେ ନବୁଝିକି ବା ଅନ୍ୟ କିଛି କାରଣରୁ ଭୟଭୀତ ହୁଅନ୍ତି ? ଯଦି କୌଣସି ଅଜ୍ଞାତ କାରଣରୁ ତେବେ ତାକୁ ଭୟଙ୍କର ବୋଲି ଭାବନ୍ତି କାହିଁକି ? ତାହା ସମାନ ଭାବରେ ସୁଖଦ ହୋଇପାରେ । ତେଣୁ କଥା ହେଲା ଜଣେ ନିଜକୁ କିଛି ସମୟ ଓ ଅନ୍ୟକୁ ସୁଯୋଗ ଦେବା କଥା ।

ପ୍ରଥମତଃ ଯାତ୍ରା ଅବ୍ୟାହତ ରଖିବା କଠିନ, କାରଣ ଏହା ଖର୍ଚ୍ଚ ବହୁଳ ଏବଂ ଦ୍ୱିତୀୟତଃ ଏହା ଶାରୀରିକ ଚଳପ୍ରଚଳର ଆବାଶ୍ୟକତା ରଖେ । ସବୁବେଳେ ଘର, ପରିବାର, କାର୍ଯ୍ୟ ଏବଂ ଅନ୍ୟାନ୍ୟ ଦାୟିତ୍ୱ ପଛରେ ପକେଇ ଦେଇ ଯିବା ସମ୍ଭବ ହୁଏନି । କିନ୍ତୁ କଦବା କ୍ୱଚିତ ଭ୍ରମଣ କରିବା ବା ଆଖପାଖ ଯାଗାକୁ ବୁଲିଯିବା ସହିତ ଅବଶ୍ୟ ବିଭିନ୍ନ ବ୍ୟକ୍ତି ଓ ସ୍ଥାନ ବିଷୟରେ ପଢ଼ି ଶୁଣି ଗୋଟେ ଆପୋଷ କରାଯାଇପାରେ । ପ୍ରତ୍ୟେକ

ବ୍ୟକ୍ତିପାଇଁ 'ପାରିବି ଓ ପାରିବିନି'ର ସଂଜ୍ଞା ପୃଥକ ଏବଂ ପ୍ରତ୍ୟେକଙ୍କୁ ନିଜ ବିଜୟ ନିମିତ୍ତ ସିଦ୍ଧାନ୍ତ ନିଜକୁ ଅନ୍ୱେଷଣ କରିବାକୁ ହେବ ।

ଥରେ ଲଣ୍ଡନରେ ଗୋଟେ ସାମୂହିକ ଉତ୍ସବରେ ଜଣେ ପରିଚିତ ମୋ ନିକଟକୁ ଆସିଲେ ଓ କହିଲେ, "ତୁମେ ଗୋଟେ ମାଛ ସଦୃଶ ଯିଏ ସ୍ରୋତର ପ୍ରତିକୂଳରେ ପହଁରେ ।" ଏହା ଏକ ଚମତ୍କାର ଓ ଅନନ୍ୟ ପ୍ରଶଂସା ଥିଲା । ଜୀବନ ହରାଇବାର ବିପଦ ଥିବା ସତ୍ତ୍ୱେ ସାଲମନ୍ ମାଛ ସ୍ରୋତର ବିପରୀତରେ ଗତି କରୁଥାଏ । ମୁଁ କହିପାରିବିନି ମୁଁ ଜୀବନ ହରାଇବାକୁ ତଥାପି ପ୍ରସ୍ତୁତ କି ? କିନ୍ତୁ ମୁଁ ନିଶ୍ଚିତ ଯେ ପ୍ରଚଳିତ ଧାରା ଓ ପରଂପରାକୁ ବିରୋଧ କରିବାରେ ମୁଁ ଭୟଭୀତ ହୁଏନି । ଭାଗ୍ୟବଶତଃ ମୁଁ ତୀର୍ଥଯାତ୍ରୀରେ ପରିଣତ ହେବାବେଳକୁ ଗୋଟେ ନିର୍ଦ୍ଦିଷ୍ଟ ଶୈଳୀ ଉଦ୍‌ଭୂତ ହେଲା । ମୋ ସମ୍ମୁଖରେ କୌଣସି ଦୃଷ୍ଟାନ୍ତ ବା ପ୍ରଶିକ୍ଷଣ ବା ପ୍ରୋତ୍ସାହନ ବା ଦିଗଦର୍ଶନ ନଥିଲା । ମୋର ରକ୍ଷଣଶୀଳ ପୃଷ୍ଠଭୂମି ମତେ କୌଣସି ସୃଜନଶୀଳତା ବା ମୌଳିକତା ଦେଇନଥିଲା । କିନ୍ତୁ ମୁକ୍ତ ହେବାର ପ୍ରବଳ ବାସନା, ନିର୍ଭୀକ ଓ ସ୍ଫୂର୍ତ୍ତିର ଜୀବନ ବଂଚିବା ତଥା ପ୍ରେମରେ ତଲ୍ଲୀନ ହେବାର ଅଭିଳାଷ ଯୋଗୁଁ ମୋ ଆତ୍ମା ପାରଂପରିକତାରୁ ମୁକ୍ତି ପାଇଗଲା । ମୁଁ ମୋର ସଂଘର୍ଷ ଏବଂ ଦୀର୍ଘ ଯାତ୍ରାର ଇତିହାସକୁ ଗୋଟିଏ ବାକ୍ୟରେ ବ୍ୟାଖ୍ୟା କରିପାରେ – " ମୁଁ ଶୂନ୍ୟରୁ ଯାତ୍ରା ଆରମ୍ଭ କରି ଉତ୍ତର ମେରୁରେ ପହଞ୍ଚିପାରିଛି ।

ମୋର ପ୍ରାଣ ଶକ୍ତି ମତେ ଏପରି ଏକ ଦିଗକୁ ଆକର୍ଷିତ କରିଛି ଯାହା ଆଜିବି ପୃଥିବୀର ଅଧିକାଂଶ ସମାଜ ଦ୍ୱାରା ସ୍ୱୀକୃତ ନୁହେଁ । ମାତ୍ର ପ୍ରଶଂସା ବା ସ୍ୱୀକୃତି ରୂପରେ ମୁଁ ଅଧିକ କିଛି ଚାହୁଁନାହିଁ । ମୋର ମନେ ପଡୁଛି ନୀଳନଦୀର କଳାଘୁମର, ଗଭୀର, ମସୃଣ ଜଳରାଶି ଉପରେ ନାଆଟିଏ । ଏହା ଏକାକୀ ସ୍ରୋତର ପ୍ରତିକୂଳରେ ଯାତ୍ରା କରୁଥାଏ । ପବନ ମାଡ଼ରେ ପାଲଗୁଡ଼ିକ ଫୁଲି ଉଠିଥାଏ ଏବଂ ତା'ର ଭାଗ୍ୟଡ଼ୋରି ନାବିକ ହାତରେ । ନାଆଟିର ଅନ୍ୟ କିଛି ନୁହେଁ ଏକମାତ୍ର ଅଭିଳାଷ ଯେତେ ସମୟ ସମ୍ଭବ ତିଷ୍ଠି ରହିବା । ସଂପ୍ରତି ଏକ କବିତାର ଶେଷ କେତେ ଧାଡ଼ିରେ ମୁଁ ଅନ୍ୟ ଏକ ରୂପକ ସମାନ ଭାବ ପ୍ରକାଶ ପାଇଁ ବ୍ୟବହାର କରିଛି ।

*ଏବେ ଅସ୍ଥାୟୀ ଏକ ତମ୍ବୁରେ*
*ମୁଁ ଉପାଡୁଛି ଅନାବନା ଘାସକିଛି*
*ବନେଇବାକୁ ଏକ ବଗିଚା*
*ହେଉପଛେ ଥରକେ ଗୋଟେ ପାଖୁଡ଼ା ।*

ମୁଁ ଜାଣେ ଯେ ବ୍ୟକ୍ତିଗତ ଭାବେ ମୁଁ ଯେଉଁ ପଥ ନିର୍ବାଚନ କରିଛି କୌଣସି ମାନଚିତ୍ରରେ ତାହାର ଚିହ୍ନ ନାହିଁ । କିନ୍ତୁ କ୍ରମଶଃ ଏବଂ ନିଶ୍ଚିତ ଭାବରେ ଏହା ବହୁ ଅବିସ୍ମରଣୀୟ ସ୍ମୃତି ରୂପକ ମାଇଲ୍ ଖୁଣ୍ଟି ଦ୍ୱାରା ଚିହ୍ନିତ ହେଲାଣି । କିଏ ଜାଣେ, କେବେ କେହି ଜଣେ ଏ ମାଇଲ୍ ଖୁଣ୍ଟକୁ ଝୁଣ୍ଟିବ ଏବଂ ନିଜ ଦୀର୍ଘ ଯାତ୍ରା ପଥରେ ବାହାରି ପଡ଼ିବ ।

ଅନ୍ତତଃ ମୁଁ ଆଶା ତ କରିପାରେ ।

ଅରୁଣା ରାୟ (ଜନ୍ମ : ୧୯୪୬) ୧୯୭୪ ମସିହା ପର୍ଯ୍ୟନ୍ତ ଭାରତୀୟ ପ୍ରଶାସନିକ ସେବା (IAS) ଅଫିସର ଥିଲେ । ସେ ଭା.ପ୍ର.ସେ.ରୁ ଇସ୍ତଫା ଦେଇ ତିଲୋନିଆ (ରାଜସ୍ଥାନ) ସ୍ଥିତ ସମାଜ ସେବା ଓ ଗବେଷଣା କେନ୍ଦ୍ରରେ ଯୋଗଦେଲେ । ଏହା ତାଙ୍କ ସ୍ୱାମୀ ସଞ୍ଜିତ 'ବଙ୍କର' ରାୟଙ୍କ ଦ୍ୱାରା ସ୍ଥାପିତ । ସେ ଖ୍ରୀ. ୧୯୮୩ ପର୍ଯ୍ୟନ୍ତ ଏସ୍ ଡବ୍ଲ୍ୟୁ ଆର୍ ସିରେ କାର୍ଯ୍ୟ କରିଛନ୍ତି, ତାପରେ ସେ ୧୯୯୦ରେ ଦେବଡୁଙ୍ଗରୀକୁ ଗଲେ । ସେଠାରେ ସେ ମଜଦୁର କିଶାନ ଶକ୍ତି ସଙ୍ଗଠନ (ଏମ୍ କେ ଏସ୍ ଏସ୍) ସ୍ଥାପନ କଲେ ଯାହା ଏକ ସ୍ୱଚ୍ଛ ସଙ୍ଗଠନର ଜୀବନ୍ତ ଉଦାହରଣ । ସେ ସୂଚନା ଅଧିକାର ଆନ୍ଦୋଳନର ଦୃଢ଼ ସମର୍ଥକ ଥିଲେ । ରାଜସ୍ଥାନ ସୂଚନା ଅଧିକାର ବିଲ୍ ପାସ୍ ହେବାରେ ଏହାର ସଫଳ ଭୂମିକା ରହିଛି । ବସ୍ତୁତଃ ଏମ୍.କେ.ଏସ୍.ଏସ୍ ଏକ ତୃଣମୂଳ ଆନ୍ଦୋଳନର ସୂତ୍ରପାତ କଲା । ଯାହାକି ସାଧାରଣ ଜନତାର ସରକାରୀ କାଗଜପତ୍ର ପୁଙ୍ଖାନୁପୁଙ୍ଖ ତନଖି କରିବା ଦାବିରେ ହେଉଥିବା ବ୍ୟାପକ ଚର୍ଚ୍ଚା ଏବଂ ଦେଶବ୍ୟାପୀ ଦାବିକୁ ଇନ୍ଧନ ଯୋଗାଇଲା । ଏହା ବାସ୍ତବରେ ମନମୁଖୀ ଶାସନ ବିରୋଧରେ ଏକ ସୈଦ୍ଧାନ୍ତିକ ପ୍ରତିରୋଧ ।

୨୦୦୦ ମସିହାରେ ଅରୁଣା ରାୟଙ୍କୁ ରାମନ୍ ମେଗସେସ୍ ପୁରସ୍କାର ସାମୁଦାୟିକ ନେତୃତ୍ୱ ଏବଂ ଆନ୍ତର୍ଜାତିକ ବୁଝାମଣା ପାଇଁ ଜେ.ଅର୍‌ପୁଥମଙ୍କ ସହିତ ମିଳିତଭାବରେ ଦିଆଗଲା । ଜେ.ଅର୍‌ପୁଥମ୍ ନାସନାଲ୍ ସ୍ଲମ୍ ଡ୍ୱେଲର୍ସ ଫେଡ଼େରେସନ୍‌ର ଅଧ୍ୟକ୍ଷ । ଅରୁଣା ରାୟ ମଜଦୁର କିଶାନ୍ ଶକ୍ତି ସଙ୍ଗଠନକୁ ପୁରସ୍କାର ଦିଆଯାଉ ବୋଲି ଇଚ୍ଛା ପ୍ରକାଶ କଲେ ମାତ୍ର ଏହା କେବଳ ବ୍ୟକ୍ତି ବିଶେଷଙ୍କୁ ଦିଆଯାଏ ବୋଲି ତାଙ୍କୁ ଜଣାଇ ଦିଆଗଲା । ପରେ ସେ ତାଙ୍କର ପୁରସ୍କାର ପ୍ରାପ୍ତ ଅର୍ଥ ଗଣତାନ୍ତ୍ରିକ ସଂଗ୍ରାମ ପ୍ରକ୍ରିୟା ପଦ୍ଧତିକୁ ସମର୍ଥନ କରିବାପାଇଁ ଗୋଟିଏ ଟ୍ରଷ୍ଟକୁ ଦାନକଲେ ।

## ୧୨

# ଏକ ବିତରିତ ଜୀବନ

### ଅରୁଣା ରାୟ

ଲୋକମାନଙ୍କ ଏଇଟା କହିବା ଗୋଟେ ଫେଶନ୍ (ବା ପରମ୍ପରା)ରେ ପରିଣତ ହେଇଗଲାଣି ଯେ ଆଜି ସେମାନେ ଯାହା, ତା କାହିଁକି ଓ କେମିତି ହେଲେ ? ମାତ୍ର ମୁଁ ଭାବୁଛି କିପରି ଭାବରେ ସାମାଜିକ ପରିସ୍ଥିତି ଆମମାନଙ୍କ ମଧ୍ୟରୁ ଅନେକଙ୍କୁ ଏକତ୍ର କରାଇଲା, ସମାନ ନିଷ୍ଠାରସହିତ ଗୋଟିଏ ଭାବ ସଭିଙ୍କ ମନରେ ଉଦ୍ରେକ କଲା – ତା'ଭାବିବାର ସମୟ ଉପସ୍ଥିତି । ଏହା ଆଉରି ବିସ୍ମୟକର ଯେ ଆମେ ସମସ୍ତେ ପରସ୍ପରଠୁଁ ଲକ୍ଷ ଲକ୍ଷ ଧାରାରେ ପୃଥକ । ମତେ ଅଧିକ ବିସ୍ମିତ ଲାଗେ ଯେ ସମାନ ଶଗଡ଼ଗୁଳାରେ ଚାଲିବାର ଚାପକୁ ଅତିକ୍ରମକରି ଆମମାନଙ୍କ ମଧ୍ୟରୁ ଅନେକ ଭିନ୍ନ ଜଗତର ହେଇଥିଲେ ମଧ୍ୟ ଏକପ୍ରକାର ଚିନ୍ତାଚେତନା ତାଙ୍କୁ ଘାରୁଛି । ଆମେ ସମସ୍ତେ ତ ଗୋଟିଏ ପଥର ପଥିକ । ଆମେ ଆମର ବହୁଯୋଡ଼ା ଆଖିରେ ଦେଖନ୍ତି, ଏବଂ ବାସ୍ତବରେ ଦେଖିବାର ଦୃଷ୍ଟିଭଙ୍ଗୀ ଭିନ୍ନ ଭିନ୍ନ, ମାତ୍ର ଆମେ ସମସ୍ତେ ଜାଣନ୍ତି ଯେ ସୁଖ ବାଣ୍ଟିବା ଜନିତ ଆନନ୍ଦ ତା'ର ସମସ୍ତ ନକାରାତ୍ମକ ପରିଣତିଠୁଁ ତୁଳନାତ୍ମକ ଭାବେ ଅଧିକ ସ୍ଥାୟୀ । ତେଣୁ ଏହା ବର୍ଷବର୍ଷର ଯୋଗାଯୋଗ ଏବଂ ଶିକ୍ଷାର ସମ୍ମିଳିତ ସମାରୋହ ଯେଉଁଥିରେ, 'ମୁଁ' ବସ୍ତୁତଃ ସମୟର ଅଭିଲେଖ ମାତ୍ର ।

ସମ୍ଭବତଃ ଜୀବନ କେବଳ ମାତ୍ର କାହାଣୀ, ଯେଉଁଥିରେ ଆମେ ଅନେକ ସମୟରେ କେବଳ ମାତ୍ର ଇତିହାସକାର । ମୁଁ ଗ୍ରାମୀଣ ଭାରତରେ ରହୁଥିବାରୁ ଏକଥା ଜାଣି ଖୁସି ହେଉଛି ଯେ ଲୋକଙ୍କର ଲୋକଙ୍କ ପ୍ରତି ଆକର୍ଷଣ ଓ ସଂପୃକ୍ତି ଏବେ ବି ଏମାନଙ୍କ ଜୀବନଶୈଳୀର ଅଙ୍ଗ ବା ପରମ୍ପରା ଭାବେ ଜୀଇଁରହିଛି । ସେମାନଙ୍କ ସୁଖଦୁଃଖରେ ଭାଗୀହେବାରେ ଆନନ୍ଦ ଅଛି ଓ ଏହା ବେଶ୍ ଶିକ୍ଷାପ୍ରଦ; ଲୋକଙ୍କ ପାଖରେ ବସିବାକୁ ଏବଂ ଆଡ୍ଡାଦେବାକୁ ସମୟ ଥାଏ । ଚକ୍ରବତ୍ ଘୂରୁଥିବା ବିଶ୍ୱର ସଫଳତା ପାଇଥିବା ମୋର ସହରୀ ବନ୍ଧୁମାନେ ଏହାକୁ ସମୟର ଅପଚୟ କହିଥାନ୍ତି । ମୁଁ ଭାବୁଛି ଏହା ମାନବିକ ଅବସ୍ଥା ବା ପରିସ୍ଥିତି ପ୍ରତି ଏକ ସ୍ଥୂଳ ଓ ବିକୃତ ଦୃଷ୍ଟିଭଙ୍ଗୀ । ମୁଁ ଆଳାପ ଆଲୋଚନାରେ ଯେଉଁ ସମୟ ବ୍ୟତୀତ କଲି ତାହା ବହୁ ଲୋକଙ୍କ ସହିତ ମୋତେ ଗଭୀର ବନ୍ଧୁତ୍ୱ ସୃଷ୍ଟି କରିବାରେ ସାହାଯ୍ୟ କଲା । ଯେତେବେଳେ ପରସ୍ପର ଉପରେ ସଂପୂର୍ଣ୍ଣ ଆସ୍ଥା ଆସିଯାଏ ସେତେବେଳେ ମସ୍ତିଷ୍କ ସମସ୍ତ ପ୍ରକାର ତର୍କବିତର୍କ ସମସ୍ତ ପ୍ରକାର ମତଭେଦ

ତଥା ବିଶ୍ୱ-ଦୃଷ୍ଟିକୁ ଗ୍ରହଣ କରିବାପାଇଁ ଉନ୍ମୁକ୍ତ ହୋଇଯାଏ । ପ୍ରକୃତରେ ବହୁ ତତ୍‌କାଳ ଉନ୍ନତି କରାଇବାବାଲାତ ରାତାରାତି ପରିବର୍ତ୍ତନପାଇଁ ଯୋଜନା କରନ୍ତି ଯେମିତି ଧିଧିର ଇଡ୍‌ଲି ବା ଇନ୍‌ଷ୍ଟାଣ୍ଟ କଫି । ମାତ୍ର ଆମେ ଗାଁବାଲା ବୁଲାରୀ ମୌସୁମୀ ବର୍ଷାର ବାଜରା ଫସଲ ପରି ବର୍ଷା ନିର୍ଭରଶୀଳ । ତା'ପରି ମାନସିକତା ମଧ୍ୟ, ଆମେ ଗରିବ ଧରିତ୍ରୀକୁ କର୍ଷଣ କରନ୍ତି : କିଛି ବିଷୟ ଆମ ଅଧୀନ ତ କିଛିର ଅଧୀନରେ ଆମେ ଧୀରେ ସୁସ୍ଥେ ଆମ ଅନୁସାରେ ବିକାଶଲାଭ କରିବୁ ।

ସମ୍ଭବତଃ ଆମେ ବିଶ୍ୱର ପୂର୍ବଭାଗରେ ଥିବା ଲୋକେ ଏକଥା ଅଧିକ ଭଲଭାବରେ ବୁଝିଛେ । ମାତ୍ର ବର୍ତ୍ତମାନ ଯେହେତୁ ବଜାର ତଥା ନୂଆ ଟେକ୍‌ନିକ୍ ସୁଲଭ ତେଣୁ ଆଶା କରାଯାଏ ଯେ ସବୁ ଅସୁବିଧାର ସମାଧାନ ହେଇଯିବ ଓ ଆମ ପାଖରେ ସବୁ ତାତ୍‌କାଳିକ ବ୍ୟବସ୍ଥା ବି ଅଛି । ଏମିତିକି ତାତ୍‌କାଳିକ ନିର୍ବାଣ ମଧ୍ୟ ସୁନ୍ଦର ଭାବରେ ପ୍ୟାକେଟ୍‌ରେ ବନ୍ଧାହୋଇ ଏକ ନିର୍ଦ୍ଧାରିତ ଦାମ୍‌ରେ ବିକ୍ରି ହେଲାଣି । - ଧନୀ ବ୍ୟକ୍ତିମାନଙ୍କ ପାଇଁ ବିଶେଷ କାର୍ଯ୍ୟକ୍ରମ ତଥା ଦୁର୍ବଳ ବ୍ୟକ୍ତିତ୍ୱ ସଂପନ୍ନ ବ୍ୟକ୍ତି ନିମନ୍ତେ ତାଙ୍କ ଉପଯୁକ୍ତ ଅର୍ଥହୀନ କାର୍ଯ୍ୟକ୍ରମ ଯେଉଁଠି ଗଣେଶଙ୍କ ମୂର୍ତ୍ତି କ୍ଷୀର ପାନ କରେ । ମାତ୍ର ଏପରି କାର୍ଯ୍ୟକ୍ରମ ଗରିବଙ୍କପାଇଁ ପରଂପରାର ପୁନର୍ଜାଗରଣ କରେ ଯେଉଁଠି ନାରୀ କ୍ଷୁଧା ଓ ରକ୍ତ ଅଭାବ ଜନିତ ରୋଗର ଶିକାର, ସେ ବି ନିଜ ସ୍ୱପ୍ନକୁ ସାକାର କରିବାପାଇଁ ଉପବାସ କରେ । ଆରିଷ୍ଟଟୋଲଙ୍କ ଦାର୍ଶନିକ ମତବାଦ ତଥା ଇଣ୍ଡକ୍‌ସନ୍ ବିଜ୍ଞାନର ସମର୍ଥକ ଛାତ୍ରମାନଙ୍କ ତରଫରୁ ଉଚ୍ଚସ୍ୱରର ପ୍ରତିବାଦ ଓ ଏକ ଦୃଢ଼ ବିରୋଧ ଆଶାକରାଯାଉଥିଲା - ଅନ୍ଧ ଧର୍ମବିଶ୍ୱାସର ଏକ ଯୌକ୍ତିକ ପ୍ରତିବାଦ ! ମାତ୍ର ଏକ ବିରାଟ ଭୟାବହ ନୀରବତା ବିରାଜମାନ କଲା, ମାତ୍ର କେଇଜଣଙ୍କ ଅସ୍ପଷ୍ଟ ଯନ୍ତ୍ରଣାସୂଚକ ଚିତ୍କାର ମଝିରେ ମଝିରେ ଏହା ଭଙ୍ଗ କରିଲା ଯାହା । ଏମିତିକି ପ୍ରକୃତ ଅଧ୍ୟାତ୍ମବାଦୀମାନେ ଅବିବେକିତାର ଏ ପ୍ରବଳ ଜୁଆରକୁ ତଥା ଅନ୍ଧ ଧାର୍ମିକତାକୁ ପ୍ରତିରୋଧ କରିବାକୁ ଅସମର୍ଥ ହେଲେ, ଶେଷରେ ଏ ମିଥ୍ୟା ଧାର୍ମିକତାକୁ ଧର୍ମର ଆଖ୍ୟା ଦେଇଦିଆଗଲା ।

ସ୍ୱାଧୀନତୋତ୍ତର ଭାରତରେ ଆମ ଶୈଶବ ଉଭୟ ଏକ ନୂଆ ଭାରତ ଗଠନର ଆଶାବାଦ ଏବଂ (ଗାନ୍ଧୀଙ୍କ) ହତ୍ୟାର ଦୁଃଖ ମଝିରେ ଦୋଳାୟମାନ ଥିଲା । ମୋର ତାମିଲ ପିତାମାତା ଏବଂ ସେମାନଙ୍କର ବିଶ୍ୱମାନବିକ ଚେତନା ଓ ମୂଲ୍ୟବୋଧ ଆମ ଜୀବନକୁ ସୁଗଠିତ କରି ଏକ ନିର୍ଦ୍ଦିଷ୍ଟ ଶୈଳୀରେ ଗଢ଼ି ତୋଳିବାରେ ସାହାଯ୍ୟ କରିଥିଲା । ଅନେକଙ୍କପରି ଆମେ ମଧ୍ୟ ପାଶ୍ଚାତ୍ୟ ସଂସ୍କୃତି ଓ ଇତିହାସର ସମନ୍ୱୟରେ ଗଠିତ ଆଦର୍ଶରେ ବଢ଼ିଲୁ, ତା'ସହିତ ପରିବର୍ତ୍ତନଶୀଳ ଭାରତର ସମୃଦ୍ଧ ଐତିହ୍ୟ ବି ଆମସାଙ୍ଗରେ ଥିଲା । ଆମେ ବିବିଧ ଧର୍ମଧାରା ସହିତ ପିଲାଦିନୁ ପରିଚିତ ଥିଲୁ । ବାପା ନାସ୍ତିକ ଥିଲେ ଏବଂ ମା' ଥିଲେ ଧର୍ମବିଶ୍ୱାସୀ ବା ଆସ୍ତିକ । ତେବେ ସେ ମୌଳବାଦୀ ନ ଥିଲେ । ସେମାନେ ସିଦ୍ଧାନ୍ତ ନେଲେ ଯେ ତାଙ୍କ ପିଲାଙ୍କୁ ସେମାନେ ସବୁଧର୍ମ ସହିତ ନହେଲେ ନାହିଁ କୌଣସି ଧର୍ମ ସଂପର୍କରେ ଅବଗତ କରାଇବେ ନାହିଁ ।

ଆମ ଘରେ କୌଣସି ବିଷୟ ପ୍ରତି ଚିନ୍ତା ବା ଦୁଃଖ ପ୍ରକାଶ କରିବା ଅର୍ଥ ଥିଲା ତା'ର ସମାଧାନ ପାଇଁ କିଛି କରିବା । ଆମେ ଅମ୍ମାକୁ ବହୁତ ଭଲପାଉ ଏବଂ ସେ କ୍ଳାନ୍ତବୋଲି ଆମେ ଖୁବ୍ ଦୁଃଖିତ କହିବାର କୌଣସି ମୂଲ୍ୟ ନାହିଁ । ଆମେ ଯଦି ପ୍ରକୃତରେ ତା'ପାଇଁ ଦୁଃଖ ଅନୁଭବ କରୁଛୁ ତାହେଲେ ଆମେ ସାହାଯ୍ୟ କରିବା କଥା । ଆମକୁ ଶିକ୍ଷାଦିଆଯାଇଥିଲା ଯେ ଆମେ ଯେଉଁ ପୃଥିବୀରେ ବାସ କରୁଛୁ ତା'ର ଅଭାବ ସହିତ ଲଢ଼ିବା ଓ ତାକୁ ଅତିକ୍ରମ କରିବାକୁ ଶିଖିବାର ଅନ୍ୟ ନାମ ସଂଗ୍ରାମ (ଜୀବନ) । ଏହା ଆମକୁ ଆବେଗାତ୍ମକ, ବୌଦ୍ଧିକ ଏପରିକି ଶାରୀରିକ ନିର୍ଭୀକତା ତଥା ଆମକୁ ନିଜ କାର୍ଯ୍ୟକଳାପର ଦାୟିତ୍ୱବୋଧ ପାଇଁ ବୈଜ୍ଞାନିକ ଚିନ୍ତାଶକ୍ତି ଏବଂ ବ୍ୟବହାରିକ ବୁଦ୍ଧିମତା ମଧ୍ୟ ପ୍ରଦାନ କରିଛି ।

ଆମେ ଖୁବ୍ ଶୀଘ୍ର ଜାଣିପାରିଲୁ ଯେ ଲକ୍ଷ ଲକ୍ଷ ଲୋକ ନିଜ ଭିତରେ ଓ ସମାଜରେ ବ୍ୟାପ୍ତ ଏ ଅଭାବ ସହିତ ଲଢୁଛନ୍ତି । ଆମେମାନେ ଯାହା ଥିଲୁ ବା ଅଛୁ ତା'ଠୁଁ ଏମାନଙ୍କ ସ୍ଥିତି ଯଥେଷ୍ଟ ଖରାପ । ଏହା ସତ୍ୟ ଯେ ଅସଂଖ୍ୟ ବାଲିକଣାର ସମାହାରରେ ଏ ବିଶ୍ୱ ନିର୍ମିତ ଏବଂ ଆମେ ଗୋଟିଏ ବାଲିକଣାଠାରୁ ଅଧିକ ବା କମ୍ ନୁହେଁ । ମୁଁ ଗଭୀର ଆତ୍ମସନ୍ତୋଷ (କୃତଜ୍ଞତା ଶବ୍ଦ ମତେ ଭଲଲାଗେନା) ଲାଭ କରେଁ ଯେ ଆମର ଏହାକୁ ସଚେତନଭାବରେ ଉପଲବ୍ଧ କରିପାରିବାର ଧୀଶକ୍ତି ରହିଛି । ବାସ୍ତବିକ ଏହା ଏକ ଭ୍ରାନ୍ତଧାରଣା ଯେ କୌଣସି ଜଣେ ବ୍ୟକ୍ତିଙ୍କ ଦ୍ୱାରା ସାମାଜିକ କାର୍ଯ୍ୟ ସମ୍ଭବ । ଏ କ୍ଷେତ୍ରରେ ଅଜଣା ବା ଅଜ୍ଞାତ ବ୍ୟକ୍ତିମାନେ ହିଁ ପ୍ରକୃତ କାର୍ଯ୍ୟକରନ୍ତି, ସେମାନେ ଯଶ ବା ଖ୍ୟାତି ଆଶାରେ କାର୍ଯ୍ୟକରନ୍ତିନି ଏପରିକି ସ୍ୱୀକୃତିର ପ୍ରତ୍ୟାଶା ମଧ୍ୟ ରଖନ୍ତିନି । ସେମାନେ ସ୍ୱୟଂ ନିଜ ପରିବର୍ତ୍ତନର ପ୍ରକୃତ କର୍ମକର୍ତ୍ତା ।

ସ୍ମୃତିପଟରେ ଅସୁମାରି ଚମତ୍କାର ମୁହଁର ଭିଡ଼ । ମୋର ଭଲଭାବରେ ମନେଅଛି ଶେଷଥର ପାଇଁ ମୁଁ ଯେତେବେଳେ ଧନୀ ବୁଆକୁ ଭେଟିଥିଲି ସେ ମୃତ୍ୟୁଶଯ୍ୟାରେ ରୋଗିଣା ଅବସ୍ଥାରେ ପଡ଼ିଥିଲା । ସେ ଅନ୍ଧଥିଲା ଓ ମୁଁ କଥା କହିବାରୁ କେବଳ ମତେ ଚିହ୍ନିଲା । ମୋ ଭିତରେ ପ୍ରଚୁର ଆବେଗର ଜୁଆର ସୃଷ୍ଟି ହେଇଗଲା । ହଠାତ୍ ସେ ମୋ ଆଖିରେ ପ୍ରପିତାମହୀ ନିଲାମ୍ମା ପଟ୍ଟୀ ଏବଂ ମୋ ମା'ହେଇଗଲା । ଆମ ଭିତରେ ଆବେଗର ସେ ସମ୍ବନ୍ଧ ମତେ ନମ୍ର କରିଦେଲା । କାହିଁ ରାଜସ୍ଥାନର ଗୁଜ୍ଜର ସଂପ୍ରଦାୟର ଏକ ନିରକ୍ଷର କିନ୍ତୁ ବୁଦ୍ଧିମତୀ ବୃଦ୍ଧା ଓ କାହିଁ ଭାରତର ମହାନଗରର ସଂସ୍କୃତିରେ ପ୍ରତିପାଳିତ ମଧ୍ୟବିତ୍ତ ଶ୍ରେଣୀ ଜାତ ଯଥେଷ୍ଟ କମ୍ ବୟସର ଅନ୍ୟ ଜଣେ ମହିଳା – ଏକ ସ୍ନେହ ଓ ପ୍ରେମର ବନ୍ଧନରେ ଆବଦ୍ଧ ଏ ସଂପର୍କ । ଏ ସଂପର୍କ ପିତାମାତାଙ୍କ ସହିତ ସନ୍ତାନର ସଂପର୍କ ସଦୃଶ ସୁଦୃଢ଼ ଥିଲା । ଆମପରି ଅନେକ ଯେଉଁମାନେ ବାଟବଣାହୋଇ ତିଲୋନିଆ ଗାଁକୁ ଯାଇଥିଲେ ସେମାନଙ୍କ ନିମନ୍ତେ ଧନୀବୁଆର ତାତ୍ପର୍ଯ୍ୟ ଅନେକ ବେଶି । ୧୯୭୪ ମସିହା ବେଳକୁ ସେ ଯଥେଷ୍ଟ ବୁଢ଼ୀ ହେଇ ସାରିଥିଲା, ତା ବୟସ ତୁଳନାରେ ଦୁଇଗୁଣ ନଇଁ ଯାଇଥିଲା,

ମାତ୍ର ପ୍ରଚଣ୍ଡ ଭାବରେ ଥିଲା ସ୍ୱାଧୀନଚେତା । ସେ ଏକାକୀ ବାସ କରୁଥିଲା, ନିଜପାଇଁ ପାଣି ନିଜେ ଆଣୁଥିଲା, ନିଜେ ରାନ୍ଧୁଥିଲା । ତାକୁ ଯିଏ ଜାଣିନାହାନ୍ତି ସେମାନଙ୍କ ପାଇଁ ସେ ଜଣେ ସାଧାରଣ ବୁଢ଼ୀ ଥିଲା, ଯିଏ ସେ ଅପରିଚ୍ଛନ୍ନ ଗାଁରେ ରହୁଥିବା ସମସ୍ତ ଶଇତାନ ବୁଢ଼ୀଙ୍କ ନାଁରେ ପ୍ରଚଳିତ ଥିବା କାହାଣୀଗୁଡ଼ିକୁ ବଡ଼ ସୁନ୍ଦର ଭାବେ ଜୀବନ୍ତ କରି କହୁଥିଲା । ତା'ପରି ସାହସୀ ଏବଂ ଦୟାଳୁ ମହିଳା ମୁଁ ଆଜିପର୍ଯ୍ୟନ୍ତ ଦେଖିନି । ସେ ଏହି ଆଧୁନିକ ଚିନ୍ତାଧାରାର ବିଚିତ୍ର ଯୁବତୀମାନଙ୍କୁ ଯେଉଁମାନେ ଭୁଲ୍‌ରେ ତା ଦୁନିଆଁ ଭିତରକୁ ବାଟବଣା ହୋଇ ପଶିଯାଇଥିଲେ ତାଙ୍କୁ ରକ୍ଷା କରିବାପାଇଁ ଅନ୍ୟମାନଙ୍କ ସହିତ ଅଣ୍ଟାଭିଡ଼ି ଲଢ଼ିଥିଲା । ସେ ଆମକୁ ଆମ ସଜ୍ଞା ଅନୁସାରେ ସେତିକି ବୁଝିଥିଲା ଯେତିକି ଆମେ ତାକୁ ବୁଝିବାପାଇଁ ପରିଶ୍ରମ କରିଥିଲୁ । ସେ ଆମକୁ ତା'ସମକକ୍ଷ ଦୃଷ୍ଟିରେ ଦେଖୁଥିଲା ଏବଂ ଦାରିଦ୍ର୍ୟର ମର୍ଯ୍ୟାଦା ସଂପର୍କରେ ଶିକ୍ଷା ଦେଇଥିଲା । ଆମ ପାରମ୍ପରିକ ସମାଜରେ ସମସ୍ତ ନିର୍ଭୀକ ଓ ସ୍ପଷ୍ଟବାଦୀ ବୟସ୍କାମହିଳାଙ୍କୁ ଯେତିକି ସମ୍ମାନ ଓ ଶ୍ରଦ୍ଧାମିଳେ ତାକୁ ସେତିକି ମିଳୁଥିଲା ଓ ସମସ୍ତେ ତାକୁ ଭୟ କରୁଥିଲେ ।

ଧନୀବୁଆ (ପିଇସୀ) ଆମକୁ ଏକ ଅପରିଚିତ ଜଗତରେ ରହିବାକୁ ଯାଗା ଓ ଆରାମ ଯୋଗେଇ ଦେଇଥିଲା । ସେମାନଙ୍କୁ ଅଭାବ ଓ କ୍ଷୁଧାରୁ ରକ୍ଷାକରିବାର ପ୍ରଚେଷ୍ଟା ନେଇ ଆମେମାନେ ଦାମ୍ଭିକତା ଓ ଜ୍ଞାନର ଅହଂକାର ସହିତ ସେ ସମାଜରେ ପ୍ରବେଶ କଲୁ । ମାତ୍ର ସେ ତାର ସ୍ନେହ ଓ ଜ୍ଞାନ ଦ୍ୱାରା ଆମ ନିକଟରେ ପ୍ରମାଣ କରିଦେଲା ଯେ ତା'ର ଆମ ନିକଟରେ ଆବଶ୍ୟକତାଠାରୁ ଆମର ତା'ନିକଟରେ ପ୍ରୟୋଜନ ଅଧିକ । ତା'ର ବିଶାଳ ଉଦାରତାଯୋଗୁଁ ଆମେ ଆମର ଅତିମାତ୍ରାରେ ସୀମିତ, ନିଜସ୍ୱ ଓ ସଂକୀର୍ଣ୍ଣ ବିଶ୍ୱଦୃଷ୍ଟିକୁ ଚିହ୍ନିବାକୁ ଶିଖିଲୁ । ସେ ଥିଲା ଏକ ପଥପ୍ରଦର୍ଶିକା । କିଏ କାହାକୁ ସମୃଦ୍ଧ କରିଲା ? କିଏ ଦେଲା ଓ କିଏ ନେଲା ? ଏ ସ୍ଥିତିବାଦୀମୂଳକ ମୂଲ୍ୟବାନ ପ୍ରଶ୍ନ ସବୁବେଳେ ରହିବ...

ତିଲୋନିଆରେ ମୁଁ ରହୁଥିବା ସମୟର ଏକ ଅଂଶ ଥିଲା ଧନୀବୁଆ । ଅନେକ ଯୁକ୍ତି କରିଛନ୍ତି ସେ ଥିଲା ତା'ଧାରାରେ ଅନନ୍ୟ । କିନ୍ତୁ ଯେତେବେଳେ ୧୯୮୭ ମସିହାରେ ଶଙ୍କର, ନିଖିଲ ଏବଂ ମୁଁ ଦେବଡୁଙ୍ଗରୀରେ ପ୍ରାୟ ୧୬୦ କି.ମି. ଦୂରରେ ରହିବାକୁ ଗଲୁ, ଭେଟିଲୁ କାକୀଜୀ ଏବଂ ଭୁରିୟାକୁ । ସ୍ଥାନୀୟ ଭାଷାରେ 'ୟା' ଅର୍ଥ ଆଇ । ଆମେ ସେତେବେଳେ ଶୋହନଗଡ଼ ଗ୍ରାମରେ ସାମନ୍ତବାଦୀ ଅତ୍ୟାଚାର ଏବଂ ହିଂସା ବିରୁଦ୍ଧରେ ଲୋକଙ୍କୁ ଏକତ୍ରିତ କରୁଥିଲୁ । ଉଭୟ ଗାଁର ବୟସ୍କ ମହିଳାଥିଲେ । ତାଙ୍କ ନିଜ ଧାରାର ପୂଜା-ଆରାଧନା ବା ଉପାସନା ରୀତିରେ ଆବଦ୍ଧ କାକୀଜୀ ଜଣେ ପରମ ଧାର୍ମିକା ମହିଳା ଥିଲେ, ଭୁରୀ-ୟା ତାଙ୍କଠୁଁ ବୟସ୍କ ଓ ଶକ୍ତ ଥିଲା, ଅଧିକ ଆଧୁନିକ ଥିଲା ଏବଂ ଗ୍ରାମପଞ୍ଚାୟତ ସଦସ୍ୟା ଥିଲା । ଏହି ଦୁଇଜଣ ଅସାଧାରଣ ମହିଳା ଆମକୁ ଯାହାଦେଲେ ତା'ର ସହଜରେ ଶ୍ରେଣୀକରଣ କରାଯାଇପାରିବ ନାହିଁ କି ସଂଜ୍ଞା ଦିଆଯାଇପାରିବ ନାହିଁ । ସେମାନେ ଆମକୁ

ମାନସିକ ସ୍ତରରେ ପ୍ରଚୁର ସମର୍ଥନ ଦେବାସହିତ ପ୍ରତ୍ୟେକ ପଦପାତରେ ଆମ ପ୍ରତି ରହିଥିବା ଶାରୀରିକ ଆକ୍ରମଣର ଆଶଙ୍କାରୁ ସୁରକ୍ଷା ଦେଇଛନ୍ତି ।

କାକୀଜୀଙ୍କୁ ପ୍ରେତାତ୍ମା ସ୍ୱପ୍ନାନ୍ତି, ସେଇମାନେ ଆମକୁ ସହାୟକ ହେବାକୁ କହିଲେ ! ସେ ଦେଖିଲେ ଯେ ଜଣେ ଧଳା ଶାଢ଼ୀ ପରିହିତା ମହିଳା ଏବଂ ଦୁଇଜଣ ପୁରୁଷ ଲୋକ ତାଙ୍କ ଗାଁକୁ ଅସୁବିଧା ସମୟରେ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ଆସିଛନ୍ତି । ମୁଁ ଯଦି ବିଶ୍ଳେଷଣର ଆଧୁନିକ ଉପକରଣଗୁଡ଼ିକ ବ୍ୟବହାର କରିଥାନ୍ତି ତା'ହେଲେ ତାଙ୍କ ପରି ମହିଳାଠୁଁ ଆମପ୍ରତି ସମର୍ଥନ ଆଦୌ ଆଶା କରିନଥାନ୍ତି । ସେ ରକ୍ଷଣଶୀଳ ଓ ଧର୍ମଭୀରୁ ଥିଲେ । ଦୃଷ୍ଟାନ୍ତ ସ୍ୱରୂପ ସେ ପରିବାର ନିୟନ୍ତ୍ରଣକୁ ଆଦୌ ସମର୍ଥନ କରୁନଥିଲେ । ଏହା ଈଶ୍ୱରଙ୍କ ଲୀଳା ବା ଐଶ୍ୱରିକ ପଥରେ ବିଘ୍ନ ସୃଷ୍ଟି କରିବା କଥା । ସେ ଜଣେ ପୋପଙ୍କ ଅନୁଚର ହେଇପାରିଥାନ୍ତେ । ମାତ୍ର ଯେତେବେଳେ ସ୍ଥାନୀୟ ସାମନ୍ତବାଦୀ ଜମିଦାର ଅତ୍ୟାଚାରୀ ହରି ସିଂହ ସହିତ ସଂଘର୍ଷର ପ୍ରଶ୍ନ ଆସେ ସେତେବେଳେ କାକୀଜୀଠାରୁ ଅଧିକ ଆଧୁନିକ ଆଉ କେହି ହେଇପାରିନଥାନ୍ତେ ।

ବହୁ ବର୍ଷପରେ ଯେତେବେଳେ ମୁଁ ଆଉ କାକୀଜୀ ସେଇ ୨୫ ହେକ୍ଟର ଜମିରେ ବୁଦୁବୁଦୁକିଆ ଜଙ୍ଗଲ ଆଡ଼କୁ ଚାହିଁ ବସିଥିଲୁ, ଯାହାକୁ ପାଇବାପାଇଁ ଆମେ ଦୁହେଁ ଲଢ଼ିଥିଲୁ ସେ ବାପୁଜୀଙ୍କ ବିଷୟରେ ଗପିବାକୁ ଆରମ୍ଭ କଲା । କାକୀଜୀ ଶିକ୍ଷିତା ଥିଲା, ତେଣୁ ସେ ଖଣ୍ଡମଣ୍ଡଳରେ ତା ନାଁ ଥିଲା । ମୁଁ ଭାବିଲି ସେ ତା'ବାପାଙ୍କ କଥା ଗପୁଛି ମାତ୍ର ପ୍ରକୃତରେ ସେ ମହାତ୍ମାଗାନ୍ଧୀଙ୍କ ବିଷୟରେ କହୁଥିଲା । ସେ ମତେ କହିଲା ଯେ ସେ ସାବରମତୀରେ ବଢ଼ିଛି । ଯେଉଁଠି ତା'ବାପା ଗାଈଆଳ ଥିଲେ – ଏକଥା ଜାଣିବାପରେ ତା ଦୃଢ଼ ବ୍ୟକ୍ତିତ୍ୱ ପଛରେ ଥିବା ପ୍ରହେଳିକା ମୋ ନିକଟରେ ଆଂଶିକ ପରିଷ୍କାର ହେଲା । ସେ ବହୁବର୍ଷପରେ କ୍ୟାନ୍‌ସର୍‌ରେ ମରିଗଲା, ପଛରେ ଛାଡ଼ିଗଲା ଏକ ଅପୂରଣୀୟ ଶୂନ୍ୟସ୍ଥାନ ।

ସାହସ କହିଲେ କ'ଣ ବୁଝାଏ – ମତେ ଭୁରୀ–ୟା ଶିଖେଇ ଥିଲା । ସେ ଠିଆ ହେଉଥିଲା ଏବଂ ସିଧାସଳଖ ଦୃଢ଼ ଓ ଅବିଚଳିତ ଭାବରେ କହିଯାଉଥିଲା – ସେ ହଲ୍‌ସଦ ମଞ୍ଚରେ ହେଉ ବା ଭୀମ୍‌ରେ ହେଉ । ସେ ଜଣେ ଦୃଢ଼ ମାତୃ–କର୍ତ୍ତୃତ୍ୱ ଜାହିର କରିବାପରି ମହିଳା ଥିଲା ଯିଏ କି ନିଜର ପାରିବାରିକ ହେଉ ବା ଚାଷ ବିଷୟରେ ହେଉ କାହାର ପ୍ରବେଶକୁ ସାମାନ୍ୟ ସହ୍ୟ କରିପାରୁନଥିଲା । ଆମେ ଦୁହେଁ ଏକାଠି ବୁଢ଼ୀହେଲୁଁ । ତା'ର ଅଣ୍ଟା ଧୀରେ ଧୀରେ ନଇଁ ଆସିଲା ମାତ୍ର ତାର ଇଚ୍ଛାଶକ୍ତି ସେହିପରି ଦୃଢ଼ ଓ ଅନମନୀୟ ଥିଲା ।

ଗୋଟିଏ ଜଗତର ଏକପ୍ରକାର ମହିଳାମାନଙ୍କର ଧାରାବିବରଣୀପରି ଏହା ଶୁଣାଯାଉ ଥାଇପାରେ ମାତ୍ର ଏମାନଙ୍କଠୁ ମୁଁ ଅନେକ କିଛି ଶିଖିଛି ଓ କଠିନ ସମୟ ବା ଦୁଃଖର ସମୟ ଏମାନଙ୍କ ସାଙ୍ଗରେ ବିତେଇଛି । ନାରୀଭାବରେ ଆମେ ବହୁ ଆବେଗପ୍ରବଣତାର ମୁହୂର୍ତ୍ତ ଅକପଟଭାବେ ପରସ୍ପର ସହିତ ବାଣ୍ଟିଛୁ ଏବଂ ଆମେ ତାକୁ ଶିକ୍ଷାର ବିଶେଷ ମୁହୂର୍ତ୍ତଭାବେ ସ୍ମରଣ କରୁଁ । ଆମ ଉପରେ ବିବିଧ ପ୍ରକାରର ପ୍ରଭାବ ପଡ଼େ କିଛି ଆମେ

ସ୍ମରଣ କରୁଁ ମାତ୍ର ଆଉ କିଛି ଆମକୁ ଅଦୃଶ୍ୟ ରୀତିରେ ପ୍ରଭାବିତ, କରିଥାଏ । ଆମ ପରିବାରର ସଦସ୍ୟ ଯିଏ ମତେ ବ୍ୟଙ୍ଗ-ବିଦ୍ରୂପ କରିବାରେ ସାମାନ୍ୟ କୁଣ୍ଠିତ ହୋଇନଥିଲେ, ଶିକ୍ଷକଗଣ ଯେଉଁମାନେ ମୋ ନିକଟରେ ସର୍ବଦା ନୂତନ ଦିଗ୍‌ବଳୟ ଉନ୍ମୋଚନ କରିଛନ୍ତି ଏବଂ ମତେ ନିଜକୁ ପ୍ରଶ୍ନ ପଚାରିବାକୁ ଉତ୍ସାହିତ କରିଛନ୍ତି, ଯେଉଁ ବ୍ରହ୍ମ ସମାଜରେ ମୁଁ ବିବାହ କରିଛି, ପୂର୍ବାପର ଚିନ୍ତାନକରି ମତେ ସମର୍ଥନ କରିଥିବା ବନ୍ଧୁଗଣ ସମସ୍ତଙ୍କ ପ୍ରଭାବ ଅପ୍ରତିହତ । ଅବଶ୍ୟ ଏହା ସହିତ ରହିଛି ମତେ ଦିଗ୍‌ଦର୍ଶନ ଦେଇଥିବା ବ୍ୟକ୍ତିଙ୍କର ଦୀର୍ଘତାଲିକା । ସେମାନେ କେତେ ଶତାବ୍ଦୀ ଓ ସଂସ୍କୃତି ଲଙ୍ଘନ କରି ତାଙ୍କ ଲିଖିତ ଶବ୍ଦ ମାଧ୍ୟମରେ ମତେ ଉପଲବ୍ଧି କରାଇଛନ୍ତି ଯେ କେତେ କ୍ଷୁଦ୍ର ଆମର ଅବଦାନ ସତେ !

କଳାକ୍ଷେତ୍ର ଯାହା ସଂପ୍ରତି ତିରୁବନ୍‌ମୟୂରରେ ଅଛି ଆଗରୁ ଅଡ୍ୟାରରେ ଥିଲା, ତା'ବିଷୟରେ କିଛି ବିଶେଷ କଥା ଉଲ୍ଲେଖ କରିବି । କଳା ଓ ସଂସ୍କୃତିର ଏ ସୁପ୍ରସିଦ୍ଧ ବିଦ୍ୟାଳୟରେ ମୁଁ ଦୁଇବର୍ଷ ଅତିବାହିତ କଲି । ଏଠାରେ କାର୍ଯ୍ୟକ୍ରମକୁ ଅଧିକ ଗୁରୁତ୍ୱ ଦିଆଯାଉଥିଲା, ଏକକ ନର୍ତ୍ତକୀର ବ୍ୟକ୍ତିଗତ ଅବଦାନକୁ ନୁହେଁ । ଅନେକଙ୍କର ମତ ଥିଲା ଯେ ଏହା ଦ୍ୱାରା ପ୍ରତିଭାଶାଳୀ ନର୍ତ୍ତକୀର ନୃତ୍ୟ ପ୍ରସ୍ଫୁଟିତ ହୋଇପାରେନା । ଏହା ବ୍ୟକ୍ତିଗତ ପାରଦର୍ଶିତାକୁ ହ୍ରାସ କରିଥାଇପାରେ, ତଥାପି ବି ଏହା ତର୍କସାପେକ୍ଷ । ବର୍ତ୍ତମାନ ମୁଁ ହୃଦୟଙ୍ଗମ କରୁଛି ଯେ ସେଠିକାର ସେ ବର୍ଷଗୁଡ଼ିକ ମତେ ସଂଘବଦ୍ଧ କାର୍ଯ୍ୟର ଶକ୍ତି ବିଷୟରେ ଶିକ୍ଷା ଦେଇଛି ।

ଏ ବିଶ୍ୱବ୍ରହ୍ମାଣ୍ଡ ଖଣ୍ଡବିଖଣ୍ଡ ହୋଇଯାଇନାହିଁ । ଏ ସତ୍ୟକୁ ଅସ୍ୱୀକାର କରାଯାଇପାରିବନି ଯେ ଏକ ଶକ୍ତି ପ୍ରତ୍ୟେକ ଅଂଶ ବା ଖଣ୍ଡକୁ ସମଗ୍ର ସହିତ ସଂଯୁକ୍ତ କରି ରଖିଛି । ତଥାପି ଆମେ ନିଜକୁ କ୍ଷୁଦ୍ରରୁ କ୍ଷୁଦ୍ରତର ଏକକରେ ବିଭାଜିତ କରିଚାଲିଛୁ । ସମ୍ଭବତଃ ଆମେ ନିଜକୁ ବୁଝିବାରେ ସାହାଯ୍ୟ କରିବାପାଇଁ ଯେଉଁ ବିଭାଜନ ସୃଷ୍ଟି କରିଛେ ତାହା ସମୟକ୍ରମେ ଆମକୁ ଆତ୍ମସାତ କରୁଛି । ମାତ୍ର ତଥାକଥିତ ସାଧାରଣ ଲୋକଙ୍କ ମଧ୍ୟରେ ଏ ବିଭାଜନ ପ୍ରକ୍ରିୟା ଲୋପପାଇ ଆସୁଛି । ଦରିଦ୍ର ବର୍ଗ ସୁଖୀ – ସେମାନେ ନାଚନ୍ତି, ଗାଆନ୍ତି, ପ୍ରେମ କରନ୍ତି, ସଂଘର୍ଷ କରନ୍ତି, ସେମାନେ ଝଗଡ଼ା କରନ୍ତି । ସାମାଜିକ ଜୀବନ ଚର୍ଯ୍ୟାରେ ଅସଂଖ୍ୟ ଶ୍ରେଣୀ ବିଭାଜନ ଥିବାସତ୍ତ୍ୱେ ସେମାନେ ତାଙ୍କ ମସ୍ତିଷ୍କକୁ ବିଭିନ୍ନ କୋଠରୀରେ ଭାଗ କରନ୍ତି ନାହିଁ ଯାହା ପରସ୍ପର ମଧ୍ୟରେ ଯୁଦ୍ଧ ଘୋଷଣା କରେ । ସେମାନଙ୍କର ଅନ୍ୟ କୌଣସି ସ୍ୱାର୍ଥ ନାହିଁ, ସେମାନେ ସମସ୍ତେ ଆମେ କହୁଥିବା ଜୀବନର ଗୋଟିଏ ଗୋଟିଏ ଅଙ୍ଗ । ସୁତରାଂ ମୁଁ ଏବେ ବି ସ୍ୱୀକାର କରିବାକୁ ଶିଖୁଛି ଯେ ମୁଁ ଦେବଡୁଙ୍ଗରୀରେ ବାବ୍‌ଙ୍କୁ ଶୁଣିପାରେ, ଲାଲସିଂହଙ୍କ ସହିତ ଚମ୍‌ସ୍କିଙ୍କ ବିଷୟରେ ଆଲୋଚନା କରିପାରେ ଓ ଭାରତନାଟ୍ୟମ୍ ପ୍ରତି ମୋର ଏକ ବିଶେଷ ଆକର୍ଷଣ ହିଁ ମୋ ଜୀବନର ଏକ ଅଂଶ ।

ଆତ୍ମକୈନ୍ଦ୍ରିକତା ହେଉଛି ଆମ ଏଇ ସମୟର ଲୋକଙ୍କର ପ୍ରାପ୍ତି । ଆମେମାନେ ପ୍ରଥମରୁ ହିଁ ସଂପନ୍ନ, 'ଆମମାନଙ୍କର' ଓ 'ଆମର' ବିକାଶରେ ଆମେ ଆବିଷ୍ଟ । ଆମମାନଙ୍କ

ମଧ୍ୟରେ ଯେଉଁମାନେ ସ୍ୱଚ୍ଛ ସଂପନ୍ନ, ସେମାନଙ୍କ ପ୍ରତି ଆମର ସାମାଜିକ ଓ ରାଜନୀତିକ କୃତଜ୍ଞତା ଆମେ ଜ୍ଞାପନ କରିବାକୁ ଭୁଲିଯାଇଛେ । ଆମ ପିଢ଼ି ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରିନାହିଁ । ଏକ ସ୍ୱାଧୀନ ଦେଶରେ ଜନ୍ମନେବାପରେ ଆମେ ନିଜ ପୃଥିବୀମଧ୍ୟରେ ନିଜକୁ ସଙ୍କୁଚିତ କରିନେଇଛୁ ଯାହାଫଳରେ ଆମେ ଆମ ପରିକଳ୍ପିତ ନିଜସ୍ୱ ସୁନ୍ଦର ରାଜ୍ୟ 'ୟୁଟୋପିଆ' ପାଇପାରିବୁ । ମଧ୍ୟବିତ୍ତଶ୍ରେଣୀର ଉନ୍ନତତର ହେବାର ସ୍ୱପ୍ନ ଗୋଟିଏ ସମଗ୍ର ପିଢ଼ିର ସାମାଜିକ ଦାୟିତ୍ୱ ବୋଧକୁ ଉଦରସ୍ଥ କରିଦେଇଛି । ଆମେ ଆମର ନିକଟ ଅତୀତର ମହାନ ରାଷ୍ଟ୍ରନାୟକଙ୍କ ପ୍ରତିମୂର୍ତ୍ତି ନିର୍ମାଣ କରିଛେ ଏବଂ ପ୍ରଶାସନପରି ଦାୟିତ୍ୱପୂର୍ଣ୍ଣ ବିଷୟକୁ ଔପନିବେଶିକ ଅମଲାତନ୍ତ୍ର ଉପରେ ଓ ସୁବିଧାବାଦୀ ରାଜନୈତିକ ନେତାମାନଙ୍କ ହାତରେ ଛାଡ଼ିଦେଇଛେ । ଆମେ କା' ସାହାଯ୍ୟରେ ଦେଶ ଶାସନ କରିବାକୁ ଚାହୁଁଛେ । ଅନ୍ତହୀନ ଆଳାପ-ଆଲୋଚନାରେ ଆମେ ଭ୍ରଷ୍ଟାଚାର ଓ ଦେଶର ପତମାନ ଅବସ୍ଥା ସଂପର୍କରେ କହିଥାନ୍ତି, ସେତେବେଳେ ଆମେ ଆମର ସଂକୀର୍ଣ୍ଣ ସ୍ୱାର୍ଥ ଅନୁସାରେ ଜୀବନର ମୂଲ୍ୟାଙ୍କନ କରିଥାନ୍ତି । ଆମେ ଅତି ଆରାମରେ ଗାନ୍ଧୀ ଐତିହ୍ୟକୁ ଭୁଲିଯାନ୍ତି ଏବଂ ସର୍ବସାଧାରଣଙ୍କ ଜୀବନକୁ ଅନୁଶୀଳନ କରିବା, ଯତ୍ନଶୀଳ ହେବାପରି ସ୍ପୃହା ହରେଇବସନ୍ତି । ଆମେ ମୁହଁ ଘୂରେଇନେବାକୁ ଶିଖିଗଲେ ମାତ୍ର ଥରେ 'କାହିଁକି' ବୋଲି ପଚାରିବାକୁ ଭ୍ରୂକ୍ଷେପ କଲେନାହିଁ ।

ଭାରତରେ ଷାଠିଏ ଦଶକରେ 'ପରଜୀବୀ ଏବଂ ଅସଫଳ' ବ୍ୟକ୍ତିଗଣ ସମାଜ ସେବାକଲେ ଯାହାକି ନିମ୍ନସ୍ତରର ରାଜନୀତିକ କ୍ରିୟାକଳାପ ନିମନ୍ତେ ମଧ୍ୟ ସୁଭାଷଣ ଥିଲା । ବୌଦ୍ଧିକ ଶ୍ରେଣୀ ସରକାରୀ ଓ ପ୍ରାଇଭେଟ୍ କମ୍ପାନୀରେ ଯୋଗଦେଲେ । ମୋର ମନେପଡ଼େ ବିକାଶପ୍ରତି ବଙ୍କରଙ୍କ ଦୃଷ୍ଟିକୋଣକୁ ଏମାନେ କିପରି ବୁଝିଲେ ହିଁ ନାହିଁ ଏବଂ ଗୋଟିଏ ଗୋଟିଏ ଛୋଟ କଥାକୁ ପ୍ରମାଣ କରିବାପାଇଁ ତାଙ୍କପରି ଲୋକଙ୍କୁ କେତେ କଠିନ ଶ୍ରମ କରିବାକୁ ପଡ଼ିଛି । ସେ ସମୟରେ ବିଶ୍ୱବିଦ୍ୟାଳୟରେ ବଙ୍କର ସାହେବ ଆମପାଇଁ ଥିଲେ ଜଣେ ପ୍ରଶଂସନୀୟ କିନ୍ତୁ ଖାମ୍‌ଖିଆଲୀ ବ୍ୟକ୍ତି । ବର୍ତ୍ତମାନ ମୁଁ ଭଲଭାବରେ ବୁଝିପାରେ ଯେ ସେ କାହିଁକି ତାଙ୍କର ସମସ୍ତ ବନ୍ଧୁଙ୍କ ଉପରେ ଉତ୍ତ୍ୟକ୍ତ ହେଇଯାଆନ୍ତି ଏବଂ ପରେ ମୁଁ ଯେତେବେଳେ ଗାଁରେ କାମ କରିବାକୁ ବାଛିନେଲି ସେତେବେଳେ ପ୍ରାୟ ସମସ୍ତେ ଏହାକୁ ସାମାଜିକ ଉନ୍ନତିର ଶିଢ଼ିରେ ଅଧପତନ ଦୃଷ୍ଟିରେ ଦେଖିଲେ ।

ଆଜିପର୍ଯ୍ୟନ୍ତ ବି ମତେ ଯେଉଁ ପ୍ରଶ୍ନ ଅଧିକାଂଶ ସମୟରେ ପଚରାଯାଇଥାଏ – 'ଆପଣ କାହିଁକି ଆଇ.ଏ.ଏସ୍.ରୁ ଇସ୍ତଫା ଦେଲେ ? ଶଙ୍କରର ଉତ୍ତର ସର୍ବୋତ୍ତମ । ସେ କହେ – ତୁମେ ଅରୁଣାକୁ ଖାଲି କାହିଁକି ପଚାରୁଛ ଯେ ସେ କାହିଁକି ଗୋଟେ ଚାକିରି ଛାଡ଼ିଦେଲା ? ମୁଁ କିରୋସିନି ବୁଲେଇ ବିକିଛି, ପକୁଡ଼ି ତିଆରି କରିଛି, ଗୋଟେ 'ନମ୍‌କିନ୍' ଫ୍ୟାକ୍ଟ୍ରିରେ କାମ କରିଛି, ଗୋଟେ ଫାର୍ମରେ କୁକୁଡ଼ା ଛୁଆର ଯତ୍ନ ନେଇଛି, ଦୁର୍ଭିକ୍ଷଗ୍ରସ୍ତ ଲୋକଙ୍କୁ ରିଲିଫ୍ ଦେବାରେ ସହଯୋଗ କରିଛି, ଦୈନିକ ମଜୁରୀ ହିସାବରେ କୁଲିଗିରି

କରିଛି ଆଉରି ଅନେକ ଅନେକ... ଏ ଗୋଟେ ଚାକିରିରେ ଏମିତି କ'ଣ ବୈଶିଷ୍ଟ୍ୟ ଅଛି ଯେ ?

ସ୍ୱାଧୀନତାର ୫୪ ବର୍ଷପରେ ମଧ୍ୟ ଆମମାନଙ୍କ ପାଇଁ କ୍ଷମତାର ସଂଜ୍ଞା ବ୍ରିଟିଶ ଓ ଔପନିବେଶିକ ଚିନ୍ତାଧାରା ଦ୍ୱାରା ନିର୍ଦ୍ଧାରିତ । ଆମେ ସର୍ବସମ୍ମୁଖରେ ରାଜଘାଟକୁ ଯାଆନ୍ତି ମାତ୍ର ମନ ଭିତରେ ୱାରେନ୍ ହେଷ୍ଟିଙ୍ଗସ୍ ହେବାର ସ୍ୱପ୍ନ ଦେଖନ୍ତି । ଏହା ଏକ ସୂଚନା ମାତ୍ର ଯେ ଆମେ ଗୋଟିଏ ଅଧିକ ସାର୍ଥକ ବା ଅର୍ଥବହ ସ୍ୱାଧୀନତା ସୃଷ୍ଟି କରିବାପୂର୍ବରୁ ଆମେ ଆମ ମାନସିକ ବନ୍ଧନକୁ ଛିନ୍ନ କରିବା ଆବଶ୍ୟକ । ଏବେ ମଧ୍ୟ ଆମେ ଅନ୍ୟାୟର ଗୋଟିଏ ରୂପ ବିରୁଦ୍ଧରେ ସଂଗ୍ରାମ କରିବାବେଳେ ଆମକୁ ଏକା ସାଙ୍ଗରେ ଦେଖିବାକୁ ହେବ ଓ ପ୍ରୟାସ କରିବାକୁ ହେବ ଯେ ଏହି ଅନ୍ୟାୟ ସ୍ଥାନରେ କୌଣସି ଦୁର୍ବଳ ବିକଳ୍ପରୁ ସ୍ଥାନାନ୍ତରୀକରଣ ହେଉନାହିଁ ତ !

ମୁଁ ଗ୍ରାମାଞ୍ଚଳରେ ରହୁଥିବା ବର୍ଷଗୁଡ଼ିକରେ ବି ଲକ୍ଷ୍ୟ କରିଛିଯେ ବହୁ ଶୃଙ୍ଖଳ ଛିନ୍ନ ହେବାକୁ ବସିଲାଣି । ଜାତିଗତ ଭେଦଭାବ ଆଉ ଗ୍ରହଣୀୟ ନୁହେଁ – ବର୍ତ୍ତମାନ ଏହା ପ୍ରାୟତଃ ଏକ ସାର୍ବଜନୀନ ବୋଧରେ ପରିଣତ ହୋଇଗଲାଣି । ଆମ ସମସ୍ତଙ୍କ ନିକଟରେ ଗୋଟିଏ ଚାଲେଞ୍ଜ ରହିଛି ଯେ, ଜାତିପ୍ରଥାଗତ ଅତ୍ୟାଚାର ନିଷ୍ପେଷିତ ବ୍ୟକ୍ତିମାନଙ୍କର ମନରେ ଏ ଧାରଣା ବଦ୍ଧମୂଳ ହେବାକୁ ଦିଆନଯାଉ ଯେ ଏହା ଏକ ସ୍ଥାୟୀ ବ୍ୟବସ୍ଥା ଓ ତାଙ୍କ ମୁକ୍ତିର ଏକ ମାତ୍ର ମାର୍ଗ ତାଙ୍କ, ନିଜ ଜାତିର ସୁରକ୍ଷାବଳୟ ମଧ୍ୟରେ ସମ୍ଭବ । ଧର୍ମ, ଭାଷା ଓ ଅଞ୍ଚଳ ଭେଦରେ ବିଭାଜନ ଉପରେ ମଧ୍ୟ ସେହି ସମାନ ସତ୍ୟ ଲାଗୁହୁଏ । ନାରୀ ଆନ୍ଦୋଳନର ଚାଲେଞ୍ଜ ଓ ଅନ୍ତର୍ନିହିତ ଶକ୍ତି ହେଉଛି ସମାଜକୁ ଏକ ସାର୍ବଜନୀନ ସମାନତା ନୀତି ଓ ନ୍ୟାୟ ଦେଇପାରୁଥିବା ବିକଳ୍ପ ବ୍ୟବସ୍ଥା ଦେବା । ତାହା ଆମର ଏକତ୍ରୀକରଣ ଓ ଅହିଂସା ଲକ୍ଷ୍ୟ ଉପରେ ଗୁରୁତ୍ୱ ଦେଉଥିବା ଆବଶ୍ୟକ । ପୁନର୍ବାର ନାରୀ ହୋଇଥିବା ଯୋଗୁଁ ଏବଂ ଆମର ସ୍ଥିତି ଓ ଦାୟିତ୍ୱବୋଧର ଅନନ୍ୟଗୁଣ ଥିବାଯୋଗୁଁ ସମ୍ଭବତଃ ଆମେ ଏକ ସୃଜନଶୀଳ ବିକଳ୍ପ ଖୋଜିବାରେ ସକ୍ଷମ ହେବା କଥା । ଆମର କଳ୍ପନା ପ୍ରବଣତା ଏବଂ ଆଶାବାଦିତାକୁ ପ୍ରୟୋଗ କରି ଏହା କରାଯାଇପାରେ । ବିଶେଷ ଭାବରେ ଶ୍ରମିକଶ୍ରେଣୀ ମହିଳାମାନଙ୍କ ସହିତ ମିଶି ସଂଗ୍ରାମ କରିବା ସମୟରେ ମୁଁ ସେମାନଙ୍କଠୁ ଏହା ଶିଖିଲି ।

କେବଳ ମହିଳାମାନଙ୍କର ଯେ ଅବଦାନ ରହିଛି ତା' ନୁହେଁ । ଧନୀବୁଆ, କାକୀଜୀ ଏବଂ ଭୁରୀୟା ପରି ଶକ୍ତିଶାଳୀ ସମର୍ଥନ ଓ ସହୃଦୟତା – ଲାଲ ସିଂହ, ମୋହନଜୀ, ନାରାୟଣ ଏବଂ ଚୁନ୍ନୀ ସିଂହଙ୍କ ପରି ଅନେକଙ୍କ ମଧ୍ୟରେ ମୁଁ ପାଇଛି । ଏହି ବନ୍ଧୁମାନେ ମୋର ସଂଶୟ ଓ ଆତ୍ମବିଶ୍ୱାସ ଉଭୟ ଅବସ୍ଥାରେ ଅଂଶୀଦାର ହୋଇଛନ୍ତି । ବହୁ ବିଚାରର କ୍ରମଶଃ ବ୍ୟାପକ ପ୍ରଭାବ ଦେଖାଦେଇଛି । ଏପରିକି ସୂଚନା ଅଧିକାର ଏବଂ ସ୍ୱଚ୍ଛତା ଅଭିଯାନପରି ବିଚାର ଏହି ତଥାକଥିତ ସାଧାରଣ ଜନତା ମସ୍ତିଷ୍କଜାତ । ଥିଏଟର୍‌ର ବିବିଧ ଆଙ୍ଗିକ ବା ରୂପ, ଭାଷା ପ୍ରୟୋଗ, ସଙ୍ଗୀତ ଏବଂ ସର୍ବୋପରି ଏକ ଅଜ୍ଞାତ ଗୁଣ ଲୋକଙ୍କୁ

ଶୁଣିବାକୁ ଓ ପରିବର୍ତ୍ତନ ହେବାକୁ ବାଧ କରେ । ଇତିହାସ ପୃଷ୍ଠାରେ ଚିରଦିନ ଏମାନେ ଅଜ୍ଞାତ ରହିଯିବେ ଯେଉଁମାନେ ଏ ନାଟକ ସୃଷ୍ଟି କରିଥିଲେ ଓ ଏହାକୁ ଶକ୍ତି ପ୍ରଦାନ କରିଥିଲେ ।

ମୁଁ ଏସବୁ ବର୍ଷଗୁଡ଼ିକରେ ଅନେକ କିଛି ଶିଖିଛି । ପ୍ରତ୍ୟେକଟି ବିଷୟ ଅନ୍ୟସହ ସହସଂପୃକ୍ତ । ଯେମିତି ଲୋକ ଆମକୁ ପ୍ରଭାବିତ କରନ୍ତି ଓ ପ୍ରକାରାନ୍ତରେ ଗଢ଼ନ୍ତି ସେହିପରି ଆମେ ମଧ୍ୟ ଆମର ଜଗତକୁ ପ୍ରଭାବିତ କରି ପରିବର୍ତ୍ତନ କରିପାରିବା । ଆମେ ଆମର ଭୟର ସାମ୍ନା କରିବା ଉଚିତ୍ । ଏପରିକି ପରାଜୟ ମିଳିଲେ ବି ଆମ ସ୍ୱପ୍ନକୁ ସାକାର କରିବାର ସାହସ ଆମ ନିକଟରେ ଥିବା ଆବଶ୍ୟକ । ମାମୁଲି ଲୋକ ପରିବର୍ତ୍ତନ ନିମନ୍ତେ କାମ କରିବାକୁ ଆଗେଇ ଆସନ୍ତି ଏବଂ ବାହୁ ବିସ୍ତାର କରି ଅନ୍ୟମାନଙ୍କୁ ତାଙ୍କ ଦଳରେ ମିଶାଇବା ପାଇଁ ସ୍ୱାଗତ କରନ୍ତି । କେବଳ ଶାରୀରିକ ଦୃଷ୍ଟିକୋଣରୁ ନୁହେଁ ମାନସିକ ଓ ବୌଦ୍ଧିକ ଉସ୍ୱଭାବରେ ମଧ୍ୟ ଏକତାର ବା ସାଙ୍ଗଠନିକ ଶକ୍ତିର ପରିଚୟ ସେମାନେ ଉପଲବ୍ଧି କରିଛନ୍ତି ।

ଏ ପରିସ୍ଥିତିରେ ଅସହିଷ୍ଣୁତା ଏବଂ ଅସହାୟତା ଦାୟିତ୍ୱହୀନତାର ପରିଚାୟକ । ଆମେ ଆଉ କା'ଉପରେ ନିର୍ଭର କରି କାମ କରିପାରିବାନି । ଆମେ ପ୍ରଶ୍ନ ପଚାରିବାକୁ ଭୟଭୀତ ହେବା ଉଚିତ୍ ନୁହେଁ । ଯଦି ଆମେ କୌଣସିଠାରେ କୌଣସିକଥା ଗ୍ରହଣୀୟ ନୁହେଁ ବୋଲି ବିଚାର କଲୁ, ତେବେ ତା'ର ପରିବର୍ତ୍ତନ ପାଇଁ କାମ କରିବା ଆବଶ୍ୟକ । ଆମେ ସର୍ବସାଧାରଣଙ୍କ ସମ୍ମୁଖରେ ପ୍ରଶ୍ନ କରିବା ଓ ପ୍ରତ୍ୟୁତ୍ତର ଆଶା କରିବା ଉଚିତ୍ । ଆମେ ଯେତେବେଳେ ଅସହାୟ ବୋଧକରିବା ସେତେବେଳେ ଆମକୁ ସମାଲୋଚନା, ପ୍ରେରଣା ତଥା ସମର୍ଥନ କରିବାପରି ସହକର୍ମୀ ଅନ୍ୱେଷଣ କରିବା ଆବଶ୍ୟକ । ମୋର ସର୍ବୋତ୍ତମ ପ୍ରେରଣା ମୁଁ ମୋର ସେଇ ସହଯାତ୍ରୀମାନଙ୍କଠାରୁ ଆଦାୟ କରିଛି ।

ଅମାଲ ଅଲ୍ଲାନା (ଜନ୍ମ : ୧୯୪୭) ଭାରତର ହାତଗଣତି ନାଟ୍ୟ ନିର୍ଦ୍ଦେଶିକାମାନଙ୍କ ମଧ୍ୟରୁ ଅନ୍ୟତମ । ସେ ଭାରତ ଓ ଜର୍ମାନ ଗଣତାନ୍ତ୍ରିକ ପ୍ରଜାତନ୍ତ୍ରରେ ଶିକ୍ଷାଲାଭ କରିଛନ୍ତି । ସେ ୧୯୭୧ ମସିହାରୁ ନାଟ୍ୟ ନିର୍ଦ୍ଦେଶନା ଦେଇଆସୁଛନ୍ତି । ସେ ପ୍ରାୟ ପଚାଶରୁ ଅଧିକ ପାଶ୍ଚାତ୍ୟ ଏବଂ ଭାରତୀୟ ଶାସ୍ତ୍ରୀୟ ଏବଂ ସମକାଳୀନ ରଚନାର ନିର୍ଦ୍ଦେଶନା ଦେଇଛନ୍ତି ଯାହା ଭାରତ ତଥା ବିଦେଶରେ ପ୍ରଦର୍ଶିତ । ସେ ଅଭିନୟ କଳା, ନିର୍ଦ୍ଦେଶନା ତଥା ପୋଷାକ ସଜ୍ଜା ଶିକ୍ଷାଦେବା ସହିତ ଜାତୀୟ ପ୍ରସାରଣ ପାଇଁ ବହୁ ଟି.ଭି. ଧାରାବାହିକର ନିର୍ଦ୍ଦେଶନା ଦେଇଛନ୍ତି । ସେ ସାହିତ୍ୟ କଳାପରିଷଦ ପୁରସ୍କାର ଓ ସଙ୍ଗୀତ ନାଟକ ଏକାଡେମୀ ପୁରସ୍କାର ପାଇଛନ୍ତି । ତାଙ୍କ ପ୍ରଯୋଜିତ ସୁପ୍ରସିଦ୍ଧ କୃତିଗୁଡ଼ିକ ହେଲା – ମହାଭୋଜ, ହିମ୍ମତ ମାଈ, ବେଗମ୍ ବାର୍ବେ ଏବଂ ସୋନାଟା' ।

## ୧୩

# ବଦଳି ଯାଉଥିବା ପରିଚିତି

### ଅମାଲ ଅଲ୍ଲାନା

ଆଶ୍ଚର୍ଯ୍ୟ ଲାଗିପାରେ, ମାତ୍ର ମୋର ନାରୀ ହେବାଟା ମୋ କାର୍ଯ୍ୟରେ କେବେ ବାଧା ସୃଷ୍ଟି କରିନାହିଁ । ଗୋଟିଏ ନାଟକ ପ୍ରସ୍ତୁତ କରିବା ସମୟରେ ଜଣକର ବ୍ୟକ୍ତିଗତ ଅନୁଭୂତିକୁ ସଂକେତ ଏବଂ ଧ୍ୱନିର ଏକ ବିଶିଷ୍ଟ ବାକ୍‌ଭଙ୍ଗୀରେ ରୂପାନ୍ତରିତ ଓ ପରିବର୍ତ୍ତିତ କରିବାକୁ ହୁଏ । ନିଜ ବାହାରର ଏକ ଚରିତ୍ରରେ ପରିଣତ କରିବାକୁ ହୁଏ । ବ୍ୟକ୍ତିଗତ ବିଷୟ ଏକ ବସ୍ତୁ, ଏକ ପ୍ରସ୍ତୁତି – ଏକ ଅଭିନୟରେ ପରିଣତ ହୁଏ ଯାହା ଅନ୍ୟଦ୍ୱାରା ପ୍ରଦର୍ଶିତ ହୁଏ । ଏଥିରେ ସେମାନେ ନିଜ ନିର୍ଯ୍ୟାସର ଏକ ବୃହତ୍ ଅଂଶ ମିଶାଇ ଦିଅନ୍ତି ଯାହା ଫଳରେ ଶେଷରେ ଇଷତ୍‌ଭାବରେ ହେଉପଛେ ନିଜର ପ୍ରତିଛବି ଓ ଅଭିଜ୍ଞତାକୁ ଅନ୍ୟମାନଙ୍କ ତୁଳନାରେ ସ୍ପଷ୍ଟ ଓ ପୃଥକ ଭାବରେ ଚିହ୍ନିପାରନ୍ତି । ଲେଖକ, ଅଭିନେତା ଏବଂ ମଞ୍ଚ ସଜ୍ଜାର ବ୍ୟକ୍ତିଙ୍କୁ ତାଙ୍କ ନିଜ ବାଟରେ ସ୍ୱକୀୟତା ପ୍ରକାଶ ନିମନ୍ତେ ଯଥେଷ୍ଟ ସୁଯୋଗ ଦେବାପାଇଁ ଜଣେ ନିର୍ଦ୍ଦେଶକର କାରବାରରେ ଯେଉଁ ପରିମାଣର ନିରପେକ୍ଷତା ଆବଶ୍ୟକ ତାହା ମୁଁ ସର୍ବଦା ବଜାୟ ରଖିଛି । ପକ୍ଷପାତିତା ଓ ଲିଙ୍ଗଗତ ବୈଷମ୍ୟଠୁଁ ଦୂରେଇ ରହି ମୁଁ ନିଜକୁ ସର୍ବଦା ନିର୍ଦ୍ଦେଶକ ଭାବରେ ଦେଖିଛି । ରାଜନୈତିକ ଦୃଷ୍ଟିକୋଣରୁ ଏହାକୁ ଭୁଲ୍ ଜ୍ଞାନ କରାଯିବାରୁ ମୁଁ କଷ୍ଟ ପାଇଛି ତଥାପି ମୁଁ ଏଠି କହିବାକୁ ଚାହେଁ ଯେ କୌଣସି ମଞ୍ଚରୁ ବି ମହିଳାକୈନ୍ଦ୍ରିକ କୌଣସି ବିଷୟରେ ସମ୍ମିଳିତ ହୋଇ ଚିତ୍କାର କରିବା ବ୍ୟାପାରଠୁଁ ମୁଁ ଅତି ସଚେତନ ଭାବରେ ଦୂରେଇ ରହିଛି । କାରଣ ଦୀର୍ଘକାଳଧରି ଏହି ବିଷୟଉପରେ କେବଳ କ୍ରୋଧୀ ଧ୍ୱଜାଧାରୀଙ୍କ ଚାପ ରହିଛି ଯେଉଁମାନେ ପୁରୁଷ ପ୍ରଧାନ ସମାଜ ବିରୁଦ୍ଧରେ ସଂଗ୍ରାମ ଚଳେଇ ଆସିଛନ୍ତି କେବେଠୁ । ମୁଁ ବରଂ ସବୁବେଳେ ପସନ୍ଦ କରେ ଯେ ଜଣେ ନାରୀ ଆନ୍ଦୋଳନକାରୀ ଅପେକ୍ଷା ମୋ କାର୍ଯ୍ୟର ଏକ ବୃହତ୍ତର ନାଟ୍ୟ ଆନ୍ଦୋଳନ ପରିପ୍ରେକ୍ଷୀରେ ମୂଲ୍ୟାଙ୍କନ କରାଯାଉ । ମୋର ଏ ସ୍ପଷ୍ଟୋକ୍ତି ଦେବାସମୟରେ ମୁଁ ଭଲଭାବରେ ଅବଗତ ଯେ ମୋ କାର୍ଯ୍ୟରେ ଆଜିକାଲିର ମହିଳାମାନଙ୍କ ସଚେତନତା ଅଧିକରୁ ଅଧିକ ପ୍ରତିବିମ୍ବିତ ହେଉଛି । ବିଭିନ୍ନ କ୍ଷେତ୍ରସହିତ ସଂଯୁକ୍ତ ରହି ନିଜ କ୍ଷେତ୍ରରେ ପ୍ରତିଷ୍ଠିତ ହେବାକୁ ପ୍ରୟାସରତ ଥିବା ମହିଳାଙ୍କ ବିଷୟ ମୋ ପ୍ରସ୍ତୁତିରେ ରହିଛି । ଯେତେବେଳେ କେତେ ମହିଳା ଚିତ୍ରକରଙ୍କ

କୃତିକୁ ପୁରୁଷ ପ୍ରାଧାନ୍ୟତାକୁ ଅବମାନନା କରୁଥିବା ଦୃଷ୍ଟିକୋଣରୁ ମୂଲ୍ୟାଙ୍କନ କରାଯାଉଛି ସେତେବେଳେ ଅନ୍ୟମାନଙ୍କ କୃତିରେ ନାରୀସୁଲଭ ଉଚ୍ଛ୍ୱାସ ପ୍ରତିଫଳିତ ହେଉଥିବାରୁ ଭିନ୍ନ ଦୃଷ୍ଟିରେ ସ୍ୱୀକୃତି ଦିଆଯାଇପାରନ୍ତା । ସେ ଯାହା ହେଉନା କାହିଁକି ସତ କହିବାକୁ ଗଲେ ମହିଳା ଭାବରେ ନିଜ କାମ ମାଧ୍ୟମରେ ନିଜକୁ ଦେଖିବାପାଇଁ ଏ ପ୍ରବନ୍ଧ ରଚନା ପ୍ରୟାସ ।

ଏହି ପ୍ରୟାସର କେନ୍ଦ୍ରରେ ରହିଛି ଚରିତ୍ର ମାଧ୍ୟମରେ ପରିଚିତିର ଅନ୍ୱେଷଣ । ଏହା ମୋର ନିଜ ସଂପର୍କିତ ଧାରଣା ସହିତ ଘନିଷ୍ଠ ଭାବେ ସମ୍ବନ୍ଧିତ ହୋଇଥିବାରୁ ଏଥିରୁ ସମ୍ଭବତଃ ଆତ୍ମଜୀବନୀମୂଳକ ସ୍ୱର ଧ୍ୱନିତ । ମୋ ଭିତରେ ଝଙ୍କୃତ ହେଉଥିବା ବିବିଧ ସ୍ୱର ଯାହା ଉଦ୍ଧୃତ ଓ ପ୍ରଶମିତ ହେଉଥାଏ ତାକୁ ବୁଝିବା ଓ ତାକୁ ଶ୍ରେଣୀବଦ୍ଧ କରି ସଜାଇବା ମୋ ପକ୍ଷେ ଏକ ସମସ୍ୟା । ଦୁଇ ବିପରୀତ ଦିଗରେ ପ୍ରଧାବିତ ଭାବକୁ ଏକତ୍ରିତ କରି ସଂପୂର୍ଣ୍ଣତା ବୋଧର ସଙ୍ଗଠିତ ରୂପ ଦେବା ମଧ୍ୟ ସମସ୍ୟା । ଜଣେ ସାଧାରଣ ଭାରତୀୟ ନାରୀ ପ୍ରତ୍ୟେକ ଦିନ ଯେତେଗୁଡ଼ିଏ ଭୂମିକାରେ ଅବତୀର୍ଣ୍ଣ ହୁଏ ଏବଂ ପ୍ରତ୍ୟେକ ଭୂମିକାଟିରେ ସଂଯୁକ୍ତଥିବା ବା ଲଦାଯାଇଥିବା ଆଦର୍ଶର ଛାଞ୍ଚ ପ୍ରତି ଦୃଷ୍ଟିଦେଲେ ମନେହୁଏ ଏହା ଜଣକୁ କିଂକର୍ତ୍ତବ୍ୟବିମୂଢ଼ କରିବ ଓ ଜଣେ ମାନସିକ ଭାରସାମ୍ୟ ହରେଇ ବସିବା ପରି ବିଭ୍ରାନ୍ତି ପୂର୍ଣ୍ଣ । ମୁଁ ଅବଗତ ଯେ ବିଭିନ୍ନ କ୍ଷେତ୍ରସହିତ ସଂଯୁକ୍ତ ରହି ନିଜ କ୍ଷେତ୍ରରେ ପ୍ରତିଷ୍ଠିତ ହେବାକୁ ପ୍ରୟାସରତ ଆଜିକାଲିର ମହିଳାମାନଙ୍କ ସଚେତନତା ଅଧିକରୁ ଅଧିକ ମୋ ପ୍ରସ୍ତୁତିରେ ପ୍ରତିବିମ୍ବିତ ହେଉଛି ।

ଆମ ପରିବାରକୁ ଏକ ଅତ୍ୟଧିକ ପ୍ରଗତିଶୀଳ ପରିବାର ବୋଲି ମନେ କରାଯାଉଥିଲେ ମଧ୍ୟ ପିଲାବେଳେ ମୁଁ ମଧ୍ୟ ସେଇସବୁ କଣ୍ଢେଇ ଓ ଖେଳ ଭିତର ଦେଇ ବଢ଼ିଛି ଯେଉଁଥିରୁ ଭବିଷ୍ୟତର ଗୋଟେ ସ୍ତ୍ରୀ ବା ମା'ର ଭୂମିକା ଶିଖାଯାଇପାରିବ ଯେମିତି କଣ୍ଢେଇ ଖେଳ – ତାଙ୍କ ପୋଷାକପତ୍ର କରିବା, ଘର-ସଂସାର ଖେଳ । ଅନ୍ୟ ପକ୍ଷରେ ଥିଏଟର୍ ଜଗତ ଆମ ବଞ୍ଚିବା ଶୈଳୀର ପ୍ରତ୍ୟେକ ମୁହୂର୍ତ୍ତକୁ ଭଲଭାବରେ ତା'ଢଙ୍ଗରେ ପ୍ରଭାବିତ କରିଥିଲା । ଯେତେବେଳେ ଅନ୍ୟ ପରିବାରଗୁଡ଼ିକର ଦିନଚର୍ଯ୍ୟା ବାପାଙ୍କ ଅଫିସ୍ ଯିବା ସମୟ ଅନୁସାରେ ନିର୍ଦ୍ଧାରିତ ହେଉଥିଲା ଆମ ଘରର ସବୁକିଛି ରିହର୍ସାଲ ସମୟ ଅନୁସାରେ । ଯେତେବେଳେ ଅନ୍ୟପରିବାରଗୁଡ଼ିକ ସନ୍ଧ୍ୟା ସମୟ ଏକାଠି ବିତଉଥିଲେ, ଆମର ବାପା, ମା ରିହର୍ସାଲରେ ବ୍ୟସ୍ତ ଥାନ୍ତି । ଯେତେବେଳେ ଅନ୍ୟମାନେ କୌଣସି ଧର୍ମୀୟ ଉତ୍ସବ ଅନୁଷ୍ଠାନ ପାଳନ୍ତି ବା ଆତ୍ମୀୟ ସ୍ୱଜନ ଏକାଠି ହୁଅନ୍ତି – ଆମ ପାଖରେ ଏସବୁ ଫାଲ୍‌ତୁ କଥାପାଇଁ ସମୟ ନଥାଏ । ଆମେ ତ ନାଟକ ମଞ୍ଚସ୍ଥ ହେବାର ପ୍ରଥମ ରାତିପରେ ଉତ୍ସବ ପାଳିଥାଉଁ । ମୋ ବୟସର ଝିଅମାନଙ୍କୁ ନାଟକରେ ଭାଗନେବା କିମ୍ବା ପୁଅମାନଙ୍କସହିତ ମିଳାମିଶା କରିବାକୁ ଯେତେବେଳେ ଉତ୍ସାହିତ କରାଯାଉନଥିଲା ସେତେବେଳେ ମୁଁ ଏସବୁ ସ୍ୱଚ୍ଛନ୍ଦରେ କରିପାରୁଥିଲି । ବିଚିତ୍ର ମନେହେଇପାରେ କିନ୍ତୁ ମଞ୍ଚ ଉପରକୁ ଯିବାପାଇଁ ମତେ କେବେ ଉତ୍ସାହିତ କରାଯାଇନାହିଁ । ବରଂ ମୁଁ ତା ଚାରିପଟେ

ଘୂରିବୁଲିଛି । ମୁଁ ମଞ୍ଚର ପୃଷ୍ଠପଟରେ ରହିଛି, ଯାହାକୁ ନିରାପଦ ଓ ନାଟ୍ୟ ଜଗତରେ ନାରୀ ଅଧିକୃତ କ୍ଷେତ୍ରବୋଲି ମନେ କରାଯାଏ । ମୁଁ ପୋଷ୍ଟର ବନେଇଛି, ଅଭିନେତାମାନଙ୍କ ପାଇଁ ଚା ଆଣି ଦେଇଛି, ପୋଷାକ–ସଜ୍ଜା ବିଭାଗରେ ମାଙ୍କୁ ସାହାଯ୍ୟ କରିଛି । ମତେ କେବେ ବି ଅନୁଭବ କରିବାକୁ ଦିଆଯାଇନାହିଁ ଯେ ଅଭିନୟ କ୍ଷେତ୍ରରେ ମୋର କୌଣସି ପ୍ରତିଭା ଅଛି । ଅବଶ୍ୟ ସେ ସ୍ଥାନ ମୋ ଭାଇପାଇଁ ନିର୍ଦ୍ଦିଷ୍ଟ ଥିଲା । କାରଣ ସମସ୍ତେ ହୃଦୟଙ୍ଗମ କରିଥିଲେ ଯେ ଚାରିବର୍ଷ ବୟସରୁ ସେ ମଞ୍ଚଉପରେ ଗଭୀର ଭାରସାମ୍ୟ ରକ୍ଷାକରି ଅତ୍ୟନ୍ତ ଆତ୍ମବିଶ୍ୱାସ ପ୍ରଦର୍ଶନ କରିଥିଲା ! କ୍ରମାଗତ ଭାବରେ ଯେତେବେଳେ ଦରକାର ପଡୁଥିଲା ସେ ବାପାଙ୍କ ନାଟକରେ ଶିଶୁ ଭୂମିକାରେ ଅଭିନୟ କରୁଥିଲା ।

୧୬ବର୍ଷ ବୟସରେ ସଂପୂର୍ଣ୍ଣ ଆକସ୍ମିକ ଭାବରେ ଆଗରୁ କୌଣସି ସୂଚନା ନଦେଇ ମୁଁ ଘୋଷଣା କଲି ଯେ ଜାତୀୟ ନାଟ୍ୟ ବିଦ୍ୟାଳୟରେ ଯୋଗଦେଇ ନିର୍ଦ୍ଦେଶକ ହେବାର ନିଷ୍ପତ୍ତି ମୁଁ ନେଇଛି। ଏହା ମୋ ବାପା ମା'ଙ୍କୁ ସ୍ତମ୍ଭୀଭୂତ କରିଦେଲା (ମତେ କିଛି କମ୍ ନୁହେଁ) । ମୁଁ ସେମିତି ଗୋଟେ କିଛି ଦୃଢ଼ଭାବରେ ଥିଏଟର୍ କରିବି ବୋଲି ଭାବି ନ ଥିଲି । କଲେଜରେ ନାଁ ଲେଖାଇ ଗ୍ରାଜୁଏଟ୍ ହେବାପାଇଁ ମୋ ବାପାମା'ଙ୍କର ଯେଉଁ ପ୍ରସ୍ତାବ ଥିଲା ତାକୁ ନାକଚ କରିଦେଲି, ମୋର ଏ ପ୍ରକାର ଜିଦି ଦେଖି ମୁଁ ନିଜେ ଆଶ୍ଚର୍ଯ୍ୟ ହୋଇଗଲି ।

ପଛକଥା ଭାବିଲେ, ପଛକୁ ଚାହିଁଲେ ମନେହୁଏ ସମ୍ଭବତଃ ଏହାହିଁ ମୋର ବିଦ୍ରୋହାତ୍ମକ କାର୍ଯ୍ୟ ଥିଲା । ମୁଁ ଥିଏଟର୍ କରିବାକୁ ଅନୁମତି ଚାହିଁଲି ଯାହା ମୋ ଭାଇ ନିମନ୍ତେ ସ୍ଥିର କରାଯାଇଥିଲା । ମୁଁ ସେଇଆ କରିବାକୁ ଚାହିଁଲି ଯାହା ମୋ ବାପା କରୁଥିଲେ, ନିର୍ଦ୍ଦେଶନା । ସେ ଯା'ହେଉ, ପରବର୍ତ୍ତୀ ଜୀବନରେ ମୁଁ ଦୁଇଆଡୁ ଧକ୍କା ଖାଇଲି ଓ ଚିହ୍ନିଗଲି ଗୋଟିଏ ନାରୀର ଜଗତ ଛୁଆପିଲା ଘର ସଂସାର, ଅନ୍ୟଟି ଥିଏଟର – ପୁରୁଷ ଜଗତର । ଯଦିଓ ଲିଙ୍ଗଭେଦ ଦୃଷ୍ଟିରୁ ଏହା ଦୁଇଟି ସ୍ୱତନ୍ତ୍ର କ୍ଷେତ୍ରଭାବରେ ସ୍ଥିରୀକୃତ ନୁହେଁ ତଥାପି (ମୋ ଦୃଷ୍ଟିରେ) ମୋ ନିମନ୍ତେ ଏହା ଦୁଇ ବିପରୀତ ମେରୁ ଭିତରେ ଅସ୍ତିତ୍ୱ ରକ୍ଷା କରିବା ସଦୃଶ ।

ସେ ସମୟରେ ମୋର ନାଟ୍ୟ ଯାତ୍ରା ଥିଲା ମୋର ଅବଚେତନ ମନରେ ଲୁଚ୍ଚାୟିତ ଥିବା ଏହି ବଦଳିଯାଉଥିବା ପରିଚିତିକୁ ଚିହ୍ନିବା ଓ ତା'ସହିତ ପୁନର୍ମିଳିତ ହେବାର ଯାତ୍ରା । ବହୁବର୍ଷ ଯାଏ ଜଣାନଥିଲା ଯେ ମୋ ନିଜ ଜୀବନସହ ସଂପୃକ୍ତ ଏହି ବିଷୟଗୁଡ଼ିକ କେତେକ ନିର୍ଦ୍ଦିଷ୍ଟ କଥାବସ୍ତୁ, ଚରିତ୍ର ଏବଂ ସଂପର୍କ ଅନ୍ୱେଷଣ କରିବାକୁ ମତେ ଉଦ୍ଦୀପ୍ତ କରିଥିଲା । ବାସ୍ତବିକ, ଏବେ ଯେତେବେଳେ ମୁଁ ଲେଖିବାକୁ ବସିଛି ସେତେବେଳେ ମୁଁ ମୋ ପ୍ରକୃତ ଜୀବନୀର ପୁନର୍ସଂରଚନା କରୁଛି । ଏହା ମୋ କାର୍ଯ୍ୟ ମଧ୍ୟରେ ମ୍ଳାନଭାବରେ ପ୍ରତିଫଳିତ ।

କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ବିଷୟ ନିର୍ବାଚନ ପଛରେ ଥିବା କାରଣ ସଂପର୍କରେ ସ୍ପଷ୍ଟୋକ୍ତି ଦେବାକୁ ପ୍ରୟାସ କରୁଛି – ତାକୁ ତଦନୁସାରେ ପ୍ରସ୍ତୁତ କରିବାପାଇଁ ଦରକାରଥିବା ଅଭିବ୍ୟକ୍ତି ଶୈଳୀ ଗ୍ରହଣ କଲି ଓ ତା'ର ବିକାଶ କରିବାରେ ଲାଗିଲି । ତେବେ ସେଥିରେ ଏକ

ବିଶେଷ ଦୂରତ୍ୱ ବଜାୟ ରଖିବାର ଆପ୍ରାଣ ଚେଷ୍ଟା ସତ୍ତ୍ୱେ ମୋ ବ୍ୟକ୍ତିଗତ ବିଷୟ ଠେଲି ପଶୁଥିବାର ଦେଖି ହତୋତ୍ସାହିତ ହେଉଥିଲି । ମନେହେଉଛି ଯେ ଲିଙ୍ଗ ଉପରେ ଲେଖିବା ସମୟରେ ବିଷୟଟି ଯେତେ ଦୁର୍ବଳ ଓ ଆଘାତପ୍ରବଣ ହେଉନା କାହିଁକି ଆତ୍ମଜୀବନୀ ମୂଳକ ହୋଇଯିବା ସ୍ୱାଭାବିକ । ନିଜକଥା ନକହି ରହି ହୁଏନା ଏବଂ କହିବାର ଆବଶ୍ୟକତା ମଧ୍ୟ ରହିଛି କାରଣ ନାରୀ ହୋଇଥିବାରୁ ତଦ୍‌ଜନିତ ଅଭିଜ୍ଞତା ତ ରହିଛି । କେବଳ ଏଇ କାରଣରୁ ମୁଁ କିଛି ବ୍ୟକ୍ତିଗତ କଥା ସଂପାଦି ରଖିଛି ନଚେତ୍ ଅଧିକାଂଶ ଏ ନାଟ୍ୟଯାତ୍ରାପଥରେ ପରିତ୍ୟାଗ କରିସାରିଛି ।

ବହୁମୁଖୀ ପରିଚିତି ସହିତ ମୋର ସଂପୃକ୍ତି ମୋ କାର୍ଯ୍ୟରେ ସବୁବେଳେ ଦୃଷ୍ଟିଗୋଚର ହୁଏ ନାହିଁ । ବରଂ ମୁଁ ଆବିଷ୍କାର କରିଥିବା ନାଟ୍ୟ ସଂପୃକ୍ତ ଅନ୍ୟ କେତେକ ବିଷୟରେ ଏହା ଛଦ୍ମ ରୂପରେ ପ୍ରକାଶ ପାଇଛି । ୧୯୯୩ ମସିହାର ଶେଷଆଡ଼କୁ ମୋ ପ୍ରସ୍ତୁତି 'ହିମ୍ମତ ମାଈ' (ବ୍ରେକେଟ୍‌ଙ୍କ ମଦର କରେଜ୍)ର ନାୟିକା ଭୂମିକା ମୁଁ ମନୋହର ସିଂହଙ୍କୁ ଦେଇଥିଲି ଓ ସେତିକିବେଳେ ମୁଁ ନିଶ୍ଚିତ ହେଲି ଯେ ମୋର ଲୈଙ୍ଗିକ ପରିଚିତି ପ୍ରତି ସ୍ୱୀକୃତି ଥିଲା । ମୁହୂର୍ତ୍ତକ ମଧ୍ୟରେ ମନୋହର ସିଂହଙ୍କୁ ନେବାର ନିଷ୍ପତ୍ତି ନିଆହେଲା ଯାହାକୁ କହନ୍ତି ମୋ ମନ ଭିତରୁ କିଏ କହିଲା । ସେ ସମୟରେ ମୋ ଭବିଷ୍ୟତ କାର୍ଯ୍ୟକୁ ଏହା କିପରି ପ୍ରଭାବିତ କରିବ ସେ ବିଷୟରେ ଭାବିନଥିଲି । ଏହା ଏକ ସ୍ୱତଃସ୍ଫୂର୍ତ୍ତ ଭାବନା, ଯେଉଁ ମୁହୂର୍ତ୍ତରେ ମୋ ମୁଣ୍ଡରେ ଢୁକିଲା, ମୁଁ କହିପକାଇଲି । ମୋ ପ୍ରସ୍ତାବକୁ ସମାନ ସ୍ୱତଃସ୍ଫୂର୍ତ୍ତତାର ସହ ମନୋହର ସିଂହ ଗ୍ରହଣ କରିନେଲେ ଓ ମୋ ସ୍ୱାମୀ ନିସାର୍ ଏହାକୁ ଅତ୍ୟନ୍ତ ଆଗ୍ରହ ସହକାରେ ସମର୍ଥନ କଲେ । ସେଟା ଗୋଟେ ଏମିତିକା କ୍ଷଣ ଥିଲା ଯେ ସବୁକିଛି ଠିକ୍‌ଠାକ୍ ଘଟିଲା । ମୋ ପ୍ରସ୍ତାବକୁ ପ୍ରତିରୋଧ କରିବାପାଇଁ ମୋପାଖରେ କୌଣସି କାରଣ ବା ଔଚିତ୍ୟପୂର୍ଣ୍ଣ ଯୁକ୍ତି ନଥିଲା । ମତେ ଲାଗିଲା ସତେ ଯେମିତି ମୁଁ ଗୋଟେ ନୂତନ ଜଗତକୁ ଦ୍ୱାର ଉନ୍ମୁକ୍ତ କରିବାର ଚାବି ପାଇଯାଇଛି ।

ମନୋହର ସିଂହଙ୍କ ପାଇଁ ହିମ୍ମତ ମାଈ ଶୀର୍ଷକ ଚରିତ୍ରକୁ ଉପଯୁକ୍ତ ଭାବେ ଚିହ୍ନିବା ଓ ହଜମ କରିବାର ପ୍ରକ୍ରିୟା ଓ ପଥ ଦୀର୍ଘ ଓ ଜଟିଳ ଥିଲା । କିନ୍ତୁ ଆରମ୍ଭରୁ ଶେଷପର୍ଯ୍ୟନ୍ତ ବଡ଼ ଉତ୍ତେଜକ ଓ ଭାବପ୍ରବଣ ବା ଆବେଗମୂଳକ ଥିଲା । ଆମକୁ ଏକ ଉଭୟଲିଙ୍ଗୀ ଚରିତ୍ର ସୃଷ୍ଟି କରିବାକୁ ହେବ – ଏ ଧାରଣା ଆରମ୍ଭରୁ ମନରେ ସ୍ପଷ୍ଟଭାବରେ ରଖି ଆମେ ଆଗଉଥିଲୁ । ମନୋହର ନିଜକୁ ସଂପୂର୍ଣ୍ଣଭାବେ ଗୋଟେ ମହିଳାରେ ପରିଣତ କରିବେ ନାହିଁ – ବରଂ ସେ ଏକ ମହିଳାର ଅଭିନୟ କରିବେ । ଅର୍ଥାତ ଅଭିନୟ ମାଧ୍ୟମରେ ଦର୍ଶାଇବେ, ନିଜେ ସେଥିରେ ରୂପାନ୍ତରିତ ହେବେନାହିଁ । ସୁତରାଂ ଏହାର ଅର୍ଥହେଲା ଯେ ସେ ନିଜର ପୁରୁଷପଣିଆ ବା ପୌରୁଷ ଅବ୍ୟାହତ ରଖିବା ଆବଶ୍ୟକ ।

ଆମେ ପୁରୁଣା ନାଟ୍ୟ ପରମ୍ପରା ଯେଉଁଥିରେ ପୁରୁଷମାନେ ମହିଳା ଭୂମିକାରେ ଅଭିନୟ କରୁଥିଲେ, ତା'ଉପରେ ଗବେଷଣା ଆରମ୍ଭ କଲୁ ଏବଂ ବିଶ୍ଳେଷଣ କରିବାକୁ

ଚେଷ୍ଟାକଲୁ ଯେ କେଉଁ ସୀମା ପର୍ଯ୍ୟନ୍ତ ନାରୀଭାବକୁ ଆତ୍ମସ୍ଥ କରାଯାଇଛି ଓ ଅଭିବ୍ୟକ୍ତ କରାଯାଇଛି । ଦୃଷ୍ଟାନ୍ତ ସ୍ୱରୂପ ଊନବିଂଶ ଶତାବ୍ଦୀର ଶେଷ ଆଡ଼କୁ ଆମେ ଦେଖିଲୁ ଯେ ଗୀତିନାଟ୍ୟ ଆଙ୍ଗିକରେ ସମସ୍ତ ମୁଖ୍ୟ ନାୟିକା ଭୂମିକାରେ ବାଲ ଗନ୍ଧର୍ବ ଅଭିନୟ କରିଛନ୍ତି । କଣ୍ଠସ୍ୱର, ହାବ-ଭାବ, ଭଙ୍ଗିମା ସାଙ୍ଗକୁ ସ୍ୱାଭାବିକ ସାଜସଜ୍ଜା ଓ ବେଶଭୂଷାରେ ଏକ ସଂପୂର୍ଣ୍ଣ ରୂପାନ୍ତରଣ ଯୋଗୁଁ ମହିଳା ଭୂମିକାରେ ତାଙ୍କର ଅଭିନୟ ସଂପୂର୍ଣ୍ଣ ମନେହେଉଥିଲା । ଠିକ୍ ଏଇ ରୀତିରେ ଅପେକ୍ଷାକୃତ ଅଧିକ ରଙ୍ଗଢ଼ଙ୍ଗ ଓ ସାଜସଜ୍ଜା ସହିତ 'କାବୁକୀ'ର ପୁରୁଷ କଳାକାରଗଣ ମହିଳା ଭୂମିକାରେ ଅଭିନୟ କରୁଥିଲେ । ଜାପାନର ନୋହ ଏବଂ କେରଳର କଥକଳୀ ଠିକ୍ ଏହି ଶୈଳୀରେ ହୁଏ । ଏସବୁ ସଂପର୍କରେ ବୁଝିବାପରେ ଏ ଜନିତ ଜ୍ଞାନ ମୋର ଦିଗଦର୍ଶକ ହେଲା । ମାତ୍ର ସମ୍ଭବତଃ ଗୋଟେ ମହିଳା ଚରିତ୍ର ରୂପାୟନ ସଂପର୍କିତ ମୋର ବିଚାର ସବୁଠୁ ବେଶୀ ବିରଜୁ ମହାରାଜଙ୍କ ସହିତ ମେଳ ଖାଇଲା, ଯାହାଙ୍କୁ କି କଥକ ନୃତ୍ୟଶିଳ୍ପୀଙ୍କ ମଧରେ ସର୍ବୋତ୍ତମ ସ୍ଥାନ ଦିଆଯାଏ । ବିର୍‌ଜୁ ମହାରାଜ ମହିଳା ବେଶପୋଷାକ, ସାଜସଜ୍ଜା ବିନା ଯଥୋଚିତ ଅଭିନୟ, ମୁଦ୍ରା, ଭାବଭଙ୍ଗୀ ବା ଚାଲ ମାଧମରେ ନାରୀ ଚରିତ୍ର ପ୍ରତିନିଧିତ୍ୱ କରିବା କଳାରେ ପାରଙ୍ଗମ ବା ପାରଦର୍ଶୀ । ତାଙ୍କ ପୁରୁଷଭାବ ସ୍ୱାଭାବିକଭାବେ ଅତୁଟ ଥାଏ କାରଣ ସେ ଜଣେ ମହିଳାପରି ଦିଶନ୍ତି ନାହିଁ । ଆମେ ଯାହା ପସନ୍ଦ କରିଥାନ୍ତି ସେଟା ହେଲା ତାଙ୍କର ନାରୀ ସଦୃଶ ଅଭିନୟ । ଯା'ହେଉ ଏଥିରୁ ସ୍ପଷ୍ଟ ହେଲା ଯେ ଏ ସମସ୍ତ ପ୍ରାଚୀନ ପରମ୍ପରାରୁ ନାରୀ ଚରିତ୍ର ଅଭିବ୍ୟକ୍ତି ନିମିତ୍ତ ଉଚ୍ଚକୋଟୀର ସଂଭ୍ରାନ୍ତ ବ୍ୟାକରଣ ଏବଂ ଶବ୍ଦ ଭଣ୍ଡାର ବିକଶିତ । ଆମ କଥା ସ୍ୱତନ୍ତ୍ର ଆମକୁ ମନୋହର ସିଂହ ଯିଏ କି ଜଣେ ଆଧୁନିକ ଅଭିନେତା, ମହିଳା ଭୂମିକାରେ ଅଭିନୟ କରିବେ, ତାଙ୍କପାଇଁ ଆମ ନିଜସ୍ୱ ଢଙ୍ଗର ଶବ୍ଦକୋଷ ତିଆରି କରିବାକୁ ଥିଲା ।

ରିହର୍ସାଲ ସମୟ ମୋପାଇଁ ଏକ ଦୀର୍ଘ, ମାସମାସଧରି ଚାଲିବା ପରି କାମ । ଏହା ସର୍ବାଧିକ ଉତ୍ତେଜନାପୂର୍ଣ୍ଣ ଏବଂ ଗଠନ ମୂଳକ ସମୟ କାରଣ ଏହି ଦିନଗୁଡ଼ିକରେ ମୂଳ ରଚନାର ଅସଲ ପ୍ରକୃତି ଆମ ହାତମୁଠାକୁ ଆସେ ଏବଂ ଏହାକୁ ମଞ୍ଚସ୍ଥ କରିବାର ବିବିଧ ଉପାୟ ଆମେ ଖୋଜିବାକୁ ଚେଷ୍ଟାକରୁ । ନିର୍ଦ୍ଦେଶକ ନିମନ୍ତେ ଏଇ ପ୍ରକ୍ରିୟାରେ ଅନ୍ୟାନ୍ୟ ଅନେକ ଜିନିଷ ସହିତ ଉପ-ବିଷୟକୁ ବୁଝିବା, ଏହାକୁ ଉପସ୍ଥାପନ କରିବାର ଗୋଟେ ନିର୍ଦ୍ଦିଷ୍ଟ ଶୈଳୀ ବା ଆଙ୍ଗିକ ରୀତିରେ ଉପନୀତ ହେବା, ମଞ୍ଚରେ ସ୍ଥାନଗତ ଗତିବିଧିକୁ ସ୍ଥାନୀୟ ପ୍ରଦର୍ଶନଗତ ପ୍ରଗତିଶୀଳତାକୁ ବୁଝିବା, ମଞ୍ଚସ୍ଥ କରିବାର ଶୈଳୀ ସମ୍ବନ୍ଧିତ ନିର୍ଦ୍ଦେଶନା ରଣନୀତି ପ୍ରସ୍ତୁତ କରିବା, ରଚନାଟିର ତାଳଲୟଗତ ବାଦ୍ୟନିର୍ଦ୍ଦେଶନା ଦେବା, ସେଟ୍, ଆଲୋକ, ପୋଷାକ ତଥା ସାଜସଜ୍ଜା ଦ୍ୱାରା ରଙ୍ଗ, ରୂପ, ରେଖା, ନିର୍ମାଣ କୌଶଳ ମାଧମରେ ସୃଷ୍ଟି ହେଉଥିବା ଦର୍ଶନୀୟ ଓ ଇନ୍ଦ୍ରିୟଗ୍ରାହ୍ୟ ଭାବକୁ ବିଚାର କରିବା ସଂଯୁକ୍ତ । ବେଶ-ପୋଷାକକୁ ମୁଁ ଅଭିନେତାଙ୍କର ଦ୍ୱିତୀୟ ଚର୍ମ ବୋଲି ଅଭିହିତ କରିଥାଏ । ଏହାର ମଞ୍ଚଉପରେ ଅଭିନେତା ବା ଅଭିନେତ୍ରୀଙ୍କର ନିୟନ୍ତ୍ରିତ ଅଙ୍ଗ ଚାଳନା ଉପରେ ଶକ୍ତିଶାଳୀ

ପ୍ରଭାବ ରହିଛି । ତା'ସହିତ ଏହା କୃତିଟିର ନାଟ୍ୟିକ ଅଭିବ୍ୟକ୍ତିରେ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ଏବଂ ପରିକଳ୍ପନାତ୍ମକ ଭୂମିକା ଗ୍ରହଣ କରେ । ଗୋଟିଏ ନାଟକକୁ ଅଭିବ୍ୟକ୍ତ କରିବାର ଏ ସମସ୍ତ ଆଭିମୁଖ୍ୟ ପରସ୍ପର ସମ୍ବନ୍ଧିତ (ସହସଂପୃକ୍ତ) ଏବଂ ୟା ମଧ୍ୟରୁ କୌଣସି ଗୋଟିଏ ବି ଅଭିନେତା ଉପରେ ଲଦାହୋଇଛି ବା ନିଜସ୍ୱ ନୁହଁପରି ମନେହେବା ଅନୁଚିତ୍ । ପରିଶେଷରେ ସବୁକିଛି ଅଭିନେତାର ଶରୀର ଏବଂ ତା'ମାଧ୍ୟମରେ ରୂପନିଏ । କଳାକାର ଗୋଟିଏ ସଜୀବ ମାଧ୍ୟମ, ସ୍ୱର ଦିଆଯାଇଥିବା ଗୋଟିଏ ସୂକ୍ଷ୍ମ ବାଦ୍ୟଯନ୍ତ୍ର ସଦୃଶ ଯିଏ କି ଅବଶେଷରେ ସମଗ୍ର ନାଟ୍ୟ ଅଭିବ୍ୟକ୍ତିକୁ ରୂପଦିଏ ଓ ଅର୍ଥପୂର୍ଣ୍ଣ କରେ ।

'ହିମ୍ମତ ମାଈ' ମଞ୍ଚସ୍ଥ ହେବାପରେ ଲୈଙ୍ଗିକ ବିଚାରକୁ ଆଧାର କରି ମୋର ଚରିତ୍ରଗୁଡ଼ିକୁ ମୁଁ ଗଭୀରଭାବରେ ପୁନଃ ବିଶ୍ଳେଷଣ କରିବା ଆରମ୍ଭ କରିଦେଲି । ସେଗୁଡ଼ିକୁ ଚିରିଫାଡ଼ି ଅନୁଧ୍ୟାନ କରିବାପାଇଁ ଉନ୍ମୁକ୍ତ କରିପକେଇଲି ଯାହା ଫଳରେ ତା'ର ନାରୀ ଓ ପୁରୁଷଦିଗ ଯେ କେବଳ ପ୍ରକଟିତ ହେବ ତା'ନୁହେଁ ସେହିପରି ଉନ୍ମୁକ୍ତ ହୋଇ ରହିବ । ବେଗମ ବାର୍ବେ (୧୯୯୬), ନାଗମଣ୍ଡଳ (୧୯୯୮) ଏବଂ ମୁଦ୍ରାରାକ୍ଷସ (୨୦୦୦)ର ମୁଖ୍ୟଚରିତ୍ର ତଥା ତା'ପରର ପ୍ରସ୍ତୁତିଗୁଡ଼ିକର ଉପସ୍ଥାପନ କୌଶଳ ହିମ୍ମତ ମାଈ ଚରିତ୍ରର ଉପସ୍ଥାପନ କୌଶଳଠାରୁ ଉଲ୍ଲେଖନୀୟଭାବେ ପୃଥକ ଥିଲା । ଯଦିଓ ମୁଁ ହିମ୍ମତ ମାଈର ପୁରୁଷ ଓ ସ୍ତ୍ରୀ ଦିଗ କଳିସାରିଥିଲି ତଥାପି ଲୈଙ୍ଗିକ ଅସଙ୍ଗତିକୁ ସୂକ୍ଷ୍ମଭାବରେ ଯୋଡ଼ିଦେଇ ଏପରି ଏକ ଚରିତ୍ର ଉପସ୍ଥାପନ କଲି ଯାହା ମାଧ୍ୟମରେ ପରିବର୍ତ୍ତିତ ଲୈଙ୍ଗିକ ପରିଚିତି ଏକାଧାରରେ ଅଦୃଶ୍ୟଭାବରେ ପ୍ରକାଶମାନ ଓ ଅଦୃଶ୍ୟ ହେଉଥିଲା । ତେବେ ପରବର୍ତ୍ତୀ ପ୍ରସ୍ତୁତିଗୁଡ଼ିକରେ ଅସହଜଭାବ ଥିଲା ଅଧିକ । ଏଥିରେ ଲୈଙ୍ଗିକ ବିଖଣ୍ଡନ ଆଉ ଗୁପ୍ତରୂପରେ ନୁହେଁ ଅଧିକ ସ୍ପଷ୍ଟଭାବରେ ଥିଲା ଏବଂ ସେଥିରେ ଥିଲା ଏକ ପ୍ରକାରର କଞ୍ଚାଭାବ (rawness) । ପୁରୁଷରୁ ନାରୀସତ୍ତାକୁ ରୂପାନ୍ତରଣ, ବାସ୍ତବରେ ଗୁରୁତ୍ୱପୂର୍ଣ୍ଣ ନାଟ୍ୟକଳାତ୍ମକ ମୁହୂର୍ତ୍ତ ଯାହା ନାଟକ ମାଧ୍ୟମରେ ବ୍ୟକ୍ତହୁଏ । ଦୃଷ୍ଟାନ୍ତ ସ୍ୱରୂପ ନାଗମଣ୍ଡଳରେ ଏହା ଅଭିନୀତ, ଉପସ୍ଥାପିତ, ପ୍ରଦର୍ଶିତ ହେଲା । ଯାହାଫଳରେ ପୁରୁଷରୁ ନାରୀ ବା ନାରୀରୁ ପୁରୁଷକୁ ରୂପାନ୍ତରିତ ହେବା ପ୍ରକ୍ରିୟାଟି ଅଭିନୟରେ ସତପରି ମନେହେଲା ।

'ବେଗମ ବାର୍ବେ'ର ମୁଖ୍ୟଚରିତ୍ର ଉପରେ ପ୍ରତ୍ୟକ୍ଷଭାବରେ ପରିବର୍ତ୍ତିତ ଲୈଙ୍ଗିକ ପରିଚିତି କେନ୍ଦ୍ରିତ । ବାର୍ବେ ଯେଉଁ ନୃଶଂସ, ଧୂସର ଓ ନୈରାଶ୍ୟଜନକ ପୃଥିବୀରେ ବାସକରେ ସେଠି ସମ୍ବେଦନା, ବର୍ଣ୍ଣର ମହୋତ୍ସବ, ମାନବୀୟ ଉଷ୍ମତା ନାହିଁ । ସଙ୍ଗୀତ, ନାରୀ ଏବଂ ଗଜରାର ମଧୁର ମହକ ସେଠି ନାହିଁ । ଜଣେ ବୟସ୍କ ଅଭିନେତା ବାର୍ବେ ତା'ର ବର୍ବର, ଅମାନବିକ ନୈରାଶ୍ୟପୂର୍ଣ୍ଣ ବର୍ତ୍ତମାନରୁ ଗୋଟିଏ ଆଲୋକିତ, ରଙ୍ଗୀନ, ସଙ୍ଗୀତମୟ ଜଗତ – ଅର୍ଥାତ୍ ହଜିଯାଇଥିବା ଅତୀତର ନାଟ୍ୟଜଗତକୁ ପଳାୟନ କରିବାକୁ ଚାହୁଁଛି । ଠିକ୍ ଏଇ ପରିସ୍ଥିତିରେ ବାର୍ବେ କାଳ୍ପନିକ ସ୍ତରରେ ତା'ର ପ୍ରିୟତମ ଫାଣ୍ଟାସିକୁ ଅଭିନୟ ମାଧ୍ୟମରେ ପ୍ରଦର୍ଶିତ କରିପାରେ – ଜଣେ 'ଅନ୍ୟ' ସତ୍ତା ହୋଇ, ନାରୀ ହେଇ ।

ମନୋହର ସିଂହଙ୍କ ବାର୍ବେ ଚରିତ୍ର ଅଭିନୟ ସମୟରେ ଏକ ଖିଆଲୀ ନିରୀହତା ଥିଲା । ଏହି ବୃଦ୍ଧ କଳାକାରଙ୍କର ଜଣେ ସ୍ତ୍ରୀ ଚରିତ୍ରର ଭୂମିକାରେ ଅଭିନୟ କରିବାର ଲାଳସାରେ ଥିଲା ସ୍ୱଚ୍ଛତା, ନିଷ୍କପଟତା ଏବଂ ସେ ଚରିତ୍ର ମାଧ୍ୟମରେ ତାଙ୍କର ଅନ୍ତରଙ୍ଗତମ ଫାଣ୍ଟାସିକୁ ସାକାର କରିପାରିବେ । ତାଙ୍କର ଦ୍ୱିଧାବିଭକ୍ତ ସତ୍ତାମଧ୍ୟରେ ପୁରୁଷ ଓ ସ୍ତ୍ରୀ ଦିଗକୁ ଦର୍ଶନୀୟଭାବରେ ଉପସ୍ଥାପନ କରିବାପାଇଁ ଆମେ ତାଙ୍କୁ ଗୋଟେ ତନ୍ତୁଯୁକ୍ତ ଚର୍ମରଙ୍ଗର ଧୋତି କୁର୍ତ୍ତା ପିନ୍ଧେଇଲୁ ଯାହା ଗୋଟେ ଦୃଷ୍ଟିରୁ ତାଙ୍କର ନଗ୍ନତା ଓ ଅସହାୟତାର ପରିଚାୟକ, ଯାହା ବାସ୍ତବିକ ହେବାସହିତ ରୂପକାତ୍ମକ ମଧ୍ୟ । ୟା ଉପରେ ମୋଟାମୋଟି ବିଦୂଷକ ସଦୃଶ ନାରୀମୁଖ ବେଶ କରାଗଲା । ମୁହଁକୁ ଗୋଲାପୀ ମିଶା ଗୋରାରଙ୍ଗ କରାଯିବା ସହିତ ଓଠର ରଙ୍ଗ ସଂପୂର୍ଣ୍ଣ ବିପରୀତ ଧର୍ମୀ ଲାଲ, ଗୋଲାପୀ ଗାଲ ଓ ଆଖିରେ ଗାଢ଼ଭାବରେ କଜଳ ପିନ୍ଧାଇଦିଆଗଲା । ଏହି ରୂପଚର୍ଚ୍ଚାରେ ଏକ ଅଦ୍‌ଭୁତ କାରୁଣ୍ୟ ଓ ହାସ୍ୟୋଦ୍ଦୀପକଭାବ ଥିଲା । କୃତ୍ରିମତା ପୂର୍ଣ୍ଣ, ନାରୀ ମୁହଁଟି ଏକ ବୃଦ୍ଧଶରୀର ଉପରେ ବିରାଜମାନ ଥିଲା । ବିଭାଜିତ ମୁଣ୍ଡ ଏବଂ ଗଣ୍ଡିଭିତରର ବିରୋଧାଭାସକୁ ଉତ୍କଟଭାବେ ପ୍ରଦର୍ଶନ କରାଯାଇଥିଲା । ଯାହାଫଳରେ ବିଭକ୍ତ ବ୍ୟକ୍ତିତ୍ୱର ଛାପ ଯଥା : ପୁରୁଷ/ସ୍ତ୍ରୀ, କୃତ୍ରିମ/ବାସ୍ତବ, ବୃଦ୍ଧ/ଯୁବାବସ୍ଥା, ଅତୀତ/ବର୍ତ୍ତମାନ ପ୍ରତିବିମ୍ବିତ ହେଉଥିଲା । ବେଶପୋଷାକକୁ ରୂପଚର୍ଚ୍ଚା ପୂରା ବେଖାପିଆ ଥିଲା, ପ୍ରତୀକ ଓ ସଙ୍କେତ ଭାବେ ଏହା ବାର୍ବେର ଯୌନ ଜୀବନରେ ସୃଷ୍ଟି ହୋଇଥିବା ଫାଟକୁ ସ୍ମରଣ କରେଇ ଦେଉଥିଲା ଯାହା ତା'ର ଅସ୍ତିତ୍ୱକୁ ଧୂଳିସାତ୍ କରିଦେଇଥିଲା । ଏହି ବିରୋଧଭାବ ମଧ୍ୟରେ ପୁନର୍ସମନ୍ୱୟ ସ୍ଥାପନ କରିବାର କୌଣସି ଉଦ୍ୟମ କରାଯାଇନଥିଲା । ସେହିପରି ଜାଣିଶୁଣି ଅଜବଭାବରେ ଗୋଟିଏ ପୁରୁଷର ବିଶାଳ, ଲୋମଶ ପାଦର ବେଖାପିଆ ସ୍ଥାନରେ ନାରୀସୁଲଭ ଦେଖାଇ ହେବା ଗୁଣର ପ୍ରତୀକଭାବରେ ଗୋଟିଏ ଘୁଙ୍ଗୁର ବନ୍ଧାଯାଇଥିଲା ।

'ନାଗମଣ୍ଡଳ'ରେ ବିଷୟବସ୍ତୁଗତ ପ୍ରଭାବ ନିଜ ସତ୍ତା ମଧ୍ୟରେ ଥିବା ଲୈଙ୍ଗିକ ଅନିବାର୍ଯ୍ୟତାର ଦ୍ୱୈତତାରୁ ସ୍ଥାନାନ୍ତରିତ ହୋଇ ସେହି ସମ୍ବନ୍ଧିତ – ଜଣକର ସଂପୂର୍ଣ୍ଣ ସୃଜନଶୀଳ କ୍ଷମତାକୁ ଉପଲବ୍ଧ କରିବାପାଇଁ 'ଅନ୍ୟ' ସତ୍ତାର ସ୍ଥିତିକୁ ସ୍ୱୀକୃତି ଦିଆଯାଇଛି । ଉଭୟ ସ୍ୱାମୀ ଏବଂ ରାଣୀ ଦୁହିଁଙ୍କୁ ନିଜସହିତ ନିଜ ସହକର୍ମୀଙ୍କର ଲୁଚିରହିଥିବା ଦିଗଗୁଡ଼ିକ ସହିତ ସାଲିସ୍ କରିବାକୁ ପଡ଼ିଛି । ପରିଣତି ବେଳକୁ ଗିରୀଶ କନ୍ନଡ଼ ପୁରୁଷ ଚରିତ୍ରଟିକୁ ଦ୍ୱିଧା ବିଭକ୍ତ କରିଛନ୍ତି । ଚରିତ୍ରଟିର ଦୈବୀ ରୂପାୟନରେ ସେ ଜଣେ ନାଗ–ଏକ ପୌରୁଷପୂର୍ଣ୍ଣ ସତ୍ତା ଯାହା ସୁଷୁପ୍ତ ଅବସ୍ଥାରେ ରହିଛି, ଏବଂ ତା'ର ମାନବିକ ରୂପାୟନରେ ସେ ଜଣେ ନଂପୁସକ ପତି ଯିଏ ଜାଗ୍ରତ ଅବସ୍ଥାରେ ରାଜତ୍ୱ କରୁଛି । ଗୋଟିଏ ସତ୍ତାର ଦ୍ୱିଧା ଖଣ୍ଡିତ ଏହିରୂପ, ଜଣେ ଅନ୍ୟଜଣକର ପ୍ରତିବିମ୍ବ ହେଲେ ମଧ୍ୟ ଏକ ଅପରର ଅସ୍ତିତ୍ୱ ସମ୍ବନ୍ଧରେ ଅଜ୍ଞ । ଗିରୀଶ କନ୍ନଡ଼ଙ୍କର ଏଇପରି ଏକ କାହାଣୀର ନାଟ୍ୟ ପ୍ରସ୍ତୁତିରେ ପ୍ରତ୍ୟେକ ସତ୍ତା ପୁରୁଷ, ନାରୀ ନିକଟକୁ ଦିନ ବା ରାତିରେ ସ୍ୱତନ୍ତ୍ର ରୂପରେ ଯାଏ ।

ସମାନଭାବରେ ନାରୀ ଚରିତ୍ର ରାଣୀର ମଧ୍ୟ ଦୁଇଟି ରୂପ ଅଛି । ତା'ର ମାନବିକ ରୂପରେ ସେ ଏକ ଯୁବତୀ ନବବଧୂ ଯିଏ କି କାମଉତ୍ତେଜନାର ପୂର୍ତ୍ତିପାଇଁ ବ୍ୟାକୁଳ ପ୍ରତୀକ୍ଷା କରୁଛି, ମାତ୍ର ଗର୍ଭଧାରଣ କରିବାପରେ ହିଁ କେବଳ ସେ ଦେବୀ ମା ଭାବେ ନିଜର ଦୈବୀରୂପ କଳ୍ପନା କରେ । (ମଦର ଗଡ୍‌ଡେସ୍)

ଜଣେ ନାରୀ-ନିର୍ଦ୍ଦେଶକ ଭାବରେ ନିରନ୍ତର ମୋ ସମ୍ମୁଖରେ ଗୋଟେ ସମସ୍ୟା ଥିଲା ଯେ ଅଧିକାଂଶ ନାଟକ ତା'ଭାରତୀୟ ବା ପାଶ୍ଚାତ୍ୟ ହେଉ ସବୁଗୁଡ଼ିକ ପୁରୁଷଙ୍କ ଦ୍ୱାରା ରଚିତ । ଯଦିଓ ସେଥିମଧ୍ୟରୁ ଅନେକରେ ନାରୀ ମନସ୍ତତ୍ତ୍ୱ ଓ ତା'ର ଜଗତ ଉପରେ ଗଭୀର ଓ ସହାନୁଭୂତିଶୀଳ ଅନ୍ତର୍ଦୃଷ୍ଟି ପ୍ରତିଫଳିତ । ତଥାପି ସେମାନଙ୍କର ରଚନାଗୁଡ଼ିକରେ ବେଶୀଭାଗ ପୁରୁଷ ଦୃଷ୍ଟିକୋଣ ପ୍ରତିଫଳିତ ହୁଏ । ଅଧିକନ୍ତୁ ଏଠି କହିପାରେଁ ଯେ ବ୍ରେକେଟ୍‌ଙ୍କର 'ଓ୍ୱର୍‌ଫ୍ରେମଡଙ୍ଗ୍' ମତେ ଏକ ନିରପେକ୍ଷ ଦୃଷ୍ଟିକୋଣ ଦେବା ସହିତ ଏହାକୁ ବୁଝିବାର ସୁଯୋଗ ଦେଇ ବହୁତ ସାହାଯ୍ୟ କରିଛି । ଏ ପ୍ରକାର ଦୃଷ୍ଟିକୋଣ ନିରନ୍ତର ଦୁଇମେରୁ ବ୍ୟକ୍ତିଗତ ଏବଂ ବସ୍ତୁନିଷ୍ଠ, ଚରିତ୍ର ଏବଂ ଅଭିନେତା, ଆବେଗାତ୍ମକ ଦୃଷ୍ଟିରୁ ନିକଟ ଓ ଦୂର ମଧ୍ୟରେ ଦୋଳାୟମାନ । ଏହାକୁ ଲିଙ୍ଗ ଦୃଷ୍ଟିରୁ ପୁରୁଷ ଓ ସ୍ତ୍ରୀ ଭାବରେ ଅଧ୍ୟୟନ କରାଯାଇପାରେ । ମୁଁ ଅନୁଧ୍ୟାନ ପାଇଁ ଗୋଟିଏ କ୍ଷୁଦ୍ର ପରିସର ନିର୍ବାଚନ କରିଛି - ତାହା ସୁପ୍ତ ଓ ଜାଗ୍ରତ ଅବସ୍ଥାର ଗୋଧୂଳି କ୍ଷେତ୍ର, ସଚେତନ ଓ ଅଚେତନ ଅବସ୍ଥାକୁ ତଥା ବାସ୍ତବତାଠାରୁ ପ୍ରହେଳିକାକୁ ପୃଥକ କରୁଥିବା ସୂକ୍ଷ୍ମରେଖା, ଯେଉଁଠି ଉଭୟ ଅବସ୍ଥାର ଅନୁଭୂତି ଗୋଳିଆ ମିଶା ହୋଇଯାଏ, ଯେଉଁଠି ସ୍ପଷ୍ଟ ଓ ଅସ୍ପଷ୍ଟ ମୁହୂର୍ତ୍ତର ସହାବସ୍ଥାନ ଘଟେ । ଏହା ସେମିତି ଆଶ୍ଚର୍ଯ୍ୟର କଥା ନୁହେଁ ଯେ ମୁଁ ଯେଉଁ କେତୋଟି ନାଟକ ମଞ୍ଚସ୍ଥ କରିବାପାଇଁ ନିର୍ବାଚନ କରିଛି, ଯେପରି ଖାମୋଶ, ବାର୍ବେ, ମୁଦ୍ରାରାକ୍ଷସ, ନାଗମଣ୍ଡଳ - ସବୁଗୁଡ଼ିକର ସଂରଚନା ଶୈଳୀ ନାଟକ ଭିତରେ ନାଟକ । ଏହା ଚରିତ୍ରଗୁଡ଼ିକୁ ଦ୍ୱୈତ ସ୍ଥିତିରେ ରହିବାକୁ ଦିଏ । ଉଭୟ ଚରିତ୍ର ଓ ଅଭିନେତାଙ୍କୁ ଏକ ସ୍ଥାୟୀ ଭୌତିକ ଦୁନିଆସହିତ ଯୋଡ଼ିବା ଅପେକ୍ଷା ଏକ ସମୟହୀନ ଦୁନିଆରେ ଝୁଲେଇ ରଖେ ।

ଅପର ପକ୍ଷରେ ଯେଉଁ ନାଟକଗୁଡ଼ିକର ମୁଖ୍ୟ ବିଷୟ ବିଭାଜିତ ସତ୍ତା ବିଶିଷ୍ଟ କିନ୍ତୁ ବାସ୍ତବ ପୃଥିବୀ ସହ ଏହାର ଗଭୀର ସଂପୃକ୍ତି ରହିଛି, ସେଠାରେ ମୂଳ ବିଷୟକୁ ତା'ର ଦୃଢ଼ ଅଙ୍କୁଶରୁ ମୁକ୍ତକରି ତାକୁ ତରଳ ଅବସ୍ଥାରେ ଭସେଇ ଦେବା ମୋର ପ୍ରୟାସ । 'ଆଧେ ଅଧୁରେ'ରେ ମୂଳ ବିଷୟକୁ ବିଭକ୍ତକରି ଗୋଟିଏ ଅଂଶକୁ ଦଳେ ବର୍ଣ୍ଣନାକାରୀ ଓ ସଙ୍ଗୀତଜ୍ଞଙ୍କୁ ଦେଇ ସଫଳ କରାଯାଇପାରିଲା । 'କିଙ୍ଗ ଲିଅର'ରେ ଦର୍ଶକଙ୍କୁ ସ୍ଥାନାନ୍ତରିତ କରି ଏବଂ 'ହିମ୍ମତ ମାଈ'ରେ ଜଣେ ପୁରୁଷକୁ ମହିଳା ଭୂମିକାରେ ଅବତୀର୍ଣ୍ଣ କରାଇ ଏହି ଉଦ୍ଦେଶ୍ୟ ସାଧନ କଲି ।

ନାଟ୍ୟ-ଅଭିବ୍ୟକ୍ତି ନିମନ୍ତେ ମୋର ଏକ ନିଜସ୍ୱ ଭାଷାମଣ୍ଡଳ ବିକଶିତ କରିବାର ଅନ୍ୱେଷଣ ଯୋଗୁଁ ମୁଁ ଲଗାତାର ଭାରତ ଏବଂ ଏସିଆର ପ୍ରାଚୀନ ପାରମ୍ପରିକ ପ୍ରଦର୍ଶନର

ଅଧ୍ୟୟନ କଲି । ତା'ସହିତ ଏହି ବୈଜ୍ଞାନିକ ଯୁଗପାଇଁ ବର୍ଟୋଲିଡ୍ ବ୍ରେକେଟ୍ ଯେଉଁ ନୂଆ ଥିଏଟର୍‌ର ପରିକଳ୍ପନା କରିଛନ୍ତି ସେ ନାଟ୍ୟସିଦ୍ଧାନ୍ତର ଅନୁଶୀଳନପ୍ରତି ମୁଁ ଆକୃଷ୍ଟ ହୋଇଛି । ନାଟକ ଏବଂ ଚଳଚ୍ଚିତ୍ର ସେହି ସମ୍ଭାବ୍ୟ ଉପସ୍ଥାପନ ଶୈଳୀ (ଆଙ୍ଗିକ) ନିମନ୍ତେ ଅମୂଲ୍ୟ ଗନ୍ତାଘର ସଦୃଶ, ଯାହା ମାଧ୍ୟମରେ କାହାଣୀ ଏବଂ ଚରିତ୍ର ଏକାଠି କେତେ ପଥ ଅତିକ୍ରମ କରିପାରିବେ ।

ସୁତରାଂ ମୁଁ ମୋର ସଫଳତାକୁ ଅନୁଭବମୂଳକ କହିବାକୁ ପସନ୍ଦ କରିବି । ମୋର ଉଦ୍ଦେଶ୍ୟ ହେଉଛି ମସ୍ତିଷ୍କର ମଧ୍ୟସ୍ଥତା ବିନା ସିଧାସଳଖ ସମ୍ବେଦନାସହିତ ଲୋକଙ୍କୁ ପରିଚିତ କରାଇବା । ଯାହାଫଳରେ ଶବ୍ଦ ନୁହଁ ରଙ୍ଗ, ଧ୍ୱନି ଏବଂ ପ୍ରତୀକ ଅର୍ଥ ପ୍ରକଟ କରିବେ । ମୋପାଇଁ ଥିଏଟର୍‌କୁ ବୁଝିବା ଅପେକ୍ଷା ଏହାକୁ ଅନୁଭବ କରିବା ଅଧିକ ଗୁରୁତ୍ୱପୂର୍ଣ୍ଣ । ନିଃସନ୍ଦେହରେ ମୁଁ ନାରୀ ହୋଇଥିବାରୁ ଏହା ମୋ ନାରୀସୁଲଭ ଅନୁଭୂତିସହିତ ସମ୍ବନ୍ଧାନ୍ୱିତ ହେବା ଉଚିତ୍ ।

*ଲତିକା କଟ୍ଟ (ଜନ୍ମ ୧୯୪୮) ଜଣେ ସୁପ୍ରସିଦ୍ଧ ମୂର୍ତ୍ତିକାର । ସେ ବିଭିନ୍ନ ପଦାର୍ଥ ଓ ମାଟିରେ ମୂର୍ତ୍ତି ଗଢ଼ିଥାନ୍ତି । ସେ ଭାରତ ତଥା ଦେଶ ବିଦେଶରେ ଏକକ ପ୍ରଦର୍ଶନୀ କରିବା ସହିତ ୧୯୮୦ ମସିହାରେ 'ପ୍ୟାରିସ୍ ବାଇଏନେଲ୍ଲ'; ୧୯୮୧ରେ ଭାରତ ଉତ୍ସବ ସମାରୋହ, ଲଣ୍ଡନ; ମସ୍କୋ, ଲେନିନ୍‌ଗ୍ରେଡ଼ ଏବଂ ତାସ୍‌କେଣ୍ଟଠାରେ ହୋଇଥିବା 'ସ୍ତ୍ରୀ' ପ୍ରଦର୍ଶନୀ, ୧୯୯୮ ମସିହାରେ ଗେଟେନ୍‌ବର୍ଗ ଏବଂ ମ୍ୟୁଜିୟମ୍ ଅଫ୍ ମଡର୍ଣ୍ଣ ଆର୍ଟ, ଷ୍ଟକ୍‌ହୋମ୍‌ରେ ହୋଇଥିବା 'ଫାଇଭ ଇଣ୍ଡିଆନ୍ ଆର୍ଟିଷ୍ଟ ଶୋ'ରେ ଭାଗ ନେଇଥିଲେ । ସେ ଲଳିତ କଳା ଏକାଡ଼େମୀର ଜାତୀୟ ପୁରସ୍କାର ବିଜେତା ଏବଂ ତାଙ୍କର କୃତି ସମଗ୍ର ପୃଥିବୀର ବିଭିନ୍ନ ସଂଗ୍ରହାଳୟ ଏବଂ ବ୍ୟକ୍ତିଗତ ସଂଗ୍ରହରେ ସ୍ଥାନ ପାଇଛି ।*

## ୧୪

# ଏକ ମୂର୍ତ୍ତିମୟ ଜୀବନ

### ଲତିକା କଙ୍ଗ

ମୋ ଜୀବନ ପୂରାପୂରି ଇଂଲିଶ୍ ଏବଂ ଶୁଦ୍ଧ ଭାରତୀୟ ପରମ୍ପରାର ଏକ କକ୍‌ଟେଲ୍ (କୁହାଯାଇପାରେ) । ଏ ଦୁଇଟି ଯାକର ସମନ୍ୱୟର ଏକ ଜୋରଦାର ମଧୁର ନିଶା ମୋର ଅଭିବ୍ୟକ୍ତି, ନ୍ୟାୟପ୍ରାପ୍ତି ଓ ନ୍ୟାୟସଙ୍ଗତ ସ୍ୱୀକୃତି ପାଇବାର ସଂଘର୍ଷକୁ ଇନ୍ଧନ ଯୋଗାଇଛି । କେବେ, କେମିତି ଏହା ଘଟିଲା ବା ଘଟୁଛି କହିବା କଠିନ, ଏହା ମତେ କୁଆଡ଼େ ନେଉଛି କହିବା ଆଉରି କଠିନ । ମାତ୍ର ଗୋଟିଏ କଥା ଦୃଢ଼ ନିଶ୍ଚିତ ଯେ ମତେ ଯଦି ପୁନର୍ଜନ୍ମ ମିଳେ ତେବେ ମୁଁ ସବୁ ନିଷ୍ପତ୍ତି ଠିକ୍ ସେମିତି ନେବି ଯେମିତି ଏ ଜନ୍ମରେ ନେଇଛି । ଅନ୍ୟମାନଙ୍କ ସହିତ ମୋ ଅନୁଭୂତିକୁ ବାଣ୍ଟିବା ବିଶେଷଭାବରେ କମ୍‌ବୟସର ପାଠିକାମାନଙ୍କ ସହିତ ବାଣ୍ଟିବାକୁ ମତେ ଖୁସିଲାଗେ । ଏହା ମତେ ସୁଖଦ ଅନୁଭୂତି ଦିଏ । ମନରେ ଏଇ ଆଶାଥାଏ ଯେ ଏଇ ପୁରୁଷ ଆଧିପତ୍ୟ ଥିବା ପୃଥିବୀରେ ଏହା ନାରୀମାନଙ୍କୁ ଅଧିକ ସୁଦୃଢ଼ କରିବ ।

ମୋ ବାପା ଡେରାଡୁନ୍‌ର ପ୍ରସିଦ୍ଧ ଡୁନ୍ ସ୍କୁଲରେ ଜୀବବିଜ୍ଞାନ ପଢ଼ଉଥିଲେ; ତେଣୁ ବହୁବର୍ଷଧରି ଏହା ଆମ ଘର ଥିଲା । ମୋ ଜନ୍ମପରଠାରୁ ୧୯୭୪ ମସିହାରେ ସେ ସ୍କୁଲ ଛାଡ଼ିବା ପର୍ଯ୍ୟନ୍ତ ଆମେ ସେଠାରେ ଥିଲୁ । ଆମେ ଏକ ବିରାଟ ଭିକ୍ଟୋରିଆନ୍ ବଙ୍ଗଳାରେ ରହୁଥିଲୁ । ସେଥିରେ ଅନେକ କୋଠରୀ, ବଡ଼ ବଡ଼ ଗଛ, ପନିପରିବା, ଫୁଲ ବଗିଚା ଥିଲା ଯାହା କି ମୋ ବାପାଙ୍କର ଗର୍ବ । ବିଭିନ୍ନ ପ୍ରକାର ଚଢ଼େଇଙ୍କର ସଦାସର୍ବଦା କିଚିରି ମିଚିରି ସହିତ ଗୁଣ୍ଡୁଚି ମୂଷା ଓ ମାଙ୍କଡ଼ ଥିଲେ ଆମ ବଗିଚାର ନିରନ୍ତର ଆଗନ୍ତୁକ । ମୁଁ ମୋ ବାପାଙ୍କ ସାହଚର୍ଯ୍ୟ ଅଧିକ ଭଲପାଉଥିଲି କାରଣ ସେ କେବେ କୌଣସିଥିରେ ବ୍ୟତିବ୍ୟସ୍ତ ହେଇପଡୁନଥିଲେ ଓ ପ୍ରକୃତି ପ୍ରେମୀ ଥିଲେ । ମୋ ମା' ବେଶ୍ ପାରିବାର ପ୍ରକୃତିର ଥିଲେ ଏବଂ ମୋ ଭାଇ ଅଧିକାଂଶ ସମୟରେ ତା'ର ବଡ଼ ପଣିଆ ମୋ ଉପରେ ଜାହିର୍ କରୁଥିଲା କାରଣ ସେ ମୋ'ଠାରୁ ପାଞ୍ଚବର୍ଷ ବଡ଼ ଥିଲା । ସେ କେବେ ବି ମୋର ଛୋଟ ସ୍କାର୍ଟ ପିନ୍ଧିବାକୁ ପସନ୍ଦ କରୁନଥିଲା । ମୁଁ ବୁଝିପାରୁନଥିଲି ସେ ମୋପାଇଁ କାହିଁକି ଗୋଟେ ମାପକାଠି ସ୍ଥିରକରୁଥିଲା ଯେତେବେଳେ କି ମୁଁ ମୋ ନିଜପାଇଁ ତା' କରିପାରନ୍ତି । ମୋ ମା ସେଥିରେ ତାକୁ ଉତ୍ସାହିତ କରୁଥିଲେ ଓ ମୁଁ ଏସବୁକୁ ଘୃଣା କରୁଥିଲି ।

ଆମର ମଧ୍ୟକାଳୀନ ଛୁଟି ସମୟରେ ଆମେ ଛୋଟ ଛୋଟ ଦଳରେ ଟ୍ରେକିଂ ପାଇଁ ପାହାଡ଼ ଉପରକୁ ଯାଉଥିଲୁ । ମୁଁ ଲକ୍ଷ୍ୟ କରିଛି ଟ୍ରେକିଂ ସମୟରେ ମୋ ବାପା ପ୍ରକୃତିର ଏକ ଅଂଶ ହେଇଯାଉଥିଲେ । ମତେ ସେତେବେଳକୁ ଆଠବର୍ଷ, ମତେ ବିରଳ ପତ୍ର ଓ କୀଟପତଙ୍ଗ ସଂଗ୍ରହ କରିବାକୁ ଭଲଲାଗୁଥିଲା । ପ୍ରଜାପତିମାନଙ୍କୁ ପିନ୍‌ରେ ବିନ୍ଧକରି ବୋର୍ଡ଼ରେ ଲଗାଇବାକୁ ବି ମତେ ମଜା ଲାଗୁଥିଲା । ଜିଆ ଓ ବଡ଼ପିମ୍ପୁଡ଼ି ସବୁ ଘାଣ୍ଟିଚକଟି କାଦୁଅରେ ଲଟପଟ ହେବାକୁ ତ ମତେ ଆଉରି ମଜା ଲାଗୁଥିଲା, କେବେ କେମିତି ମୁଁ ପିମ୍ପୁଡ଼ି ଖାଇଦେଉଥିଲି । ଆଉ ଆମ ବଗିଚାର ଟମାଟୋଗୁଡ଼ିକୁ ବ୍ୟବଛେଦ (ଡିସେକ୍ଟ) କରିବାକୁ ମତେ ଭଲ ଲାଗୁଥିଲା । ମୁଁ ଭାବୁଛି ମୋ ବୟସ ଅନୁସାରେ ମୁଁ ସବୁଠୁ ଅଧିକ ବିଶୃଙ୍ଖଳ ଥିଲି ଏବଂ ମୋ ବାପା ଆଦୌ ମୋ ଉପରେ କଟକଣା ବା କଡ଼ା ଶାସନ କରୁନଥିଲେ ।

ମୁଁ ଯେତେବେଳେ କଲେଜକୁ ଗଲି ବ୍ୟବଛେଦ କରିବାର ଏ ସଉକ ମୋର ଏକ ଗମ୍ଭୀର କାର୍ଯ୍ୟରେ ପରିଣତ ହେଇଗଲା । ମୋର ଜଣେ ସାଙ୍ଗ ମାଇକ୍ରୋବାଇଓଲୋଜି ପଢୁଥିଲା ଓ ଏହା ମୋ ସାମ୍ନାରେ ଏକ ସଂପୂର୍ଣ୍ଣ ନୂଆ ଜଗତର ଦ୍ୱାର ଉନ୍ମୁକ୍ତ କରିଦେଲା । ଅଣୁବୀକ୍ଷଣ ଯନ୍ତ୍ରରେ କୌଣସି ଜିନିଷର ନିକଟତର ଓ ପରିବର୍ଦ୍ଧିତ ଦୃଶ୍ୟ ମତେ ଚମତ୍କାର ଲାଗୁଥିଲା, ପ୍ରତ୍ୟେକଟି ଗୋଟିଏ ଗୋଟିଏ ସ୍ୱତଃସ୍ଫୂର୍ତ୍ତ ସର୍ଜନା । ବିବିଧ ପ୍ରକାରର କୋଷ, ତରଳ ଓ କଠିନ ପଦାର୍ଥର ସମନ୍ୱୟ ଜୀବନର ପ୍ରବାହକୁ ଅବାରିତ ରଖିଛି । ଏସବୁ କେତେ ଅବିଶ୍ୱାସନୀୟ ଓ ଅଦ୍‌ଭୁତ ଲାଗୁଥିଲା ! ମୋ ମା ଅବଶ୍ୟ ମୋ ବିଷୟରେ ଚିନ୍ତିତ ରହୁଥିଲେ କାରଣ ମୁଁ ତାଙ୍କର ସବୁକଥାରେ ଅବାଧ ଥିଲି, ବିଶେଷଭାବରେ ତାଙ୍କୁ ରୋଷେଇରେ ସାହାଯ୍ୟ କରିବାରେ । ମୋ ମତରେ ମା'ମାନେ ପିଲାମାନଙ୍କୁ ଜନ୍ମ ଦେଇଥାନ୍ତି ତେଣୁ ତାଙ୍କୁ ଭଲ ଖାଦ୍ୟ ଖୋଇବା ତାଙ୍କର କର୍ତ୍ତବ୍ୟ । ମୋ ମା ଖୁବ୍ ଭଲ ରୋଷେଇ କରନ୍ତି । ମୋ କଣ୍ଢେଇମାନଙ୍କ ପାଇଁ ମୋର ନିଜର ଗୋଟେ ରୋଷେଇ ଘର ଥିଲା, ଏପରିକି ମୁଁ ସେମାନଙ୍କ ପାଇଁ ମାଟିକାଦୁଅରେ ହାଣ୍ଡିକଡ଼େଇ ଗଢ଼ି ଥିଲି । ମୁଁ ଅନେକ ସମୟରେ କେବଳ ମୋ ବଗିଚାରେ ଖେଳିବା ପାଇଁ ସ୍କୁଲକୁ ଯାଉନଥିଲି । ସ୍କୁଲର ପ୍ରିନ୍ସିପାଲ୍ ଆମଘରକୁ ଆସି ମୋ ସ୍ୱାସ୍ଥ୍ୟ ସଂପର୍କରେ ପଚାରାଉଚୁରା କରିବାପରେ ହିଁ ମୋ ବାପା ମା ଆବିଷ୍କାର କରୁଥିଲେ ଯେ ମୁଁ ସ୍କୁଲ ଯାଇନି ସ୍କୁଲରେ ଅନୁପସ୍ଥିତ ଅଛି ! ଆମ ସ୍କୁଲରେ ଗୋଟେ କଣରେ ଠେକୁଆ ଥିଲେ ଓ ମୋର ସେ ଯାଗା ସବୁଠୁ ବେଶୀ ପସନ୍ଦ ଥିଲା । ବାଲି ଓ ମାଟିକାଦୁଅରେ ଗଢ଼ା ବିଳ ସବୁ ନିରୀକ୍ଷଣ କରିବାକୁ ମତେ ଭଲ ଲାଗୁଥିଲା । ବହୁବର୍ଷ ପରେ ମୋ ଜୀବନରେ ଏହି ରୁଚି ଉଇହୁଙ୍କା, ବିଭିନ୍ନ ପ୍ରକାରର ଚଢ଼େଇ ବସା ଏବଂ ବିଳ ଆଦି ଅଧ୍ୟୟନ କରିବାରେ ରୂପାନ୍ତରିତ ହେଲା । ସ୍କୁଲର ପୁଅପିଲାମାନେ ମୁଁ ବହୁତ ଛୋଟଥିବାରୁ ଧମକଉଥିଲେ । ସ୍କୁଲ ପ୍ରିନ୍ସିପାଲ୍‌ଙ୍କ ପୁଅ ଢୁନୁ ରଏର ସବୁଠୁଁ ବେଶୀ ମଜାର କାମ ଥିଲା ମତେ ସ୍କୁଲ ପୁଷ୍କରିଣୀ ଭିତରକୁ ଠେଲି ଦେବା ଓ ଶିଢ଼ିରୁ ତଳକୁ ପେଲିଦେବା । ସ୍କୁଲ କ୍ରିକେଟ୍‌ରେ ମୁଁ ଜଣେ ଭଲ ବୋଲର୍ ଥିଲି, ତେଣୁ ସେଭେନ୍ ଟାଇଲ୍‌ସ'

ଦଳରେ ସାମିଲ ଥିଲି । ପରେ କଲେଜ୍‌ରେ ଏୟାର ଗନ୍ ଫୁଟେଇବାରେ ଓସ୍ତାଦ୍ ହେଇଯାଇଥିଲି – ଗୋଟେ ସମୟଥିଲା ଯେତେବେଳେ ମୁଁ ପୋଲିସ୍ ବାହିନୀରେ ଯୋଗଦେବା କଥା ଭାବୁଥିଲି, – କେବଳ ଏଇ ବନ୍ଧୁକ ଯୋଗୁଁ ।

୧୯୫୮ ମସିହାରେ ଯେତେବେଳେ ମୁଁ ଡୁନ୍ ସ୍କୁଲରେ ଯୋଗଦେଲି ମୋ ଜୀବନରେ ଏକ ଅଚାନକ ପରିବର୍ତ୍ତନ ଆସିଲା । ଆମେ ମାତ୍ର ୫ଜଣ ଝିଅ ଥିଲୁ ୫୦୦ ପୁଅପିଲାଙ୍କ ଭିତରେ, ମୁଁ ଟିକେ ଲାଜୁଆ ସ୍ୱଭାବର ହେଇଥିବାରୁ ସେଠି ଅଣନିଃଶ୍ୱାସୀ ହେଇଯାଉଥିଲି । ମୁଁ ବହୁତ ଥର ବାପାଙ୍କ ସହକର୍ମୀମାନଙ୍କର ନକଲ କରିବାବେଳେ ଧରାପଡ଼ିଛି – ବହୁତ ଅପ୍ରସ୍ତୁତ ଲାଗିଛି ମତେ । ମୋ ବାପା ମତେ ପୁଅମାନଙ୍କସହିତ ପଢ଼ିବାକୁ ଜୋର କଲେ । କାରଣ ସ୍ୱରୂପ ସେ କହିଲେ ଅର୍ଦ୍ଧେକ ବିଶ୍ୱ ପୁରୁଷମାନଙ୍କ ଦ୍ୱାରା ଗଢ଼ା । ତେଣୁ ସେ ଚାହାଁନ୍ତି ଯେ ମୁଁ ସେମାନଙ୍କୁ ବୁଝେ । ସେତେବେଳେ ମୁଁ ପ୍ରକୃତରେ ବୁଝିପାରିନଥିଲି । ମାତ୍ର ଛାତ୍ର ଓ ଶିକ୍ଷକ ଭାବରେ, ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ରାଜନୈତିକ କାରଣରୁ ସୃଷ୍ଟିହେଇଥିବା ଉତ୍ତେଜିତ ପରିସ୍ଥିତିକୁ ବୁଝିବାରେ ମତେ ଏ ଅନୁଭବ ବହୁତ ସାହାଯ୍ୟ କରିଥିଲା । ଏହା ମୋର ଏକ ଅମୋଘ ଅସ୍ତ୍ର ଥିଲା – ମୁଁ ପୁରୁଷଙ୍କୁ ତତ୍‌କ୍ଷଣାତ୍ ଚିହ୍ନିପାରେ ଓ ଠିକଣା ଜବାବ ଦେଇପାରେ, ଲଢ଼ିପାରେ ।

ସ୍କୁଲରେ ମୋର ସର୍ବୋତ୍ତମ ସମୟ କଳା ଓ ସଙ୍ଗୀତରେ ବ୍ୟତୀତ ହେଉଥିଲା । ରଥୀନ୍ ମିତ୍ର ଏବଂ ଶ୍ରୀଯୁକ୍ତ ଦେଶପାଣ୍ଡେ ଆମକୁ ଖୁବ୍ ଭଲ, ଗୁରୁତ୍ୱପୂର୍ଣ୍ଣ ଓ ମର୍ଯ୍ୟାଦାବନ୍ତ ଅନୁଭବ କରଉଥିଲେ । ଚିତ୍ରାଙ୍କନ କ୍ଲାସରେ ଆମକୁ କପି କରିବାକୁ ଦିଆଯାଉନଥିଲା ଏବଂ ଖୋଲା ଆକାଶତଳେ ଚିତ୍ରାଙ୍କନକୁ ଉତ୍ସାହିତ କରାଯାଉଥିଲା । କଳା ପ୍ରତିଯୋଗିତାରେ ମୁଁ ନିୟମିତଭାବରେ ମୋର ସର୍ବଶ୍ରେଷ୍ଠ ଅଙ୍କନ ପାଇଁ ସୁଷମା ଶର୍ମା ଶିଲ୍ଡ ପାଉଥିଲି । ଏବଂ ଏହି ଶିଲ୍ଡ ମୋ ବାପା ମୋ ଭଉଣୀର ସ୍ମୃତିରେ ଆର୍ଟ ସ୍କୁଲକୁ ଦାନ କରିଥିଲେ । ମୋ ଭଉଣୀ ସୁଷମା ସବୁ ବିଷୟରେ ବହୁତ ଭଲ ଥିଲା । ତାକୁ ସମସ୍ତେ ବହୁତ ଭଲ ପାଉଥିଲେ । ତା'ର ବୃକକ କାମ ନ କରିବାରୁ ଷୋଳବର୍ଷ ବୟସରେ ତାର ମୃତ୍ୟୁ ଘଟିଥିଲା । ଏହା ମୋ ଜୀବନରେ ଏକ ବିରାଟ ପରିବର୍ତ୍ତନ ସୃଷ୍ଟି କଲା । ମୁଁ ପଢ଼ାପଢ଼ି ପ୍ରତି ଆଉରି ଦୃଷ୍ଟି ଦେଲିନି ଏବଂ ମୋର ସବୁ ଜିନିଷରୁ ଆଗ୍ରହ ମରିଗଲା । ମୋର ଆଉ କୌଣସି ଜିନିଷରେ ସଉକ ରହିଲାନି । ମୁଁ ଯାହା କଲେ ବି ବାପା ବୁଝିପାରିଲେ । ସେ କେବେ ବି ମତେ ଗାଳି ଦେଉନଥିଲେ । ବରଂ ଆମ ଭାଇଭଉଣୀଙ୍କୁ ସମଦୃଷ୍ଟିରେ ଦେଖୁଥିଲେ । ଏହା ମୋ ପାଇଁ ବହୁତ ମହତ୍ତ୍ୱପୂର୍ଣ୍ଣ ଥିଲା । ମାତ୍ର ମୋ ଭାଇ ମୋ ମା'ଙ୍କ ନୟନ ପିତୁଳା ଥିଲା । ମୋ ବାପା ଜଣେ ଶିକ୍ଷକ ହେଇଥିବାରୁ ସେ ମତେ ଏ ଦିଗରେ ସାହାଯ୍ୟ କଲେ । ସେ କେବେ ମୋର ଆବେଗତାଡ଼ିତ ପ୍ରକୃତି ଓ ଭାବପ୍ରବଣତାକୁ ବାଧା ଦେଇନାହାନ୍ତି । ମୋର ଏ ବେବାଗିଆ ଆଚରଣ ପ୍ରତି ସେ ଏତେ ସହିଷ୍ଣୁ ଥିଲେ ଯେ ଶେଷରେ ତାହା ମୋ ଆବେଗକୁ ଗୋଟିଏ ଦିଗଦର୍ଶନ ଦେଲା । ଡୁନ୍ ସ୍କୁଲର ଦୁଇଜଣଯାକ କଳାର ଶିକ୍ଷକ ସୁଧୀର ଖାସ୍ତାଗିର

ଏବଂ ରଥୀନ ମିତ୍ର ବାପାଙ୍କର ବନ୍ଧୁ ଥିଲେ । ତେଣୁ ସେ ସୃଜନଶୀଳତାର ପଥରେ ସାମାଜିକ ଚାପ ଯେ ବ୍ୟାଘାତ ସୃଷ୍ଟି କରେ ତାହା ବୁଝିଥିଲେ ଏବଂ ଅନେକ ସମୟରେ ସେ ଅତି ଦୃଢ଼ ହସ୍ତରେ ଏହାର ବିରୋଧ କରି ମତେ ସୁରକ୍ଷା ଦେଉଥିଲେ ।

ମୁଁ ଯେତେବେଳେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ମୂର୍ତ୍ତିକଳାର ଛାତ୍ରୀଭାବରେ ଯୋଗଦେଲି ସେତେବେଳେ ଫାଇନ୍ ଆର୍ଟସ୍‌ର ଗ୍ରାଜୁଏସନ୍ ପାଠ୍ୟକ୍ରମ ମୋ ପାଇଁ ଖୁବ୍ ଉପକାରୀ ବୋଲି ଜାଣିପାରିଲି । ପୂଣ୍ୟତୀର୍ଥର ସହର ବାରଣାସୀରେ ପଢ଼ିବାର ଉପକାରିତା ମୁଁ ପରେ ଉପଲବ୍ଧି କରିଲି ଏବଂ ମୁଁ ଖୁସିଯେ ଶାନ୍ତିନିକେତନରେ ଆଦୌ ପଢ଼ିଲିନି ବୋଲି । ମୁଁ ଲକ୍ଷ୍ୟକରିଛି ଶାନ୍ତିନିକେତନରେ ଝିଅମାନେ ସବୁବେଳେ ପୁଅମାନଙ୍କ ପଛରେ ଗୋଡ଼େଇଥାନ୍ତି । ବିଏଚ୍‌ୟୁରେ ଏମିତି ନାହିଁ, ଆମେ ସବୁଜିନିଷର କେନ୍ଦ୍ରରେ, ଝିଅମାନେ ପୁଅମାନଙ୍କଠୁ ଅଧିକ ନେତୃତ୍ୱ ନେଉଥିଲେ । ଏହା ଡୁନ୍ ସ୍କୁଲର ବିପରୀତଧର୍ମୀ । ଧୀରେ ଧୀରେ ମୁଁ ଭାରତର ସାଧାରଣ ଲୋକଙ୍କର ମର୍ଯ୍ୟାଦା ବୁଝିପାରିଲି । ମୋର ସହପାଠୀମାନେ ମଇଳା ପାଇଜାମା ଓ କୁର୍ତ୍ତା ପିନ୍ଧୁଥିଲେ ମଧ୍ୟ ମୋର ପୂର୍ବ ସଂଭ୍ରାନ୍ତ ବନ୍ଧୁମାନଙ୍କ ତୁଳନାରେ କୌଣସି ଗୁଣରେ କମ୍ ନ ଥିଲେ । ଏଇ ପାରମ୍ପରିକ ସହର ସତେଯେପରି ମୋ ପାଇଁ ତା' ରହସ୍ୟର ଦ୍ୱାର ଉନ୍ମୁକ୍ତ କରିଦେଲା ଓ ତାପରେ ଏହା ମୋପାଇଁ ସମଗ୍ର ବିଶ୍ୱର ପ୍ରିୟତମ ସହରରେ ପରିଣତ ହେଇଗଲା । ଏବେ ବି ଏହା ଏମିତି ଏକ ସହର ଯେଉଁଠି ବ୍ୟକ୍ତି ବିଶେଷକୁ ତା'ର ପୋଷାକରୁ କଳାଯାଏ ନାହିଁ । ଏପରିକି ବହୁ ପ୍ରସିଦ୍ଧ ବ୍ୟକ୍ତି ସାଧାରଣ, ସରଳ ଜୀବନ ଯାପନ କରନ୍ତି । ସାଧୁସନ୍ଥ, ମଣିକର୍ଣ୍ଣିକା ଘାଟ, ବନ୍ୟାପାଣି, ଜୀବଜନ୍ତୁ, ନଦୀରେ ଭାସୁଥିବା ମୃତଶରୀର, ସାରନାଥ, ସୋରିଷ ଖେତ, ଛୋଟଛୋଟ ଚୁଲିରୁ ଉଠୁଥିବା ଧୂଆଁ କୁଣ୍ଡଳୀ, ରଙ୍ଗ ବେରଙ୍ଗ ଚୁଡ଼ି, ସିଲ୍କ, କାଠ ତିଆରି ଜିନିଷ, ଚାଟ୍ ଖାଇବା ପର୍ବ ସବୁଯେମିତି ମୋ ଅସ୍ତିତ୍ୱର ଅଭିନ୍ନ ଅଙ୍ଗ ହୋଇଉଠିଲା । ବହୁ ଘାଟ ଏବଂ ସଂକୀର୍ଣ୍ଣ ଗଳିଗୁଡ଼ିକରେ ବହୁବର୍ଷର ପ୍ରାଚୀନ, ଜୀବନ୍ତ, ଗ୍ରାମ୍ୟ ଏବଂ ସ୍ୱାଭାବିକ ଜୈବିକ କାର୍ଯ୍ୟକଳାପ ମତେ ବହୁତ ସ୍ୱାଭାବିକ ମନେହେଲା । ମୋର ମନେପଡୁଛି ୧୯୭୧ ମସିହାର ପ୍ରଥମ ବିଦେଶଯାତ୍ରା, ମତେ ଲଣ୍ଡନ ଆଦୌ ଭଲଲାଗିନଥିଲା । କାରଣ ରଙ୍ଗ ଓ ସୂର୍ଯ୍ୟକିରଣ ବ୍ୟତୀତ ଏହା ଖୁବ୍ ବିରକ୍ତିକର ମନେହେଇଥିଲା ।

ଶୀତକାଳୀନ ଅବସରପରେ କ୍ଲାସ୍‌ରୁମ୍‌ରେ ହିଁ ମୋର ବଲବୀର କଟ୍ଟଙ୍କ ସହିତ ପ୍ରଥମ ଦେଖା । ମତେ ଖୁବ୍ ରାଗ ଲାଗିଲା ଯେ ମୋ ଛଡ଼ା ଅନ୍ୟକେହି ଜଣେ ଦୃଷ୍ଟି ଆକର୍ଷଣ କରିବାକୁ ଚେଷ୍ଟା କରୁଛି । ମୁଁ ବଡ଼ କଠୋର ଭାବରେ ପଚାରିଲି ଯେ ସେ କ'ଣ ଜଣେ ନୂଆଛାତ୍ର । ସେ ଭଦ୍ରଭାବରେ କହିଲେ ଯେ ସେ ଜଣେ ଶିକ୍ଷକ । ବଲବୀର ସିଂ କଟ୍ଟ ବିଏଚ୍‌ୟୁରେ ଜଣେ ଯୁବଶିକ୍ଷକଭାବେ ୧୯୬୬ ମସିହାରେ ମୂର୍ତ୍ତିକଳା ବିଭାଗରେ ଯୋଗ ଦେଇଥିଲେ । ସମଗ୍ର କଲେଜ ତାଙ୍କ ପଛରେ ଅର୍ଥାତ ଚାରିପଟରେ ଘୂରୁଥିଲା । ସେ ତାଙ୍କର ଉଦାରତା, ସାହାଯ୍ୟ କରିବା ମନୋବୃତ୍ତି ତଥା କର୍ମତତ୍ପରତା ପାଇଁ ସବୁଠାରୁ

ଅଧିକ ଲୋକପ୍ରିୟ ଶିକ୍ଷକ ହେଇଯାଇଥିଲେ । ସେ ପ୍ରଚୁର ଚାଲୁଥିଲେ, ରାତିରେ କାମ କରୁଥିଲେ, କ୍ଲାସର ଟାଇମ୍‌ଟେବୁଲ୍ କଡ଼ାକଡ଼ିଭାବେ ମାନୁନଥିଲେ । ଆମମାନଙ୍କ ମଧ୍ୟରୁ ଅନେକ ଏକାଠି ବୁଲୁଥିଲେ ଏବଂ ଗଙ୍ଗାରେ ବେଶ୍ ନୌକା ବିହାର କରୁଥିଲେ । ମୁଁ ତାଙ୍କୁ ୧୯୭୧ ମସିହା ଅଗଷ୍ଟ ୧୪ ତାରିଖରେ ବିବାହ କଲି ଏବଂ ସେ ମୋର ସବୁଠାରୁ ପ୍ରିୟ ଭ୍ରମଣ ସଙ୍ଗୀ, ଦୁଃସାହସୀ ଯାତ୍ରୀ ତଥା ଶାନ୍ତ ସ୍ୱଭାବର ବ୍ୟକ୍ତି ଥିଲେ ।

ମୁଁ ମୋର ପ୍ରଥମ କାଠର ଖୋଦନ କାର୍ଯ୍ୟ ତାଙ୍କ ସହିତ କଲି । ତାଙ୍କର ମାର୍ବଲ ମୂର୍ତ୍ତିକଳା ଆମମାନଙ୍କୁ ଚମକୃତ କରୁଥିଲା । ସେ କ'ଣ ତିଆରି କରୁଥିଲେ ଆମେ ମୋଟା ମୋଟି ବୁଝିପାରୁନଥିଲୁ କହିଲେ ଚଳେ, କିନ୍ତୁ ତାଙ୍କର ଖୋଦନ ଶୈଳୀ ବଡ଼ ପ୍ରଭାବଶାଳୀ ଥିଲା । ମୁଁ ଖୋଦନ କାର୍ଯ୍ୟରେ ବେଶ୍ ଚଞ୍ଚଳ ଥିଲି । ମୋର ରକ୍ତ ଝରୁଥିବା ଆଙ୍ଗୁଠି, ଘୋଳେଇ ପଡୁଥିବା ହାତ ସତ୍ତ୍ୱେ ମୁଁ ଛଳନା କରୁଥିଲି ଯେ କଲେଜ ପୁଅଙ୍କ ତୁଳନାରେ ମୁଁ ଆରାମରେ କରିପାରେ ଓ ଏହା ପ୍ରକୃତରେ ସହଜ । ଶେଷରେ ସେ କାମରେ ମୁଁ ଏତେ ଅଭ୍ୟସ୍ତ ହେଇଗଲି ଏହା ସତରେ ମୋ ପାଇଁ ସହଜ ହେଇଗଲା । ମୁଁ ହୃଦୟଙ୍ଗମ କଲି ଯେ ମୁଁ ମୂର୍ତ୍ତିକଳା କରିବା କଥା, କାରଣ ଏହା ମତେ ଶାରୀରିକ ଓ ମାନସିକ ସନ୍ତୋଷ ଦେଉଥିଲା । ମୁଁ ଯାହା ଅନ୍ୱେଷଣ କରୁଥିଲି ତା ହେଉଛି ପୂର୍ଣ୍ଣଭାବରେ କାର୍ଯ୍ୟପ୍ରତି ଆତ୍ମସମର୍ପିତ ଭାବ । ମୋର ବିଭାଗୀୟ ମୁଖ୍ୟଙ୍କର ଘୋର ଆପତ୍ତି ସତ୍ତ୍ୱେ ମୁଁ ମୂର୍ତ୍ତିକଳା ବିଷୟ ଗ୍ରହଣ କଲି । ତାଙ୍କ କହିବା ଅନୁସାରେ ଭାରତୀୟ ଝିଅମାନେ ଏଥିପାଇଁ ସୃଷ୍ଟି ହେଇନାହାନ୍ତି । ମାତ୍ର ମୁଁ ନିଶ୍ଚିତ ଥିଲି ଯେ ମୁଁ ତାଙ୍କୁ ଭୁଲ୍ ବୋଲି ପ୍ରମାଣିତ କରିବି ! ୧୯୯୭ରେ ଯେଉଁ ଦିନ ମୋର ୨୦ ଫୁଟ ଉଚ୍ଚତା ବିଶିଷ୍ଟ ପଣ୍ଡିତ ନେହେରୁଙ୍କର ବ୍ରୋଞ୍ଜ ମୂର୍ତ୍ତି ଜୱାହର ଭବନ (ନିଉଦିଲ୍ଲୀ)ଠାରେ ଉଦ୍‌ଘାଟିତ ହେଲା ସେହିଦିନ ସେ ସମସ୍ତ ପୁରୁଷ ଜନିତ ଅହଂକାର ଥିବା ପୁରୁଷକୁ ମୁଁ ପଛରେ ପକେଇପାରିଥିବାର ସନ୍ତୋଷ ପାଇଥିଲି । ମୁଁ ଯେଉଁଥିପାଇଁ ସଂଘର୍ଷ କରିଛି – ତା'ସମାନତା, ଝିଅମାନଙ୍କ ପାଇଁ ସମାନ ସୁଯୋଗ ନିମନ୍ତେ ସଂଘର୍ଷ ।

ମୁଁ ପୁଅମାନଙ୍କୁ ସାହାଯ୍ୟ କରିଛି – ମାତ୍ର କୌଣସି ପରିସ୍ଥିତିରେ ବି ସେମାନଙ୍କଠୁ ସାହାଯ୍ୟ ନେଇନାହିଁ । ମୁଁ ଭୋର ୫ଟାରେ ଉଠେ ଏବଂ ସାରାବର୍ଷ ଥଣ୍ଡାପାଣିରେ ଗାଧେଇଥାଏ, ଆଙ୍କିବା ପାଇଁ ବା ପ୍ରକୃତି ଅଧ୍ୟୟନ କରିବାପାଇଁ ସାଇକେଲ୍‌ରେ ବାହାରିପଡ଼େ । ଯେ କୌଣସି ପ୍ରକାରେ ହେଉନା କାହିଁକି ମତେ ଶୀଘ୍ର ଶିକ୍ଷା ଶେଷ କରିବାକୁ ପଡ଼ିବ ଓ ଭଲ କରିବାକୁ ପଡ଼ିବ । ଏମ୍.ଏସ୍.ବିଶ୍ୱବିଦ୍ୟାଳୟ (ବରୋଦା)ରେ ମୁଁ ସାରା ରାତି ବିଭାଗରେ ରହୁଥିଲି ଏବଂ ନିଜର ଯେତେ ପ୍ରକାରର ଝଳେଇବା, ତରଳେଇବା ଆଦି ଛାଞ୍ଚ କାମ ମୁଁ ନିଜେ କରୁଥିଲି । ମୁଁ ପ୍ରତ୍ୟେକଙ୍କ ସମ୍ମୁଖରେ ପ୍ରମାଣ କରିବାକୁ ଚାହୁଁଥିଲି ଯେ ମୋ ବାପାଙ୍କର ମୋ ଉପରେ ଥିବା ବିଶ୍ୱାସ ଯଥାର୍ଥ ଥିଲା । ମୁଁ ଆମ ପରିବାରର ପ୍ରଥମ ଝିଅ ଥିଲି ଯିଏ କି ହଷ୍ଟେଲ ଯାଇଥିଲା । ଛାତ୍ରୀଭାବରେ କଠିନ ପରିଶ୍ରମ ଯୋଗୁ ମୁଁ ବେଶ୍ ପ୍ରସିଦ୍ଧ ହେଇଯାଇଥିଲି । ପୁଅମାନଙ୍କ ସହିତ ସମକକ୍ଷ ବୋଲି ପ୍ରମାଣ କରିବାପାଇଁ ଆମେ

ହଷ୍ଟେଲ ବାହାରେ ବିଳମ୍ବିତ ସମୟ ପର୍ଯ୍ୟନ୍ତ ରହିବାକୁ ସ୍ଥିର କଲୁ । ମୁଁ ରାତି ୮ଟା ପର୍ଯ୍ୟନ୍ତ କାମ କରେ ତା'ପରେ ବିଳମ୍ବିତ ସମୟରେ ନୌକା ବିହାର ପାଇଁ ଯାଏ । କାରଣ ସୂର୍ଯ୍ୟାସ୍ତପରେ ଆମେ ଘାଟର କଳା ଓ ଧୂସର ରଙ୍ଗର ଅଧ୍ୟୟନ କରିବାକୁ ଚାହୁଁଥିଲୁ ।

ବାରାଣସୀର ଘାଟଗୁଡ଼ିକ ବି ବିଚିତ୍ର ଥିଲା । ମୁଁ ସେଠି ବହୁତ ଉଦାସ ଅନୁଭବ କରୁଥିଲି । ଏଇଥିପାଇଁ ନୁହଁ ତ ଯେ ସେଠି ବହୁ ଦିନର ପୁରୁଣା ଆତ୍ମାସବୁ ଘୂରିବୁଲୁଥିଲେ ? ଏଠି ଏବଂ ନାଳନ୍ଦାରେ ମୁଁ ଅନୁଭବ କରେ ସତେଯେପରି ମୁଁ ସେଇ ପ୍ରାକ୍ ଶତାବ୍ଦୀର ଲୋକମାନଙ୍କ ସହିତ ସଂପର୍କ ସ୍ଥାପନ କରିପାରୁଛି । ନିଶ୍ଚୟ ବାରାଣସୀ ଓ ଏହାର ନଦୀତଟ ଏତେ ଦୀର୍ଘକାଳଧରି ସ୍ଥାୟୀରହିବା ମୂଳରେ କିଛି କାରଣ ଥିବ । ବାରାଣସୀରେ ପାଞ୍ଚବର୍ଷର ରହଣି ଜୀବନପ୍ରତି ମୋର ଦୃଷ୍ଟିକୋଣ ସଂପୂର୍ଣ୍ଣ ବଦଳେଇ ଦେଲା । ପ୍ରତ୍ୟେକ ଦିନ ଅସଂଖ୍ୟ ଶବ ଦେଖି ଦେଖି ମୃତ୍ୟୁ ସହିତ ଆମର ଘନିଷ୍ଠତା ହେଇଗଲା, ବନ୍ଧୁ ସଦୃଶ । ଭୌତିକ ଜଗତର ନଶ୍ୱରତା ମଧ୍ୟ ଧ୍ରୁବ ସତ୍ୟ ମନେହେଲା । ମୋ ନିକଟରେ ଗୋଟିଏ ସତ୍ୟ ବା ବିଷୟ ସ୍ପଷ୍ଟ ହେଇଉଠିଲା ଯେ ଆମେ ସମସ୍ତେ ଗୋଟିଏ ଗୋଟିଏ ଲକ୍ଷ୍ୟନେଇ ଏ ପୃଥିବୀକୁ ଆସିଥାନ୍ତି, ପୂର୍ଣ୍ଣହେବାମାତ୍ରେ ଫେରିଯାନ୍ତି ।

ଏ ସହରରେ ପାଞ୍ଚବର୍ଷ ମତେ ଦୃଢ଼ରୁ ଦୃଢ଼ତର ଓ କଠିନରୁ କଠିନତର ହେବାକୁ ଶିଖେଇଛି । ମୂର୍ତ୍ତିକଳାର ଜଣେ ଛାତ୍ରୀ ଭାବରେ ବିଶେଷଭାବେ ଓଜନ ଓ ଆକୃତି ସମ୍ବନ୍ଧିତ ଭୌତିକ ବାଧାବିଘ୍ନକୁ ଅତିକ୍ରମ କରିବାପାଇଁ ମୁଁ ନିଜେ ନିଜର ବିବିଧ କୌଶଳ ଅବଲମ୍ବନ କଲି । ପରିଣତିରେ ମତେ ହିଁ ବିଜୟ ହାସଲ କରିବାକୁ ହେବ । ଯେତେବେଳେ ବି ନ୍ୟାୟ ସମ୍ବନ୍ଧିତ କୌଣସି ସମସ୍ୟା ଆସେ ସେତେବେଳେ ପୁରୁଷଙ୍କର ସଶକ୍ତ ପ୍ରାଚୀର ବିରୁଦ୍ଧରେ ଲଢ଼ିବାକୁ ହୁଏ । ପୁରୁଷମାନେ ସମସ୍ତ ନୀତିନିୟମ ଝିଅମାନଙ୍କ ପାଇଁ ପ୍ରଣୟନ କରିଛନ୍ତି ଓ ଆମେ ସେ ସମସ୍ତକୁ ପ୍ରତିରୋଧ କରୁଛୁ । ମୋର ଲକ୍ଷ୍ୟ ଥିଲା ସ୍ପଷ୍ଟ – ମୋର ମୂର୍ତ୍ତିକଳା ପଥରେ ଯେ କୌଣସି ପ୍ରକାର ବାଧା ଆସିଛି, ମୁଁ ତାକୁ ଆଖି ବନ୍ଦକରି ନିକ୍ଷେପ କରିଛି । ମୁଁ ଭାଗ୍ୟବାନ୍ ଥିଲି ଯେ ମୂର୍ତ୍ତି କଳାର କେତେଜଣ ଶିକ୍ଷକ ଅତ୍ୟନ୍ତ ଉଦାର ଓ ପ୍ରୟୋଗବାଦୀ ଥିଲେ ଏବଂ ମୁଁ ଏହାର ଯଥାର୍ଥ ସଦୁପଯୋଗ କରିଛି । ମୁଁ ସବୁ ଟେକ୍‌ନିକ୍‌ରେ କୁଶଳୀ ହେବାରେ ବିଶ୍ୱାସ କରେ ଯାହାଫଳରେ ପରବର୍ତ୍ତୀ ସମୟରେ ଆତ୍ମବିଶ୍ୱାସ ରହିବ । ଏହାପରେ କୌଣସି ବି ସମସ୍ୟା ଗୋଟିଏ ବାଧା ହୋଇ ଦେଖାଦେଇନାହିଁ । ଏହା ମୋର ଏକ ଅଭ୍ୟାସରେ ରୂପାନ୍ତରିତ ହେଇଗଲା । ମୁଁ ଭାରତରେ ହେଉ କି ବିଦେଶରେ, ଅନ୍ୟାୟ ସହ୍ୟ କରିପାରେନା । ୧୯୯୧ରେ ଆମେରିକାରେ ଏବଂ ୧୯୯୯ରେ ଅଷ୍ଟ୍ରେଲିଆରେ ମୁଁ କୌଣସି ପ୍ରକାର ସାଲିସ୍ କଲିନାହିଁ ବରଂ ଆମର ବିଦେଶୀ ତତ୍ତ୍ୱାବଧାରକଙ୍କ ନିକଟରେ ପରିଷ୍କାର କରିଦେଲି ଯେ ଭାରତୀୟ ମହିଳାମାନେ ଶିକ୍ଷିତ ଏବଂ ନିଜର ଅଧିକାର ସଂପର୍କରେ ସଚେତନ ତଥା ସେମାନେ ଏକ ଗଣତାନ୍ତ୍ରିକ ପ୍ରଣାଳୀର ଏକ ଅଙ୍ଗ । ମୁଁ ମଧ୍ୟ ଜଣେ ବିଶିଷ୍ଟ ଜାତୀୟବାଦୀ ବ୍ୟକ୍ତି ହେଇଗଲିଣି । ଭାରତୀୟଙ୍କ ବିଷୟରେ ଅଥବା ମୋ ଦେଶ

ସଂପର୍କରେ କୌଣସି ଅପମାନଜନକ ମନ୍ତବ୍ୟ ଶୁଣିଲେ ମୁଁ ଠିଆହେଇ ବିରୋଧ କରେ । ଏବଂ ବର୍ଣ୍ଣକୁ ଶ୍ରେଷ୍ଠତାର ନିଦର୍ଶନ ବୋଲି ମୁଁ ଆଦୌ ସ୍ୱୀକାର କରେ ନାହିଁ । ଭାରତ ତଥା ଭାରତ ବାହାରେ, ମହିଳାମାନେ ଅଧିକ ନିର୍ଭୀକ ଏବଂ ସଚ୍ଚୋଟ ବୋଲି ମୁଁ ମନେକରେ । ଅଧିକାଂଶ ପୁରୁଷ ସାଲିସ୍ କରିନିଅନ୍ତି ଏବଂ ଉଚ୍ଚାକାଂକ୍ଷୀ । ତାଙ୍କ ମଧ୍ୟରେ ନିଜକୁ ଅସୁରକ୍ଷିତ ମନେକରିବାର ପ୍ରବଣତା ଅଧିକ ଦେଖାଯାଏ । ପ୍ରକୃତରେ ପୁରୁଷମାନେ ହିଁ ନିଜକୁ ସମସ୍ତ ତଥାକଥିତ ଦୋଷତ୍ରୁଟିରୁ ମୁକ୍ତ କରିବା ନିମନ୍ତେ ପ୍ରକୃତ 'ଶିକ୍ଷା'ର ଅପେକ୍ଷା ରଖନ୍ତି । ମୁଁ ସର୍ବଦା ଯୌତୁକ ପ୍ରଥା ଏବଂ ଜନାରଣ୍ୟ ଦେଶରେ ପିଲାଜନ୍ମ କରିବା ବିରୋଧୀ । ମୋର ଯୌତୁକ ସଂପର୍କିତ ନିଷ୍ପତ୍ତି ପାଇଁ ମୁଁ ଅନେକ ସମସ୍ୟାର ସମ୍ମୁଖୀନ ହୋଇଛି, କିନ୍ତୁ ଯାହା ହେଲେ ବି ମୋ ଜୀବନ ମୋର । ମୁଁ ସିଦ୍ଧାନ୍ତ ନେଲି ଯେ ମୁଁ ମୋ ପାଇଁ ଅର୍ଥ ଉପାର୍ଜନ କରିବି । ମୁଁ ଖରାପ ବ୍ୟବହାର ସହ୍ୟ କରିପାରିବି ନାହିଁ । ତେଣୁ ମୁଁ ମୋର ଶ୍ୱଶୁରାଳୟ ସବୁଦିନପାଇଁ ଛାଡ଼ି ଚାଲିଆସିଲି ଓ ସେଥିପାଇଁ ମୁଁ କେବେ ଅନୁତାପ କରିନାହିଁ । ମୁଁ କେବେ ବି ସ୍ୱାଧୀନତା ଏବଂ ମାନସିକ ମର୍ଯ୍ୟାଦାବୋଧସହ ଆପୋଷ କରିପାରିନି । ଏହି ସମୟର ସବୁଠୁଁ ଭଲ କଥା ଥିଲା ଯେ ମୁଁ ଯାହା ସ୍ୱପ୍ନରେ ବି ଭାବିନଥିଲି ତା'ଠୁଁ ଅଧିକ ସଫଳତାକୁ ମୁଁ ପାଇଥିଲି । ବିଭିନ୍ନ ବିଷୟର ଓ ରୁଚିର ବନ୍ଧୁ ପାଇଥିବା ଯୋଗୁ ମୁଁ ମଧ୍ୟ ସୌଭାଗ୍ୟଶାଳୀ ଥିଲି । ମୁଁ ମୋର ମୂର୍ତ୍ତିକଳା ସହିତ ଗଭୀର ଭାବରେ ଅନ୍ତରଙ୍ଗ ଥିଲି । ମାତ୍ର ଏହାର ବିକାଶ, ଚାରିପଟର ପରିବେଶ ଉପରେ ନିର୍ଭରଶୀଳ । ଲୋକମାନଙ୍କପ୍ରତି ମୋର ତାତ୍‌କ୍ଷଣିକ ପ୍ରତିକ୍ରିୟା, ମୋ ଚତୁର୍ଦ୍ଦିଗରେ ଥିବା ପ୍ରାକୃତିକ ଦୃଶ୍ୟ ତଥା ଆବେଗଠାରୁ ମୋ କୃତିରେ ସ୍ୱତଃସ୍ଫୂର୍ତ୍ତତା ଆସେ ।

ମୋର ସ୍ନାତକ ଓ ବିବାହପରେ ମୁଁ ବଲବୀର ସିଂହ କଟ୍ଟଙ୍କ ସହିତ ଲଣ୍ଡନ ଗଲି । ସେ ସମ୍ମାନଜନକ ରୟାଲ୍ କଲେଜ ଅଫ ଆର୍ଟରେ ମୂର୍ତ୍ତିକଳାଉପରେ ଅଧ୍ୟୟନ କରୁଥିଲେ । ସେ ସମୟ ଆମଦୁହିଁଙ୍କର ଅଧ୍ୟୟନ ନିମନ୍ତେ ପ୍ରକୃଷ୍ଟ ସମୟ ଥିଲା । ଆମେ ୟୁରୋପର ବହୁ ଐତିହାସିକ ସ୍ଥାନ ଏବଂ ସଂଗ୍ରହାଳୟ ବୁଲି ଦେଖିଲୁ ଏବଂ ସମସ୍ତ ପ୍ରକାରର କଳାକାରମାନଙ୍କ ସହିତ ଆଲୋଚନା କଲୁ । ଆମେ ଭାରତକୁ ୧୯୭୩ ମସିହାରେ ଭୂଭାଗରେ ବସ୍‌ଯୋଗେ କାବୁଲ୍‌ପର୍ଯ୍ୟନ୍ତ ଏବଂ ତାପରେ ଉଡ଼ାଜାହାଜରେ ଫେରିଲୁ । ଏ ଯାତ୍ରା ମୋ ସ୍ମୃତିରେ ଚିରକାଳ ରହିବ – ଇସ୍ତାନବୁଲ୍, ଇସ୍ପାହାନ, କାନ୍ଦହାର ଏବଂ କାବୁଲ ପାଖାପାଖି ସ୍ଥାନର ରହଣି ମୋ ପାଇଁ ଏକ ସ୍ମରଣୀୟ ଅନୁଭୂତି । ମୁଁ ଆଫଗାନୀମାନଙ୍କର ଆତିଥ୍ୟରେ ଅତୀବ ମୁଗ୍ଧ ହେଇଛି, ଏହା ୟୁରୋପୀୟମାନଙ୍କ ଆତିଥେୟତାରେ କାର୍ପଣ୍ୟତାଠାରୁ କେତେ ପୃଥକ ସତେ ! ଏବେ ବି ମତେ ଲାଗେ ଆଫଗାନୀମାନେ ନିଃସନ୍ଦେହରେ ସବୁଠୁଁ ବେଶି ସୁନ୍ଦର । ଦୀର୍ଘବର୍ଷର ସ୍ୱାଦହୀନ ଖାଦ୍ୟପରେ ଆଫଗାନିସ୍ଥାନରେ ଆମେ ପ୍ରକୃତରେ ସ୍ୱାଦିଷ୍ଟ ଖାଦ୍ୟ ଖାଇଲୁ । ସଂପ୍ରତି ସେ ଅଞ୍ଚଳରେ ହେଉଥିବା ଯୁଦ୍ଧ ମତେ ସତରେ ଦୁଃଖିତ କରୁଛି ।

ଲଣ୍ଡନରୁ ଫେରିବାପରେ ମୁଁ ଏମ୍.ଏସ୍.ବିଶ୍ୱବିଦ୍ୟାଳୟ, ବରୋଦାରେ କଳାବିଭାଗରେ ସ୍ନାତକୋତ୍ତର ଅଧ୍ୟୟନ ପାଇଁ ଗଲି । ପ୍ରଫେସର ମହେନ୍ଦ୍ର ପାଣ୍ଡ୍ୟାଙ୍କ ତତ୍ତ୍ୱାବଧାନରେ ପଢ଼ିଲି । ମୁଁ ତାଙ୍କର କାଠର ମୂର୍ତ୍ତିକଳା ଦେଖିଲି ଏବଂ ତାଙ୍କର କୃତିରେ ଥିଲା ମୌଳିକତାର ସ୍ପର୍ଶ । ମୋର ତାଙ୍କ ସହିତ ଖୁବ୍ ଭଲ ସଂପର୍କ ଗଢ଼ିଉଠିଲା ଏବଂ ତାଙ୍କଠୁଁ ଅନେକ କଥା ଶିଖିଲି । ୧୯୭୪ ମସିହାରେ ମୋ ବାପାଙ୍କ ମୃତ୍ୟୁପରେ ହଠାତ୍ ମୁଁ ଏକାକୀତ୍ୱ ଅନୁଭବ କଲି ଆଉ ସେତେବେଳେ ମୁଁ କପର୍ଦ୍ଦକ ଶୂନ୍ୟ ଥିଲି । ମାତ୍ର ମୁଁ କାହାଠୁଁ ଟଙ୍କା ନେବାକୁ ଚାହିଁଲିନି । ସେ ମୋର ଅହଂକୁ ଆଘାତ ନଦେଇ ମତେ ସାହାଯ୍ୟ କଲେ । ଯେଉଁଥିରୁ ମୁଁ ବହୁ ଅର୍ନ୍ତଃ ଏବଂ ବାହ୍ୟ ଦ୍ୱନ୍ଦ୍ୱକୁ ସମ୍ମୁଖୀନ ହେବାର ଶକ୍ତି ପାଇଲି । ବରୋଦାରେ ମୋର ଆରମ୍ଭ ଦିନଗୁଡ଼ିକରେ କେତେକ ସମୟରେ ମତେ କ୍ଷୁଧା ସହିତ ସଂଘର୍ଷ କରିବାକୁ ପଡ଼ିଛି ମାତ୍ର କୌଣସି ପ୍ରକାର ସାଲିସ ନକରି ମୁଁ ଉଧୁରି ପାରିଛି । ଏହି ସମୟ ମୋପାଇଁ ଏକ ଚରମ ପରୀକ୍ଷାର ସମୟ ଥିଲା । ମାତ୍ର ମୁଁ ଅନୁଭବ କରେ ଯେ ମୁଁ ଏ ସମସ୍ତ ବିପଦକୁ ସୁରୁଖୁରୁରେ ଅତିକ୍ରମ କରି ପାରିଛି । ମାତ୍ର ଦିନେ (ଘୋର ହତାଶା ଭିତରେ), ଦେହରେ କମ୍ ହିମୋଗ୍ଲୋବିନ୍ ଥିବାହେତୁ ଯେତେବେଳେ କ୍ଲାନ୍ତ ଲାଗୁଥାଏ, ଦେହହାତ ବିନ୍ଧୁଥାଏ, ପାଖରେ ଔଷଧ କି ଖାଦ୍ୟପାଇଁ ଟଙ୍କାପଇସା ନଥାଏ ସେତେବେଳେ ମୁଁ ରାସ୍ତା ମଝିକୁ ଚାଲିଆସି ଠିଆହେଲି ଏଇ ଆଶାରେ ଯେ କୌଣସି ଟ୍ରକ୍ ମୋ ଉପରେ ମାଡ଼ିଯିବ । ସେମିତି କିଛି ଘଟିଲାନି, ଆଉ ମୁଁ ହଷ୍ଟେଲ୍‌ରେ ପହଞ୍ଚିବାପରେ ମତେ ବହୁତ ଅପରାଧୀ ଲାଗିଲା । ଯେତେବେଳେ ମୁଁ ମୋ ମା' ଓ କୁନିକୁନି ଝିଅାରୀଙ୍କ କଥା ଭାବିଲି ମୁଁ କଇଁ କଇଁ ହେଇ କାନ୍ଦିଲି ଏବଂ ପ୍ରତିଜ୍ଞା କଲି ଆଉ କେବେ ଆତ୍ମହତ୍ୟା କରିବାର ପ୍ରୟାସ କରିବିନି ।

ମୁଁ ବହୁତ ମୂର୍ତ୍ତି, ମୃତ୍ୟୁପରର ଜୀବନ ଅଥବା ପ୍ରୟାଣ ଯାତ୍ରା ଉପରେ କରିଛି । ସଫଳତାର ସୋପାନ କେଉଁ ପର୍ଯ୍ୟନ୍ତ ? (ନ୍ୟାସ୍‌ନାଲ୍ ଗ୍ୟାଲେରୀ ଅଫ୍ ମଡର୍ଣ୍ଣ ଆର୍ଟ କଲେକ୍‌ସନ୍) ତନ୍ମଧ୍ୟରୁ ଅନ୍ୟତମ । ମୁଁ 'ସିକ୍ରେଟ୍ ଲାଇଫ୍ ଅଫ୍ ପ୍ଲାଣ୍ଟସ୍ ବହିଟି ପଢ଼ିଲି, ଏହା ମଧ୍ୟ ମତେ ବହୁତ ସାହାଯ୍ୟ କଲା । ମୁଁ ଘଣ୍ଟା ଘଣ୍ଟା ଲଳିତ କଳା ବିପରୀତରେ ଥିବା କମାଟୀ ବାଗ୍‌ରେ ବିତଉଥିଲି । କେତେଗୁଡ଼ିଏ ଲମ୍ବାଲମ୍ବା ଗଛ ମୋର ଘନିଷ୍ଠ ବନ୍ଧୁ ହେଇ ଉଠିଥିଲେ ଏବଂ ଏବେ ବି ଯେବେ ବରୋଦା ଯାଏଁ, ସେଇ ସମାନ ରାସ୍ତାରେ ଚାଲେ ଓ ସେମାନଙ୍କ ସହିତ କିଛି ସମୟ ବିତାଏ ।

ସେମିତି ଏକ ଘଟଣାରେ ମୁଁ ଗୋଟେ କୁଡ଼ିଆ ଆଡ଼େ ଚାହିଁରହିଥିଲି ଓ ମୋର କୃତିରେ ଗୋବରକୁ ମାଧ୍ୟମଭାବେ ବ୍ୟବହାର କରିବା କଥା ଆବିଷ୍କାର କଲି । ମୁଁ ଗୋବର, କାଠ ଓ ଦଉଡ଼ି ସାହାଯ୍ୟରେ ଅନେକ କୃତି ନିର୍ମାଣ କରିଛି । ଏହା ଏକ ସୁନ୍ଦର, ଚମତ୍କାର ଆବିଷ୍କାର । ମୁଁ ଏଗୁଡ଼ିକର ସଂରକ୍ଷଣ ପାଇଁ ଦେଶୀ, ଘରୋଇ ପଦାର୍ଥ ଯେମିତି ନିମତେଲ, ତେନ୍ତୁଳି, ବିଭିନ୍ନ ପ୍ରକାରର ତନ୍ତୁ ବ୍ୟବହାର କଲି ଓ ଏହା କରିବାରେ ମତେ ପ୍ରଚୁର ଆନନ୍ଦ ମିଳୁଥିଲା । ସେ କୃତିଗୁଡ଼ିକ ଏବେ ବି ମୋ ସଂଗ୍ରହାଳୟରେ ୨୪ ବର୍ଷ ପରେ ମଧ୍ୟ ଅକ୍ଷତ

ଅବସ୍ଥାରେ ଅଛି । ୧୯୭୮ ମସିହାରେ କସୌଲୀରେ ଆୟୋଜିତ କଳାକାରମାନଙ୍କ ଏକ ସମ୍ମିଳନୀରେ ନିମନ୍ତ୍ରିତ ବିଶେଷଜ୍ଞଗଣ ମୋର ଗୋବରଦ୍ୱାରା ନିର୍ମିତ କୃତି ସଂପର୍କରେ ଅବଗତଥିବା ସତ୍ତ୍ୱେ ଯଥେଷ୍ଟ ପରେ ଆରମ୍ଭ କରିଥିବା କମ୍ ବୟସର କଳାକାରମାନଙ୍କୁ ଗୋବରକୁ ମୂର୍ତ୍ତିକଳାର ମାଧ୍ୟମରୂପେ ଆବିଷ୍କାର କରିଥିବା ଗୌରବ ଦାନକଲେ । ଏହା ସେମାନଙ୍କ ପକ୍ଷରେ ଅନୈତିକ ଥିଲା ଓ ମତେ ବହୁତ ଆଘାତ ଦେଇଥିଲା । କିନ୍ତୁ ଏହା ମୋ ଉତ୍ସାହରେ ଭଟ୍ଟା ସୃଷ୍ଟିକରୁ ମୁଁ ଚାହୁଁନଥିଲି । ପରେ ମୁଁ ବହୁତ ପେପର୍ ମସୀ କାମ କରିଛି, ତା'ମଧ୍ୟରୁ କିଛିଟା ଆଫ୍ରିକା, ସ୍ୱିଡେନ୍ ଏବଂ ଜାପାନରେ ଉଚ୍ଚ ପ୍ରଶଂସିତ ହୋଇଥିଲା ଏବଂ ବର୍ତ୍ତମାନ ଦିଲ୍ଲୀର ଏନ୍‌ଜିଏମ୍ଏ ସଂଗ୍ରହରେ ଶୋଭାପାଉଛି । ମୋର ପ୍ରଥମ ଗୁରୁତ୍ୱପୂର୍ଣ୍ଣ ମାର୍ବଲ ଖୋଦେଇ କ୍ୟାମ୍ପ ବରୋଦାରେ ଇଣ୍ଡୋ–ଜାପାନିଜ୍ ଆନୁକୂଲ୍ୟରେ ୧୯୮୮ରେ ଏବଂ ୧୯୮୯ରେ ଯୁଗୋସ୍ଲୋଭିୟାରେ ହେଇଥିଲା । ଏହା ମଧ୍ୟ ସେତିକିବେଳେ ଘଟିଥିଲା ଯେତେବେଳେ ଭାରତ ସରକାର ବିଭିନ୍ନ ଦେଶରେ ପଣ୍ଡିତ ନେହରୁଙ୍କ ଆଠଟି ଆବକ୍ଷ ମୂର୍ତ୍ତି ନିର୍ମାଣର ଦାୟିତ୍ୱ ମତେ ଦେଇଥିଲେ ।

୧୯୭୦ରେ ବଲବୀର କଛ ଓ ମୁଁ ଉଭୟ ବିଏଚ୍‌ୟୁରେ ଶିକ୍ଷକଭାବରେ ଯୋଗ ଦେଲୁ । ଆମେ ଗଙ୍ଗାକୂଳରେ ରହୁଥିଲୁ ଓ ବାରାଣସୀକୁ ସେ ସମୟରେ ପୁନର୍ବାର ଆବିଷ୍କାର କଲୁ । ମୁଁ ଫଟୋଗ୍ରାଫି ସହିତ ବହୁତ ବଡ଼ ବଡ଼ ମୂର୍ତ୍ତିକଲି । ଜଣେ ଶିକ୍ଷକ ଭାବରେ ବହୁଛାତ୍ରୀଙ୍କୁ ସ୍ୱାଧୀନ ହେବାର ମନ୍ତ୍ରରେ ଦୀକ୍ଷିତ କଲି । ୧୯୮୫ରେ ବିଏଚ୍‌ୟୁର ବହୁ ଈର୍ଷୁକ କଳାକାର ମୋ ଷ୍ଟୁଡ଼ିଓ ଜଳେଇଦେଲେ । ଗୋଟେ ପରିବର୍ତ୍ତନ ପାଇଁ ମୁଁ ଜମିଆ ମିଲିଆ ଇସଲାମିଆ ବିଶ୍ୱବିଦ୍ୟାଳୟରେ ଯୋଗ ଦେଲି । ପୁରୁଷମାନେ ଜଣେ ମହିଳାର କ୍ଷତିସାଧନ କରିବାପାଇଁ ଯେକୌଣସି ସୀମାପର୍ଯ୍ୟନ୍ତ ଯାଇପାରନ୍ତି ଓ ଯାହା ଚାହାଁନ୍ତି ତା ହାସଲ କରନ୍ତି । ଏହା ଉପଲବ୍ଧି କରିପାରି ମୁଁ କ୍ରୋଧୀ ହୋଇଉଠିଲି । ଯେତେବେଳେ କୌଣସି ପୁରୁଷ ମୋର କ୍ଷତିସାଧନ କରିବାକୁ ଚେଷ୍ଟା କରିଛନ୍ତି ମୁଁ ଲଢ଼ିଛି ଏବଂ କାହାଦ୍ୱାରା ସ୍ଥାନଚ୍ୟୁତ ହେବାକୁ ଅସ୍ୱୀକାର କରିଛି ।

ମୋ ସ୍ୱାମୀ ବଲବୀର ସିଂ କଛ (ଲଳିତ କଳା ବିଭାଗର ଡିନ୍ ଥିଲେ) ୩୦.୧.୨୦୦୦ରୁ ନିରୁଦ୍ଦିଷ୍ଟ ଅଛନ୍ତି । ମୋର ଦୃଢ଼ ବିଶ୍ୱାସ ଯେ ତାଙ୍କୁ କ୍ୟାମ୍ପସରୁ ତଡ଼ିଦିଆଯାଇଛି ବା ଅପହରଣ କରାଯାଇଛି ବା କିଏ ଜାଣେ ଔଷଧ ଦେଇ ଦିଆଯାଇଛି ? ବର୍ତ୍ତମାନ ପର୍ଯ୍ୟନ୍ତ ମୁଁ ତାଙ୍କର ଘର ଏବଂ ଚାକିରି ଅକ୍ଷତ ଅବସ୍ଥାରେ ରଖିପାରିଛି । ତାଙ୍କର ଚାକିରି ୩୦, ଜୁନ୍, ୨୦୦୨ ପର୍ଯ୍ୟନ୍ତ ରହିଛି । ମୁଁ କେବଳ ତାଙ୍କ ଫେରିବା ହିଁ ଆଶା କରିପାରେ । ଏଇ ସମୟ ମଧ୍ୟରେ ମୋର ଅନେକ ନୂଆ ବନ୍ଧୁ ହେଲେ ଏବଂ ବହୁଲୋକ ନିଜ ତରଫରୁ ସାହାଯ୍ୟ କରିବାକୁ ଆଗେଇ ଆସିଲେ । ତାଙ୍କର ଅନେକ ଅନ୍ୟ ପ୍ରିୟ ବନ୍ଧୁ ଓ ଛାତ୍ର, ଯେଉଁମାନଙ୍କୁ ସେ ସବୁ ସମ୍ଭାବ୍ୟ ଉପାୟରେ ସାହାଯ୍ୟ କରିଛନ୍ତି ସେମାନେ ସଙ୍କଟର ଏ ଘଡ଼ିସନ୍ଧି ମୁହୂର୍ତ୍ତରେ କୁଆଡ଼େ ଅଦୃଶ୍ୟ ହେଇଗଲେ । ଏହା ମୋ ପାଇଁ ନିଜକୁ ଶାନ୍ତ ରଖିବାର ଏକ ଅନୁଭୂତି ଥିଲା ।

ମୁଁ ପୂର୍ବରୁ କହିଛି ଯେ ଆମମାନଙ୍କ ମଧ୍ୟରୁ କେତେକଙ୍କ ଜୀବନରେ ଲକ୍ଷ୍ୟଥାଏ । ସମ୍ଭବତଃ ମୋର ଲକ୍ଷ୍ୟ ଦୁଷ୍ଟବ୍ୟକ୍ତିଙ୍କ ବିରୁଦ୍ଧରେ ନ୍ୟାୟ ପ୍ରାପ୍ତିପାଇଁ ଲଢ଼ି ଚାଲିବା । ଏଇ ଶେଷ ଦୁଇବର୍ଷ ମଧ୍ୟରେ ମୁଁ ଜାଣିପାରିଛି କେଉଁମାନେ ମୋର ପ୍ରକୃତ ବନ୍ଧୁ ଏବଂ କେଉଁମାନେ ଦୀର୍ଘବର୍ଷଧରି ପରଜୀବୀ ବା ପରାଙ୍ଗପୁଷ୍ଟ ଜୀବ ସଦୃଶ ଶୋଷୁଥିଲେ । ମୁଁ କାହାର ଉତ୍ତମ ପ୍ରଦର୍ଶନ ବା କାର୍ଯ୍ୟଗତ ସିଦ୍ଧିରେ ଈର୍ଷାନ୍ୱିତ ହୁଏନାହିଁ । ମୁଁ ମୋ ନିଜ କାମର ମାନଦଣ୍ଡ ନିଜେ ଠିକ୍ କରିଛି, ସବୁବେଳେ ଅଧିକ ଶିଖିବା ପାଇଁ ଓ ଭଲ କରିବାପାଇଁ ଚେଷ୍ଟା କରିଛି । ନେହରୁଙ୍କ ମୂର୍ତ୍ତିକାମବେଳେ ମୁଁ ଖୁବ୍ ଉଚ୍ଚରୁ ପଡ଼ିଗଲି ଓ ନିଶ୍ଚିତ ଥିଲି ଯେ ମରିଯିବି । ମାତ୍ର ପଡ଼ିବାବେଳେ ମତେ ଭୟ ଲାଗିଲାନି । ମୁଁ ଅତ୍ୟନ୍ତ ସନ୍ତୋଷ ସହକାରେ ମରିଥାନ୍ତି । ବଲବୀର କେବେ ବି ବାରାଣସୀ ଛାଡ଼ି ଯିବାକୁ ଚାହୁଁନଥିଲେ । ଆମେ ଉଭୟ ନଦୀକୂଳରେ ଏକ ବିରାଟ ଆର୍ଟ ଷ୍ଟୁଡ଼ିଓ ଗଢ଼ିବାର ସ୍ୱପ୍ନ ଦେଖିଥିଲୁ । ୨୦୦୧ ମସିହାରେ ଗଙ୍ଗାକୂଳରେ ବହୁତ ଫଳଗଛଥିବା ଖୁବ୍ ସୁନ୍ଦର ଜମିଟିଏ ମୁଁ କିଣିଛି । ମୁଁ ସେଠି ଅନେକ ଫୁଲଗଛ ମଧ୍ୟ ଲଗେଇଛି ଓ ବର୍ତ୍ତମାନ ଚୂନାର ପଥରରେ ଗୋଟିଏ ବିରାଟ ଷ୍ଟୁଡ଼ିଓ ତିଆରି କରିବା ଆରମ୍ଭ କରିଛି, ଏ ପ୍ରସିଦ୍ଧ ପଥର ଅଶୋକ ସ୍ତମ୍ଭରେ ବ୍ୟବହୃତ ହୋଇଛି । ଦୁଇଟି ମାଟି କୁଡ଼ିଆ ମୋଟାମୋଟି ତିଆରି ସରିଛି, ଦୁଇଜଣ ସହକର୍ମୀ କଳାକାର ଏହାର ଭିତର ପାଖ ଅଙ୍କନ କରିବେ । ମୁଁ ଏଠାରେ ବିକଳାଙ୍ଗ ଏବଂ ସୁବିଧା ସୁଯୋଗରୁ ବଞ୍ଚିତ ମନୁଷ୍ୟ ଯେପରି ଅନ୍ଧ ଓ କୁଷ୍ଠରୋଗୀମାନଙ୍କ ନିମନ୍ତେ ପରୀକ୍ଷା ଧର୍ମୀ କ୍ୟାମ୍ପ କରିବାକୁ ଚାହୁଁଛି । ମୁଁ ସେମାନଙ୍କୁ କଳା ମାଧ୍ୟମରେ ଏକ ନୂତନ ମର୍ଯ୍ୟାଦା ଓ ଆର୍ଥିକ ସୁବିଧା ଦେବାକୁ ଚାହେଁ । ଯଦି କେବେ ବଲବୀର ଫେରିଆସନ୍ତି ତେବେ କାମ କରିବାକୁ ଗୋଟେ ଚମତ୍କାର ଷ୍ଟୁଡ଼ିଓ ତାଙ୍କ ଅପେକ୍ଷାରେ ଥିବ । ଯଦି ଈଶ୍ୱର ବୋଲି ଜଣେ ଥାନ୍ତି ତେବେ ବଲବୀର ଯେଉଁଠି ଥାନ୍ତୁ ନା କାହିଁକି ଭଲରେ ଥିବେ ।

ବଲବୀରଙ୍କ ଉଭାନ ହେଇଯିବା ମତେ ଜ୍ୟୋତିଷ ଶାସ୍ତ୍ରର ଖୁବ୍ ନିକଟବର୍ତ୍ତୀ କରେଇଛି । ମୁଁ ସବୁବେଳେ ହାତ ଗଣନା କରୁଥିଲି ମାତ୍ର ଏଇ ପରୀକ୍ଷାର ସମୟରେ ମୁଁ ବେଶ ଗମ୍ଭୀର ଭାବରେ ଜ୍ୟୋତିଷ ଶାସ୍ତ୍ର ପଢ଼ିବାକୁ ଇଚ୍ଛାକରୁଛି । ମନ୍ତ୍ରତନ୍ତ୍ରରେ ମୋର ସର୍ବଦା ଏକ ରହସ୍ୟମୟ ରୁଚି ରହିଛି । ଅଦୃଶ୍ୟ ଶକ୍ତି ଏବଂ ଅଜ୍ଞାତ ଶକ୍ତିର ସ୍ପନ୍ଦନ ପ୍ରଭାବ ମୋର ମୂର୍ତ୍ତିକଳା ସର୍ଜନାର ସବୁବେଳେ ଏକ ଅଂଶ ଭାବରେ ପ୍ରକାଶିତ । ବୁଢ଼ିଆଣୀ ଜାଲ ସୂତାର ମାନସିକ ଚାପ, ଗଛର ସତେଜ ଢଙ୍ଗ, ବିଭିନ୍ନ ବାସ୍ତବ ଓ ଅବାସ୍ତବ ସ୍ଥାନର ଅନୁଭୂତି ଆଦି ମୋ କୃତିରେ ସ୍ଥାନିତ । ମୁଁ ଧାତୁ, ମାର୍ବଲ, ସେରାମିକ୍, ମାଟି, ଗୋବର, ପେପର ମସୀ ଏବଂ କାଠରେ କାମ କରିଛି । କଳାର ଅନ୍ତର୍ନିହିତ ବିମୂର୍ତ୍ତତା ମତେ ଆକୃଷ୍ଟ କରି ରଖେ । ଅତ୍ୟଧିକ ପ୍ରତୀକଧର୍ମିତା ଏବଂ ସ୍ପଷ୍ଟ କୃତି ମତେ ବିରକ୍ତିକର ଲାଗେ । ଅଧିକ ବ୍ୟକ୍ତ କରିବା ମଧ୍ୟ ରୁଚିହୀନତାରେ ପରିଣତ ହୁଏ । ଅପ୍ରାକୃତିକ ଏବଂ ଆଳଂକାରିକ କଳାର ସ୍ଥାନ ମୋ ଜୀବନରେ କିମ୍ବା ମୋ ମୂର୍ତ୍ତିକଳା ଜଗତରେ ନାହିଁ ।

ସଂପ୍ରତି ମୁଁ ଦିଲ୍ଲୀର ଜାମିଆ ମିଲିଆ ବିଶ୍ୱବିଦ୍ୟାଳୟର ମୂର୍ତ୍ତିକଳା ବିଭାଗର ମୁଖ୍ୟ ଏବଂ ପ୍ରଫେସର । ମୁଁ ସବୁଠୁ ବେଶି ସମସ୍ତ ପ୍ରକାରର ଅପ୍ରିୟ ଓ ଭେଦଭାବ ପୂର୍ଣ୍ଣ ବିଷୟର ବିରୋଧ କରିଛି । ଭାବିଲେ ଦୁଃଖଲାଗେ ଯେ ଆମେ ଆମ ନିଜର ବିକାଶ ପଥକୁ କିପରି ସଂକୀର୍ଣ୍ଣ ବା ପ୍ରତିରୋଧ କରିନିଅନ୍ତି । କିପରି ଶିଳ୍ପୀମାନେ ଧର୍ମାନ୍ଧ ହେଇପାରନ୍ତି ? କଳାକାରମାନେ ସୃଜନଶୀଳ ହେବା ଆବଶ୍ୟକ ଏବଂ ସୃଜନଶୀଳ ବ୍ୟକ୍ତି, ଧର୍ମ, ଜାତି ଏବଂ ଗୋଷ୍ଠୀର ଉର୍ଦ୍ଧ୍ୱରେ ରହିବା ଉଚିତ୍ । ମୋ ନିଜର ସଂଘର୍ଷ ଚାଲିଛି ଏବଂ ମୁଁ ନିଶ୍ଚିତ ଯେ ଏହା ଭଗବାନଙ୍କ ଉପହାର କାରଣ ସେ ମଧ୍ୟ ମତେ ଜୟକରିବାର ଶକ୍ତି ଦେଇଛନ୍ତି ।

ମୁଁ ଆଶା କରୁଛି ବାରାଣସୀର ସେଇ ବିଶାଳ ଓ ସୁନ୍ଦର ଷ୍ଟୁଡ଼ିଓ ମୋ ପାଇଁ ନୂତନ ଦ୍ୱାର ଓ ଦିଗନ୍ତ ଉନ୍ମୋଚିତ କରିବ । ମୁଁ ମୋ ଜୀବନରେ ସେହିଭଳି ଏକ ପରିବର୍ତ୍ତନର ଅପେକ୍ଷାରେ ଅଛି । ହଁ, ଏହା ଅବଶ୍ୟ ସତ ଯେ ମୋ ଅସ୍ତିତ୍ୱ ବିନା ମୁଁ ଏ ପୃଥିବୀର ପରିକଳ୍ପନା କରିପାରେନା ।

କିରଣ ବେଦୀ (ଜନ୍ମ ୧୯୪୯) ୧୯୭୨ରେ ଭାରତୀୟ ପୋଲିସ୍ ସେବାରେ ଯୋଗ ଦେଇଥିବା ପ୍ରଥମ ମହିଳା । ତାଙ୍କୁ ଏପରି ଏକ ପୋଲିସ୍ ଅଫିସର୍ ଭାବେ ସର୍ବଦା ସ୍ମରଣ କରାଯିବ ଯିଏ ବନ୍ଦୀଶାଳାରେ ହେଉ ବା ରାସ୍ତାର ଶାନ୍ତି ଶୃଙ୍ଖଳା ହେଉ ବା ପ୍ରଶିକ୍ଷଣ ଅନୁଷ୍ଠାନ ହେଉ କଠିନ ପରିସ୍ଥିତିରୁ ଉଦ୍ଧାର କରିବା ପାଇଁ ପ୍ରଚଳିତ ଧାରାକୁ ବିରୋଧ କରି ନୂତନ ସର୍ଜନାତ୍ମକ ଟେକ୍‌ନିକ୍ ପ୍ରୟୋଗ କରନ୍ତି । କାରାଗାର ସଂଶୋଧନ ଏବଂ ନିଶାଦ୍ରବ୍ୟ ସେବନ କରୁଥିବା ସ୍ଥାନରେ ତଥା କାରାଗାର ଅନ୍ତେବାସୀଙ୍କ ନିମନ୍ତେ ଯୋଗ ଏବଂ ଧ୍ୟାନ ପ୍ରଚଳନ କରି ସଂସ୍କାର ଆଣିବା ତାଙ୍କର ସର୍ବଶ୍ରେଷ୍ଠ ସ୍ମରଣୀୟ ଅବଦାନ । ୧୯୮୭ରେ 'ନବଜ୍ୟୋତି' ଅନୁଷ୍ଠାନ ତାଙ୍କ ଦ୍ୱାରା ପ୍ରତିଷ୍ଠିତ; ଯେଉଁଠାରେ ମଦ୍ୟ ଓ ନିଶାଦ୍ରବ୍ୟ ଆସକ୍ତ ରୋଗୀମାନଙ୍କୁ ମାଗଣାରେ ରହିବାକୁ ଏବଂ ସମୂହ ମଧ୍ୟରେ ଆରୋଗ୍ୟ ନିମିତ୍ତ ଚିକିତ୍ସା ବ୍ୟବସ୍ଥା ଯୋଗାଇ ଦିଆଯାଇଥାଏ । ଏହି ସଂସ୍ଥା ୧୨,୦୦୦ରୁ ଊର୍ଦ୍ଧ୍ୱ ନିଶାଗ୍ରସ୍ତଙ୍କୁ ଆରୋଗ୍ୟ କରିବା ସହିତ ପରିତ୍ୟକ୍ତ ଶିଶୁମାନଙ୍କୁ ଶିକ୍ଷା ଓ ପୁନର୍ବାସ ଯୋଗାଇ ଦେବାପାଇଁ କାର୍ଯ୍ୟ କରିଥିବାରୁ ଦିଲ୍ଲୀ ସରକାରଙ୍କ ସ୍ୱୀକୃତି ପାଇଛି । ତାଙ୍କ ଦ୍ୱାରା ୧୯୯୪ରେ ପ୍ରତିଷ୍ଠିତ 'ଦ ଇଣ୍ଡିଆ ଭିଜିଅନ୍ ଫାଉଣ୍ଡେସନ୍' ବନ୍ଦୀମାନଙ୍କର ପିଲାମାନଙ୍କୁ ଶିକ୍ଷା, ରାସ୍ତାକଡ଼ର ପିଲାମାନଙ୍କ ପାଇଁ ଗଳି ସ୍କୁଲ, ଗ୍ରାମ୍ୟ ସଂପ୍ରଦାୟଙ୍କ ପାଇଁ ଗ୍ରାମୀଣ ଯୋଜନା ଏବଂ ଅନୁନ୍ନତ ଅଞ୍ଚଳର ବିକଳାଙ୍ଗମାନଙ୍କ ପାଇଁ ବିଭିନ୍ନ ପ୍ରକଳ୍ପ ବ୍ୟବସ୍ଥା କରିଥାଏ ।

ଜଣେ ମହିଳା ପୋଲିସ ଅଧିକାରୀଭାବେ କିରଣବେଦୀ ନିଜ ବୃତ୍ତିରେ ଅନେକ ଗୁରୁତ୍ୱପୂର୍ଣ୍ଣ ପଦ ଅଧିକାର କରିଛନ୍ତି । ତନ୍ମଧ୍ୟରୁ ଇନ୍‌ସ୍ପେକ୍ଟର ଜେନେରାଲ ଅଫ ପ୍ରିଜନ୍‌ସ (ଦିଲ୍ଲୀ), ଜଏଣ୍ଟ କମିଶନର ଅଫ ପୋଲିସ୍, ଦିଲ୍ଲୀ; ଡି ଆଇଜି (ରେଞ୍ଜ), ମିଜୋରାମ୍ ଏବଂ ଜଏଣ୍ଟ କମିଶନର୍ ଅଫ ପୋଲିସ୍, (ଟ୍ରେନିଂ) ଦିଲ୍ଲୀ । ନିଶାଦ୍ରବ୍ୟ ପ୍ରତିରୋଧ ନିମନ୍ତେ କାର୍ଯ୍ୟ କରିଥିବା ଯୋଗୁଁ 'ଇଣ୍ଟରନାସନାଲ୍ ଅର୍ଗାନାଇଜେସନ୍ ଅଫ୍ ଗୁଡ୍ ଟେମ୍ପଲାର୍ସ' କିରଣ ବେଦୀଙ୍କୁ ଏସିଆ- ରିଜିଅନ୍ ପୁରସ୍କାର; ୧୯୯୪ରେ ସରକାରୀ ସେବା ନିମିତ୍ତ ରାମନ୍ ମେଗ୍‌ସେସ୍ ପୁରସ୍କାର (ପୋଲିସ୍ ଅଧିକାରୀଙ୍କୁ ପ୍ରଥମ ଥର ନିମନ୍ତେ ମିଳିଛି); ତାଙ୍କର କାର୍ଯ୍ୟ ପ୍ରକ୍ରିୟା ଯୋଗୁଁ ଭାରତର ନ୍ୟାୟ ବ୍ୟବସ୍ଥାରେ ଉଲ୍ଲେଖନୀୟଭାବେ ଗୁଣାତ୍ମକମାନ ବୃଦ୍ଧି ପାଇଥିବା ଯୋଗୁଁ ଆମେରିକାର ''ୱେଷ୍ଟର୍ଣ୍ଣ ସୋସାଇଟି ଅଫ୍ କ୍ରିମିନୋଲୋଜି' ୨୦୦୧ରେ ମରିସନ୍-ଟମ୍ ଗାଇସଫ୍ ପୁରସ୍କାର; ୧୯୯୯-୨୦୦୦ରେ ରାଷ୍ଟ୍ରୀୟ ଉନ୍ନତିରେ ଉଲ୍ଲେଖନୀୟ ଅବଦାନ ଯୋଗୁଁ ତାଙ୍କୁ ପ୍ରଥମ ଥରପାଇଁ ଆଇ.ଆଇ.ଟି ଦିଲ୍ଲୀ 'ଆଲୁମ୍ନି ଆସୋସିଏସନ୍ ଆୱାର୍ଡ଼' ପ୍ରଦାନ କରାଯାଇଛି ।

## ୧୫

# ଆହ୍ୱାନର ସମ୍ମୁଖୀନ

### କିରଣ ବେଦୀ

ମୋର ଶୈଶବ ଖୁବ୍ ସୁରକ୍ଷିତ ଥିଲା । ମୁଁ ମୋ ବାପା ମା'ଙ୍କଠାରୁ ପ୍ରଚୁର ସ୍ନେହ ଓ ଯତ୍ନ ପାଇଥିବା ସତ୍ତ୍ୱେ ମତେ ମୋ ସଂଘର୍ଷ କରିବାକୁ ହେଇଛି । କାହାକୁ ବା କରିବାକୁ ପଡ଼େନା ? ମାତ୍ର ମୁଁ କହିପାରେ ଯେ ସବୁ ଠିକ୍‌ଠାକ୍ ମୋ ଅନୁସାରେ ପରିଚାଳିତ କରିବା ପାଇଁ ମତେ ଅତିରିକ୍ତ ପରିଶ୍ରମ କରିବାକୁ ପଡ଼ିଛି । ଉତ୍କୃଷ୍ଟତା ହାସଲ କରିବା ସର୍ବଦା ମୋର ଲକ୍ଷ୍ୟ ଏବଂ ଯେତେବେଳେ ଆପଣ ସର୍ବୋତ୍କୃଷ୍ଟ ଫଳପ୍ରାପ୍ତି ପାଇଁ କାମ କରୁଛନ୍ତି ଆପଣଙ୍କୁ ସେତିକି ଅଧିକ ଶ୍ରମ କରିବାକୁ ହିଁ ପଡ଼ିବ । ମୁଁ କୌଣସି ବି ବିଷୟ ପାଇଁ ଯୋଗ୍ୟ ନହେଇ ପାଇବାରେ ବିଶ୍ୱାସ କରେନା, ତେଣୁ ମୋ ଗତିପଥରେ ଯେଉଁ ବିଷୟ ଆସିଛି ତାକୁ ପାଇବା ପାଇଁ କଠିନ ଓ ଅବିଚଳିତ କାର୍ଯ୍ୟ କରିଛି । ଜଣେ ଟେନିସ୍ ଖେଳାଳୀ ଭାବରେ, ଛାତ୍ରୀ ଭାବରେ, ଜଣେ ମହିଳା ଭାବରେ ତଥା ଅବଶେଷରେ ପୋଲିସ୍ ଅଫିସର୍ ଭାବରେ ଏକ ଏକ ସ୍ୱତନ୍ତ୍ର ସ୍ଥାନ ତିଆରି କରିବାକୁ ପଡ଼ିଛି । ପରିଶ୍ରମ ଓ ସ୍ନେହ ଦାନ ବ୍ୟତୀତ ବିନା ମୂଲ୍ୟରେ କିଛି ବି ହାସଲ କରିହୁଏନା । ମୁଁ ଯେତେବେଳେ କଠିନ ପରିଶ୍ରମ କରୁଥିଲି ସେତେବେଳେ ମୋ ପିତାମାତାଙ୍କୁ ସଂଘର୍ଷ କରିବାର ଦେଖିଛି । ସେମାନେ ଏକ ଯୌଥ ପରିବାରର ଅଂଶ ଯାହା ମୋ ଜମିଦାର ବୁଢ଼ାବାପାଙ୍କ ଆଜ୍ଞାରେ ଚଳୁଥିଲା । ବିଶେଷ ଭାବରେ ଆମ ଚାରି ଭଉଣୀଙ୍କୁ ମଣିଷ କରିବା ସମ୍ପର୍କରେ ସେ ମୋ ବାପାମାଙ୍କୁ ନିୟନ୍ତ୍ରଣ କରୁଥିଲେ । କିନ୍ତୁ ମୋ ବାପାମା ବିଦ୍ରୋହ କଲେ । ମୋ ବାପାଙ୍କର ଏହା ପ୍ରଥମ ବିଦ୍ରୋହ ଥିଲା, ପରିଣାମ ସ୍ୱରୂପ ସେମାନେ କେତେକ ସୁବିଧା ସୁଯୋଗରୁ ବଞ୍ଚିତ ହେଲେ । ମାତ୍ର ସେତିକିରେ ସେମାନେ ଭାଙ୍ଗି ନପଡ଼ି ଆମ ପାଇଁ ସଂଘର୍ଷ ଚାଲୁ ରଖିଲେ ।

ମୁଁ ଚାହେଁ ଯେ ପ୍ରତ୍ୟେକ ପିଲା ତଥା ପ୍ରତ୍ୟେକ ଝିଅଙ୍କୁ ମୋ ବାପାମାଙ୍କ ପରି ପିତା ମାତା ମିଳନ୍ତୁ । ମୋ ବାପା ଦୂରଦୃଷ୍ଟିସମ୍ପନ୍ନ ବ୍ୟକ୍ତି ଓ ମୋ ମା ଭୀଷଣ ଦୃଢ଼ମତୀ, କଠିନ ପରିଶ୍ରମୀ ଓ ଯତ୍ନଶୀଳା ଥିଲେ । ଆମ ଝିଅମାନଙ୍କୁ ସବଳ ଓ ସ୍ୱାବଲମ୍ବୀ ଦେଖିବାର ସ୍ୱପ୍ନ ଉଭୟଙ୍କର ଥିଲା । ପ୍ରତ୍ୟେକ ଦିନ ଆମ ଘର ଭବିଷ୍ୟତ ନିମନ୍ତେ ପ୍ରେରଣା ଦାୟକ ତଥା ପ୍ରଶିକ୍ଷଣ ଭୂମି ଥିଲା । ଆମ ସମସ୍ତଙ୍କର ଦୃଷ୍ଟିକୋଣ ସମାନ ଥିଲା । ଝିଅଟିଏ

ହୋଇଥିବା ସତ୍ତ୍ୱେ ମୁଁ ମୋର ଲକ୍ଷ୍ୟ ବିଷୟରେ ଅବଗତ ଥିଲି ଓ ନିରନ୍ତର ମୋ ଲକ୍ଷ୍ୟପଥ ଅଭିମୁଖେ ଯାତ୍ରା କରିବାର ନକ୍ସା ପ୍ରସ୍ତୁତ କରୁଥିଲି । ମୋ ପରିବାର ହିଁ ମୋ ପାଇଁ ସମଗ୍ର ବିଶ୍ୱ ଥିଲା । ମୁଁ ପ୍ରତିଯୋଗିତା ଓ ଚାଲେଞ୍ଜ ପସନ୍ଦ କରୁଥିଲି କାରଣ ମତେ ଉତ୍କର୍ଷତା ଭଲ ଲାଗେ । ନିଃସନ୍ଦେହରେ ବିରୋଧୀପକ୍ଷ ରୂପରେ ଈର୍ଷା ଓ ପରଶ୍ରୀକାତରତା ଆସିଛି ମାତ୍ର ମୁଁ ତାକୁ ଲଂଘନ କରିଛି । ତାକୁ ଚିହ୍ନିବା ପାଇଁ ମତେ ପ୍ରଶିକ୍ଷଣ ମିଳିଥିଲା । ବସ୍ତୁତଃ ମୁଁ ଏମିତି ଭାବେ ବଢ଼ିଛି ଯେ ମୁଁ ମୋ ନିଜର ଘନିଷ୍ଠତମ ବନ୍ଧୁ ଓ ମାର୍ଗଦର୍ଶକ ହୋଇପାରିଛି । ତେଣୁ ମୋର କର୍ମକ୍ଷେତ୍ରରେ ଯେ କୌଣସି ଚାଲେଞ୍ଜ ଆସିଛି ମତେ ବିସ୍ମିତ କରିନାହିଁ । ଜୀବନର ଆରମ୍ଭରେ ମୁଁ ଏହାର ସମ୍ମୁଖୀନ ହେବାକୁ ଏବଂ ଅତିକ୍ରମ କରିବାକୁ ଶିଖିଛି । କ୍ରୀଡ଼ାଭୂମି ଏକ ମହାନ୍ ଶିକ୍ଷକ ।

ମୁଁ ମୋ ଜୀବନରୁ ଯାହା ଶିକ୍ଷା ପାଇଛି ତାହା ହେଲା ପୂର୍ବ ପ୍ରସ୍ତୁତି ହିଁ ସର୍ବୋତ୍ତମ ପ୍ରତିରୋଧକ । ପ୍ରସ୍ତୁତି ମଧ୍ୟ ବିକାଶ ଏବଂ ପ୍ରାପ୍ତି ଜାରି ରଖିବାର ପଥ । ମୁଁ ଏହା ମୂଳରୁ ଶିଖିଥିଲି, ତେଣୁ ପ୍ରକୃତ ଫଳ ପ୍ରାପ୍ତି ପାଇଁ ସଠିକ ପନ୍ଥା ଉପରେ ସମସ୍ତ କିଛି କେନ୍ଦ୍ରୀଭୂତ କରିଥାଏଁ । ଜୀବନକୁ ତୁମେ ଯେମିତି ଗ୍ରହଣ କରିବ ତାହା ଠିକ୍ ସେମିତି, ଆମେ ଏହାକୁ ସରଳ ବା ଖୁବ୍ ଜଟିଳ କରିପାରନ୍ତି । ଜଣକର ନିଜର ମାନସିକ ସ୍ଥିତି ତଥା ପ୍ରକ୍ରିୟାଗତ ପରିପକ୍ୱତା ଉପରେ ଏହା ଗଭୀର ଭାବରେ ନିର୍ଭରଶୀଳ । ଯଦି ଜଣେ ଆତ୍ମ-ଶିକ୍ଷାରେ ବିଶ୍ୱାସ ରଖେ ତେବେ ସର୍ବଦା ଜୀବନରେ କ୍ରମାଗତ ବିକାଶ ଅବଶ୍ୟମ୍ଭାବୀ ।

ମୋର ଆଭିମୁଖ୍ୟ ଠିକ୍ ବା ଭୁଲ୍ ହୋଇପାରେ ମାତ୍ର ତାହା ମୋ ଲାଳନ ପାଳନର ଫଳଶ୍ରୁତି । ମୋର ପାରିବାରିକ ପରିବେଶ ଅତ୍ୟଧିକ ସକାରାତ୍ମକ ଥିଲା । ଆମେ ସମାଧାନର ପଥ ଖୋଜୁଁ, ସମସ୍ୟାକୁ ନେଇ ମୁଣ୍ଡ କୋଡ଼ି ହେଉନା । ମୁଁ ଆଗକୁ ବଢ଼ି ଚାଲିବା ଶିଖିଛି, ସମୟର ଅପେକ୍ଷା କରେନା । ଘରେ ଖୁବ୍ ସ୍ୱାଭାବିକ ଭାବରେ ସମସ୍ୟା ସମାଧାନ କୌଶଳର ପ୍ରଶିକ୍ଷଣ ପାଇଛି । ମୋ ମା' ମୋର ଆଦର୍ଶର ପ୍ରତିମୂର୍ତ୍ତି । ମୋର ଅଧ୍ୟୟନ ଅଭ୍ୟାସ ଅତ୍ୟନ୍ତ ସୁସ୍ଥ ଥିଲା, ତା' ସହିତ ଥିଲା ଉପଯୁକ୍ତ ବଞ୍ଚିବା ଶୈଳୀ ଓ କୌଣସି ଗୋପନୀୟତା ନଥିଲା । ଏ ସବୁ ମୋର ଛାତ୍ର ଜୀବନର ଅଂଶ ଥିଲା ଯାହା ମୁଁ ଘରୁ ଶିଖିଥିଲି । ମୋ ଜୀବନରେ ମୁଁ ଯେଉଁ ଦୁଃଖ ଓ ଆଘାତ ପାଇବା କଥା ତା' ପାଇଛି । ମୋର ନିଜ ପ୍ରତି ସଚେତନ ଓ ସତର୍କ ହେବାର ପ୍ରବଣତା – କ'ଣ ହେଲା, କିଏ କ'ଣ କଲା ଉପରେ ଗୁରୁତ୍ୱ ଦେବା ଅପେକ୍ଷା ମୋର ବର୍ତ୍ତମାନ କ'ଣ କରିବା ଉଚିତ୍ ଉପରେ ଜୋର ଦେବାକୁ ଶିଖାଇଛି । ଶିକ୍ଷା ଲାଭ କର ଓ ଆଗକୁ ମାଡ଼ି ଚାଲ । ମୁଁ ପ୍ରତିରୋଧ କରିପାରେ, ପ୍ରତିକ୍ରିୟା ଦେଖାଇପାରେ ମାତ୍ର ନିଜକୁ ନିର୍ଯ୍ୟାତିତ ହେବାକୁ ଦିଏନାହିଁ । ସମଗ୍ର ଜୀବନ ମଧ୍ୟରେ ମୋର ଗୋଟିଏ ବି ଘଟଣା ମନେ ପଡୁନାହିଁ ଯେଉଁଠି ମୁଁ ନିଜକୁ ଉତ୍ପୀଡ଼ିତ ହେବା ପାଇଁ ଦେଇଛି । ଯେଉଁ ମୁହୂର୍ତ୍ତରେ ମୁଁ ସେହିପରି ପରିସ୍ଥିତି ଗଢ଼ି ଉଠୁଥିବାର ଗନ୍ଧ ବାରିପାରେ ତତ୍କ୍ଷଣାତ୍ ଅନୁରୂପ ପଦକ୍ଷେପ ନେଇଛି । ଏହା ସର୍ବଦା ସତର୍କ ରହିବା ପରି କଥା । ବିବ୍ରତ ନହୋଇ ମୁଁ ସବୁବେଳେ ସତର୍କ ଥାଏ ଏବଂ ମୁଁ ଅଭ୍ୟାସ ବଶତଃ ସତର୍କ ପ୍ରକୃତିର, କେଉଁଠି କ'ଣ ଘଟୁଛି ସେ ସମ୍ପର୍କରେ ଅତୀବ ସଚେତନ ଥାଏ ।

ମୋର ପାରିବାରିକ ସମର୍ଥନ ଅତ୍ୟନ୍ତ ବେଶୀ । ମୋର ପିତାମାତା ଏବଂ ଭଉଣୀମାନେ ଅତି ବିରଳ । ସେମାନେ ଖୁବ୍ ବେଶୀ ଦୃଢ଼ପ୍ରତିଜ୍ଞ, ସ୍ନେହୀ, ଖୁବ୍ ବେଶୀ ନିଃସ୍ୱାର୍ଥପର ତଥା ସୁରକ୍ଷା ଦେବାରେ ଅଗ୍ରଣୀ । ସେମାନେ ଅତିମାତ୍ରାରେ ଉଦାର ମଧ୍ୟ । ତେଣୁ ସୁରକ୍ଷା ଦେବା ସହିତ ଉଦାରତା ରହିବା, ପୁଣି କିଛିଟା ରକ୍ଷଣଶୀଳତା ସବୁ ମିଶି ଗୋଟେ ଅର୍ଥରେ ମୋର ଯାହା ଦରକାର ଥିଲା ମୁଁ ତାହା ପାଉଥିଲି । ମୁଁ ମଧ୍ୟ କେବେ ଦରକାରଠୁଁ ଅଧିକ ମାଗେ ନାହିଁ । ଏହା ସତରେ ଏକ ଉଲ୍ଲେଖନୀୟ ସମ୍ପର୍କ ।

ମୋର ମନେପଡ଼େ ପିଲାଦିନେ ମା' ଘରେ ନଥିଲେ ମୁଁ କାନ୍ଦେ ! ପୁଣି ମୁଁ ଯେମିତି ଚାହେଁ ସେମିତି ମୋ ବେଣୀ ବାନ୍ଧି ନଦେଲେ ବି କାନ୍ଦେଁ । ମୁଁ ସେମାନଙ୍କ ସହିତ ଖୁବ୍ ବେଶୀ ସମ୍ପୃକ୍ତ ଏବଂ ମୋ ମା ସବୁବେଳେ ଜାଣିପାରନ୍ତି ମୁଁ ଠିକ୍ କ'ଣ ଚାହେଁ... ଓ କେତେବେଳେ ସେ ମୋ ପାଖରେ ମାନସିକ ତଥା ଶାରୀରିକ ରୂପରେ ଉପସ୍ଥିତ ରହିବା ଆବଶ୍ୟକ । ମୋ ମାଙ୍କ ସହିତ ମୋର ବନ୍ଧନ ଅତ୍ୟଧିକ ଆନ୍ତରିକ ଥିଲା, ତେଣୁ ତାଙ୍କୁ ଜଣାଥିଲା ଯେ ମୋର କେବଳ ଦରକାର ଯେ ସେ ମୋ ପାଖରେ ଥାଇ ମତେ ଦେଖୁଥାନ୍ତୁ । ମୁଁ ଯଦି ଘରକୁ କେଇ ମିନିଟ୍ ପାଇଁ ଏନ୍.ସି.ସି. ପୋଷାକ ପିନ୍ଧିବା ପାଇଁ ବି ଯାଏଁ ସେ ସେଇ ୧୫ ମିନିଟ୍ ମୋ ପାଖରେ ରହିବା ଦରକାର... । ନହେଲେ ମୁଁ କେବେ କାନ୍ଦେ ନାହିଁ... କେବେ ବି ନୁହେଁ । ମୋ ବାପା ମା ଯେତେବେଳେ ମୋ ଆଖ ପାଖରେ କେଉଁଠି ଥାନ୍ତି, ମୁଁ କାନ୍ଦେ, ଅନ୍ୟମାନଙ୍କ ସମ୍ମୁଖରେ ଆଦୌ ନୁହେଁ । ସେତେବେଳେ ମୁଁ ସଂପୂର୍ଣ୍ଣ ପୃଥକ ବ୍ୟକ୍ତିଟିଏ । ମୁଁ କେବଳ ଘରେ ସାନ ପିଲା, ବାହାରେ ଠିକ୍ ଶୃଙ୍ଖଳିତ । ଏହା ଠିକ୍ ବାହାରେ ସୈନିକ ପରି ଦୃଢ଼ମନା ଓ ପରେ କୋମଳମତି ଶିଶୁ ସଦୃଶ । ମୁଁ ସତରେ ଏମିତି ହିଁ ଥିଲି ।

ମୋର ମନେହୁଏ ଆଜି ମୁଁ ଯେଉଁ ସ୍ଥାନରେ ପହଞ୍ଚିପାରିଚି ସେଠିକି ଯାତ୍ରା କରିବାର ପ୍ରତ୍ୟେକ ମୁହୂର୍ତ୍ତ ସତର୍କ ଭାବରେ ମାପିଚୁପି, ପ୍ରସ୍ତୁତି ନେଇ ପଦପାତ କରିଛ, ତେବେ ଏ ଯାତ୍ରା ନିଃସଙ୍ଗତାର ନଥିଲା । ମୋର ପୂରା ପରିବାର ମୋ ଯାତ୍ରାର ଅଂଶ । ମୁଁ ୨୯ ବର୍ଷ ଏ ଚାକିରିରେ ଦେଇ ଥାଇପାରେ – ମାତ୍ର ଏମିତି ସବୁକିଛି ନୁହେଁ – ଏହା ସହିତ ମୋ ବାପାଙ୍କର ଜୀବନ ଏବଂ ମୋ ମା'ଙ୍କର ଜୀବନ, ମୋ ଭଉଣୀମାନଙ୍କର ଅବଦାନ ଏବଂ ମୋ ସ୍ୱାମୀଙ୍କର ଅକୁଣ୍ଠଦେୟ ସଂଯୁକ୍ତ । ବାସ୍ତବରେ ମୋ ସ୍ୱାମୀ ମୋ ରାସ୍ତାରେ କେବେ କୌଣସି ପ୍ରକାର ପ୍ରତିବନ୍ଧକ ସୃଷ୍ଟି କରିନାହାନ୍ତି । କାମ ପ୍ରତି ମୋର ଏକକ ଭାବେ ଏକାଗ୍ରତାର ସେ ଜଣେ ମହାନ ସହଯୋଗୀ ଥିଲେ । ମୋର ଶାଶୁ ମଧ୍ୟ ମତେ ପ୍ରଚୁର ପରିମାଣରେ ସମର୍ଥନ କରୁଥିଲେ । ସେ ତ ମତେ ଏକ ପ୍ରକାରର ପୂଜା କରୁଥିଲେ । ପ୍ରକୃତରେ ମୋ ପାଇଁ ଏକ ରକମର ପୂରା ପରିବାର ଗାଳି ଶୁଣୁଥିଲା । ସେ କହନ୍ତି – ଯଦି କିରଣ ଏଇଟା କରିପାରୁଛି ତ ତୁମେ କାହିଁକି ନୁହଁ ? ଏକମାତ୍ର ଗହଣା ଯାହା ମୁଁ ପିନ୍ଧେ ତାହା ମୋ ଶାଶୁଙ୍କ ପ୍ରଦତ୍ତ କାନଫୁଲ । ଏହା ତାଙ୍କର ଆଶୀର୍ବାଦ ଏବଂ ଶେଷ ପର୍ଯ୍ୟନ୍ତ ଏହା ମୋ ସହିତ ରହିବ । ମାତ୍ର ଗୁରୁତ୍ୱପୂର୍ଣ୍ଣ ବିଷୟ ଏହି ଯେ ମୁଁ ମାନସିକ ସ୍ତରରେ ଏମାନଙ୍କ

ସମର୍ଥନ ଉପରେ ନିର୍ଭରଶୀଳ ନଥିଲି । ମାତ୍ର ଏ ସମର୍ଥନ ପ୍ରତି ମୋର ସମ୍ମାନ ରହିଛି ଏବଂ ମୁଁ ପାରୁପର୍ଯ୍ୟନ୍ତ ଏହାର ପ୍ରତିଦାନ ଦେବାରେ ବିଶ୍ୱାସୀ, ମାତ୍ର ଏସବୁ ନପାଇଥିଲେ ବି ମୁଁ ସଂଘର୍ଷ କରିଥାନ୍ତି । ଏସବୁ ନମିଳିଥିଲେ ମୋର ସଂଘର୍ଷ ଆଉରି ଅଧିକ କଠିନତର ହୋଇଥାନ୍ତା – ପ୍ରକୃତରେ ଏ ସଂଘର୍ଷ ସବୁ ଖୁବ୍ ପ୍ରତ୍ୟକ୍ଷ ହେଇଛି, ତେଣୁ ପରିଣାମ ବି ଖୁବ୍ ଶୀଘ୍ର ମିଳିଛି ।

ପ୍ରତ୍ୟେକେ ମୋ ସମସ୍ୟାରେ ଅଂଶୀଦାର ହେଉଥିଲେ କାରଣ ହୁଏତ ମୋର ପ୍ରାପ୍ତି ବା ସଫଳତାରେ ସେମାନେ ଏକ ଏକ ଅଂଶ ବୋଲି ଅନୁଭବ କରୁଥିଲେ, କାରଣ ଶେଷରେ ସମସ୍ତ ଆନନ୍ଦ ତ ଘରକୁ ହିଁ ଫେରି ଆସୁଥିଲା । ହୁଏତ ସେମାନେ ପ୍ରତିବଦ୍ଧତାକୁ ନିଜର ମନେ କରୁଥିଲେ । ମୋ ବାପା ମା ତ ନିଶ୍ଚିତ ଭାବରେ ମନେ କରୁଥିଲେ, ମୋ ସ୍ୱାମୀ ଓ ଶ୍ୱଶୁରାଳୟର ଲୋକମାନେ ମଧ୍ୟ । ମୋର ମନେହୁଏ ସେ ଆନନ୍ଦର ପ୍ରତ୍ୟେକେ ଯେମିତି ଏକ ଏକ ଅଂଶ । ସତେ ଯେମିତି ସେ ଆନନ୍ଦ ମଧ୍ୟ ତାଙ୍କର ପ୍ରାପ୍ୟ ଯଦିଓ ମୁଁ କେବେ କହିନାହିଁ କି ଏ ଅଂଶଟି ତୁମର ଆଉ ଏ ଅଂଶଟି ମୋର । ମାତ୍ର ଏହା ସତ୍ୟ ଯେ ସବୁ କିଛି ମୋ ସହିତ ଘରକୁ ଆସେ କାରଣ ମୁଁ ନିଜ ପାଇଁ କିଛି ବି ରଖେ ନାହିଁ । ମୁଁ କିଛି ବି ପ୍ରତିଦାନ ଚାହେଁନି । ଏସବୁ କେବଳ ଦେବା, ଦୁଃଖସୁଖ ବାଣ୍ଟିବା ଓ କାମ କରିବାର କଥା ଏମିତି ହିଁ ମୋର ପାରିବାରିକ ଜୀବନ । ମୁଁ ଭାବୁଛି ଶେଷରେ ତୁମେ ନେଉଛ କି ପାଉଛ କି ଦେଉଛ ୟା ଭିତରର ସୀମାରେଖା ଅସ୍ପଷ୍ଟ ହୋଇଯାଏ । କାରଣ ଦେବାନେବା ସବୁକିଛି ଏକ ହେଇଯାଏ । ଦୃଷ୍ଟାନ୍ତ ସ୍ୱରୂପ ଭଗବାନ ଜାଣନ୍ତି ପୋଲିସ୍ ଟ୍ରେନିଂ କଲେଜରେ ମୁଁ ଦେଉଛି ନା ପାଉଛି । ଗୋଟେ ପ୍ରସଙ୍ଗରେ ମୁଁ ପ୍ରଚୁର ଆନନ୍ଦ ପ୍ରଦାନ କରୁଛି ତ ଅନ୍ୟ ଦିଗରେ ମୁଁ ପ୍ରଚୁର ପାଉଛି । ପ୍ରକୃତରେ ସବୁ ମିଶି ଏକାକାର ହୋଇଯାଏ ! ଘରେ ଠିକ୍ ଏଇଆ ହିଁ ଘଟେ । ମୋ ବାପା ମା ମୋର ଉନ୍ନତି ଦେଖି ଆନନ୍ଦିତ ହେଇଯାଆନ୍ତି । ମୋ ବାପା ମୋ ସହିତ ଟେନିସ୍ ଟୁର୍ଣ୍ଣାମେଣ୍ଟ ଯାଆନ୍ତି ଓ ମୋ ମା ସାମାଜିକ କାର୍ଯ୍ୟକ୍ରମରେ ମୋ ସହିତ ଆସନ୍ତି । ତାଙ୍କର ଶେଷ କାର୍ଯ୍ୟକ୍ରମ ମୋ ସହିତ, ମୁଁ ଓ ମୋ ଭଉଣୀ ରୀତା ଚଣ୍ଡୀଗଡ଼ରେ ଥିବାବେଳେ ହୋଇଥିଲା । ପ୍ରଥମ ଥର ପାଇଁ ସେ ତାଙ୍କର ଦୁଇ ଝିଅଙ୍କୁ ଏକାଠି ଗୋଟେ ମଂଚରେ ଦେଖିଥିଲେ । ଆମେ ଦୁହେଁ ଗୋଟିଏ ସଭାରେ ବକ୍ତୃତା ଦେଇଥିଲୁ । ସେ ମୋ ପରି ସମ ପରିମାଣରେ ରୋମାଞ୍ଚିତ ହେଉଥିଲେ କାରଣ ମୋ ଭଉଣୀ ଜଣେ ମନୋବୈଜ୍ଞାନିକ ଡ଼ାକ୍ତର (ଭାରତର ସର୍ବଶ୍ରେଷ୍ଠ ମନୋବୈଜ୍ଞାନିକ ମାନଙ୍କ ମଧ୍ୟରୁ ଜଣେ) ଭାବରେ ଖୁବ୍ ଦକ୍ଷତାର ପରିଚୟ ଦେଇଥିଲା । ଚଣ୍ଡୀଗଡ଼ରେ ବକ୍ତୃତା ଦେବା ପାଇଁ ସେ ବିଶେଷ ଭାବରେ ନିମନ୍ତ୍ରିତ ହୋଇଥିଲା ଏବଂ ସେତେବେଳେ ଚଣ୍ଡୀଗଡ଼ର ଆଇ.ଜି. ଥିବା କାରଣରୁ ମତେ ମଧ୍ୟ କହିବାକୁ ହେଲା । ସେ ଆନନ୍ଦରେ ଏତେ ବିହ୍ୱଳ ହୋଇଯାଇଥିଲେ.... ଆମେ ବୁଝି ପାରିନଥିଲୁ ତାହା ତାଙ୍କର ଶେଷ ଯାତ୍ରା... । ମୋ ଭଉଣୀ କହିଲା ଆମେ କେବେ ବି ଆଉ ଏକାଠି ଗୋଟିଏ ମଞ୍ଚକୁ ଯିବାନି । ମୋ ପାଇଁ ସେତେବେଳ ପର୍ଯ୍ୟନ୍ତ ଆନନ୍ଦ, ଆନନ୍ଦ ନୁହେଁ ଯେତେବେଳ ପର୍ଯ୍ୟନ୍ତ ଏହା ଘରେ ବଣ୍ଟା ନ

ହୋଇଛି । ମୁଁ ଯାହା ବି ଉପାର୍ଜନ କରିଛି, ଯାହା ମୋର ବୋଲି ଥିଲା ତାହା ସବୁ ମୋ ପରିବାରର । ଯଦି କେହି ଅଧିକା ଦରକାର କରିଛି ଅଧିକ ପାଇଛି । ସେଇ ପ୍ରକାର ଭରସା ଓ ବିଶ୍ୱାସ ଆମର ପରସ୍ପର ମଧ୍ୟରେ ଥିଲା । ମୋ ମା' ଜୀବିତ ଥିବା ପର୍ଯ୍ୟନ୍ତ ମୋ ବ୍ୟାଙ୍କ ଏକାଉଣ୍ଟରେ କେତେ ଟଙ୍କା ଥିଲା ତା'ବି ମତେ ଜଣାନଥିଲା । ସେ ମୋତେ ମୋ ଟଙ୍କା ଦେଉଥିଲେ ଏବଂ ମୋ ପାଇଁ ସଞ୍ଚୟ କରୁଥିଲେ । ଆମ ଭିତରର ସମ୍ପର୍କ ଏତେ ନିବିଡ଼ ଥିଲା ।

ଯେତେଦୂର ମୋ ଚାକିରି କଥା – ସରକାରଙ୍କଠାରୁ ପାଇଥିବା ପ୍ରଶିକ୍ଷଣ ଉତ୍ତମ ଥିଲା । ଅର୍ଥାତ୍ ଏହା ମତେ ପୋଲିସିଆ ଛାଞ୍ଚରେ ପକେଇ ଦେଇଥିଲା । ମଜାର କଥା ହେଲା ଯେ ମୁଁ ପ୍ରଥମ ଥର ପାଇଁ ପୋଲିସ୍ ପୋଷାକ ପିନ୍ଧୁନଥିଲି । ମୁଁ ଚାରିବର୍ଷ ଧରି ଆଗରୁ କ୍ୟାଡ଼େଟ୍ ଥିଲି । ମୁଁ ଆମ କଲେଜର ସର୍ବଶ୍ରେଷ୍ଠ ଏନ୍.ସି.ସି. କ୍ୟାଡ଼େଟ୍ ଥିଲି ଓ ଏସିଆନ୍ ଟେନିସ୍ ଚମ୍ପିଆନ୍ ମଧ୍ୟ । ଏନ୍.ସି.ସି.ରେ ଯୋଗ ଦେବାର ବହୁ ବର୍ଷ ପରେ ପୁନଶ୍ଚ ମୁଁ ପୋଲିସ୍ ପ୍ରଶିକ୍ଷଣ ନେଲି । ମୁଁ ଏନ୍.ସି.ସି. ପ୍ୟାରେଡ଼ର ନେତୃତ୍ୱ ନେଉଥିଲି ତେଣୁ ୟୁନିଫର୍ମ ପିନ୍ଧିବା ମୋ ପାଇଁ ଆଦୌ ନୂଆ ନଥିଲା । ମୁଁ ଚାରିବର୍ଷ ଧରି ଲଗାତାର ପ୍ୟାରେଡ଼୍ କରି ଆସିଛି । ସମ୍ଭବତଃ ଆମ ଭିତରର କୌଣସି ପୁଅଠୁଁ ବି ଅଧିକ । ଯେତେବେଳେ ମୁଁ ନ୍ୟାସ୍‌ନାଲ ପୋଲିସ୍ ଏକାଡ଼େମିକୁ ଗଲି ସେତେବେଳେ ଏଇଟା ଗୋଟେ ଜିନିଷ ଯାହା ମୁଁ ବେଶ୍ ସ୍ୱତଃସ୍ଫୂର୍ତ୍ତତାର ସହିତ କଲି । ଚାରିବର୍ଷ ଧରି କ୍ୟାଡେଟ୍ ଥିବାରୁ ଏଥିରେ ମୋର କୌଣସି ଅସୁବିଧା ନ ଥିଲା, ମୁଁ ଆରାମରେ କରୁଥିଲି । ମାତ୍ର ପୋଲିସ୍ ଟ୍ରେନିଂ ବହୁତ ସ୍ୱତନ୍ତ୍ର – ସେଠି ଆଇନ୍ କାନୁନ୍, ଘୋଡ଼ା ଚଢ଼ାର ପ୍ରଶିକ୍ଷଣ ନେବାକୁ ହେଉଥିଲା । ଆମର ପୂରା ପ୍ରଶିକ୍ଷଣ ଶେଷ ହେବାପରେ ମୋର ସ୍ୱାମୀ ବ୍ରିଜ୍ ତାଙ୍କର ୮ଏମ୍‌ଏମ୍ କ୍ୟାମେରାସହ ମାଉଣ୍ଟ ଆବୁ ଆସିଲେ, ଫଟୋ ଉଠେଇବାପାଇଁ । ମୁଁ ତାଙ୍କପାଇଁ ଘୋଡ଼ା ଚଢ଼ିଲି । ଏହାର ଶେଷ ଦୌଡ଼ା ବଡ଼ ନାଟକୀୟ ଥିଲା । ମୋ ଘୋଡ଼ା ତା'ର ଶେଷ ପ୍ରତିବନ୍ଧକ ପାର କରିବା ମାତ୍ରକେ ମୁଁ ପଡ଼ିଗଲି କି ବ୍ରିଜଙ୍କ କ୍ୟାମେରାରୁ ରିଲ୍ ସରିଗଲା । ଯେତେବେଳେ ମୁଁ ଶୂନ୍ୟରେ ଥିଲି ଠିକ୍ ସେଇ ମୁହୂର୍ତ୍ତରେ ପ୍ରକୃତରେ ଏହା କାମ କରିବା ବନ୍ଦକଲା । ଆମ ସମୟରେ ପ୍ରଶିକ୍ଷଣ ମଧ୍ୟରେ ଘୋଡ଼ାଚଢ଼ା ସବୁଠୁ ମଜାଦାର ଥିଲା । ଘୋଡ଼ା ଟ୍ରେନିଂ ନେଉଥିବା ପ୍ରୋବେସନ୍‌ରଙ୍କୁ ନେଇ ଦୌଡ଼ି ପଳାଏ ଆଉ ସେମାନେ ତାକୁ ଜାବୁଡ଼ି ଧରିଥାନ୍ତି ପ୍ରାଣ ବିକଳରେ ! ଏମିତିକି ଏବେ ବି ଆମର ମନେ ଅଛି କାହା କାହା ଘୋଡ଼ା ଦୌଡ଼ି ପଳେଇଥିଲା । ବର୍ତ୍ତମାନ ଆମେ ସମସ୍ତେ ବୃଦ୍ଧ ହେଲୁଣି, ବାଳ ପାଚିଲାଣି ତଥାପି ମନେ ପକଉଁ ! ପାର୍ଥକ୍ୟ ମାତ୍ର ଏତିକି ଯେ ମୁଁ ତାଙ୍କ ଭିତରେ ଏକମାତ୍ର ଝିଅ ଥିଲି ।

ମତେ ଏକାକୀ ଲାଗୁଥିଲା ? ଆଦୌ ନୁହେଁ ! ମତେ ବହୁତ ମଜା ଲାଗୁଥିଲା... । ସେତେବେଳକୁ ମୁଁ ବିବାହିତ, ତେଣୁ ଆବେଗ ଦୃଷ୍ଟିରୁ ସୁରକ୍ଷିତ ଏବଂ ମୁଁ ସେଠି ବହୁତ

ମଜା କରିଛି ! ସହପାଠୀମାନେ ମୋର ଭଲ ବନ୍ଧୁଥିଲେ । ମୁଁ ସବୁବେଳେ ଚାଲେଞ୍ଜ ପସନ୍ଦ କରେ... । ମୁଁ ଚାହିଁଥିଲେ ମୋ ବୃତ୍ତିରେ ବହୁତ ଶକ୍ତି ଅପଚୟ କରିବାରୁ ମୁଁ ନିବୃତ୍ତ ରହିପାରିଥାନ୍ତି । ହୁଏତ ସେ ଶକ୍ତିକୁ ଅନ୍ୟ କିଛି ଶିଖିବା ପ୍ରକ୍ରିୟାରେ ଲଗେଇ ପାରିଥାନ୍ତି । କଥାଟା ଏମିତି ହେଇପାରେ ଯେ ଜଣକୁ ନିଆଁରେ ଚାଲିବାକୁ ପଡୁଛି, ଯଦି ମୂଳରୁ ନିଆଁ ହିଁ ନ ଥାନ୍ତା । ମୋ କ୍ୟାରିଅର୍ ଭିତରେ ବହୁତ ପରିସ୍ଥିତି ଏମିତି ଆସିଛି, ଯାହାକୁ ଆଡ଼େଇ ଦେଇ ହେଇଥାନ୍ତା । ଗୋଟେ ଦୃଷ୍ଟିରୁ ସେଗୁଡ଼ିକ ମତେ ମୋର ଧୈର୍ଯ୍ୟ, ମୋର ଶାରୀରିକ ସାମର୍ଥ୍ୟ ଏବଂ ସେଇ ସମୟର ମୋର ସର୍ବାଧିକ ଭଲ କରିପାରିବାର କ୍ଷମତାର ପରୀକ୍ଷା ନେବାରେ ସାହାଯ୍ୟ କରିଛି । ମୋର କେତେକ ବରିଷ୍ଠ ଅଫିସର୍‌ଙ୍କର ପଦକ୍ଷେପ ଯଦି ଆଉରି ଭଲ ହେଇ ପାରିଥାନ୍ତା... ତାହାହେଲେ ହୁଏତ କେତେକ ପରିସ୍ଥିତିକୁ ଆଡ଼େଇ ଦେଇ ହେଇଥାନ୍ତା । ଏପରିକି ମିଜୋରାମ ପରିସ୍ଥିତି ଏଡ଼ା ଯାଇପାରିଥାନ୍ତା । ମାତ୍ର ଏଗୁଡ଼ିକ ମୋର ଆଧ୍ୟାତ୍ମିକ ବିକାଶରେ ସହାୟକ ହୋଇଛି । ମୋର ବନ୍ଦୀଶାଳାରେ ନିଯୁକ୍ତିକାଳୀନ ଘଟଣା କିମ୍ବା ନଅମାସଧରି କୌଣସି ସ୍ଥାନରେ ନିଯୁକ୍ତ ନ ହେବା – ଏ ସବୁକୁ ମୁଁ ଶିଖିବାର ପ୍ରକ୍ରିୟା ଦୃଷ୍ଟିକୋଣରୁ ଦେଖେଁ । କାରଣ ପ୍ରତ୍ୟେକ ବିଷୟରେ ସକାରାତ୍ମକ ଦିଗ ଅନ୍ବେଷଣ କରିବା ମୋର ପ୍ରବଣତା । ମୋର ମନେହୁଏ ପ୍ରତିକୂଳ ପରିସ୍ଥିତିକୁ ଯେତେଦୂର ସମ୍ଭବ ମୁଁ ଫଳପ୍ରଦ କରିପାରିଛି ।

କଠିନ ପରିଶ୍ରମ ମତେ କଷ୍ଟ ଦିଏ ନାହିଁ । ମାତ୍ର ମୋ ମା'ଙ୍କର ଅନୁପସ୍ଥିତି ମତେ ଯନ୍ତ୍ରଣା କାତର କରିଛି । ମୁଁ ଭାବୁଛି ଏହା ମୋର ସବୁଠାରୁ ବଡ଼ ବ୍ୟକ୍ତିଗତ କ୍ଷତି । ମିଜୋରାମରେ ମୋ ବାପା ଏକ ବଡ଼ ଅସୁସ୍ଥତା ଭୋଗ କଲେ । ପ୍ରତ୍ୟେକ ଥର ଦିଲ୍ଲୀ ବାହାରେ ମୋର ନିଯୁକ୍ତି ହେବାମାତ୍ରେ ମୋ ନିଜ ପରିବାରର କେହି ନା କେହି ଅସୁସ୍ଥତା ଭୋଗ କରନ୍ତି – ମିଜୋରାମରେ ଥିବାବେଳେ ମୋ ବାପା, ଚଣ୍ଡୀଗଡ଼ରେ ମୋ ମା ଗୋଆରେ ଥିବାବେଳେ ମୋ ଝିଅ । ସେମାନେ ସମସ୍ତେ ଗଭୀରଭାବେ ଦୁର୍ଭାଗ୍ୟଗ୍ରସ୍ତ ହୋଇ ପଡ଼ିଥିଲେ... ଏବଂ ଏସବୁ ମୋ ପାଇଁ ବହୁତ, ବହୁତ ଅଧିକ ଯନ୍ତ୍ରଣା ଦାୟକ ମୁହୂର୍ତ୍ତ । ମାତ୍ର ମୁଁ ଅନୁଭବ କରେ ଯେ ମୋ ପେଶାରେ ମୁଁ ସବୁବେଳେ ସଂପୂର୍ଣ୍ଣ ନିୟନ୍ତ୍ରଣରେ ଥାଏ । ମୁଁ ଭାବେ ମୋର ଶକ୍ତି ହେଉଛି ମୋର ଭାବ ବିନିମୟ କରିପାରିବାର ସାମର୍ଥ୍ୟ, କାମ ସହିତ ବ୍ୟକ୍ତିଗତ ସଂପୃକ୍ତି, ସମସ୍ୟା ସମାଧାନ କ୍ଷମତା ସମସ୍ତଙ୍କ ସହିତ ମିଶି କାମ କରିବା, ଶୃଙ୍ଖଳିତ ଭାବେ କାମ କରିବା, ସ୍ୱଚ୍ଛତା ବଜାୟ ରଖିବା, ବ୍ୟକ୍ତିଗତ ସାଧୁତା, ନିରନ୍ତର ଆଭ୍ୟନ୍ତରୀଣ ପରୀକ୍ଷଣ, ପ୍ରଦର୍ଶିତ କାର୍ଯ୍ୟର ସାମାଜିକ ପରୀକ୍ଷଣ, କ୍ରମାଗତ ସମୀକ୍ଷା, ଯେଉଁମାନଙ୍କ ସହିତ କାମ କରେ ତାଙ୍କଠୁଁ ସବୁବେଳେ ଶିକ୍ଷାଲାଭ କରିବା, କାମ ଠିକ୍ ଭାବରେ ହେଉଛି କି ନାହିଁ ବାରମ୍ବାର ଦେଖିବା, ଅନବରତ କ୍ରମୋନ୍ନତି, ସୃଜନଶୀଳତା ପାଇଁ ନୂତନ ପଥ ଖୋଜିବା, ଚାଲେଞ୍ଜ ଗ୍ରହଣ କରିବା, ୟା ପରେ କ'ଣ କରାଯାଇପାରେ, କେତେ ଦୂର କରାଯାଇପାରେ, କେତେ ଭଲଭାବରେ କରାଯାଇପାରେ... ମୁଁ ଭାବୁଛି ଏ

ସମସ୍ତ ମୋର ଶକ୍ତି । ମୋର ସବୁଠାରୁ ବଡ଼ ଦୁର୍ବଳତା କାହାଉପରେ ସଂପୂର୍ଣ୍ଣ ଭରସା କରିବା । ଯେତେବେଳେ ମୋ ସହିତ ବିଶ୍ୱାସଘାତକତା ହୁଏ ମୁଁ ସବୁଠୁଁ ବେଶି ଆଘାତ ପାଏ । ସୌଭାଗ୍ୟବଶତଃ ଏମିତି ଖୁବ୍ ବେଶି ଘଟେନା ।

ମୁଁ ଖୁବ୍ ରାଗିଯାଏଁ । ରାଗିଲେ ଗାଳିକରେ – ଅସଲରେ ଚିତ୍କାର କରି ଗାଳି ଦିଏଁ । ମାତ୍ର ଏହା ଉଦ୍ଦେଶ୍ୟମୂଳକ, ଏହାର ପ୍ରଭାବ ପଡ଼ିବ ବୋଲି ପାଟି କରେଁ ନ ହେଲେ ମୁଁ ନିଜ ଉପରୁ ନିୟନ୍ତ୍ରଣ ହରାଏନି । ଏ କ୍ରୋଧ ପଛରେ ଏକ ଉଦ୍ଦେଶ୍ୟ ଥାଏ, ତେଣୁ ଏହାର ପ୍ରଭାବ ପଡ଼େ ଏବଂ ଏହା ଠିକ୍ କାମ କରେ । ବେଳେବେଳେ ତୁମକୁ ରାଗ ଦେଖେଇବାକୁ ପଡ଼ିବ । ମୁଁ ବାସ୍ ସେତିକି କରେ, ଅଧିକ କିଛି ନୁହେଁ । ଏଥିରେ ଅନ୍ୟମାନଙ୍କର ଉପକାର ବି ହୁଏ ।

ଆଗାମୀ ବଂଶଧରଙ୍କ ପାଇଁ ମୋର କାମନା ଏହି ଯେ ସେମାନେ ମୂଲ୍ୟବୋଧରେ ବିଶ୍ୱାସ କରନ୍ତୁ, ଚରମଭାବରେ ଏହାକୁ ପାଳନ କରନ୍ତୁ । ଚରିତ୍ରବାନ ହୁଅନ୍ତୁ । ଲୋକ ଆନ୍ତରିକଭାବେ ଖୁସି ରୁହନ୍ତୁ, ଉଦାର ହୁଅନ୍ତୁ । ମୁଁ ଏପରି ଏକ ଦେଶ କାମନା କରେଁ – ଯେଉଁଠି ଲୋକ ଚରିତ୍ରବାନ, ସର୍ଜନଶୀଳ ଓ ଉଦାର ହେଇଥାନ୍ତୁ । ମୁଁ ଭାବୁଛି ଥରେ ଆମେ ସେଇ ସ୍ତରରେ ପହଞ୍ଚିଗଲେ ସ୍ୱତଃ ସବୁକିଛି ଠିକ୍ ହେଇଯିବ । ଏକ ସୁସ୍ଥ ଜୀବନ ବଞ୍ଚିବା ନିମିତ୍ତ ଜଣେ ନିଜ ଆବଶ୍ୟକତା ମୁତାବକ ନେବ । ମୁଁ ମୋର ଯୁବ ପିଢ଼ିକୁ ଏମିତି ଦେଖିବାକୁ ଚାହେଁ – ଜଣେ ମଣିଷର ପଢ଼ାଶୁଣା ଥିବ, ସୃଜନଶୀଳତା ସହିତ ଆଧ୍ୟାତ୍ମିକ ରୁଚିବୋଧ ଥିବ ଓ ସର୍ବୋପରି ସେ ସମ୍ବେଦନଶୀଳ ହେଇଥିବା ଆବଶ୍ୟକ । ଆପାତତଃ ଆମର ଶିକ୍ଷା ବ୍ୟବସ୍ଥା ଏସବୁ ସୁବିଧା କିଛି ଯୋଗାଇ ଦିଏନି, ଆଧ୍ୟାତ୍ମିକତା ଦୃଷ୍ଟିକୋଣରୁ ନିଷ୍ଫଳା । ଏହା ବୌଦ୍ଧିକ ଶକ୍ତି ଉଦ୍ଦୀପିତ କରାଏ ନାହିଁ କି ସୃଜନଶୀଳତାକୁ ଅନୁପ୍ରେରିତ କରେ ନାହିଁ । ଏହା ତୁମକୁ କେବଳ ଗୋଟିଏ ଚାକିରିପାଇଁ ଗଢ଼େ ଯାହାଫଳରେ ତୁମେ କିଛି ଟଙ୍କା ଉପାର୍ଜନ କର । ଅନ୍ୟ ଶବ୍ଦରେ କହିଲେ ଏହା କୌଣସି ପ୍ରକାରେ ଟଙ୍କା ରୋଜଗାର କରିବାର ମାଧ୍ୟମ, ସୃଷ୍ଟିଶୀଳତାର ନୁହେଁ । ଆମର ଶିକ୍ଷାପଦ୍ଧତି ପ୍ରତ୍ୟେକ କର୍ମର ଯେ ଏକ ଉଦ୍ଦେଶ୍ୟ ରହିଛି ତାହା ଶିକ୍ଷା ଦିଏ ନାହିଁ । ଅର୍ଥ ଉପାର୍ଜନ ସେ ଉଦ୍ଦେଶ୍ୟର ଏକ ଅଂଶ ମାତ୍ର । ସାମୂହିକଭାବେ ଆମେ ଯେଉଁ ସମାଜର ଅଂଶ ସେହି ସମାଜର ଅଭାବୀମାନଙ୍କର ଆବଶ୍ୟକତା ପୂରଣ କରିବା ହେଉଛି ଆମର ପ୍ରକୃତ ଉଦ୍ଦେଶ୍ୟ ।

ସ୍ୱପ୍ନ ? ସ୍ୱପ୍ନ ଅର୍ଥ ଯଦି ଆମେ ପ୍ରହେଳିକା ବୁଝୁଁ ମୋର କିଛି ନାହିଁ । ମୁଁ କଠିନ ପରିଶ୍ରମ କରେ ଓ ସ୍ୱପ୍ନହୀନ ନିଦ୍ରା ଶୁଏଁ । କିନ୍ତୁ ମୁଁ ମୋର ପ୍ରତ୍ୟେକ ଦିନର ପ୍ରତ୍ୟେକ ମୁହୂର୍ତ୍ତ ତୃପ୍ତି ସହକାରେ ଜୀଏଁ । ମୁଁ ମୋର ଏଇ ସ୍ୱଭାବ ପାଇଁ ବାପାମାଙ୍କର ଆଶୀର୍ବାଦ ଓ ତ୍ୟାଗପ୍ରତି କୃତଜ୍ଞ । ଲୋକେ ଯଦି କୌଣସି ରୂପରେ ମତେ ସ୍ମରଣ କରିବାକୁ ଚାହାଁନ୍ତି ତ ପିତାମାତାଙ୍କ ଲାଳନପାଳନର ଯୋଗ୍ୟ ଦାୟାଦ ରୂପେ ମତେ ସ୍ମରଣ ରଖନ୍ତୁ ବୋଲି ମୁଁ ଚାହିଁବି ।

*(ଲବଲୀନ ଥଡାଣୀଙ୍କୁ ଦେଇଥିବା ସାକ୍ଷାତ୍କାର ଭିତ୍ତିରେ)*

ରୁଥ ମନୋରମା (ଜନ୍ମ-୧୯୫୨) ଜଣେ ସମାଜସେବୀ ଏବଂ ମାନବିକ ଅଧିକାରର ସକ୍ରିୟ କର୍ମୀ । ସେ ସମାଜର ଦରିଦ୍ର ଶ୍ରେଣୀ, ଅସଂଗଠିତ ଶ୍ରମକ୍ଷେତ୍ର ଏବଂ ଦଳିତ ଶ୍ରେଣୀର ମହିଳା ସମ୍ବନ୍ଧିତ ବିଷୟରେ ଗଭୀରଭାବେ ସଂପୃକ୍ତ । ଅନ୍ୟକୁ ପ୍ରଭାବିତ କରି ପରିବର୍ତ୍ତନ କରିପାରିବାର ପ୍ରଚଣ୍ଡ ଦକ୍ଷତା ଏବଂ ପ୍ରଚୁର ପରିମାଣର ଉତ୍ସାହ ଓ ଆବେଗ ସହିତ ସାମାଜିକ ନ୍ୟାୟ ସମ୍ପର୍କିତ ବିଭିନ୍ନ ପ୍ରସଙ୍ଗ ଉତ୍‌ଥାପନ କରିବା ନିମନ୍ତେ ସେ ସୁଖ୍ୟାତ । ସଂପ୍ରତି ସେ ନ୍ୟାସନାଲ ଆଲାଏନ୍‌ସ ଅଫ ୱମେନ୍‌ର ସଭାପତି, ୱମେନ୍'ସ ଭଏସ୍‌ର ସାଧାରଣ ସମ୍ପାଦକ ଏବଂ ନ୍ୟାସ୍‌ନାଲ ଫେଡ଼େରେସନ ଅଫ ଦଳିତ ୱମେନ୍'ର ଜାତୀୟ ଆବାହିକା ପଦରେ କାର୍ଯ୍ୟରତ ।

## ୧୬

# ନ୍ୟାୟପୂର୍ଣ୍ଣ ସମାଜ ନିମନ୍ତେ

### ରୁଥ୍ ମନୋରମା

୧୯୫୦ରୁ ୬୦ର ଶେଷ ଆଡ଼କୁ ଯେତେବେଳେ ପରିବର୍ତ୍ତନର ହାୱା ସମଗ୍ର ବିଶ୍ୱରେ ପ୍ରବାହିତ ହେଉଥିଲା ସେତେବେଳେ ମୁଁ ବଡ଼ ହେଲି । ଭାରତ ବର୍ଷ ସେତେବେଳକୁ ମାତ୍ର ତା'ର ଭାଗ୍ୟ ଜାଣିବାକୁ ଆରମ୍ଭ କରୁଥିଲା ଏବଂ ଅନାବିଷ୍କୃତ ବିକାଶ ପଥରେ ଅଗ୍ରସର ହେବାର ପ୍ରୟାସ କରୁଥିଲା । ନୂତନ ରାଜନୈତିକ ଆଦର୍ଶକୁ ନେଇ ଯୁବପିଢ଼ି ଖେଳିବା ଆରମ୍ଭ କରିଥିଲେ । ସମଗ୍ର ପରିବେଶରେ ଆଶାର ଉଜ୍ଜ୍ୱଳ କିରଣ ଥିଲା ଓ ତା' ସହ ଥିଲା ଭୟର ଏକ ଆସ୍ତରଣ । ସତୁରୀ ଦଶକ ବିଶେଷଭାବେ ସହରୀ ମହିଳାମାନଙ୍କର ଆନ୍ଦୋଳନ ବିକଶିତ ହେବାରେ ଦେଖିଛି । ତେବେ ମହିଳାମାନଙ୍କ ନିମନ୍ତେ ସଂଘର୍ଷ ଏକ ନୂଆ ବିଷୟ ନୁହେଁ । ଗ୍ରାମାଞ୍ଚଳରେ, ଭାରତର ବିଭିନ୍ନ ଅଂଶରେ ମହିଳାମାନେ ଏ ସଂଘର୍ଷ ସହିତ ପରିଚିତ ଥିଲେ । ପ୍ରାକ୍ ସ୍ୱାଧୀନତା କାଳୀନ ତେଲାଙ୍ଗାନା ଆନ୍ଦୋଳନ, ତେଭାଗା, ମଧ୍ୟଭାରତରେ ବିକଶିତ ହେଉଥିବା ଜନଜାତି ବିଦ୍ରୋହ, ମହାରାଷ୍ଟ୍ର ଦରବୃଦ୍ଧି ବିରୋଧୀ ସଂଘର୍ଷ, ସହରାଞ୍ଚଳରେ ଯୌତୁକ ପ୍ରଥା ବିରୋଧୀ ଆନ୍ଦୋଳନ ଏବଂ ଏତିକିରେ ଶେଷ ନୁହେଁ— ମଥୁରା ଧର୍ଷଣ ମାମଲାରେ ବିଚାରପତିଙ୍କ ରାୟ ବିରୋଧୀ ଆନ୍ଦୋଳନ ସୂଚେଇଦିଏ ଯେ ଭାରତୀୟ ମହିଳାମାନେ ଆଉ ସେ ପୂର୍ବର ଦୀର୍ଘକାଳ ନିର୍ଯାତିତ ବିଚାରୀ ଭାରତୀୟ ନାରୀ ନୁହଁନ୍ତି । ୧୯୭୫ ମସିହା ଆର୍ନ୍ତଜାତିକ ମହିଳା ବର୍ଷ ଓ ଆନ୍ତର୍ଜାତିକ ମହିଳା ଦଶକ ଭାବେ ଘୋଷିତ ହେବାରୁ ଭାରତୀୟ ମହିଳାମାନଙ୍କର ଅବସ୍ଥାକୁ ଭଲଭାବରେ ବୁଝିବାପାଇଁ ଏକ ବିରାଟ ପ୍ରେରଣା ମିଳିଲା ଏବଂ ଏହା ଅଧିକରୁ ଅଧିକ ଶିକ୍ଷାବିତ୍, ରାଜନୀତି, ବିଚାରକ ତଥା ସମାଜସେବୀମାନଙ୍କୁ ମହିଳା ବିଷୟଉପରେ ଅଧ୍ୟୟନ କରିବାକୁ ଏବଂ କାର୍ଯ୍ୟ କରିବାକୁ ଆକୃଷ୍ଟ କଲା । ସମାନ୍ତରାଳ ଭାବେ ଦଳିତ ସଚେତନତା ମଧ୍ୟ ବୃଦ୍ଧି ପାଇବାକୁ ଲାଗିଲା । ଅନ୍ୟ ସ୍ତରରେ ସାମାଜିକ କ୍ଷେତ୍ରରେ କାମ କରୁଥିବା ବହୁ ଗୋଷ୍ଠୀ ତଥା ମୁଖ୍ୟ ଚର୍ଚ୍ଚଗୁଡ଼ିକ ସାମାଜିକ ଗତିବିଧିକୁ ନିଜର ମୂଳ ଉଦ୍ଦେଶ୍ୟଭାବେ ଗ୍ରହଣ କରିଲେ । ମୁଁ ଏ ସମସ୍ତ ଭାବଧାରା ଏବଂ କାର୍ଯ୍ୟଦ୍ୱାରା ପ୍ରଭାବିତ ନହୋଇ ରହିପାରିଲି ନାହିଁ ।

ସେତେବେଳର ମାଡ୍ରାସର ଉପକଣ୍ଠବର୍ତ୍ତୀ ଅଧା ସହରୀ ଅଞ୍ଚଳ 'ଚେଟ୍‌ପେଟ୍'ରେ ଓ ତା'ର ଚତୁର୍ଦ୍ଦିଗରେ ଗୋଟିଏ ବିଶାଳ ପରିବାର ବସବାସ କରୁଥିଲା । ମୋ ମା ନାରୀ

ଶିକ୍ଷାରେ ଏତେ ବେଶୀ ଆଗ୍ରହୀ ଥିଲେ ଯେ ସେ ତାଙ୍କ ବାପାଙ୍କ ରକ୍ଷଣଶୀଳତା ବିରୁଦ୍ଧରେ ସଂଗ୍ରାମକରି ସ୍କୁଲ ଗଲେ ଏବଂ ଶେଷରେ ଜଣେ ଶିକ୍ଷୟିତ୍ରୀ ହେଲେ । ସେ ତାଙ୍କର କୈଶୋରରେ ଖ୍ରୀଷ୍ଟିଆନ୍ ହେଇଗଲେ । ସେ ପଣ୍ଡିତା ରମାବାଈଙ୍କର ଜଣେ ଏତେ ବଡ଼ ମୁଗ୍ଧ ପ୍ରଶଂସକ ଥିଲେ ଯେ ନିଜର ବଡ଼ ଝିଅକୁ ତାଙ୍କ ଝିଅ ନାଁରେ, ନାମିତ କଲେ । ତେଣୁ ମୋର ଦ୍ୱିତୀୟ ନାମ ମନୋରମା । ମୋ ବାପା ତାଙ୍କ ଅଞ୍ଚଳ ନିକଟବର୍ତ୍ତୀ ଗ୍ରାମର ଦରିଦ୍ର ଗ୍ରାମବାସୀମାନଙ୍କୁ ସଫଳତାପୂର୍ବକ ସଂଘର୍ଷ କରିବାକୁ ପ୍ରରୋଚିତ କରିଥିଲେ । ଯାହା ଫଳରେ ବଂଶାନୁକ୍ରମେ  ରହି ଆସୁଥିବା ଜମିର ମାଲିକାନା ସେମାନେ ପାଇପାରିବେ । ଡାକ ଓ ତାର ବିଭାଗରେ ଚାକିରି କରୁଥିବା ମୋ ବାପା ଓ ମାଧ୍ୟମିକ ବିଦ୍ୟାଳୟରେ ଶିକ୍ଷକତା କରୁଥିବା ମୋ ମା, ତାଙ୍କର ସମସ୍ତ ଝିଅମାନଙ୍କୁ ଉତ୍ସାହିତ କରୁଥିଲେ ପଢ଼ିବାକୁ ଯାହାଫଳରେ ସେମାନେ ନିଜର ଏକ ଏକ ବୃତ୍ତି ଗ୍ରହଣ କରି ଆତ୍ମନିର୍ଭରଶୀଳ ହୋଇ ଯେଉଁ ଦଳିତ ସମ୍ପ୍ରଦାୟରୁ ଆମେ ଆସିଛୁ ତା ସମ୍ମୁଖରେ ଏକ ଆଦର୍ଶର ପ୍ରତିମୂର୍ତ୍ତି ସ୍ୱରୂପ ଠିଆ ହୁଅନ୍ତୁ । ସେମାନେ ଗୋଟିଏ ଘର ଖୋଲା ରଖିଥିଲେ ଯେଉଁଠିକି ଦରକାରଥିବା ଲୋକ ଯେ କୌଣସି ସମୟରେ ଆସିପାରେ । କହିବା ବାହୁଲ୍ୟ ଯେ ସେମାନଙ୍କର ଈଶ୍ୱରଙ୍କ ଉପରେ ଗଭୀର ଆସ୍ଥା ଓ ବିଶ୍ୱାସ, ତାଙ୍କର କଠିନ ପରିଶ୍ରମ, ନ୍ୟାୟ ସମ୍ପର୍କିତ ବିଚାରଧାରା/ସିଦ୍ଧାନ୍ତ, ଆତ୍ମ ସମ୍ମାନ-ବୋଧ ଏବଂ ଗରିବଙ୍କ ପ୍ରତି ସେବା ମନୋଭାବ ମୋର ସବୁଠାରୁ ବଡ଼ ପ୍ରେରଣା ଥିଲା ।

ଆମେମାନେ ସ୍ଥାନୀୟ ସ୍କୁଲ ଓ କଲେଜରେ ପଢ଼ିବା ପାଇଁ ନାଁ ଲେଖେଇ ପାରିଲୁ । ମାଡ୍ରାସର ୱମେନସ୍ ଖ୍ରୀଷ୍ଟିଆନ୍ କଲେଜରୁ ବିଜ୍ଞାନରେ ସ୍ନାତକ ଉପାଧି ନେବାପରେ ମତେ 'ସାଲ ଡ଼ି' ଆଲିନ୍ସ୍କିଙ୍କ କାର୍ଯ୍ୟ ପ୍ରବିଧି ଅନୁସାରେ ସାମୂହିକ ସଙ୍ଗଠନରେ ପ୍ରଶିକ୍ଷିତ ହେବାପାଇଁ ପଠାଗଲା । ମୁଁ ସେଠାରେ କ୍ଷେତ୍ର ଅଧ୍ୟୟନ କରୁଥିବା ସମୟରେ ଏକ ଭଲ ବିଷୟରେ ସ୍ନାତକୋତ୍ତର କରେ ବା ଚାକିରୀ ପାଇଁ ସୁବିଧାଜନକ ବିଷୟ ଅଧ୍ୟୟନ କରେ ବୋଲି ମୋ ବାପା ଖୁବ୍ ଆଗ୍ରହୀ ଥିଲେ । ମାଡ୍ରାସର ଷ୍ଟେଲା ମେରିଜ୍ କଲେଜରେ ସାମାଜିକ କାର୍ଯ୍ୟରେ ସ୍ନାତକୋତ୍ତର ବିଷୟରେ ଜାଣି ସେ ମୋ ତରଫରୁ ଆବେଦନ କଲେ । ମୁଁ ସେତେ ବେଶୀ ଆଗ୍ରହୀ ନଥିଲି କାରଣ ମତେ ଲାଗିଲା ଯେ ମୁଁ ସେହି କାମ କରୁଛି । ଯେତେବେଳେ ସାକ୍ଷାତକାର ପାଇଁ ଡାକରା ଆସିଲା ସେତେବେଳକୁ ବି ମୁଁ ଦକ୍ଷିଣ ତାମିଲନାଡୁର ଗୋଟିଏ ଗାଁରେ ଥିଲି । ମୋ ମା କଲେଜକୁ ଗଲେ ଓ ବିଭାଗୀୟ ମୁଖ୍ୟ ଜଣେ ଫିଲିପାଇନ୍ସର ନନ୍ ଥିଲେ, ତାଙ୍କୁ ମୋ ପାଇଁ ଏକ ନୂଆ ତାରିଖ ଦେବାକୁ ଅନୁରୋଧ କଲେ । ମୋ ମା ତାଙ୍କୁ ମୋ କାମ ବିଷୟରେ ବୁଝେଇଲେ । ଯାହା ଶୁଣି ସେ ଉଦାର ଓ ଉତ୍ତମ ସିଷ୍ଟର ଜଣକ ମା'ଙ୍କୁ କହିଲେ ଯେ ମୋର ସାକ୍ଷାତକାର ଦେବା ଦରକାର ନାହିଁ । ମୁଁ ସେ ପାଠ୍ୟକ୍ରମ ପାଇଁ ନିର୍ବାଚିତ ହେଲି । ମୋ ବାପା ମତେ ଡ଼କେଇଲେ ଓ ଦରମା ବାବଦକୁ ବର୍ଷକ ପାଇଁ ୬୫୦ ଟଙ୍କା ଧରେଇ ଦେଇ କଲେଜ ଯିବାକୁ କହିଲେ । ମୁଁ ସେ ଟଙ୍କାକୁ ମୋ ରୁମାଲ୍‌ରେ

ବାନ୍ଧି କିଛିଦିନ ଟାଳଟୁଳ କଲି । ଦିନେ ଦରମା ଜମା କରିବା ପାଇଁ ଗୋଟେ ପୁନର୍ସୂଚନା ଡାକ ଦ୍ୱାରା ଷ୍ଟେଲୋ ମେରିଜ୍ କଲେଜରୁ ଆସିଲା । ତାକୁ ଦେଖି ମୁଁ ବାପାଙ୍କ ନଜରରୁ ଆଗେ ଲୁଚେଇଦେଲି । ଦରମା ଜମା କରିବାକୁ ଦଉଡ଼ିଲି ଓ ଏମିତି ସେ ପଢ଼ାରେ ଯୋଗଦେଲି ।

ମୋର ସ୍ନାତକୋତ୍ତର ଡ଼ିଗ୍ରୀ ପରେ ମୁଁ ମାଡ୍ରାସରେ ବର୍ଷକ ପାଇଁ ଗୋଟିଏ ସ୍ୱୟଂସେବୀ ସଙ୍ଗଠନରେ କାମ କଲି । ସେ ସମୟରେ ନିର୍ବାଚନ ଥିଲା, ତେଣୁ ମତେ ଗୋଟିଏ ଭଲ ସୁଯୋଗ ମିଳିଲା ଲୋକଙ୍କୁ କିଛି ରାଜନୈତିକ ଶିକ୍ଷା ଦେବା ପାଇଁ । ଠିକ୍ ତାପରେ ପରେ ଆକସ୍ମିକ ବନ୍ୟାଦି ସାଇଦାପେଟ୍‌ର ବିରାଟ ବସ୍ତି ଧିର ନଗରକୁ ସମ୍ପୂର୍ଣ୍ଣ ଜଳମଗ୍ନ କରିଦେଲା, ଯେଉଁଠି କି ମୁଁ କାମ କରୁଥିଲି, ମୋର ପ୍ରଥମ କାମ ଥିଲା ବସ୍ତିବାସୀଙ୍କୁ ଶିକ୍ଷା ଓ ବାସ ସ୍ଥାନ ଯୋଗାଇବା । ଆମେ ସମଗ୍ର ବସ୍ତିର ପୁନର୍ନିର୍ମାଣ କରିବାରେ, ମାଟି ସ୍ତରକୁ ଉଚ୍ଚ କରିବାରେ ତଥା ବର୍ଷକୁ ବର୍ଷ ଯେଉଁ ବନ୍ୟା ସେ ଅଞ୍ଚଳକୁ ପ୍ଲାବିତ କରୁଥିଲା ତାକୁ ପ୍ରତିରୋଧ କରିବା ପାଇଁ କେତେକ ସୁବିଧା ସୁଯୋଗ ସୃଷ୍ଟି କରିବାରେ ସଫଳ ହେଲୁ । ୟା ପରେ ମୁଁ 'ଗ୍ରେଲ' (GRAIL)ର ଯୋଗ ଦେଲି, ଏହା ଏକ ଆନ୍ତର୍ଜାତିକ ମହିଳା ସଙ୍ଗଠନ । ମୋର ଚାକିରି ବାଙ୍ଗାଲୋର୍‌ରେ ଓ କ୍ଷେତ୍ର ପ୍ରକଳ୍ପ ଥିଲା ଦକ୍ଷିଣ ଭାରତର । ମତେ ପୂରା ସମୁଦାୟ ଓ କର୍ମକର୍ତ୍ତାମାନଙ୍କ ପାଇଁ ଶିକ୍ଷା ଏବଂ ସାମ୍ପ୍ରଦାୟିକ ବିକାଶ ପ୍ରଶିକ୍ଷଣର ପାଠ୍ୟକ୍ରମ ପ୍ରସ୍ତୁତ କରିବାକୁ ଥିଲା । ଏ ପରିସ୍ଥିତିରେ ମୁଁ ପାଓଲା ଫ୍ରେୟରଙ୍କର 'ବିବେକୀକରଣ ପ୍ରବିଧି' ଉପଯୋଗ କଲି ଯେଉଁଥିରେ ମୁଁ ନିଜେ ପ୍ରଶିକ୍ଷିତ ।

ପାଞ୍ଚବର୍ଷ କାମ କରିବା ପରେ ମୁଁ ସ୍ଥିର କଲି ଯେ ମୁଁ ନିଜେ ନିଜେ କିଛି କାମ କରିବା ଆବଶ୍ୟକ । ମୋ ମନରେ ଏକ ଦୃଢ଼ ଧାରଣା ଥିଲା ଯେ ସାଧାରଣ ଲୋକଙ୍କୁ ତାଙ୍କ ଅଧିକାର ପାଇଁ ସଂଗଠିତ କରାଯାଇପାରେ । ଆଉ ସେହି ଅନୁସାରେ ବାଙ୍ଗାଲୋର୍‌ର ବସ୍ତି ଅଞ୍ଚଳର ମହିଳାମାନଙ୍କର ଆବଶ୍ୟକତାରୁ ଜନ୍ମ ନେଲା ଓ ସ୍ଥାପିତ ହେଲା 'ୱମେନ୍‌ସ ଭଏସ୍' । ଆମେ ୧୯୮୫ରେ ଏହାକୁ ଆରମ୍ଭ କଲୁ ଏବଂ ସହରୀ ଦରିଦ୍ରଙ୍କର ସ୍ୱାସ୍ଥ୍ୟ, ଗୃହ ଓ ଅନ୍ୟାନ୍ୟ ଆବଶ୍ୟକତା ଉପରେ କାମ କଲୁ । ସହରାଞ୍ଚଳରେ ଖଟିଖିଆ ମହିଳାମାନଙ୍କର ବିଶେଷ ଭାବରେ ଘରେ ଚାକରାଣୀଭାବେ କାମ କରୁଥିବା ମହିଳାମାନଙ୍କ ଦୁର୍ଦ୍ଦଶା ଦେଖି, ବାଙ୍ଗାଲୋର ଗୃହକର୍ମୀକାରା ସଂଘ (ଡ଼ୋମେଷ୍ଟିକ୍ ୱର୍କର୍‌ସ ୟୁନିଅନ୍) ଏକ ଟ୍ରେଡ୍ ୟୁନିୟନ୍‌ଭାବେ ଭାରତରେ ପ୍ରଥମଥର ପାଇଁ ଟ୍ରେଡ୍ ୟୁନିଅନ୍ ଆକ୍ଟ ଅଧୀନରେ ପଞ୍ଜୀକୃତ ହେଲା । ଟ୍ରେଡ୍ ୟୁନିଅନ୍ ପ୍ରସଙ୍ଗରେ ଆଉ ଏକ କଥା କହିପାରେ –

ମୁଁ ଘନିଷ୍ଠ ଭାବେ ରାଷ୍ଟ୍ରୀୟ ଶ୍ରମ ସଙ୍ଗଠନ ସହିତ ଜଡ଼ିତ (ଏନ୍.ସି.ଏଲ୍) ଯାହା କି ଦେଶର ପ୍ରଥମ ସର୍ବୋଚ୍ଚ ସଂଗଠନ ଏବଂ ଏହା ଅସଂଗଠିତ କ୍ଷେତ୍ରରେ କାର୍ଯ୍ୟରତ ଲୋକଙ୍କର ସ୍ୱାର୍ଥରକ୍ଷା କରେ । ଗୃହକର୍ମୀକାରା ସଂଘ ରାଷ୍ଟ୍ରୀୟ ଶ୍ରମ ସଙ୍ଗଠନର ଏକ ଅଂଶ ଓ ମୁଁ ଏହାର ଅନ୍ୟତମ ସମ୍ପାଦକ ।

୧୯୮୮ର ଉତ୍ତରାର୍ଦ୍ଧରେ ସମଗ୍ର ଦେଶର ସ୍ୱୟଂ ସେବୀ ସଂଗଠନର ନେତାମାନଙ୍କର ଗୋଟିଏ ସଭାରେ ମୁଁ ଯୋଗ ଦେଇଥିଲି । ଏହାର ଉଦ୍ଦେଶ୍ୟ ଥିଲା ମହିଳା ବିକାଶ ସମ୍ବନ୍ଧିତ ବିଚାରଧାରା ସ୍ପଷ୍ଟ କରିବା, ସ୍ୱୟଂସେବୀ ସଙ୍ଗଠନଗୁଡ଼ିକର ସାମର୍ଥ୍ୟ ଓ ଦୁର୍ବଳଦିଗଗୁଡ଼ିକ ଆଲୋଚନା କରିବା ଏବଂ ମହିଳା ବିକାଶରେ ବାଧା ସୃଷ୍ଟି କରୁଥିବା ଦିଗକୁ ସୁପରିକଳ୍ପିତ ଭାବେ ବ୍ୟାହତ କରି ଏହାକୁ ଦୃଢ଼ କରିବା । ବୈଠକର ନିର୍ଯ୍ୟାସ ସ୍ୱରୂପ ବୈଠକରେ ଏହା ସମ୍ମୁଖକୁ ଆସିଲା ଯେ ଦୃଷ୍ଟିଭଙ୍ଗୀ, କାର୍ଯ୍ୟକ୍ରମ, ଆଭ୍ୟନ୍ତରୀଣ ସ୍ତରରେ ସଂଗଠନ ଓ କାର୍ଯ୍ୟନିର୍ବାହରେ ସାହାଯ୍ୟ ଓ ସହଯୋଗ ଆବଶ୍ୟକ । ୧୮୮୯ରେ ଆମ ଭିତରୁ ଗୋଟିଏ ଦଳ ଇନିସିଏଟିଭସ୍ : ୱମେନ୍ ଇନ୍ ଡ଼େଭେଲପ୍‌ମେଣ୍ଟ (ଆଇ ଡ଼ବ୍ଲ୍ୟୁ ଆଇ ଡ଼ି) ସଂସ୍ଥା ଆରମ୍ଭ କଲେ, ଯେଉଁଥିରେ ଜ୍ୟୋସ୍ନା ଚାଟାର୍ଜୀ, ହରି ଜନ୍, ଅନ୍ତ୍ୟା ମାଡିୟାଥ୍, ଶୋଭା ଶକରୱାଡ଼େ, ମାର୍ଥା ପୁଷ୍ପାରାଣୀ ଏବଂ ମୁଁ ଥିଲୁ । ଆଜି ଆଇ ଡ଼ବ୍ଲ୍ୟୁ, ଆଇଡ଼ି ମହିଳାମାନଙ୍କର ବିକାଶ ପ୍ରଶିକ୍ଷଣ ସଂସ୍ଥାଗୁଡ଼ିକ ମଧ୍ୟରୁ ଗୋଟିଏ ପ୍ରମୁଖ ସ୍ୱୟଂସେବୀ ସଙ୍ଗଠନ । ଏହା ବିଭିନ୍ନ ଅଞ୍ଚଳରେ ମହିଳାମାନଙ୍କର ଓକିଲାତି, ସେମାନଙ୍କ ଲାଭ ପାଇଁ ସଂଘର୍ଷ ଏବଂ ସେମାନଙ୍କୁ ଶକ୍ତିଶାଳୀ କରିବା ଦିଗରେ କାମ କରିଛି । ଏହି ସଂସ୍ଥା କେତେଗୁଡ଼ିଏ ନୀତି ପ୍ରଣୟନ କରିବାରେ ଅଗ୍ରଣୀ ଭୂମିକା ନେଇଛି ଏବଂ ମୁଁ ସେଥିରେ ସକ୍ରିୟ ଭାବରେ ସଂଯୁକ୍ତ ।

୧୯୮୬ରେ ମତେ ଆମେରିକାରେ ରହୁଥିବା ଆଫ୍ରୋ ଆମେରିକା ଏବଂ ଭାରତର ଦଳିତମାନଙ୍କ ମଧ୍ୟରେ ଏକ ପାରସ୍ପାରିକ ସାଂସ୍କୃତିକ ଅଧ୍ୟୟନରେ ଭାଗ ନେବାକୁ କୁହାଗଲା । ମୋର ମଧ୍ୟ ଆମେରିକାରେ ଥିବା କଳାମହିଳାମାନଙ୍କ ଜୀବନ ଅଧ୍ୟୟନ କରି ଭାରତର 'ଅସ୍ପୃଶ୍ୟ' ଦଳିତ ମହିଳାମାନଙ୍କ ସହିତ ତୁଳନା କରିବାର ଆଗ୍ରହ ଥିଲା । ଏହା ଦ୍ୱାରା ନିମ୍ନ ମଧ୍ୟବିତ୍ତ ସମାଜର କେତେକ ବିଷୟ କିଛିଟା ସମାନ ହେଲେ ହେଁ ମୌଳିକ କେତୋଟି ବିଷୟରେ ମଧ୍ୟ ପାର୍ଥକ୍ୟ ରହିଛି ବୋଲି ବୁଝିପାରିଲି । ଏହି ସମୟରେ ମଧ୍ୟ ଖ୍ରୀଷ୍ଟିଆନ୍ ଦଳିତ ମୁକ୍ତିର କାମ ଆରମ୍ଭ ହେଲା ଏବଂ ଭାରତରେ ଦଳିତ ଅଧ୍ୟୟନ ବଡ଼ ତୀବ୍ରତାର ସହିତ ଚାଲିଲା । ଭାରତରେ, ନିର୍ଦ୍ଦିଷ୍ଟ ଭାବରେ ଦଳିତ ସମ୍ପ୍ରଦାୟର ମହିଳାମାନଙ୍କର ସ୍ଥିତି ଅତ୍ୟନ୍ତ ଅନିଶ୍ଚିତ ଥିଲା । ସେମାନେ ବହୁମୁଖୀ ଅତ୍ୟାଚାର ସହ୍ୟ କରୁଥିଲେ । ନାରୀ ଭାବରେ, ଦଳିତ ଭାବରେ ପୁନଶ୍ଚ ଗରିବ ଏବଂ ସମ୍ପୂର୍ଣ୍ଣ ଅବଦମିତ ଭାବରେ । ତେଣୁ ଏମାନଙ୍କୁ ମୁଁ ଦଳିତଙ୍କ ଦଳିତ କହେଁ । ମୁଁ ବର୍ତ୍ତମାନ ଅନୁଭବ କରୁଛି ଯେ ଏକ ବିରାଟ ଅଞ୍ଚଳରେ ବିଶାଳ ଜନସମୁଦ୍ରକୁ ପ୍ରଭାବିତ କରୁଥିବା ସାମାଜିକ ସଂରଚନା ସମ୍ବନ୍ଧିତ ତତ୍ତ୍ୱ ଗ୍ରହଣ କରିବା ନିମନ୍ତେ ବୃହତ ଓ ବହୁଲୋକ ବିଶିଷ୍ଟ ସଙ୍ଗଠନର ଆବଶ୍ୟକତା ରହିଛି । ମୁଁ ଏସୀୟ ମହିଳା ମାନବାଧିକାର ପରିଷଦର କେନ୍ଦ୍ରୀୟ ଦଳର ସଦସ୍ୟା ଭାବେ ସଂଯୁକ୍ତ ଥିଲି ଏବଂ ୧୯୯୩ରେ ମୁଁ ବାଙ୍ଗାଲୋରରେ ଦଳିତ ମହିଳାମାନଙ୍କ ବିରୋଧରେ ହୋଇଥିବା ଅତ୍ୟାଚାର ଉପରେ ଜନସାଧାରଣଙ୍କ ସମ୍ମୁଖରେ ଶୁଣାଣି ଆୟୋଜନ କରିଲି । ରାଷ୍ଟ୍ରୀୟ ଦଳିତ ମହିଳା ସଂଘ ଏହି ପ୍ରୟାସରୁ ଜୀବନ୍ୟାସ ପାଇଛି ।

୧୯୯୪ରେ ଭାରତର ସ୍ୱୟଂସେବୀ ସଙ୍ଗଠନଗୁଡ଼ିକ ନିଷ୍ପତ୍ତି ନେଲେ ଯେ ଭାରତୀୟ ମହିଳାମାନେ ଅଧିକ ସଂଖ୍ୟାରେ ଓ ଯଥାର୍ଥଭାବେ ଅନୁପ୍ରେରିତ ହେବା ଆବଶ୍ୟକ ଯାହା ଫଳରେ ୧୯୯୫ରେ ବେଜିଂଠାରେ ହେବାକୁ ଥିବା ଚତୁର୍ଥ ସଂଯୁକ୍ତ ରାଷ୍ଟ୍ର ବିଶ୍ୱମହିଳା ସମ୍ମିଳନୀରେ ତାଙ୍କର ସାର୍ଥକ ଯୋଗଦାନ ଘଟିବ । କେତେକ ଦ୍ୱିପାକ୍ଷିକ ଓ ବହୁପାକ୍ଷିକ ବଦାନ୍ୟ ବ୍ୟକ୍ତିଙ୍କ ସାହାଯ୍ୟ ଓ ସମର୍ଥନ ସହଯୋଗରେ ଗୋଟିଏ ଦଳ ସୂଚାରୁ ରୂପେ ଏହି କାର୍ଯ୍ୟପ୍ରଣାଳୀକୁ ଆଗେଇ ନେବା ପାଇଁ ଗଠିତ ହେଲା । ଦିଲ୍ଲୀରେ ଏକ ସମନ୍ୱୟ ସମିତି ଗଠିତ ହେଲା । ଏଥିରେ ଏହି ବିଷୟର ବିଶେଷଜ୍ଞ ତଥା ମହିଳା କର୍ମୀଗଣ ଯେଉଁମାନେ ମହିଳାଙ୍କଉପରେ ତୃଣମୂଳ ସ୍ତରରେ କାମ କରୁଛନ୍ତି ତାଙ୍କୁ ଅନ୍ତର୍ଭୁକ୍ତ କରାଗଲା । ମୁଁ ଏହାର ଉପଦେଷ୍ଟା ସମିତିର ଏକ ଅଂଶ ଥିଲି, ଭାରତର ବିଭିନ୍ନ ଅଞ୍ଚଳର ପ୍ରତିନିଧିଗଣ ଏଥିରେ ଥିଲେ । ଏହାର ମୁଖ୍ୟ ଭୂମିକା ଥିଲା ଉକ୍ତ ସମ୍ମିଳନୀ ସମ୍ପର୍କରେ ସୂଚନା ପ୍ରସାରଣ, ତୃଣମୂଳ ସ୍ତରରେ କାର୍ଯ୍ୟରତ ମହିଳାମାନଙ୍କର ଯୋଗଦାନକୁ ଉତ୍ସାହିତ କରିବା, ସେମାନଙ୍କ ସମସ୍ୟା ଓ ଆକାଂକ୍ଷା ଉପରେ ବିଚାର କରିବା ଏବଂ ସେମାନଙ୍କର ଅଭିଜ୍ଞତା ସଂଗ୍ରହ କରିବା । ଏ ସମସ୍ତ ବିଷୟ କେବଳ ମୁଖ୍ୟ ସମ୍ମିଳନୀ ନୁହେଁ ବରଂ ହୁଓ୍ୱେରୁରେ ଆୟୋଜିତ ସ୍ୱୟଂସେବୀ ମଂଚରେ ଉପସ୍ଥାପିତ ହେବାକୁ ଥିବା ସୁଚିନ୍ତିତ ବକ୍ତବ୍ୟର ଖୋରାକ ହୋଇଥାନ୍ତା । ଏ ଦୁଇଟି ମୋଟାମୋଟି ଏକ ସମୟରେ ହେବାର ଥିଲା ।

ଆମମାନଙ୍କ ମଧ୍ୟରୁ କେତେକ ଦକ୍ଷିଣ ଭାରତରେ ସମାନ ପ୍ରକାରର ଏକ ସମନ୍ୱୟ ସମିତିର ଆବଶ୍ୟକତା ଅନୁଭବ କଲେ ଯାହା ସେଇ ସମାନ କାର୍ଯ୍ୟ ସେଠାରେ କରନ୍ତା । ଆମର ମନେହେଲା ଯେ ବିଭିନ୍ନ ଗୋଷ୍ଠୀ ଏବଂ ଅନୁଷ୍ଠାନ ନିକଟରେ ପହଞ୍ଚିଲେ ଏହା ଅଧିକ ସହଜ ହେବ ଏବଂ ସେ ଅଞ୍ଚଳର ନିକଟବର୍ତ୍ତୀ ତଥା ସ୍ଥାନୀୟ ଭାଷା ସହିତ ଆମର ପରିଚିତି ଥିବାରୁ ଏହା ଅଧିକ ପ୍ରଭାବଶାଳୀ ହେବ । ଫଳସ୍ୱରୂପ ଏକ ସମନ୍ୱୟ ସମିତି (ବାଙ୍ଗାଲୋର) ଗଠିତ ହେଲା ଏବଂ ଭାରତୀୟ ସାମାଜିକ ଅନୁଷ୍ଠାନ ବାଙ୍ଗାଲୋରଠାରେ କାର୍ଯ୍ୟ ଆରମ୍ଭ କଲା ।

ଠିକ୍ ହେଉ କି ଭୁଲ୍, ମାତ୍ର ଭାରତରେ ନାରୀ ଆନ୍ଦୋଳନର ଏକ ସହରୀ ଶିକ୍ଷିତ ଉଚ୍ଚ ଶ୍ରେଣୀ ବା ଜାତିର ଛବି ମୂଳରୁ ରହିଛି । ରାଜନୈତିକ ଦଳ ସମ୍ପୃକ୍ତ ମହିଳା ସଙ୍ଗଠନ, ସମ୍ପୂର୍ଣ୍ଣ ରୂପେ ଦଳୀୟ ମହିଳା ଗୋଷ୍ଠୀ ଏବଂ ୱାଇ ଡ଼ବ୍ଲ୍ୟୁ ସି ଏ (ଗୋଟିଏ ସେବାରତ ସଂଗଠନ) ଆଦି ମହିଳା ବିଷୟକ ତଥ୍ୟ ସରକାରଙ୍କ ସମ୍ମୁଖରେ ଉପସ୍ଥାପନ କରି ସଫଳତା ପାଇଛନ୍ତି ଓ ଭଲ କାମ କରିଛନ୍ତି । ଏହି ଗୋଷ୍ଠୀଗୁଡ଼ିକର ମୁଖ୍ୟ କାର୍ଯ୍ୟାଳୟ ଦିଲ୍ଲୀରେ । ଫଳରେ ଏଗୁଡ଼ିକର ଏକ ଜାତୀୟ ଭାବମୂର୍ତ୍ତି ରହିଛି । ମୁଁ ସନ୍ଦିହାନ ଯେ ଦଳିତ ଏବଂ ଦାରିଦ୍ର୍ୟ ସୀମାରେଖାରେ ଥିବା ଲୋକେ ସେମାନଙ୍କ ନିଜ ବକ୍ତବ୍ୟ ସେମାନେ ଯେପରିଭାବେ ଉପସ୍ଥାପନ କଲେ ଓ ନେତୃତ୍ୱ ନେଲେ ତାହା କେତେ ଭଲଭାବେ ଏହି ସଂସ୍ଥାର ବକ୍ତବ୍ୟରେ ପ୍ରକାଶ ପାଇଲା । ଦୂରତ୍ୱ ତଥା ଭାଷାଗତ ଅସୁବିଧା କାରଣରୁ ଦକ୍ଷିଣ ଭାରତର ମହିଳାମାନେ

ଠିକ୍ ଭାବରେ ଭାଗ ନେଇ ପାରିଲେ ନାହିଁ । ମୁଁ ତର୍କ କରିଥିଲି ଯେ ଦଲିଲ ଦସ୍ତାବିଜ ଅନୂଦିତ ହୋଇ ବଣ୍ଟା ଯାଇପାରିଥାନ୍ତା, ତଥା ପ୍ରଭାବଶାଳୀ ଆଲୋଚନା ହୋଇପାରିଥାନ୍ତା । ଦକ୍ଷିଣ ଭାରତରେ ଯଦି କୌଣସି ସମନ୍ୱୟ ସଂସ୍ଥା ଥାନ୍ତା ତେବେ ସରକାରଙ୍କୁ ସେ ସମସ୍ତ ବିଷୟର ସୂଚନା ଦିଆଯାଇ ପାରୁଥାନ୍ତା । ପ୍ରକୃତରେ ଜଣେ ଅଭିଜ୍ଞତାରୁ ଜାଣେ ଯେ ''ଜ୍ଞାନ ହିଁ ଶକ୍ତି'' ।

ପରିଣାମ ସ୍ୱରୂପ ତୃଣମୂଳ ସ୍ତରୀୟ ମହିଳାମାନଙ୍କର ସର୍ବବୃହତ ଦଳ ଦକ୍ଷିଣରୁ ଦିଲ୍ଲୀକୁ ପ୍ରତିବଦ୍ଧତାର ସମ୍ମିଳନୀରେ ଯୋଗ ଦେବା ପାଇଁ ଆସିଲେ । ମହିଳାମାନଙ୍କର ଏହି ବିରାଟ ସମାବେଶ କେନ୍ଦ୍ର ସରକାରଙ୍କୁ ବୁଝାଇ କିଛି ନୀତି ନିର୍ଦ୍ଧାରଣାତ୍ମକ ସିଦ୍ଧାନ୍ତ କରିବାକୁ ଚାହିଁଲା ଯାହାର ପ୍ରଭାବ ମହିଳାମାନଙ୍କ ଜୀବନ ଉପରେ ନିଶ୍ଚିତ ଭାବରେ ପଡ଼ିବ । ଏହି ମହିଳାମାନଙ୍କର ଏକ ବିରାଟ ଦଳ ବେଜିଂକୁ ଗଲେ । ଚତୁର୍ଥ ସଂଯୁକ୍ତ ରାଷ୍ଟ୍ର ବିଶ୍ୱ ମହିଳା ସମ୍ମିଳନୀରେ ଭାଗ ନେଇ ନିଜ ପାଇଁ ଓକିଲାତି କରି ଏହାକୁ ସଫଳ ଓ ମହତ୍ତ୍ୱପୂର୍ଣ୍ଣ କରିବା ଉଦ୍ଦେଶ୍ୟ ଥିଲା । ଭାରତ ଫେରିବା ପରେ ଉପଦେଶ ସମିତିର ବୈଠକ ଏହି ଆନ୍ଦୋଳନରୁ ପ୍ରାପ୍ତ ଫାଇଦାକୁ କିପରି ପ୍ରୟୋଗ କରାଯାଇପାରିବ ସେ ବିଷୟରେ ନିଷ୍ପତ୍ତି ନେଲେ । ବେଜିଂ ସମ୍ମିଳନୀ ପୂର୍ବ ଓ ପର ସହିତ ସଂଯୁକ୍ତ ମହିଳାମାନଙ୍କର ଏକ ବିରାଟ ଦଳର ବୈଠକ ହାଇଦ୍ରାବାଦରେ ୧୯୯୫ ମସିହା ଡ଼ିସେମ୍ବରରେ ହେଲା । ଏହି ବୈଠକରେ ନିଷ୍ପତ୍ତି ନିଆହେଲା ଯେ ଦଶ ଜଣ ଆଞ୍ଚଳିକ ସଦସ୍ୟର ଏକ କାର୍ଯ୍ୟନିର୍ବାହୀ ଦଳ ସମ୍ମିଳିତ ହୋଇ ନ୍ୟାସନାଲ ଆଲାଏନ୍ସ ଅଫ ଉମେନ୍ (ଏନ୍ ଏ ଡ଼ବ୍ଲ୍ୟୁ ଓ) ଭାବରେ କାର୍ଯ୍ୟ କରିବେ । ବୈଠକ ମତେ ଏହାର ଅଧ୍ୟକ୍ଷା ହେବା ଉଚିତ୍ ବୋଲି ନିଷ୍ପତ୍ତି ନେଲା । ଏହି ବୈଠକରେ ବୈଶିଷ୍ଟ୍ୟ ଏହା ଥିଲା ଯେ ଏନ୍ ଏ ଡ଼ବ୍ଲ୍ୟୁ ଓ ପ୍ରଥମ, ବୈଧାନିକ, ସ୍ୱାୟତ୍ତ ରାଷ୍ଟ୍ରସ୍ତରୀୟ ମଞ୍ଚ ଯାହା ସାରା ଦେଶ-ଉତ୍ତର, ଉତ୍ତର-ପୂର୍ବ, ପୂର୍ବ, ପଶ୍ଚିମ ଏବଂ ଦକ୍ଷିଣ ଅଞ୍ଚଳର ତୃଣମୂଳ ସ୍ତରୀୟ ଏବଂ ଅବଦମିତ/ଦଳିତ/ଶୋଷିତ ମହିଳାମାନଙ୍କର ସମସ୍ୟାର ମୁଖପାତ୍ର ହୋଇଉଠିଲା ।

ସ୍ଥାପିତ ହେବା କାଳରୁ ଏନ୍ ଏ ଡ଼ବ୍ଲ୍ୟୁ ଓ ଗୁରୁତ୍ୱପୂର୍ଣ୍ଣ ନୀତିଗତ ପ୍ରଣାଳୀ ଉପରେ କାର୍ଯ୍ୟ କରୁଛି । ମୁଁ ଦରିଦ୍ର ଏବଂ ନିମ୍ନସ୍ତରର ମହିଳାମାନଙ୍କର ସମସ୍ୟା ଅନ୍ତରାଷ୍ଟ୍ରୀୟ ମଂଚରେ ଉପସ୍ଥାପନ କରିଛି ଓ ଜାତୀୟ ସ୍ତରରେ କର୍ମପନ୍ଥା ଓ ଯୋଜନା ପ୍ରଣୟନରେ ମୋର ଅବଦାନ ରହିଆସିଛି । ଆମେମାନେ ନ୍ୟାୟପାଳିକା, ବିଚାରପତିଙ୍କ ସମେତ ଓକିଲ ଏବଂ ନ୍ୟାୟ ଅଧିକାରୀମାନଙ୍କ ନିମନ୍ତେ 'ମହିଳାମାନଙ୍କ (CEDAW) ବିରୋଧରେ ହେଉଥିବା ସମସ୍ତ ପ୍ରକାର ପକ୍ଷପାତିତା ସମାପ୍ତି ନିମନ୍ତେ ସମ୍ମିଳନୀ ସଦୃଶ ବିବିଧ ପ୍ରକାରର ପ୍ରଶିକ୍ଷଣ କାର୍ଯ୍ୟକ୍ରମ ଆୟୋଜନ କରିଛୁ । ବ୍ୟକ୍ତିଗତ ସ୍ତରରେ ମୁଁ କର୍ଣ୍ଣାଟକ ରାଜ୍ୟ ଯୋଜନା ସମିତିରେ ଏବଂ ସଂପ୍ରତି ଦଶମ ପଞ୍ଚବର୍ଷୀୟ ଯୋଜନାର ମହିଳା ସଶକ୍ତୀକରଣର କାର୍ଯ୍ୟଦଳରେ ମଧ୍ୟ ଅଛି ।

ମୋର ବର୍ଣ୍ଣ ଏବଂ ଜାତି ବିଷୟରେ ପ୍ରଚୁର ଆଗ୍ରହ ରହିଛି କେବଳ ଯେ ଦଳିତମାନଙ୍କ ସହ ମୋର ସଂପୃକ୍ତି ଯୋଗୁ ତା'ନୁହେଁ ପାଶ୍ଚାତ୍ୟ ଜଗତରେ କଳା ମହିଳାମାନଙ୍କ ସମ୍ବନ୍ଧରେ ଆଗରୁ ଜାଣିଥିବାରୁ । ତେଣୁ କହିବାର ଆବଶ୍ୟକତା ନାହିଁ ଯେ ୨୦୦୧ ମସିହାରେ ଡ଼ରବାନ୍‌ରେ ଜାତିପ୍ରଥା ବିରୁଦ୍ଧରେ ହେବାକୁ ଥିବା ବିଶ୍ୱ ସମ୍ମିଳନୀରେ ଭାଗ ନେବା ପାଇଁ ମୁଁ ବିଶେଷ ଆଗ୍ରହୀ ଥିଲି । ଏହା ସେଇ ପ୍ରକାରର ତୃତୀୟ ସମ୍ମିଳନୀ ଥିଲା । ରାଷ୍ଟ୍ରୀୟ ଦଳିତ ମହିଳା ସଂଘର ପ୍ରତିଷ୍ଠାତା ସଦସ୍ୟ ଭାବରେ ସ୍ୱାଧୀନତା ପରବର୍ତ୍ତୀ ମହିଳା ଆନ୍ଦୋଳନରେ ଦଳିତ ମହିଳାଙ୍କ ପାଇଁ ଏକ ଜାତୀୟ ମଂଚ ପ୍ରତିଷ୍ଠିତ ହେଲା ଓ 'ଦଳିତ ମାନବାଧିକାର' ନିମନ୍ତେ ଜାତୀୟ ଅଭିଯାନର ଏକ ସଂଯୋଜିକା ଭାବେ ୧୯୯୮ରୁ ଦଳିତମାନଙ୍କର ମାନବାଧିକାର ବିଷୟକୁ ଅଧିକ ଜୋର ଦେବାରେ ମୋର ସକ୍ରିୟ ସଂପୃକ୍ତି ରହିଆସିଛି । ତେଣୁ ଡ଼ରବାନ, ୨୦୦୧ ସମ୍ମେଳନ ପାଇଁ ଦଳିତମାନଙ୍କୁ ପ୍ରମୁଖ ଭାବରେ ଏ ଦିଗରେ ପ୍ରରୋଚିତ କରିବାରେ ମୁଁ ଘନିଷ୍ଠ ଭାବେ ଯୁକ୍ତଥିଲି ।

ରାଷ୍ଟ୍ରୀୟ ଦଳିତ ମହିଳା ସଂଘର ନିଜସ୍ୱ ଏକ ବିଶେଷତ୍ୱ ଅଛି, କାରଣ ଏହା ଜାତି, ଶ୍ରେଣୀ ଏବଂ ଲୈଙ୍ଗିକ ଅତ୍ୟାଚାରର ଏପରି ଏକ ଆନୁଷ୍ଠାନିକ ପୃଷ୍ଠଭୂମି ଉପରେ ଆଧାରିତ ଯେ ଯାହାର ଚେର ଆମର ରାଜନୀତି ଓ ସମାଜ ମଧ୍ୟରେ ଗଭୀର ଓ ବିସ୍ତାରିତ । ମୁଁ ଏ ବିଷୟ ଉପରେ ଦୀର୍ଘ ଆଲୋଚନା ବୃହତ ପରିସର ପରିପ୍ରେକ୍ଷୀରେ ଦେଖିବାକୁ ଚାହେଁ । ଜାତି ସଂଘ ଦଳିତମାନଙ୍କର ପରିସ୍ଥିତିରେ ଉନ୍ନତି ଆଣିବା ପାଇଁ କେନ୍ଦ୍ର ସରକାରଙ୍କୁ ପରାମର୍ଶ ଦେଇଛନ୍ତି । ଜାତି ପ୍ରଥାଗତ ବିଭେଦର ବିଭିନ୍ନ ସ୍ୱରୂପର ସଂପୂର୍ଣ୍ଣ ମୂଳୋତ୍ପାଟନ ଉପରେ ଗଠିତ ଜାତିସଂଘ ବିବୃତି ଦେଲା ଯେ, ଦଳିତମାନେ କ୍ରେଡ଼ (CRED) କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ । ଉତ୍ପତ୍ତି ସୂତ୍ରରେ କହିଲେ କେବଳ ଜାତି ନୁହେଁ ଦଳିତମାନଙ୍କର ପରିସ୍ଥିତି ପରିବେଶ ମଧ୍ୟ ଏହା ଅନ୍ତର୍ଭୁକ୍ତ । ଯାହେଉ ଏହା ଦେଖି ଆମେ ହତାଶ ହେଲୁ ଯଦିଓ ବିସ୍ମିତ ନୁହେଁ ଯେ ଜାତିଭେଦ ବିରୁଦ୍ଧରେ ବିଶ୍ୱ ସମ୍ମିଳନୀ (ଡବ୍ଲ୍ୟୁ ସିଏ ଆର୍‌)ରେ ଭାରତୀୟ ସ୍ୱୟଂସେବୀ ସଙ୍ଗଠନ ଦ୍ୱାରା ଜାତି ବିଷୟରେ ଜାଗରଣ କରିବାର ପ୍ରଚେଷ୍ଟାକୁ ବିରୋଧ କରିବାପାଇଁ ଭାରତୀୟ ସରକାରୀ ପ୍ରତିନିଧି, କୂଟନୀତିଜ୍ଞ, ରାଜନୀତିଜ୍ଞ, ପ୍ରାଶାସନିକ ଅଧିକାରୀ ତଥା ଶିକ୍ଷାବିଦ୍ ବଡ଼ ଜୋର୍‌ରେ ଲାଗିଥିଲେ ଓ ସେମାନଙ୍କୁ ସଫଳତା ମଧ୍ୟ ମିଳିଥିଲା । ସେମାନେ ସ୍ୱୟଂସେବୀ ସଙ୍ଗଠନର କାର୍ଯ୍ୟଯୋଜନାରୁ ଚିଠା ଯୋଜନା ପରିଚ୍ଛେଦକୁ ଉଠେଇ ଦେବାପାଇଁ ଲାଗିଥିଲେ ଯେଉଁଥିରେ ବିଶେଷଭାବରେ କାର୍ଯ୍ୟ, ଉତ୍ପତ୍ତି ବା ଜନ୍ମଗତ, ଯଥା ଜାତି ଆଧାରିତ ଭେଦଭାବ ବିଷୟରେ ଉଲ୍ଲିଖିତ। ମାତ୍ର ଆମେ ଖୁସି ଓ ସନ୍ତୁଷ୍ଟ ଯେ ଏହି ଉଲ୍ଲେଖନୀୟ ପ୍ରତିକୂଳତା ସତ୍ତ୍ୱେ ସମଗ୍ର ବିଶ୍ୱ ନିକଟରେ ବର୍ତ୍ତମାନ ଜାତି ଆଧାରିତ ଭେଦଭାବଗତ ବୈଷମ୍ୟ ଓ ଏହାର ବିଭିନ୍ନ ଜଟିଳ ସ୍ୱରୂପ ଅଧିକ ସ୍ପଷ୍ଟ । ଏହା କିପରି ଭାବରେ ଆମର ଦୈନନ୍ଦିନ ଜୀବନ, ବ୍ୟକ୍ତିଗତ ଭାବମୂର୍ତ୍ତି, ଆମର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ପ୍ରଭାବିତ କରୁଛି ତାହା ସେମାନେ ଅବଗତ । ଆନ୍ତର୍ଜାତୀୟ ସମୁଦାୟ ନିକଟରେ ଭାରତ ସରକାରର ଆମ ସମାଜରେ ଥିବା ଗଭୀର ଏବଂ ପଚମାନ କ୍ଷତକୁ ଢାଙ୍କିବାକୁ କରିଥିବା

ପ୍ରୟାସ ବି ଧରାପଡ଼ିଗଲା । ଦଳିତ ସମସ୍ୟା ଏବଂ ଜାତିପ୍ରଥାଗତ ବୈଷମ୍ୟର ସମସ୍ତ ରୂପ ଆନ୍ତର୍ଜାତୀୟ ସ୍ତରର ମାନବାଧିକାର ଚର୍ଚ୍ଚାରେ ସ୍ଥାନ ପାଇଲା । ଏହା ଦଳିତ ଆନ୍ଦୋଳନର ଏକ ବିରାଟ ପ୍ରାପ୍ତି । ପ୍ରକୃତ ଅର୍ଥରେ ଏହା ଭାରତର ମହାନ୍ ଡ.ବି.ଆର୍. ଆମ୍ବେଦକରଙ୍କ ପ୍ରତି ଏକ ଶ୍ରଦ୍ଧାଞ୍ଜଳି ।

ମୁଁ ପଛକୁ ଫେରି ଚାହିଁଲେ ମୋର କାର୍ଯ୍ୟକୁ ସନ୍ତୋଷର ସହିତ ଦେଖେଁ ଏବଂ ଆଉ କେତେ କାମ କରିବାକୁ ବାକି ରହିଲା ତା'ମଧ ଦେଖେ । ମୁଁ ମୋର ସମଗ୍ର ଜୀବନକୁ ଜାତି, ସଂପ୍ରଦାୟ ତଥା ଲିଙ୍ଗଗତ ହିଂସା ବିରୁଦ୍ଧରେ ଏକ ସଂଘର୍ଷରେ ପରିଣତ କରିବାକୁ ଚେଷ୍ଟା କରିଛି । ମୁଁ ଅନୁଭବ କରେ ଉଲ୍ଲେଖନୀୟ ସଂଖ୍ୟାରେ ଗରିବ, ନିମ୍ନବିତ୍ତ ଏବଂ ଅସଂଗଠିତ ଶ୍ରମ ଅବସ୍ଥାର ଏକ ଗୁଣାତ୍ମକ ପରିବର୍ତ୍ତନ ଘଟିଛି । ଜଗତୀକରଣ ପ୍ରକ୍ରିୟାର ପ୍ରଭାବଠାରୁ ଏକ ନିର୍ଦ୍ଦିଷ୍ଟ ସୀମା ପର୍ଯ୍ୟନ୍ତ ତାଙ୍କର ସୁବିଧା ଓ ସ୍ୱାର୍ଥ ସୁରକ୍ଷିତ । ମୁଁ ମଧ ନିରନ୍ତର ସାଂପ୍ରଦାୟିକତା ଏବଂ ଫାସୀବାଦ କବଳରୁ ଭାରତର ଧର୍ମନିରପେକ୍ଷତା ଏବଂ ଗଣତନ୍ତ୍ରକୁ ରକ୍ଷାକରିବାକୁ ଚେଷ୍ଟା କରିଛି ।

ପ୍ରାପ୍ତି ଦୃଷ୍ଟିକୋଣରୁ ଦେଖିଲେ ମୋର ମନେହୁଏ ସହରୀ ଗରିବମାନଙ୍କ ନିମନ୍ତେ ସେହି ଲୋକମାନଙ୍କୁ ନେଇ ସଙ୍ଗଠନ ଗଢ଼ିବା, ବିଶେଷଭାବରେ ଅସଂଗଠିତ କ୍ଷେତ୍ରର ଶ୍ରମିକମାନଙ୍କ ନିମନ୍ତେ ମହିଳା ସଶକ୍ତୀକରଣ କରିବା ଓ ଦଳିତ ମହିଳାମାନଙ୍କ ଉପରେ ଗୁରୁତ୍ୱ ଦେଇ ତଥା ଆଞ୍ଚଳିକ ଏବଂ ଆନ୍ତର୍ଜାତିକ ପ୍ରୟାସରେ ସଂହତି ସ୍ଥାପନ କରିବାରେ ମୋର ଅବଦାନ ଉଲ୍ଲେଖନୀୟ । ସରକାର ଏବଂ ଯେଉଁମାନେ କ୍ଷମତାରେ ଅଛନ୍ତି ସେମାନେ ସମସ୍ତେ ସାଧାରଣ ଜନତା ତଥା ସାମାଜିକ ନ୍ୟାୟ ନିମନ୍ତେ ମୁଁ ଯେଉଁ ସାଲିସ୍‌ହୀନ ପଦକ୍ଷେପ ନିଏ ତା'କୁ ସ୍ୱୀକୃତି ଦେଇଛନ୍ତି ।

ମୋ ଘର ବନ୍ଧୁ, କର୍ମୀ, ଚିନ୍ତାବିଦ୍, ବିକାଶକର୍ମୀ, ଶ୍ରମିକ ସଂଘ ଏବଂ ଦରିଦ୍ରମାନଙ୍କର ସ୍ଥାନ । ମୋର ନିଜ ପରିବାରରେ ସ୍ୱାମୀ ପାକ୍କିରୀ ଏବଂ ମୋର ଦୁଇ ଝିଅ ବନ୍ଦନା (୨୦) ଓ ପ୍ରିୟଙ୍କା (୧୩) ମୋର ଖୁବ୍ ପ୍ରିୟ । ମୋ ସ୍ୱାମୀ ମୋର କମ୍ରେଡ୍ ଓ ସହକର୍ମୀ । ମୁଁ ବିଶ୍ୱାସ କରୁଥିବା ପ୍ରତ୍ୟେକଟି ବିଷୟରେ ସେ ମତେ ସାହାଯ୍ୟ ଓ ସହଯୋଗ କରନ୍ତି । ଆମେ ଦୁହେଁ ମିଳିତଭାବରେ ଲକ୍ଷ୍ୟସ୍ଥଳରେ କାମ କରୁଁ । ମୋ ଝିଅମାନେ ମୋର ସମୟ ବା ଉପସ୍ଥିତିକୁ କେବେ ଦାବି ନକରି ମୋ କାମରେ ତାଙ୍କର ଅବଦାନ ଦେଇଛନ୍ତି । ଏସବୁ ସତ୍ତ୍ୱେ ମୁଁ ମୋ କାମରେ ଭୀଷଣ ଚାଲେଞ୍ଜର ସମ୍ମୁଖୀନ ହୋଇଛି । ସବୁଠାରୁ ବଡ଼ ଚାଲେଞ୍ଜ ହେଉଛି ପ୍ରତ୍ୟେକ ସ୍ତରରେ ଏକ ପ୍ରକାରର ନିସ୍ପୃହତା, ଭ୍ରଷ୍ଟାଚାର, ଉଦାସୀନତା ସହିତ ଲଢ଼ିବା, ବିଶେଷ ଭାବରେ ନିଜ ରାଜ୍ୟରେ ଯାହା କେବଳ କ୍ଳାନ୍ତିକର ନୁହେଁ ଶକ୍ତି କ୍ଷୟକାରୀ ମଧ । ମୁଁ ଏ ପ୍ରକାର ପ୍ରବୃତ୍ତି ସହିତ ଦୃଢ଼ତାର ସହିତ ଲଢୁଥିଲି ଓ ଅନେକ ସମୟରେ ସଫଳତା ପାଉଥିଲି ମଧ । ଯେତେବେଳେ ପରିବର୍ତ୍ତନର ଗତି ଶିଥିଳ ମନେହେଇଛି ସେତେବେଳେ ମୁଁ କହିପାରେ ଯେ ଲୋକଙ୍କର ଦୀର୍ଘବର୍ଷର ମିଳିତ ଓ ସଂଗଠିତ ପ୍ରଚେଷ୍ଟା

ଫଳରେ ସଫଳତାର ସ୍ୱାଦ ମିଳିଛି । ଆମେ ସରକାରଙ୍କୁ ଲୋକଙ୍କ ପ୍ରତି ଅଧିକ ଉତ୍ତରଦାୟୀ ଓ ଜାଗତ୍ର କରାଇପାରିଛୁ ।

ଦରିଦ୍ର ଲୋକଙ୍କର ଏବଂ ବିଶେଷ କରି ମୋର ସହକର୍ମୀ ମହିଳାଗଣଙ୍କର କଠୋର ପରିଶ୍ରମ ଏବଂ ଉତ୍ସାହ ମୋ ପାଇଁ ଆହ୍ୱାନ ସଦୃଶ, ଯେଉଁଥିରୁ ମୁଁ ଉତ୍କୃଷ୍ଟତର କାମ କରିବା ପାଇଁ ଅନୁପ୍ରେରିତ ହୁଏ । ଯେତେବେଳେ ମୁଁ ହତୋତ୍ସାହିତ ହୋଇପଡ଼େ ବା କ୍ଳାନ୍ତି ଅନୁଭବ କରେ, ସେତେବେଳେ ଗରିବ ମହିଳାମାନେ ଯେଉଁଭଳି ଭାବେ ନିଜ ପରିବାର ଓ ସମାଜ ପ୍ରତି ଥରେ ମାତ୍ର ସମର୍ପିତ ହୋଇ କାମ କରୁଛନ୍ତି ତାଙ୍କର ଏ ଉତ୍ସର୍ଗଭାବ ପ୍ରତି ଦୃଷ୍ଟିପାତ କଲେ ମୋ ମନରେ କାମକରିବାର ଉଦ୍ଦାମତା ଜାଗ୍ରତ କରିବାପାଇଁ ଯଥେଷ୍ଟ । ଗରିବମାନଙ୍କର କେବଳ ନିଜ ଜୀବନକୁ ପରିବର୍ତ୍ତନ କରିବାର ନୁହେଁ ଗୋଟେ ନ୍ୟାୟପୂର୍ଣ୍ଣ, ମାନବୀୟ ଓ ଗଣତାନ୍ତ୍ରିକ ସମାଜ ଗଢ଼ିବାର ସାମର୍ଥ୍ୟ ରହିଛି ବୋଲି ମୋର ଏକ ଦୃଢ଼ ବିଶ୍ୱାସ ରହିଛି । ଏବଂ ମତେ ଲାଗେ ଯେ ମୋ ପରି ଅନେକ ସକ୍ରିୟ କର୍ମୀଗଣ ନିଜନିଜ ଉପାୟରେ ସେମାନଙ୍କ ପାଇଁ ଗଣତାନ୍ତ୍ରିକ ସୁଯୋଗ ସୁବିଧା ସୃଷ୍ଟି କରିଆସୁଛନ୍ତି । ମାତ୍ର ଲୋକେ ଶେଷରେ କହିବେ, ''ଆମେ ନିଜେ ଏସବୁ କରିଛୁ ।''

ଆଗକୁ କ'ଣ କ'ଣ ବିପଦ ମୁଁ ଦେଖି ପାରୁଛି ? ମୋ ମତରେ ଅନେକ ଅଛି ।

- ବିଶ୍ୱୀକରଣ ଏବଂ ଦରିଦ୍ର ମହିଳାଙ୍କର ବୃହତ ଜନସଂଖ୍ୟାଉପରେ ଏହାର ପ୍ରଭାବ ଏବଂ ଦକ୍ଷିଣ ଏସିଆରେ ସଶକ୍ତୀକରଣରେ ପ୍ରଭାବ ରହିଛି । ବିଶ୍ୱର ଦରିଦ୍ରତମ ଅଞ୍ଚଳ ମଧ୍ୟରୁ ଅନ୍ୟତମ ହେଲେହେଁ ଦକ୍ଷିଣ ଏସିଆର ସରକାର ଦ୍ୱନ୍ଦ୍ୱ, ଆତଙ୍କବାଦ, ଯୁଦ୍ଧବାଦରେ ଏକ ବିରାଟ ପରିମାଣର ଅର୍ଥ ସୁରକ୍ଷା ଓ ପ୍ରତିରକ୍ଷାରେ ଖର୍ଚ୍ଚ କରୁଛନ୍ତି, ମାନବ ବିକାଶ ନିମିତ୍ତ ଉଦ୍ଦିଷ୍ଟ ସ୍ୱଳ୍ପ ସମ୍ବଳ ମଧ୍ୟ ସେଥିରେ ଲଗେଇ ଦେଉଛନ୍ତି ।
- ଆମ ଦେଶର ସୌହାର୍ଦ୍ଦ୍ୟପୂର୍ଣ୍ଣ ସାମାଜିକ ସଂପର୍କ ଓ ଆଲୋଚନା ମାଧ୍ୟମରେ ସମାଧାନ କରିବାର ଦୀର୍ଘ ପରମ୍ପରା ପରିବର୍ତ୍ତେ ଯୁଦ୍ଧ, ଅସହିଷ୍ଣୁତା ଏବଂ ହିଂସାର ସଂସ୍କୃତି ପ୍ରତିଷ୍ଠିତ ହେଉଛି ।
- ଉପଭୋକ୍ତା ସଂସ୍କୃତିର ବିକାଶ ଘଟୁଛି । ମୁଖ୍ୟ ସ୍ରୋତଠାରୁ ଦରିଦ୍ର ବର୍ଗର ଲୋକେ ଅଧିକରୁ ଅଧିକ ବିଚ୍ଛିନ୍ନ ହେବେ ଏବଂ ସେମାନଙ୍କ ଶ୍ରମର ଅବମୂଲ୍ୟାୟନ ହେବ ଓ ସେମାନେ ଶୋଷିତ ହେବା ଫଳରେ ପରିଣାମ ସ୍ୱରୂପ. ଦେଖାଦେବ ଗଭୀର ହତାଶାବୋଧ ।
- ମହିଳା ସମ୍ବଳ ଏବଂ ତାଙ୍କର ସାମର୍ଥ୍ୟକୁ ସ୍ୱୀକୃତି ନଦେବା, ଆମକୁ ସଂସଦରେ ଏକ ତୃତୀୟାଂଶ ସଂରକ୍ଷଣ ନ ଦେବା ଅର୍ଥ ଦେଶ ଗଠନରେ ଆମର ଗୁରୁତ୍ୱପୂର୍ଣ୍ଣ ଅବଦାନକୁ ମାନ୍ୟତା ନଦେବା ।
- ମୋ ଦୃଷ୍ଟିରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ବିଷୟ ଏହି ଯେ ଭାରତୀୟ ରାଜନୀତି ସାମ୍ବିଧାନିକ ମୂଲ୍ୟପ୍ରତି ଦାୟବଦ୍ଧ ନୁହେଁ ।

ଆମର ଯୁବ ପିଢ଼ି ପାଇଁ ମୋର ଏକ ବକ୍ତବ୍ୟ – ସେମାନେ ଆମ ଦେଶର ମୂଲ୍ୟବୋଧ ପ୍ରତି ପୁନଶ୍ଚ ଶ୍ରଦ୍ଧାଶୀଳ ହେବା ଆବଶ୍ୟକ । ଭାରତୀୟ ସମାଜ ନିର୍ମାଣର ବୃହତ୍ତର ସ୍ୱାର୍ଥ ନିମନ୍ତେ ଆଦର୍ଶ, ମୂଲ୍ୟବୋଧ ଓ ଦାୟବଦ୍ଧତା ଯାହା ଆମ ସ୍ୱାଧୀନତା ସଂଗ୍ରାମର ଐତିହ୍ୟ ଥିଲା ତାହା ସେମାନଙ୍କ ହୃଦୟ ଓ ଜୀବନରେ ପ୍ରତିଧ୍ୱନିତ ହେବା ଉଚିତ୍ । ସେମାନେ ସମତା, ନ୍ୟାୟ ଓ ଶାନ୍ତିର ଦର୍ଶନ ପରି ଏକ ମହତ୍ତର ଦର୍ଶନରେ ଅଭିମନ୍ତ୍ରିତ ହେବା ଆବଶ୍ୟକ । ସର୍ବୋପରି ସେମାନେ ଆମ ସମାଜ, ରାଜନୀତି ଏବଂ ଅତି ବେଶୀରେ ବିଶ୍ୱ ରୂପାନ୍ତରର ବିଷୟ ଓ ପ୍ରତିନିଧି ହେବା ଆବଶ୍ୟକ । ଦୃଷ୍ଟାନ୍ତ ସ୍ୱରୂପ ଏନ୍ଏଡବ୍ଲ୍ୟୁଓ ରେ ଆମେ ଯୁବ ମହିଳାମାନଙ୍କ ନେତୃତ୍ୱ ନେବାର ଗୁଣକୁ ବିକଶିତ କରିବାରେ ଚେଷ୍ଟିତ, ସିଦ୍ଧାନ୍ତ ନେବାର ପ୍ରତ୍ୟେକ କ୍ଷେତ୍ରରେ ତାଙ୍କୁ ସଂପୃକ୍ତ କରାଯାଉଛି । ଏହି ସମୟର ଆବଶ୍ୟକତା ହେଉଛି ସେମାନଙ୍କ ମଧ୍ୟରେ ଉତ୍ତରଦାୟୀ ଏବଂ ବିଦ୍ରୋହାତ୍ମକ ନେତୃତ୍ୱ ସୃଷ୍ଟିକରିବା ।

ମୁଁ ଡ. ବାବା ସାହେବ ଆମ୍ବେଦକର, ଆଧୁନିକ ଭାରତୀୟ ସମ୍ବିଧାନର ଜନକ ପୃଥିବୀର ବିଶାଳତମ ଗଣତନ୍ତ୍ରର ରାଜନୀତିଜ୍ଞ ଏବଂ ଦଳିତ ବର୍ଗଙ୍କର ନେତାଙ୍କର କେତୋଟି ଶବ୍ଦ ସହିତ ମୋର ବକ୍ତବ୍ୟ ସମାପ୍ତ କରିବାକୁ ଚାହିଁବି । ‘‘ଆମର ସଂଘର୍ଷ ସଂପତ୍ତି ନିମନ୍ତେ ନୁହେଁ କି କ୍ଷମତା ପାଇଁ ନୁହେଁ । ଏହା ମୁକ୍ତିର ସଂଗ୍ରାମ । ମାନବୋଚିତ ବ୍ୟକ୍ତିତ୍ୱର ପୁନର୍ପ୍ରାପ୍ତିର ସଂଗ୍ରାମ ।

ମାୟା କୃଷ୍ଣା ରାଓ (ଜନ୍ମ ୧୯୫୩) ଜଣେ ଥିଏଟର୍ କଳାକାର, ନିର୍ଦ୍ଦେଶିକା, ତଥା ନୃତ୍ୟ ନିର୍ଦ୍ଦେଶିକା । କଥକଳୀ ନର୍ତ୍ତକୀ ଭାବରେ ପୁରୁଷ ଭୂମିକାରେ ପ୍ରଶିକ୍ଷଣ ପାଇବାରେ ଖୁବ୍ ସ୍ୱଳ୍ପ ସଂଖ୍ୟକ ମହିଳାମାନଙ୍କ ମଧ୍ୟରୁ ସେ ଅନ୍ୟତମ । ସେ କୃଷ୍ଣ, ଅର୍ଜ୍ଜୁନ, ହନୁମାନ, ଭୀମ, ରାବଣ, ଦମୟନ୍ତୀ ଏବଂ ଡେସ୍‌ଡିମୋନା ଭୂମିକାରେ ଅଭିନୟ କରିଛନ୍ତି । ସେ ଏକକ ମହିଳା ନୃତ୍ୟ-ନାଟିକା ଆରମ୍ଭ କରିଛନ୍ତି । ତାଙ୍କର ଏକକ ବ୍ୟକ୍ତି ପ୍ରସ୍ତୁତ, ନୃତ୍ୟନାଟ୍ୟ ପ୍ରସ୍ତୁତି ମଧ୍ୟରେ ଖୋଲ୍ ଦୋ (୧୯୯୩), ଦ ଜବ୍ (୧୯୯୭) ଏବଂ ଡିପାର୍ଚର୍ସ (୧୯୯୯) ଅନ୍ୟତମ । ସେ କିଙ୍ଗ ଲିଅର୍, ଡଲ୍ସ ହାଉସ୍, ଦ ମଦର, ହାଉସ୍ ଅଫ୍ ବର୍ଣ୍ଣାଡ଼ା ଅଲ୍ବା ଏବଂ ଦ ରୋବର ଆଦିରେ ମୁଖ୍ୟ ଭୂମିକାରେ ଅଭିନୟ କରିଛନ୍ତି । ତାଙ୍କର ନୃତ୍ୟ ନିର୍ଦ୍ଦେଶନା 'ବାୟ' (୧୯୯୦), ଡ୍ରିମ ଅଫ୍ ରିଜନ୍ (୧୯୯୧), ଏବଂ ସୁଭଦ୍ରା (୧୯୯୫)ରେ ପ୍ରଦର୍ଶିତ ହୋଇଛି । ସେ ମମି (୧୯୯୫) ଏବଂ 'ଦି ମଦର' (୧୯୮୨)ର ନିର୍ଦ୍ଦେଶିକା । ସେ ଆମେରିକୀୟ ନୃତ୍ୟ ଉତ୍ସବ (୧୯୯୨), ଲଣ୍ଡନ ଅନ୍ତର୍ଜାତୀୟ ଥିଏଟର ଉତ୍ସବ, ଲଣ୍ଡନ (୧୯୯୭,୧୯୯୯), ଫୈଜ ଶତାବ୍ଦୀ ସମାରୋହ, ଲାହୋର (୧୯୯୮), ପୃଥ୍ୱୀ ଥିଏଟର୍ ଉତ୍ସବ, ମୁମ୍ବାଇ (୧୯୯୬), ରେଷ୍ଟଲେସ୍ ଗ୍ରାଭିଟି ଫେଷ୍ଟିଭାଲ୍, ଏବେରିଷ୍ଟ୍ୱିଥ୍, ୱେଲ୍ସ (୨୦୦୦), ଏବଂ କିଆସ୍‌ମା ମ୍ୟୁଜିୟମ୍ ଥିଏଟର୍ ଫେଷ୍ଟିଭାଲ୍, ହେଲ୍‌ସିଙ୍କି (୨୦୦୧) ଆଦି ସହିତ ଅନ୍ୟାନ୍ୟ ଅନେକ କର୍ମଶାଳା ଏବଂ ପ୍ରଦର୍ଶନୀ ପରିଚାଳନା କରିବା ସହିତ ଭାଗନେଇଛନ୍ତି ।

# ୧୭

# ଜୀବନ ମଧ୍ୟରେ ହଜିଯାଇଥିବା ମୋ ପଥ

## ମାୟା କୃଷ୍ଣା ରାଓ

ଜୀବନ ବହୁଦିଗଦ୍ୱାରା ପ୍ରଭାବିତ ହୋଇଥାଏ ଯାହାକି ସଂପୂର୍ଣ୍ଣ ଜଟିଳ । ଏହାକୁ ବିଚାର କରିବା ଏପରିକି ନିର୍ଦ୍ଦିଷ୍ଟ କିଛି କହିବା ମଧ୍ୟ ସହଜ ନୁହେଁ । କଳାକାରମାନଙ୍କ ପକ୍ଷରେ ଏ ବିଷୟରେ ଟିପ୍ପଣୀ ଦେବା ଅଧିକ କଠିନ । ଏକ ସୃଜନାତ୍ମକ କୃତିର ସଫଳତା ପଛରେ ପ୍ରକୃତରେ ଠିକ୍ କ'ଣ ନିହିତ ସେ ବିଷୟରେ ଆମେ ନିଶ୍ଚିତ ନୁହେଁ । ଆମେ ଅନେକ ସମୟରେ ନିଜକୁ ବିସ୍ମିତ କରି କହିପକଉ, ''ହେ ଭଗବାନ, ମୁଁ ତ ଜାଣିନଥିଲି ମୋ ଭିତରେ ଏହା ଥିଲା... ?!'' ମୋର ମନେହୁଏ ଏହା ବିଶେଷଭାବରେ ମହିଳା କଳାକାରମାନଙ୍କ ନିମନ୍ତେ ପ୍ରଯୁଜ୍ୟ – ଯେଉଁମାନଙ୍କର ଜୀବନ ଏବଂ କର୍ମ ମଧ୍ୟରେ ଥିବା ଯୋଗସୂତ୍ର ଏତେ ବିବିଧଭାବେ ଗୋଲକଧନ୍ଦା ପରି ଛନ୍ଦେଇ ଯାଏ ଯେ ଗୋଟିକର ପ୍ରଭାବ ଅବିରତ ଅନ୍ୟଟି ଉପରେ ରହେ । ଦୃଷ୍ଟାନ୍ତ ସ୍ୱରୂପ, ମୋର ପିଲାଟିଏ ହେବାର ଅନେକ ବର୍ଷ ପରେ ମୁଁ ହୃଦୟଙ୍ଗମ କଲି ଯେ ପ୍ରତ୍ୟେକଦିନ ତାକୁ ସମୟାନୁସାରେ ଖୋଇବା, ଗାଧୋଇବା, ତା'ର ଯତ୍ନନେବା ଆଦି କାର୍ଯ୍ୟ ଯୋଗୁଁ ମୁଁ ମୋର ପ୍ରଥମ ଏକକ କାର୍ଯ୍ୟ ଆଡ଼କୁ ମନବଳେଇଲି । ମୁଁ ପୂରା ଦିନଟିର ଫାଙ୍କା ସମୟ ଅନୁସାରେ କାର୍ଯ୍ୟ ନିର୍ଦ୍ଧାରଣ କରିଲି, ମୋ ହାତରେ ସେତିକିମାତ୍ର ଘଣ୍ଟା ଥିବାରୁ ମୁଁ ତା'ଭିତରୁ କିଛି କିଛି ସମୟ ଚୋରେଇ କଳା–ଅଭ୍ୟାସ କରିବାକୁ ଶିଖିଗଲି ଠିକ୍ ଯେମିତି, ଯେଉଁ ଶୃଙ୍ଖଳା ଓ ରୁଟିନ୍‌ର ସହିତ ପିଲାଟିର କାମ କରିବାକୁ ହୁଏ ।

ମୁଁ ଦିଲ୍ଲୀ ସହରରେ ବଢ଼ିଛି । ବାପା ସରକାରୀ କର୍ମଚାରୀ ଏବଂ ମା' ଜଣେ କଳାକାର । ମୋର ପିଲାଦିନର ସେ ଦୀର୍ଘ, ଉତ୍ତପ୍ତ ଅପରାହ୍ନ ଗୁଡ଼ିକର ସ୍ମୃତି ଭଲଭାବରେ ମନେ ଅଛି । ସରକାରୀ କ୍ୱାର୍ଟରର ବାଲକୋନି ଉପରେ ଆଉଜି ପଡ଼ି ଯେତେଦୂର ପର୍ଯ୍ୟନ୍ତ ଆଖିପାଏ ପହଁରେଇ ନିଏ – ସାମ୍ନାରେ ଏକାପରି ଧାଡ଼ି ଧାଡ଼ି କ୍ୱାର୍ଟର୍ସ । ପ୍ରତ୍ୟେକଟି ଘରେ ଭିନ୍ନ ଭିନ୍ନ ଜୀବନ–ଗାଥା କଳ୍ପନା କରି ମୁଁ ଭାବିଚାଲିଥାଏ । ଦିନ ତା ରାସ୍ତାରେ ଗଡ଼ିଚାଲେ, କେତେଗୁଡ଼ିଏ ଜିନିଷ ଯେଉଁଥିରେ ମୋର ଆଦୌ ଆଗ୍ରହ ନଥାଏ ଯେମିତି – ସ୍କୁଲ ପାଠ ଘରେ କରିବା, ନାଚ କ୍ଲାସ୍, ଗୀତ କ୍ଲାସ୍, ବାପାମାଙ୍କର ବନ୍ଧୁମାନଙ୍କୁ ଭେଟିବା,

ତାଙ୍କ ଫରମାଇସ ଅନୁସାରେ ଏଇଟା ସେଇଟା କରିବାକୁ ମତେ ଭଲଲାଗେନା । ମୋ ପାଇଁ ସବୁକାମ ଏକପ୍ରକାର ଥିଲା । ଅନେକେ ଯେମିତି କହନ୍ତି, ଏ କଳା ସଂସ୍ପର୍ଶରେ ଆସିବାପରେ ମୁଁ ଜାଣିପାରିଲି ''ଏହାହିଁ ମୋ ଜୀବନ'' ମୁଁ ସେମାନଙ୍କପରି ବୋଲି ଦାବିକରି ପାରିବିନି । କୌଣସି ଜିନିଷ ଏତେ ସହଜ ବା ସରଳ ନୁହେଁ । ଯେତେ ଦୂର ମୋର ମନେପଡୁଛି କଳାସହିତ ମୋର ସଂପର୍କ ସଂଘର୍ଷ, ଏକ ମିଶ୍ର ଅନୁଭୂତି । ବେଶ ସାବଲୀଳଭାବରେ ବିରାଗ ଓ ଅନୁରାଗ ମଧ୍ୟରେ ଏକ ଦୋଳାୟିତ ଅବସ୍ଥା ।

ଯେତେବେଳେ ମୁଁ ଠିକ୍ ଛଅ ବର୍ଷର ମୋ ମା ଘରେ ନାଚ ଶିଖେଇବା ଆରମ୍ଭ କଲେ ଯାହା ଫଳରେ ମୁଁ ନାଚ ପ୍ରତି ଆସକ୍ତ ହୋଇ ଶିଖିବି । ମୁଁ ଯେଉଁ ସାଙ୍ଗମାନଙ୍କ ସହିତ ପିଠୁ କି ଲୁଚକାଳି ଖେଳୁଥିଲି ସେମାନେ ସମସ୍ତେ ଆଜ୍ଞାଧୀନ ପରି ମୋ ସହିତ ଗୋଟେ ଧାଡ଼ିରେ ଠିଆହେଇ ରହୁଥିଲେ ଓ ଭାରତନାଟ୍ୟମ୍‌ର ପ୍ରଥମ ପଦପାତ ଅଭ୍ୟାସ କରୁଥିଲେ । ମୋ ମା ଜଣେ ଭାରି କଡ଼ା ଶିକ୍ଷକ । କୌଣସି ଉପାୟ ନାହିଁ ଯେ ଜଣେ ଉଦାସୀନଭାବରେ ନାଚିବ । ପ୍ରତ୍ୟେକ ଟିକିନିଖି ବିଷୟ ସଠିକ୍ ହେବା ଉଚିତ୍ – ପ୍ରତ୍ୟେକ କ୍ଲାସରେ, ପ୍ରତ୍ୟେକ ଥର ନୃତ୍ୟରେ ମୁଦ୍ରା ଭଙ୍ଗିମା, ହସ, ଆଖିର ଚାହାଁଣି, ପଦପାତର ଦୃଢ଼ତା ସବୁ ଏକଦମ୍ ଠିକ୍ ହେବା ଦରକାର ।

ମୋର ପିଲାଦିନର ସୁଖଦ ସ୍ମୃତି ହେଉଛି ସ୍କୁଲର ଉତ୍ସବ ପାଇଁ (ଉଦୟ ଶଙ୍କରଙ୍କ ଶୈଳୀର ନୃତ୍ୟନାଟିକା) ବା ଡ୍ରାମା ରିହର୍ସାଲ କ୍ଲାସ ନ କରିବା । ଆଉ ଏକ ନୂଆ ଚିକିମିକିଆ ପୋଷାକ ପାଇଁ ଦରଜୀକୁ ମାପ ଦେବା । ଘରକୁ ଫେରି ବିଟ୍‌ଲ୍ସ ଆଲବମକୁ ଉଚ୍ଚ ସ୍ୱରରେ ବଜେଇ ହାତଗୋଡ଼ ହଲେଇ ଟୁଇଷ୍ଟ ଡ୍ୟାନ୍‌ସ କରିବା । ପ୍ରତ୍ୟେକ ଗ୍ରୀଷ୍ମରେ ଟିଫିନ୍ କ୍ୟାରିଅର୍‌ରେ ଖାଦ୍ୟପଦାର୍ଥ ନେଇ ମୋ ମା'ଙ୍କର ଜନ୍ମସ୍ଥଳ କେରଳର କାଲିକଟ୍ ଉଦ୍ଦେଶ୍ୟରେ ଟ୍ରେନ୍‌ରେ ଦୀର୍ଘ ଯାତ୍ରା କରିବା । ଦିଲ୍ଲୀଠାରୁ ବହୁତ ଭିନ୍ନ ଏକ ଜଗତକୁ ଆଘ୍ରାଣ କରିବା ଓ ଦର୍ଶନ କରିବା । ଆରମ୍ଭରେ ଏହା ଅଲଗା ଲାଗୁଥିଲା, ମାତ୍ର ପରେ ଧୀରେ ଧୀରେ ଅନେକ ଥର ସେଠିକି ଯିବାପରେ ସେ ଜଗତ ମୋ କଳ୍ପନାରାଜ୍ୟର ଏକ ଅଂଶ ହେଇଗଲା । ମୁଁ ସେଇ ଦୀର୍ଘ ଗ୍ରୀଷ୍ମ ଓ ଶୀତ କାଳୀନ ଅବକାଶ ପ୍ରତି କୃତଜ୍ଞ କାରଣ ତାରି ଯୋଗୁଁ ମୁଁ ସହରର ଏକବାଗିଆ ଜୀବନ ବଞ୍ଚିବାରୁ ରକ୍ଷାପାଇଗଲି । ସମ୍ଭବତଃ ସେଇ ସମୟରେ ମୁଁ ଶୃଙ୍ଖଳାର ସ୍ୱାଦ କ'ଣ ଜାଣିଲି । ମୋ ମା କଥକଳୀର ଜଣେ ଗୁରୁଙ୍କୁ ଆମ ଘରେ ରହିବାର ନିମନ୍ତ୍ରଣ ଦେଲେ ଓ ତାପରେ ଆରମ୍ଭ ହେଲା କୋଉ ଭୋରୁ ସନ୍ଧ୍ୟା ପର୍ଯ୍ୟନ୍ତ ଆଖିର ଅଭ୍ୟାସ । ମତେ କେବଳ କଥକଳୀ ଅଭ୍ୟାସ କରିବାକୁ ପଡୁଥିଲା । ମୁଁ ସେ ସମୟରେ ମୋ ବଡ଼ବାପା ପୁଅଝିଅ – ଭାଇଭଉଣୀଙ୍କ ସହିତ ମାଙ୍କଡ଼ାମି କରିପାରେନା । ମୁଁ ଭାବୁଛି ଭିତରେ ଭିତରେ ଏହାକୁ ମୁଁ ଉପଭୋଗ କରୁଥିଲି କାରଣ ମୋର ଦେହ ଓ ମନ ଉଭୟର ବ୍ୟାୟାମ ଯୋଗୁଁ ଆରାମ ମିଳୁଥିଲା । ଏସବୁ କେରଳରେ ଘଟୁଥିଲା, ଯାହାର ବାସ୍ନା ମତେ ଭଲ ଲାଗୁଥିଲା, ଭଲ ଲାଗୁଥିଲା ବର୍ଦ୍ଧିତ ପରିବାର, ଚତୁର୍ଦ୍ଦିଗର ସବୁଜିମା, ନଡ଼ିଆ ଯୁକ୍ତ ରାନ୍ଧଣା ସବୁକିଛି । କଥକଳୀର କଠିନ ପରିଶ୍ରମ ଭଲ ଲାଗୁଥିଲା ଆଉ କୌଣସି ମତେ ଠିକ୍ ବି ହେଉଥିଲା ।

ପଛକୁ ଫେରି ଚାହିଁଲେ ମୁଁ ହୃଦୟଙ୍ଗମ କରେ ଯେ ଯଦିଓ ମୁଁ ଏପରି ଏକ ପରିବାରରୁ ଆସିଛି ଯେଉଁଠି କଳା ଅଭ୍ୟାସ କରାଯାଏ, ପ୍ରଶଂସିତ ହୁଏ ଏବଂ ସମସ୍ତ ଆବଶ୍ୟକୀୟ ପ୍ରଶିକ୍ଷଣ ମତେ ଦିଆଯାଇଛି ଓ ସମବେତ ସଙ୍ଗୀତ, ବାଦ୍ୟଯନ୍ତ୍ର ଓ ଆସର କାର୍ଯ୍ୟକ୍ରମକୁ ନିଆଯାଇଛି ତଥାପି ସମାଜରେ କୌଣସି ବ୍ୟବସାୟିକ ପ୍ରଶିକ୍ଷଣ ଏବଂ ପ୍ରତିଷ୍ଠିତ ଓ ସ୍ୱୀକୃତିପ୍ରାପ୍ତ ସ୍ଥାନ ବୃତ୍ତିଭାବେ ଏହାକୁ ଗ୍ରହଣକରିବା ସହିତ ସଂଯୁକ୍ତ ନ ଥିଲା । ସମାଜରେ କଳାର କୌଣସି ଦୃଢ଼ ଓ ସ୍ୱୀକୃତ ସ୍ଥାନ ନଥିଲା କିମ୍ବା ଜୀବନର ସମ୍ଭାବ୍ୟ ଲକ୍ଷ୍ୟ ବା ବୃତ୍ତି ଭାବରେ ଏହାକୁ ଉପସ୍ଥାପନ କରାଯାଇନଥିଲା, ଯାହା ଫଳରେ ଏହାକୁ କେହି ଗ୍ରହଣ କରିବ । ମୁଁ କଥକଳୀ, ଶାସ୍ତ୍ରୀୟ ନୃତ୍ୟ ଓ କର୍ଣ୍ଣାଟକୀ ସଙ୍ଗୀତ ଶିକ୍ଷାକଲି କିନ୍ତୁ ମୋ ବାପା ମା ଏହା ମଧ୍ୟରୁ ପଛକୁ ଫେରିଚାହିଁଲେ ମୁଁ ହୃଦୟଙ୍ଗମ କରେ ଯେ ଯଦିଓ ମୁଁ ଏମିତି ଏକ ପରିବାରରୁ ଆସିଛି ଯେଉଁଠି କଳା ଅଭ୍ୟାସ କରାଯାଏ, ପ୍ରଶଂସିତ ହୁଏ ଯଦିଓ ମତେ ସମସ୍ତ ପ୍ରକାରର ଆବଶ୍ୟକୀୟ ପ୍ରଶିକ୍ଷଣ ଦିଆଯାଇଛି ଓ ସମବେତ ସଙ୍ଗୀତ ଓ ବାଦ୍ୟଯନ୍ତ୍ର ଆସରକୁ ନିଆଯାଇଛି ତଥାପି ସମାଜରେ ସେଗୁଡ଼ିକର (ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ନାହିଁ) କୌଣସି ପ୍ରତିଷ୍ଠିତ ଏବଂ ସ୍ୱୀକୃତିପ୍ରାପ୍ତ ସ୍ଥାନ ନଥିଲା ବା ଏହା ବ୍ୟବସାୟିକ ପ୍ରଶିକ୍ଷଣ ଏବଂ ବୃତ୍ତିଗତ ମାର୍ଗ ଯୁକ୍ତ ନଥିଲା। ଯାହାଫଳରେ ଏହାକୁ କେହି ଗ୍ରହଣ କରିପାରିବ । ଏହାକୁ କେବେ ଜୀବନର ଧାରା ବା ବୃତ୍ତି ଭାବରେ ଉପସ୍ଥାପନ କରାଯାଇନଥିଲା । ମୁଁ କଥକଳୀ ଏବଂ କର୍ଣ୍ଣାଟକୀ ସଙ୍ଗୀତ ଶିକ୍ଷାକଲି, କିନ୍ତୁ (ଯାହାହେବା କଥା) ମୋ ବାପା ମା ୟା ମଧ୍ୟରୁ କୌଣସିଟିକୁ ମୁଁ ଜୀବିକା ଭାବରେ ଗ୍ରହଣ କରେଁ ବୋଲି ଚାହୁଁନଥିଲେ । ସେ ଯାହାହେଉ ସେ ସମୟରେ କଥକଳୀ ନୃତ୍ୟ ମହିଳାମାନେ କରୁନଥିଲେ । ନୃତ୍ୟ ଏବଂ ସଙ୍ଗୀତ ଏପରି ଏକ ବିଷୟ ଯାହା ସ୍କୁଲ ଛୁଟି ହେବାପରେ କେବଳ ଶିକ୍ଷା କରାଯାଉଥିଲା । ସ୍କୁଲରେ ତୁମେ କେମିତି କରୁଛ, କେତେ ନମ୍ବର ରଖୁଛ ତାହାହିଁ ସର୍ବାଧିକ ଗୁରୁତ୍ୱପୂର୍ଣ୍ଣ । ତେଣୁ ମାନସିକ ସ୍ତରରେ ସ୍ୱାଭାବିକ ଓ ସ୍ୱଚ୍ଛନ୍ଦଭାବରେ ମୁଁ କଳାପ୍ରତି ଯେମିତି ଆକୃଷ୍ଟ ହେବା କଥା କିମ୍ବା କଳା ମୋ ଉପରେ ଯେମିତି ନିଶାପରି ସବାର ହେବା କଥା ଘଟୁନଥିଲା ।

ତେବେ କଳାକୁ ମୋର ବୃତ୍ତିଭାବରେ ପୂର୍ବରୁ ନିର୍ଦ୍ଧାରଣ କରାଯାଇନଥିବାରୁ ମୁଁ ହୁଏତ କଳାକାର ହେଇପାରିଲି, ଏତିକି ପ୍ରତିଷ୍ଠିତ ହେଇ ପାରିଲି । ମୋର କଥକଳୀ ଗୁରୁ ଖୁବ୍ ସାଧାରଣ ପରିବାରର । ଆମେ ଦୁହେଁ ଏକ ସମାନ ବିଡ଼ମ୍ବନାପୂର୍ଣ୍ଣ ପରିସ୍ଥିତିର ସମ୍ମୁଖୀନ ହେଇଛୁ । ସେ ଗୋଟେ ଏମିତି ପରିବାରରୁ ଆସିଛନ୍ତି ଯେଉଁଠି କଳାପ୍ରତି ଆଦୌ ସମ୍ମାନ ନାହିଁ କି କଳାର ଆଦର ନାହିଁ । ସେ ଏସମସ୍ତ ପ୍ରତିକୂଳତା ସତ୍ତ୍ୱେ ଖୁବ୍ ବାଲ୍ୟକାଳରୁ ନାଚକୁ ନିଜ ଜୀବନ ଓ ବୃତ୍ତି ଭାବେ ଗ୍ରହଣ କରିବାର ସୁଯୋଗ ପାଇଥିଲେ । ସୁଦୂର ଦକ୍ଷିଣ କେରଳର ଏକ ଆଭ୍ୟନ୍ତରୀଣ ଗ୍ରାମର ବ୍ୟକ୍ତି ଜଣକ ୧୪ବର୍ଷ ବୟସରୁ ଜାଣି ପାରିଥିଲେ ଯେ ନୃତ୍ୟ ହିଁ ତାଙ୍କର ଜୀବନ ।

ପ୍ରାରମ୍ଭିକ ଜୀବନ ଉପରେ ବିବିଧ ପ୍ରକାରର ଉତ୍ସର ପ୍ରଭାବ ପଡ଼ିଛି । କଥକଳୀ ମୋର ଶରୀର ଓ ମସ୍ତିଷ୍କକୁ ପ୍ରଶିକ୍ଷିଣ କରିବା ନିମନ୍ତେ ଏକ ସୁଦୃଢ଼ ଭିତ୍ତିଭୂମି ପ୍ରସ୍ତୁତ

କରିଥିଲା । କଥକଳୀ ନୃତ୍ୟରେ ଶରୀରର ଭିନ୍ନ ଭିନ୍ନ ଅଙ୍ଗ ପାଦ, ହସ୍ତ, ମୁଖମଣ୍ଡଳର ମାଂସପେଶୀ ଇତ୍ୟାଦି ପାଇଁ ଦୀର୍ଘବର୍ଷ ଧରି ପ୍ରାଥମିକ ପ୍ରଶିକ୍ଷଣ ଦିଆଯାଏ । ଧୀରେ ଧୀରେ ଏସମସ୍ତଙ୍କୁ ଏକତ୍ର କରି ପଦ୍ମ ଶିକ୍ଷାକରାଯାଏ ବା ଚରିତ୍ର ଭୂମିକା । ଯଦିଓ ଟେକ୍‌ନିକ ଦୃଷ୍ଟିକୋଣରୁ ନିଖୁଣଭାବରେ ନବରସ ଶିକ୍ଷାକରାଯାଏ ତେବେ ଜଣେ ୮-୯ ବର୍ଷ ବୟସର ପିଲାଭାବରେ ନା ମୁଁ ସେସବୁ ଜାଣିଥିଲି ନା ବାସ୍ତବ ଜୀବନରେ ସେ ସବୁ ଭାବର ଗଭୀରତାକୁ କେବେ ଅନୁଭବ କରିଥିଲି । ପାଦ ସାହାଯ୍ୟରେ ତାଳରକ୍ଷାକରି ନୃତ୍ୟ କରୁଥିବା ସମୟରେ ତୁମେ ଦେଖିଥିବା ସର୍ବାଧିକ ସୌନ୍ଦର୍ଯ୍ୟପୂର୍ଣ୍ଣ ପଦ୍ମ ଫୁଲର ବର୍ଣ୍ଣନା ତୁମର ହାତ ଓ ମୁହଁ କରୁଥାନ୍ତି । ତେବେ ବାସ୍ତବ ଜୀବନରେ ମୁଁ ଅନେକ ପରେ ପଦ୍ମ ଦେଖିଲି - ସେଥିରେ କିଛି ଫରକ୍ ପଡ଼େନା । ଏହି ନୃତ୍ୟରେ ଗୋଟିଏ ସଂପୂର୍ଣ୍ଣ ପ୍ରଶିକ୍ଷଣ ପଦ୍ଧତି ରହିଛି । ଦୀର୍ଘ ବର୍ଷର ପ୍ରଶିକ୍ଷଣ ଯୋଗୁ ଶରୀର ଏକପ୍ରକାର ଅନ୍ତର୍ନିହିତ ଶକ୍ତି ସୃଷ୍ଟି କରିବାରେ ସକ୍ଷମ ହୋଇଯାଏ । ସେହି ଶକ୍ତି ଭାବ, ଅଭିନୟ ଓ ଆବେଗ ସମୂହକୁ ବହନ କରିବାର ବାହନରେ ରୂପାନ୍ତରିତ ହୁଏ । ତାହା ଏପରି ଏକ ଆଙ୍ଗିକରେ ଅଭିବ୍ୟକ୍ତ ହୁଏ ଯାହା ଏହି ନିତ୍ୟନୈମିତ୍ତିକ ଭୌତିକ ଜଗତର କୌଣସି ପଦାର୍ଥଠାରୁ ବହୁଦୂରରେ । ବାସ୍ତବରେ ମୋର କଥକଳୀ ନୃତ୍ୟ ପ୍ରଶିକ୍ଷଣର ସବୁଠାରୁ ମୂଲ୍ୟବାନ ଦିଗ ହେଉଛି - ସପ୍ତାହର ସାଧାରଣଦିନଗୁଡ଼ିକରେ ମୁଁ ଏହି ଅସାଧାରଣ ଜଗତକୁ ଚାଲିଯାଏଁ ଯେଉଁଠି ମୋର ଶ୍ୱାସପ୍ରଶ୍ୱାସ ଓ ଶକ୍ତିର ମଧ୍ୟ ରୂପାନ୍ତରଣ ଘଟେ । କଥକଳୀରେ କିଛି ବି ସ୍ୱାଭାବିକ ନୁହେଁ - ତୁମେ ଯେଉଁ ଭଙ୍ଗୀରେ ଠିଆ ହୁଅ, ବସ, ଆଖିର ମୁଦ୍ରା ଏପରିକି ତୁମର ଭାବନା, ଅନୁଭବ ତଥା ଅଭିବ୍ୟକ୍ତି ସବୁକିଛି ଅସାଧାରଣ । ଦୈନନ୍ଦିନ ଜୀବନରୁ ସଂପୂର୍ଣ୍ଣ ପୃଥକ ଗୋଟିଏ କଳା-ରୂପର ଦୀର୍ଘବର୍ଷ ଅଭ୍ୟାସ ପରେ କଳ୍ପନା ଶକ୍ତି ସ୍ୱତଃ ପ୍ରଶିକ୍ଷିତ ହେଇଯାଏ ଏବଂ ତାକୁ ଜାଗ୍ରତ କରିବାମାତ୍ରେ ସ୍ୱ-ଅଭିବ୍ୟକ୍ତିର ଅନାବିଷ୍କୃତ ଇଲାକା ମଧ୍ୟରେ ଏହା ବିଚରଣ କରିବାକୁ ପ୍ରସ୍ତୁତ ହେଇଯାଏ । ମୋର ବିଶ୍ୱାସ କଥକଳୀରେ ମୋର ଭୀଷଣ କଠିନ ପ୍ରଶିକ୍ଷଣର ପରିଣାମ ସ୍ୱରୂପ ଦେଶ ବିଭାଜନ ଉପରେ ଆଧାରିତ ଏକ ଆଧୁନିକ କାହାଣୀକୁ କେବଳ ଶରୀର ଚାଳନ ଦୃଷ୍ଟିକୋଣରୁ ନୁହେଁ ବିଚାର ଓ ସମ୍ପାଦନ କରିବାର ଶୈଳୀ ଦୃଷ୍ଟିରୁ ମଧ୍ୟ ବ୍ୟାଖ୍ୟା କରିପାରିଲି ।

ମତେ ପ୍ରାୟ ପନ୍ଦର ବର୍ଷ ହେବାବେଳକୁ ମୁଁ ନାଟକ ପ୍ରତି ସଚେତନଭାବରେ ଆକୃଷ୍ଟ ହେଇସାରିଥିଲି । ନୃତ୍ୟସହିତ ନାଟକର ପ୍ରତିଦ୍ୱନ୍ଦ୍ୱିତା ପରେ ଏହା ବିଜୟ ଲାଭ ପୂର୍ବକ ନିଜକୁ ନୃତ୍ୟଠାରୁ ଯଥେଷ୍ଟ ଅଧିକ ଶ୍ରେଷ୍ଠତର ମନେ କଲା । ମୋର ଅପରିପକ୍ୱ ମସ୍ତିଷ୍କ ଏହା ହୃଦୟଙ୍ଗମ କରିବାକୁ ଆଦୌ ପ୍ରସ୍ତୁତ ନ ଥିଲା ଯେ କଥକଳୀ, ନାଟକର ଆଦର୍ଶ ସ୍ଥାନୀୟ ରୂପ । ସେ ସମୟରେ କଥକଳୀ ଏପରି ଏକ ବିଷୟ ଥିଲା ଯାହାର ଅନୁକରଣ କରାଯାଇପାରେ, ମାତ୍ର ସ୍ୱ-ଅଭିବ୍ୟକ୍ତି ଓ ସୃଜନଶୀଳତା ସହିତ ଏହାର କୌଣସି ସଂପର୍କ ନାହିଁ । ଜାତୀୟ ନାଟ୍ୟ ବିଦ୍ୟାଳୟର ଜଣେ ଉତ୍ତମ ଅଭିନେତା ଓମ୍ ଶିବପୁରୀ ଆମ ସ୍କୁଲର ନାଟକ ଶିକ୍ଷକ ଥିଲେ । ସେ ଆମଭିତରୁ କେତେକଙ୍କୁ ସେକ୍ସପିୟରଙ୍କ

ନାଟ୍ୟକୃତି ସହିତ ପରିଚିତ କରେଇଲେ । ଏଠି ପ୍ରଥମଥର ପାଇଁ ବିଚାର, ଭାବନା, ଆବେଗ, ରହସ୍ୟ, ଲୁକ୍କାୟିତ ଭାବର ବ୍ୟକ୍ତିଗତ ଜଗତକୁ ମୁଁ ଆବିଷ୍କାର କଲି ଯେଉଁଠାରେ ଗୋଟିଏ କଳାତ୍ମକ ଅଭିବ୍ୟକ୍ତିର ଜଗତରେ ଏହା ସ୍ୱଚ୍ଛନ୍ଦରେ ବିଚରଣ କରିପାରିବ । ଏହା ମୋର ଏକାନ୍ତ ନିଜସ୍ୱ ବ୍ୟକ୍ତିଗତ ସୃଜନଶୀଳ ଜଗତ । ଘରର ବଡ଼ସାନଗତ ଶ୍ରେଣୀ ବିଭାଗ କିମ୍ବା ବିଶୃଙ୍ଖଳା ଏବଂ ସାଙ୍ଗସାଥିଙ୍କର ପଦପଦବୀର ଅନିଶ୍ଚିତ ପରିବର୍ତ୍ତନ ଅଥବା କଥକଳୀ ସହିତ ମୋର କୌଣସି ସଂପର୍କ ନାହିଁ । ଏହା ଏପରି ଏକ ଶ୍ରେଷ୍ଠ ଜଗତ !! ମୋର ମନେପଡ଼େ ସ୍କୁଲ ନାଟ୍ୟଶାଳାରେ ଏକଦମ୍ ଏକା ଆଖି ବନ୍ଦ କରି 'କିଙ୍ଗ୍‌ଲିୟର୍' ନାଟକ ପାଇଁ ଆମେ ନିର୍ବାଚନ କରିଥିବା 'ଝଡ଼ର ସଙ୍ଗୀତ' ବସି ଶୁଣେ ଏବଂ ଉନ୍ମାଦଗ୍ରସ୍ତ ହେବାପର୍ଯ୍ୟନ୍ତ କାମ କରେ । ଅବଶ୍ୟ ଝିଅ ହୋଇଥିବାରୁ ମୁଁ 'କିଙ୍ଗ୍ ଲିଅର' ଭୂମିକାରେ ଅଭିନୟ କରୁନଥିଲି ବରଂ ତା'ଠାରୁ ଅଧିକ 'କଠିନ' ବିଦୂଷକ ଭୂମିକାରେ ଅଭିନୟ କରୁଥିଲି ।

କଥକଳୀ ଅଳ୍ପ ଅଳ୍ପ ଜାଣିବା (କପ୍‌ରୁ ପିଇବା) ପରେ ମୁଁ ହୃଦୟଙ୍ଗମ କଲି ଯେ ସେକ୍‌ସପିୟର୍ ହେଉଛନ୍ତି ଏହାର ଏକ ବିସ୍ତୃତି ମାତ୍ର ! ଏକ ଭିନ୍ନ ପ୍ରକାରର ମଦ୍ୟ ମାତ୍ର ମଦ୍ୟ ନିଶ୍ଚୟ । ଏ କ୍ଷେତ୍ରରେ କଳ୍ପନାର ବାହକ, କଥିତ ଶବ୍ଦ ସମୂହ ଯେତେବେଳେ କି କଥକଳୀରେ ହାତ, ମୁହଁ ବା ପାଦ । ଦୀର୍ଘବର୍ଷଧରି କଥକଳୀ ମୋ ଭିତରେ ଅନ୍ତର୍ନିହିତ ପରିକଳ୍ପନା ଶକ୍ତିର ଭଣ୍ଡାର ତିଆରି କରିବାରେ ସାହାଯ୍ୟ କରିଥିଲା । ସତେଯେପରି ସେକ୍‌ସପିୟରଙ୍କ ନାଟକର ଶବ୍ଦ ସେଥିରେ ତରଙ୍ଗ ସୃଷ୍ଟିକଲା । ସେତେବେଳେ ଯଦି କେହି ଏହା ମତେ ବୁଝେଇ ପାରିଥାନ୍ତେ ! କିନ୍ତୁ ହୁଏତ ମୁଁ ସେତେବେଳେ ବେଶ୍ ଛୋଟ ଥିଲି ।

ଈଶ୍ୱରଙ୍କୁ ଧନ୍ୟବାଦ ଯେ କଥକଳୀରେ ପୁରୁଷ ଭୂମିକାରେ ପ୍ରଶିକ୍ଷିତ ହେବାସହିତ ସ୍କୁଲରେ ଅନେକ ଥର ନୃତ୍ୟ ନାଟିକାରେ କୃଷ୍ଣ ଭୂମିକାରେ ଅଭିନୟ କରିବାକୁ ପଡୁଥିଲା । ମୁଁ କେବେ ବି ନାଟ୍ୟ ଜଗତର ଚରିତ୍ରଗୁଡ଼ିକୁ ନିର୍ଦ୍ଦିଷ୍ଟ ଭାବେ ପୁରୁଷ ଓ ମହିଳା ଦୃଷ୍ଟିରେ ଦେଖିନାହିଁ । ସେମାନେ ମୋ ନିମନ୍ତେ ଭିନ୍ନ ଏକ ଜଗତର ଚରିତ୍ର ଥିଲେ । ବହୁତ ବିଳମ୍ବରେ କଥକଳୀ ନୃତ୍ୟରେ ମୁଁ ନାରୀ ଭୂମିକା ଶିଖିଲି । ଏତେ ବର୍ଷ ପୁରୁଷ ଭୂମିକାରେ ଅଭିନୟ କରିବା ପରେ ନାରୀ ଭୂମିକା ମତେ ସଂପୂର୍ଣ୍ଣ ନୂଆ ଓ ରୋମାଞ୍ଚକର ମନେହେଲା । ପ୍ରଥମ ଥରପାଇଁ ପ୍ରେମିକା ଭୂମିକାରେ ଚାହାଁଣି ନତକରି ଅଭିନୟ କରିବା ଶିଖିଲି । ଆଉ ଏକଥା ଜାଣି ଖୁସି ଲାଗିଲା ଯେ ଲଜ୍ଜାରୁ ନୁହେଁ ଅତିଶୟ ପ୍ରେମର ଜୁଆରରେ ଉଦ୍‌ବେଳିତ ଓ ଉଚ୍ଛ୍ୱସିତ ହୋଇ ତାହା ନତ ହୁଏ ।

ସିଂହାବଲୋକନ କଲେ ମନେପଡ଼େ ଯେ ଗୋଟେ ଦିଗରେ ସ୍କୁଲରେ ଉଦୟ ଶଙ୍କର ଶୈଳୀର ନୃତ୍ୟନାଟିକା ତଥା ନାଟ୍ୟ ପ୍ରସ୍ତୁତିର ଚମତ୍କାର ଉତ୍ତେଜନାମୂଳକ ରୋମାଞ୍ଚ ତଥା ଅନ୍ୟ ଦିଗରେ ଘରେ ଶାସ୍ତ୍ରୀୟ କଥକଳୀ ନୃତ୍ୟର ପ୍ରଶିକ୍ଷଣ ମୁଁ ପ୍ରଚୁର ଉପଭୋଗ କରିଛି । ଗୋଟିଏ ନୃତ୍ୟଶୈଳୀରୁ ଅନ୍ୟ ନୃତ୍ୟ ଶୈଳୀକୁ ମୁଁ ଖୁବ୍ ସ୍ୱଚ୍ଛନ୍ଦ ଭାବରେ, ଆନନ୍ଦରେ ବିଚରଣ କରି ପାରୁଥିଲି – ସେଥିରେ ସାମାନ୍ୟ ବି ବିରୋଧାଭାସର ସ୍ଖଳନ ନଥିଲା । ମୁଁ

ଯେଉଁ କୃଷ୍ଣ ଭୂମିକାରେ ଅଭିନୟ କରୁଥିଲି ତାହା ବୃନ୍ଦାବନରେ ହୋଇପାରେ ଅଥବା ସୁଦୂର ଦକ୍ଷିଣ କେରଳର କଥକଳୀର କୁରୁକ୍ଷେତ୍ରରେ ହୋଇପାରେ । ଏ ସବୁ ମୋର ଉଭୟ ନୃତ୍ୟ ଜଗତ ଅନ୍ତର୍ଭୁକ୍ତ ଥିଲା କେବଳ ଏଇଟା ବା ସେଇଟା ନୁହେଁ । ପରିଣାମ ସ୍ୱରୂପ ଆଧୁନିକ ବନାମ ପାରମ୍ପରିକ ବିବାଦରେ ମୁଁ କେବେ ମୋର ସ୍ଥିତି ନିର୍ଣ୍ଣୟ କରିପାରିଲି ନାହିଁ । ମୁଁ କୃଷ୍ଣ ସଦୃଶ ଚରିତ୍ରକୁ ପୌରାଣିକ କାହାଣୀରେ ବର୍ଣ୍ଣିତ ଭଗବାନ କିମ୍ବା ପୂଜାଘରର କୃଷ୍ଣ ଚିତ୍ରରୁ ଅନୁଭବ କରିପାରେନା ବରଂ ମୁଁ ଯେଉଁ କୃଷ୍ଣ ଭୂମିକାରେ ଅଭିନୟ କରେ ତା'ମଧ୍ୟରୁ ଅନୁଭବ କରେ । ପ୍ରକୃତ ପକ୍ଷେ ମୋର ମନେପଡୁଛି ଖୁବ୍ ଛୋଟ ବେଳୁ ହାତରେ ଲହୁଣୀ ଧରିଥିବା ଗୋଲ୍‌ଗାଲ୍ କୃଷ୍ଣଙ୍କ ଛବି ସହିତ ମତେ ଶିଖା ହେଇଥିବା ନୃତ୍ୟ ବା ଅଭିନୟର କୃଷ୍ଣ ଯିଏ କି ମଞ୍ଚ ଉପରକୁ ଲମ୍ଫ ପ୍ରଦାନ କରି ଦ୍ରୌପଦୀକୁ ସାନ୍ତ୍ୱନା ଦିଅନ୍ତି ଓ ତାଙ୍କ ପ୍ରତି ଯେଉଁ ଅନ୍ୟାୟ ଆଚରଣ ହୋଇଛି ସେଥିରେ ବିଚଳିତ ହୋଇ କାନ୍ଦିବାକୁ ମନା କରନ୍ତି କିମ୍ବା ସେହି କୃଷ୍ଣ ଯିଏ ସାରଥିଭାବରେ ରଥକୁ ଯୁଦ୍ଧକ୍ଷେତ୍ର ଆଡ଼କୁ ଅଗ୍ରସର କରିବା ସମୟରେ ଅର୍ଜୁନଙ୍କୁ ତାଙ୍କର କାପୁରୁଷତା ପାଇଁ ଭର୍ତ୍ସନା କରନ୍ତି – ଏ ଦୁଇ ମଧ୍ୟରେ ଯୋଗସୂତ୍ର ବା ସମନ୍ୱୟ ସ୍ଥାପନ କରିପାରେନା ।

କଲେଜ ଦିନଗୁଡ଼ିକ ବୈପ୍ଲବିକ ନାଟକରେ ବିତିଗଲା । ଆମେମାନେ ବ୍ରେକେଟ୍‌ଙ୍କର ଉଭୟ ନାଟ୍ୟ ବିଷୟ ଓ ଦୃଷ୍ଟିଭଙ୍ଗୀର ସଂପୂର୍ଣ୍ଣ ଭାବରେ ମୁଗ୍ଧ ପ୍ରଶଂସକ ଥିଲୁ । ଉତ୍ତର ସତୁରୀ ଦଶକରେ ଏହା କ୍ରମେ ପଥପ୍ରାନ୍ତ ନାଟକରେ ପରିଣତ ହେଲା । ଏହି ନାଟକରେ ମୁଖ୍ୟ ବିଷୟ ଯୋଜନାବଦ୍ଧ ଭାବରେ ମହିଳା କୈନ୍ଦ୍ରିକ ନହେଲେ ହେଁ ସଂଯୋଗବଶତଃ ଘଟୁଥିଲା । କେତେକ ମହିଳା ସଂଗଠନ ମତେ ଯୌତୁକ ଉପରେ ଏକ ପଥପ୍ରାନ୍ତ ନାଟକ ପ୍ରସ୍ତୁତିରେ ମୁଁ ସାହାଯ୍ୟ କରିପାରିବି କି ବୋଲି ପଚାରିଲେ ଓ ମୁଁ ରାଜିହେଲି । ପୁନଶ୍ଚ ଏ କ୍ଷେତ୍ରରେ ମୋର କଥକଳୀ ପ୍ରଶିକ୍ଷିତ ଶରୀର କାଞ୍ଚନ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲା । ଏହା ଯୌତୁକ ଜନିତ ମୃତ୍ୟୁ ଘଟଣାର ଆରମ୍ଭ ସମୟର ଥିଲା ଓ ଗଣମାଧ୍ୟମର ଦୃଷ୍ଟି ଆକର୍ଷଣ କରିଥିଲା ।

ଜାତୀୟ ନାଟ୍ୟ ବିଦ୍ୟାଳୟରେ ପଢ଼ିବା ପାଇଁ ମୁଁ ଦୁଇଥର ଆବେଦନ କରିଥିଲି, ଥରେ ସ୍କୁଲପରେ ଓ ଦ୍ୱିତୀୟ ଥର ବି.ଏ.ପରେ । ଦୁଇଥର ଯାକ ମୁଁ ଆଡ଼ମିଶନ୍ ପାଇଥିଲି ଓ ଦିଥରଯାକ ମୁଁ ପଳେଇ ଆସିଲି – ପ୍ରଥମ ଥର ସପ୍ତାହକ ପରେ ଏବଂ ଦ୍ୱିତୀୟ ଥର ରେଜିଷ୍ଟ୍ରେସନ୍ ପରେ ପରେ । ମୁଁ ବିଶୃଙ୍ଖଳିତ ଓ ଭାବପ୍ରବଣ ସ୍ୱଭାବର ହୋଇଥିବାରୁ ନାଟକକୁ ଏକ ଶୃଙ୍ଖଳିତ ଯୋଜନାବଦ୍ଧରୂପରେ ଅଧ୍ୟୟନ କରିବା ଏବଂ ପାଠ୍ୟକ୍ରମ ଓ ପରୀକ୍ଷା ଇତ୍ୟାଦି ଦେବାକୁ ସହ୍ୟ କରିପାରୁନଥିଲି । ଏହା ଶୁଣିବାକୁ ଆତ୍ମଗରିମାପୂର୍ଣ୍ଣ ମନେହେଇପାରେ । ତେବେ ସେତେବେଳକୁ ମଧ୍ୟ ମୁଁ କହିପାରେ ଯେ ମୋ ନିଜସ୍ୱ ଅପରିପକ୍ୱତା ଓ ମଞ୍ଜା କଞ୍ଚା ଅବସ୍ଥାରେ ବି ନାଟକ ସଂପର୍କରେ ଏକ ଭିନ୍ନ ଧାରଣା ଥିଲା । ଏହା ଯଥେଷ୍ଟ ଅଧିକ ସମ୍ଭାବନାପୂର୍ଣ୍ଣ ଓ ରୋମାଞ୍ଚକର ଥିଲା । ନାଟକର ସମଗ୍ର ଅଂଶ ମୁଖସ୍ଥ କରି ଶିଖିବା ଓ ଡ୍ରଇଂ ରୁମ୍ ବା ଅନ୍ୟରୁମ୍‌ରେ ପଦଚାରଣ କରି ଅନ୍ୟ ଚରିତ୍ରଗୁଡ଼ିକ

ସହିତ ସଂପର୍କ ସ୍ଥାପନ କରିବା କଥା ମୁଁ ଭାବି ପାରେନା । ମୋ ଦୃଷ୍ଟିରେ ନାଟକ ଭିନ୍ନ ଜଗତର ଅଭିବ୍ୟକ୍ତି । ଯୌତୁକ ପ୍ରଥାର ଶିକାର ହୋଇଥିବା କାଞ୍ଚନ ବାସ୍ତବ । କିନ୍ତୁ ତା'ର ଭାବନା ଓ ଆବେଗ ଜଗତ ଗୋଟିଏ ଭିନ୍ନ ଭାଷା ମାଧ୍ୟମରେ ପୁନର୍ରଚିତ ହେବା ଆବଶ୍ୟକ, ଯେଉଁ ଭାଷା ନିତ୍ୟ ନୈମିତ୍ତିକ ଜୀବନର ହୋଇନଥିବ କି ପରିଚିତ ହୋଇନଥିବ କେବଳ ଏହି ଭାବରେ ହିଁ ତା'କାହାଣୀର ଯନ୍ତ୍ରଣା କାତର, ମର୍ମସ୍ପର୍ଶୀ ଦିଗଟି ଉଦ୍‌ଭାସିତ ହେଇପାରିବ । ଅନ୍ୟ ଶବ୍ଦରେ କହିଲେ ମୁଁ ଏକପ୍ରକାର ନାଟ୍ୟ ପ୍ରସ୍ତୁତି ପ୍ରତି ଆକୃଷ୍ଟ ଥିଲି ଯେଉଁଥିରେ ମର୍ମସ୍ପର୍ଶୀ ବାସ୍ତବତାର ପରିପ୍ରକାଶ ପାଇଁ ବାସ୍ତବତାଠାରୁ ଦୂରେଇ ଯିବାକୁ ହେବ । ମୋର ବିଶ୍ୱାସ କୌଣସି ନା କୌଣସି ରୂପରେ ସେ ଆବଶ୍ୟକତା ମୋ ଭିତରେ ଏତେ ବର୍ଷଧରି ଜୀଇଁ ରହିଛି ଓ କ୍ରମାଗତଭାବରେ ମୋ ଚିନ୍ତା ଓ ଭାବ ଆଦାନ ପ୍ରଦାନ କରିବା ଶୈଳୀକୁ ସୁଗଠିତ କରିଛି ।

ଅବଶ୍ୟ ଜାତୀୟ ନାଟ୍ୟ ବିଦ୍ୟାଳୟର ନାଟ୍ୟଗୋଷ୍ଠୀ ଦ୍ୱାରା ପ୍ରସ୍ତୁତ ଗୋଟିଏ ବି ନାଟକ ମୁଁ ନ ଦେଖି ଛାଡ଼େନି । ଅଭିନୟ ସମୟରେ ମୁଁ ବିସ୍ଫାରିତ ନେତ୍ରରେ ଦେଖେ ଓ ଘରକୁ ଫେରିବା ମାତ୍ରେ ଦର୍ପଣ ସାମ୍ନାରେ ମୋର ପ୍ରିୟ ଭୂମିକାଟି ଦୋହରାଏଁ । ଏସବୁ ଅଭିନୟ ମୁଁ ହେଲେନ୍, ମୀନା କୁମାରୀ ଏବଂ ମଧୁବାଳାଙ୍କ କ୍ଷେତ୍ରରେ କରିଛି । ଆମର ପଥପ୍ରାନ୍ତ ନାଟକରେ ଏ ସମସ୍ତ ନାରୀଚରିତ୍ର ଧର୍ଷଣ ଓ ଯୌତୁକ ପ୍ରଥାର ଶିକାର ହୋଇଥିବା ଘଟଣା ମଧ୍ୟ ଅଭିନୀତ ହେଉଥିଲା । କୌଣସି ନାରୀବାଦୀ ଲୋକପ୍ରିୟ ଲେଖକ ହୁଅନ୍ତୁ ବା ଆଞ୍ଜେଲା ଡାଭିସ ହୁଅନ୍ତୁ, ଏ ସମସ୍ତ ପ୍ରକାରର ମହିଳା ମୋର ଚିନ୍ତାରାଜ୍ୟକୁ ଆଲୋଡ଼ିତ କରୁଥିଲେ । ମୁଁ ଖୁବ୍ ଗୋଟେ ଭଲ ପାଠକ ନ ଥିଲି । ତେଣୁ ଆଞ୍ଜେଲାଙ୍କର ବଳିଷ୍ଠ ଯୁକ୍ତି ଅପେକ୍ଷା କଳା, କୁଞ୍ଚକୁଞ୍ଚିଆ ବାଳ ଏବଂ ପ୍ରତିରୋଧପୂର୍ଣ୍ଣ ସାହସୀ ଗର୍ବିତ ଭଙ୍ଗୀ ଓ ମନୋଭାବ ମତେ ଅଧିକ ଦୃଷ୍ଟିଗୋଚର ହେଉଥିଲା । ସେତେବେଳକୁ ପ୍ରତିରୋଧ କରିବା ମୋ ପାଇଁ ଜୀବନର ଏକ ଶୈଳୀ ହେଇସାରିଥିଲା । ଯା ଭିନ୍ନ ଅନ୍ୟରାସ୍ତା ମତେ ଜଣାନଥିଲା ।

ଆଉରି ଅନେକ ପରିସ୍ଥିତି ମୋର ସୃଜନଶୀଳ ପ୍ରକ୍ରିୟାକୁ ସାଧନ ଯୋଗାଇଛି । ମୁଁ ସମାଜ ବିଜ୍ଞାନରେ ବି.ଏ. ଓ ରାଜନୀତି ବିଜ୍ଞାନରେ ସ୍ନାତକୋତ୍ତର କରି ଦିଲ୍ଲୀର ଏକ କଲେଜରେ ରାଜନୀତି ବିଜ୍ଞାନରେ ହତାଶ ଅଧ୍ୟାପକଟିଏ ହେଲି । ବିଶ୍ୱବିଦ୍ୟାଳୟ ଅଧ୍ୟୟନ କାଳରେ ଛାତ୍ର ରାଜନୀତିପ୍ରତି ମୋର ଏକ ରୁଚି ଥିଲା । ଯଦିଓ ସମ୍ଭବତଃ ପ୍ରଥମେ ନାଟକରେ (ବ୍ରେକେଟ୍‌ଙ୍କ ମାଧ୍ୟମରେ) ମୁଁ ରାଜନୀତି ଆବିଷ୍କାର କଲି ଓ ପରେ ମୋର ପାରିପାର୍ଶ୍ୱିକ ଜଗତରେ । ଯଦି କୌଣସି ବାସ୍ତବ ଜିନିଷର ସ୍ୱାଦ ପ୍ରଥମେ କଳା ଜଗତର ମିଳେ ତେବେ ତା'ର ମୂଲ୍ୟ ସ୍ୱତନ୍ତ୍ର । ଅବଶ୍ୟ ଆମେ କଳା ମାଧ୍ୟମରେ ପୃଥିବୀକୁ ପରିବର୍ତ୍ତନ କରିବାର ସ୍ୱପ୍ନ ଦେଖୁଥିଲୁ । ଥିଏଟର୍ ସବୁବେଳେ ମୋର ସୌଖୀନର ବିଷୟ ଥିଲା (ଯଦିଓ ମୋର ମନପ୍ରାଣରେ ଏହା ମୁଖ୍ୟ ଥିଲା ।) ନାଟକକୁ ସଉକ ସ୍ତରରୁ ମୁଖ୍ୟ ବିଷୟଭାବେ ଗ୍ରହଣ କରିବାକୁ ମତେ ବହୁତ ଦିନ ଲାଗିଗଲା (ମୁଁ ୩୦ବର୍ଷର ହେଇ ଇଂଲଣ୍ଡ ଯିବା ପର୍ଯ୍ୟନ୍ତ) । ପଛ କଥା ଭାବିଲେ ମୋର ମନେ ହେଉଛି ମୋର ଏ ସଉକର

ବିଷୟ ମତେ ବଡ଼ ଅଦ୍ଭୁତ ଧାରାରେ ସାହାଯ୍ୟ କରିଛି । ମୁଁ ସମାଜ ବିଜ୍ଞାନ ପଢୁଥିଲି ଓ ବିଶ୍ୱବିଦ୍ୟାଳୟର ରାଜନୀତିକ ଜୀବନରେ ଅଂଶ ଗ୍ରହଣ କରୁଥିଲି । କାରଣ କେବଳ ନାଟକ ମୋର ସଉକର ବିଷୟଥିଲା । ସେ ସମୟରେ ମୁଁ ଦୁଇଟିଯାକ ବିଷୟକୁ ସମାନ ଗୁରୁତ୍ୱ ଦେଉଥିଲି ମାତ୍ର ଥିଏଟର୍‌କୁ ମୁଁ ବିଷୟଭାବେ ଗ୍ରହଣ କରିବାଭିତରେ ମୋର ବିଚାର ମଧ୍ୟରେ ରାଜନୈତିକ ଚିନ୍ତାଧାରା ସାମିଲ ହେଇଗଲା । ଏହାର ଭିତ୍ତିଭୂମି ଉପରେ ମୁଁ ଅବାସ୍ତବ ନାଟକର ସୌଧ ଠିଆ କରିଲି । ତଥାପି ପୂର୍ଣ୍ଣତଃ ପ୍ରକାଶ୍ୟଭାବରେ ନୁହେଁ । ମୁଁ କେବେ ବି ରାଜନୀତିକ କାରଣରୁ ବିଷୟବସ୍ତୁ, କାହାଣୀ ଏବଂ ଆଇଡ଼ିଆ ନିର୍ବାଚନ କରିନାହିଁ । ବରଂ ନିଶ୍ଚିତ ଭାବରେ ଏକ ରାଜନୀତିକ ଚେତନା ଏହାର ଆଙ୍ଗିକ ଓ ବିଷୟବସ୍ତୁକୁ ପ୍ରଭାବିତ କରିଛି । ପ୍ରତ୍ୟେକଟିରେ ଏହା ସ୍ୱତନ୍ତ୍ର ରୂପରେ ଥାଏ । ମାତ୍ର ତା'ର ଅସ୍ତିତ୍ୱ ଥାଏ ନିଶ୍ଚୟ । ଯଦି ତୁମେ ଚାହଁ ଭାବଭଙ୍ଗୀ ରାଜନୀତିକ ନହୋଇ ମଧ୍ୟ ପ୍ରତ୍ୟେକ ଭାବଭଙ୍ଗୀରେ ରାଜନୀତିର ସ୍ପର୍ଶ ରହିବ । ପ୍ରତ୍ୟେକଟି ନୂତନ ସୃଜନକର୍ମ ପରେ ରାଜନୀତିକ ଚେତନା ଅଧିକ ତୀକ୍ଷ୍ଣ ହୁଏ । ଉଦାହରଣ ସ୍ୱରୂପ ବିଭାଜନ ଉପରେ ରଚନା କରିଥିବା ନାଟକକୁ ଯଦି ମତେ ପୁଣି ଥରେ କେବେ କରିବାକୁ ହୁଏ ତେବେ ମୁଁ ଠିକ୍ ସେଇଭାବରେ କରିବି ବୋଲି ଭାବୁନି ।

ମୁଁ କ'ଣ କରିବା ଉଚିତ୍ ଠାରୁ ମୁଁ କ'ଣ କରିବାକୁ ଚାହେଁ ପର୍ଯ୍ୟନ୍ତ ଆଂଶିକ ଅଦୃଶ୍ୟ ପଥର ଦିଗ ପରିବର୍ତ୍ତନ କରିବାକୁ ମତେ ଦୀର୍ଘସମୟ ଲାଗିଲା । ଅନେକ ସମୟରେ ତୁମେ ପୂର୍ବ ପଥ ଦେଇ ଗତିକଲେ ହିଁ କେବଳ ପରବର୍ତ୍ତୀଟିର ଅଧିକ ପୂର୍ଣ୍ଣାଙ୍ଗ ଓ ସ୍ପଷ୍ଟ ରୂପକୁ ହୃଦୟଙ୍ଗମ କରିପାରିବ ଓ ପାଇପାରିବ । ମୁଁ ଏହା କହୁନି ଯେ ଗୋଟିଏ ଅନ୍ୟଟିର ସଂପୂର୍ଣ୍ଣ ବିପରୀତ ଧର୍ମୀ, ଅନେକ ସମୟରେ ଗୋଟିଏ ଅନ୍ୟଟି ସହିତ ସମ୍ମିଳିତ ହୋଇଯାଏ । ମାତ୍ର ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନଟି ହେଉଛି ଯେ କିଏ କାହାକୁ ସଞ୍ଚାଳିତ କରିଥିଲା, କାହାର ମୁଖ୍ୟ ଭୂମିକା ଥିଲା ? ମୋ ପାଇଁ ପ୍ରଶ୍ନ କେବଳ ଏହା ନ ଥିଲା ଯେ ମୁଁ କେଉଁ ବୃତ୍ତିକୁ ମୁଖ୍ୟଭାବେ ଗ୍ରହଣ କରିବି ବରଂ ମୁଁ ଥରେ ଥିଏଟରକୁ ମୋର ବୃତ୍ତିଭାବେ ବାଛି ସାରିବାପରେ କି ପ୍ରକାର ଥିଏଟର୍ କରିବି । ଏକ ରାଜନୈତିକ ଚେତନା ଉପଲବ୍ଧି ପରେ ଥିଏଟର୍ ମଧ୍ୟରେ ଥିବା ସମସ୍ତ ସମ୍ଭାବନା ମୋପାଇଁ ଉନ୍ମୁକ୍ତ ହେଇଗଲା । ଏହା କୁହାଯାଇପାରେ ଯେ ନାଟକ ପ୍ରସ୍ତୁତିର ବିଭିନ୍ନ ଧାରା ଆବିଷ୍କାର କରିବାକୁ ମୁଁ ଆଗ୍ରହୀ ଥିଲି ଯାହା ମାଧ୍ୟମରେ ନାଟକ ପ୍ରସ୍ତୁତ କରାଯାଇପାରିବ । ଏପରି ଏକ ଧାରା ଆବିଷ୍କାର କରିବାକୁ ଚାହୁଁଥିଲି ଯେଉଁଥିରେ ନାଟକ ସମଗ୍ର ସମାଜ ସହିତ ସମ୍ବନ୍ଧିତ ହୋଇପାରିବ ।

ଦୁଇଟି ଡିଗ୍ରୀ ଓ ରାଜନୀତି ବିଜ୍ଞାନରେ ପାଞ୍ଚବର୍ଷ ଅଧ୍ୟାପନାପରେ ମୁଁ କମ୍ ସମୟ ମଧ୍ୟରେ (ଗୋଟିଏ ବର୍ଷ) ଥିଏଟର୍ ଉପରେ ଏକ ଡିଗ୍ରୀ ଲାଭ କରିବାପାଇଁ ଲଣ୍ଡନ ଗଲି । ଯାହାଫଳରେ ମୁଁ ଥିଏଟର୍ ଜଗତ ମଧ୍ୟକୁ ବ୍ୟବସାୟିକ ବା ପ୍ରଶିକ୍ଷିତ ରୂପରେ ପ୍ରବେଶ କରିପାରିବି । ମୋତେ ସେତେବେଳକୁ ୩୦ ଓ ମୁଁ ଘରଛାଡ଼ି ପଦାକୁ କେବେ ବାହାରିନଥିଲି । ମାତ୍ର ଖୁବ୍ ଶୀଘ୍ର ସବୁକିଛି ବଦଳିଗଲା । ମୁଁ ଘର ଛାଡ଼ିଲି, ବାହାହେଲି ଆଉଗୋଟେ ଅପରିଚିତ ଦେଶରେ ନୂଆକରି ଘର-ସଂସାର କଲି । ଥିଏଟର୍‌କୁ ପୂର୍ଣ୍ଣମାତ୍ରାରେ ଗ୍ରହଣକରି

ଦୀର୍ଘ ବ୍ୟବଧାନ ପରେ ପୁନଶ୍ଚ ଛାତ୍ର ପାଲଟି ଗଲି । ମୁଁ ଏ ନୂଆ ଦେଶରେ ଜଣେ ଅଜ୍ଞାତ ବ୍ୟକ୍ତି, ମୋ ନିକଟରେ ମୁଁ ବି ନୂଆ, ପ୍ରତ୍ୟେକଙ୍କ ପାଇଁ ମୁଁ ନୂଆ ଓ ପ୍ରତ୍ୟେକେ ମୋ ପାଇଁ ନୂଆ । ଗୋଟିଏ ଗଭୀରତା ମଧ୍ୟକୁ ଲମ୍ଫ ପ୍ରଦାନକରି ମନୁଷ୍ୟ ଯାହା ଶିଖେ ଆଗରୁ କେବେ ସେମିତି ଶିଖିନଥାଏ । ଶେଷରେ ଥିଏଟର୍ ମୋ ଜୀବନକୁ ପୂର୍ଣ୍ଣମାତ୍ରାରେ କବଳିତ କଲା, ଯଦିଓ ପରିସ୍ଥିତି ଉଭୟ ସଂଘର୍ଷପୂର୍ଣ୍ଣ ଓ ଉତ୍ସାହଜନକ ଥିଲା । ଗୋଟେ ଅନ୍ୟ ଦେଶରେ ମୋର ବୃତ୍ତି ସଂପୂର୍ଣ୍ଣଭାବରେ ମୋର ଜୀବନ ପରିସ୍ଥିତିକୁ ପରିବର୍ତ୍ତନ କରିଦେଉଥିବାର ଲକ୍ଷ୍ୟ କଲି ।

ମୁଁ ଡିଗ୍ରୀ ପ୍ରାପ୍ତିପରେ ଇଂଲଣ୍ଡରେ ଆଉ କିଛି କାଳ ରହି କାମ କରିବାକୁ ସ୍ଥିର କଲି । ସେଠି ଥିଏଟର ଇନ୍ ଏଜୁକେଶନ୍ (ଟିଆଇଇ) ଏବଂ ସାମୂହିକ ଥିଏଟର୍ ଏପରି ଦୁଇଟି କ୍ଷେତ୍ରଥିଲା ଯେଉଁଠି ନୂଆ ବିଚାରଧାରା ଏବଂ ଆଙ୍ଗିକ ରୂପନେବାକୁ ଆରମ୍ଭ କରିଥିଲା । ସୌଭାଗ୍ୟବଶତଃ ସେତେବେଳର ସର୍ବୋତ୍ତମ ଟିଆଇଇ କମ୍ପାନୀ ମଧ୍ୟରୁ ଗୋଟିଏ କମ୍ପାନୀ ମତେ ତାର ସଦସ୍ୟ ହେବାକୁ ନିମନ୍ତ୍ରଣ କଲା । ଆମର କାର୍ଯ୍ୟଥିଲା ଗୋଟିଏ ଚରିତ୍ର ଭିତର ଦେଇ, ଗୋଟେ ଘଟଣା, ପାଠ୍ୟ ପୁସ୍ତକର ଏକ ଅଧ୍ୟାୟ, ଇତିହାସର ଏକ ମୁହୂର୍ତ୍ତକୁ ନାଟକ ମାଧ୍ୟମରେ ଶ୍ରେଣୀଗୃହରେ ପହଞ୍ଚେଇବା ଏବଂ ଏହାର ପୁଙ୍ଖାନୁପୁଙ୍ଖ ପର୍ଯ୍ୟବେକ୍ଷଣ ପାଇଁ ଏପରିଭାବେ ଉନ୍ମୋଚିତ କରିବା ଯେ ଛାତ୍ରମାନଙ୍କ ନିମନ୍ତେ ଏକ ଅଭିଜ୍ଞତାରେ ପରିଣତ ହେବ ଏବଂ ବାସ୍ତବଠାରୁ ଅଧିକ ଜୀବନ୍ତଭାବେ ଅନୁଭୂତ ହେବ । ଏଥିରୁ ଅଧିକାଂଶ ବିନା ପ୍ରସ୍ତୁତିରେ ହେଉଥିଲା । ଉଭୟ ଅଭିଜ୍ଞ ଅଭିନେତା ଏବଂ ଛାତ୍ର ଭୂମିକା ଗ୍ରହଣ କରୁଥିଲେ ଏବଂ ନିଜ ପାଇଁ ପୃଷ୍ଠଭୂମି ତିଆରି କରୁଥିଲେ, ଦର୍ଶକଙ୍କ ପାଇଁ ନୁହେଁ ।

ବୃତ୍ତି ଦୃଷ୍ଟିରୁ ଏଇ କିଛି ବର୍ଷ ମୋ ଜୀବନର ସବୁଠାରୁ ରୋମାଞ୍ଚକର ଥିଲା । ସାଂସ୍କୃତିକ ଓ କଳାତ୍ମକ ଦୃଷ୍ଟିକୋଣରୁ ଏହା କଠିନ ଓ ଚାହିଦାଯୁକ୍ତ ଥିଲା । ଟୋପିଟିଏ ତଳକୁ ପକାଇବା ମାତ୍ରେ ପିଲାମାନେ ଯେଉଁ ଚରିତ୍ର କହନ୍ତି ସେଇ ଚରିତ୍ର ଭୂମିକାରେ ଅଭିନୟ କରୁଁ । ଅଧିକାଂଶ ସମୟରେ ମତେ ଗୋରା ଇଂରେଜ୍ ସାହେବ (ପୁରୁଷ)ର ଅଭିନୟ କରିବାକୁ କୁହାଯାଏ । ଥରେ ସେ ଭୂମିକାରେ ଅବତୀର୍ଣ୍ଣ ହେଲେ ତୁମକୁ ଛାତ୍ରମାନଙ୍କ ଏକବାରେ ନିକଟରେ ବସିବାକୁ ପଡ଼ିବ ଓ ସଂପୂର୍ଣ୍ଣ ବିଶ୍ୱସ୍ତ ଚରିତ୍ରଟିଏ ହେବାକୁ ପଡ଼ିବ । ଏହା ସଂପୂର୍ଣ୍ଣ ରୋମାଞ୍ଚକର ଓ ଶିକ୍ଷଣୀୟ ସମ୍ଭାବନାଯୁକ୍ତ ଥିଲା । ଏହା ଶ୍ରେଷ୍ଠ ପ୍ରକାରର ବାସ୍ତବଧର୍ମୀ ନାଟକ ଥିଲା । ଭାରତରେ ମୁଁ ଆଗରୁ କେବେ ଏମିତି କରିନଥିଲି, ଯାଠୁଁ କୋଶ କୋଶ ଦୂରରେ ଥିଲି । ତେବେ କଥକଳୀରୁ ମୁଁ ଯେଉଁ କଳ୍ପନା, ମାଂସପେଶୀ ନିୟନ୍ତ୍ରଣ ଓ ଏକାଗ୍ରତାର କଠୋର ପ୍ରଶିକ୍ଷଣ ଲାଭ କରିଥିଲି ତାହା ମତେ ତତ୍କାଳ ଯେ କୌଣସି ଚରିତ୍ରରେ ଅଭିନୟ କରିବାରେ ସାହାଯ୍ୟ କରିଥିଲା । ଠିକ୍ ଏହି କ୍ଷେତ୍ରରେ ମୁଁ ହୃଦୟଙ୍ଗମ କଲି ଥିଏଟର୍‌ର ଅନ୍ୟତମ ମହାଶକ୍ତି – ହେଉଛି ରୂପାନ୍ତରଣ ସାମର୍ଥ୍ୟ । ଛାତ୍ରମାନେ ତାଙ୍କର ପରିଚିତ କ୍ଲାସ୍‌ରୁମ୍ ପରିବେଶ ଭିତରେ ବସି ଆମେ ସୃଷ୍ଟି କରିଥିବା କାଳ୍ପନିକ ଜଗତ ମଧ୍ୟରେ ତଲ୍ଲୀନ ହୋଇଯିବେ । ସେମାନେ ତାଙ୍କ ଆତ୍ମବିଶ୍ୱାସ ସହିତ ଆମକୁ

ସାମିଲ୍ କରିନିଅନ୍ତି ଯାହା ହୁଏତ ସେ ତାଙ୍କ ବାପା ମା ବା ଶିକ୍ଷକଙ୍କ ସହିତ କରନ୍ତିନି । ସେମାନେ ନିଜ ନିଜର ବିଚାର ଓ ଅନୁଭୂତିକୁ ଅଭିବ୍ୟକ୍ତ କରନ୍ତି ଯାହା ତାଙ୍କୁ ଚମକୃତ କରେ – ଥିଏଟର୍ ମାଧ୍ୟମରେ ସବୁ ସମ୍ଭବ ।

ଆଜି ମୁଁ ଏକକ ବ୍ୟକ୍ତି, ଏକକ ମହିଳା ପ୍ରସ୍ତୁତ କର୍ତ୍ତା ବା ଅଭିନେତ୍ରୀ । ଆଂଶିକ ଭାବରେ ଏହା ଆକସ୍ମିକ, ଆଂଶିକ ଯୋଜନାବଦ୍ଧ ରୂପରେ ଏବଂ ଆଂଶିକ ଶାସ୍ତି ରୂପରେ ଘଟିଛି । ଏହାର ସାହସ ବା ନିର୍ଭୀକତା ସହିତ କୌଣସି ପ୍ରକାର ସଂପର୍କ ନାହିଁ । ମତେ ଅନ୍ୟ କୌଣସି ରାସ୍ତା ଜଣାନାହିଁ ବା ହୋଇପାରେ ମୁଁ ସେସବୁ ଭୁଲିଯାଇଛି । ଏଥିରେ ଲାଭ ହେଉଛି ଯେ ତୁମେ ସାରା ବିଶ୍ୱକୁ ଅବଲୋକନ କରି ଯେଉଁ ପଥ ବା ଆଙ୍ଗିକ ତୁମକୁ ଭଲ ଲାଗିବ ତା'ର ସାରମର୍ମ ଗ୍ରହଣ କରିପାରିବ । ଗୋଟିଏ ନାଟ୍ୟ ପ୍ରଦର୍ଶନ ପ୍ରସ୍ତୁତି ସମୟରେ ନୈପୁଣ୍ୟ ଓ ଜୀବନରୁ ଲାଭ କରିଥିବା ଅନୁଭୂତିକୁ ପରସ୍ପର ମଧ୍ୟରେ ସ୍ୱଚ୍ଛନ୍ଦରେ ବାର୍ତ୍ତାଳାପ କରିବାପାଇଁ ସୁଯୋଗ ଦେଇପାରିବ । ମୁଁ ଏବେ ଆଉ ମୋର କାମକୁ ନିର୍ଦ୍ଦିଷ୍ଟଭାବରେ ନୃତ୍ୟ ବା ଥିଏଟର୍ ଗୋଷ୍ଠୀ ଅନ୍ତର୍ଭୁକ୍ତ କରିବାର ଆବଶ୍ୟକତା ଅନୁଭବ କରୁନି । ଆଦ୍ୟ ଜୀବନରେ କଥକଳୀର ପ୍ରଶିକ୍ଷଣ ମତେ ଏକ ବିସ୍ତୃତ ସୃଜନାତ୍ମକ ଭାଷା ଗଢ଼ିବାରେ ସାହାଯ୍ୟ କରିଛି ଯାହା ଉଭୟ ଜଗତର ଅଂଶ ବିଶେଷ । ଏବଂ ଥିଏଟର୍ ସେଇ ଭାଷାର ପୂର୍ଣ୍ଣ ଅଭିବ୍ୟକ୍ତିରେ ସହାୟକ ହୋଇଛି ।

ଗୋଟେ ଦୃଷ୍ଟିରୁ ଥିଏଟର୍ କଳାର ଏପରି ଏକ ଆଙ୍ଗିକ ଯାହାର ଜୀବନ ସହିତ ରହିଛି ଘନିଷ୍ଠ ସଂପର୍କ । ଥିଏଟର୍ ରକ୍ତ ମାଂସଧାରୀ ଲୋକଙ୍କୁ ନେଇ (କଳାକାର) ସୃଷ୍ଟି ଯେଉଁମାନେ ଏକ ପରିକଳ୍ପିତ ବା ସୃଜିତ ଜଗତରେ ବଞ୍ଚନ୍ତି ଓ ଅଭିନୟ କରନ୍ତି । ଏହା ଏପରି ଏକ ଆଙ୍ଗିକ ଯାହା ମନୁଷ୍ୟକୁ ଆଲୋଡ଼ିତ କରିପାରେ ଏପରିକି ପରିବର୍ତ୍ତନ କରିପାରେ । ପ୍ରସଙ୍ଗ ପୂର୍ବକ ବହୁ ବ୍ୟବହୃତ ଉକ୍ତିଟିକୁ ଏଠି ଉଦ୍ଧାର କରାଯାଇପାରେ ଯେ ଏହା ସମାଜ ସମ୍ମୁଖରେ ଏକ ଦର୍ପଣ ଉପସ୍ଥାପନ କରିଥାଏ । ଅବଶ୍ୟ ଏହା ହିଁ ଥିଏଟର୍ ନିର୍ମାତାର ସର୍ବାଧିକ ରୋମାଞ୍ଚକର ଚାଲେଞ୍ଜ ଯେ ଗୋଟିଏ ବ୍ୟକ୍ତିର ଅଦୃଶ୍ୟ ସ୍ତରଗୁଡ଼ିକୁ, ଜୀବନର ଗୋଟେ ଗୋଟେ ପରିସ୍ଥିତି, ଗୋଟିଏ ଘଟଣା, ଗୋଟେ କାହାଣୀକୁ ତୁମେ କିପରିଭାବେ ଦର୍ଶକ ସମ୍ମୁଖରେ ଉନ୍ମୋଚନ କରୁଛ ଓ ଉପସ୍ଥାପନ କରୁଛ ।

ନୃତ୍ୟ ଜଗତରେ ଗୋଟିଏ ନୃତ୍ୟ ପ୍ରଦର୍ଶନକୁ ବର୍ଣ୍ଣନା କରିବାପାଇଁ 'ନୃତ୍ୟନାଟିକା' ଶବ୍ଦ ଅଧିକରୁ ଅଧିକ ବ୍ୟବହୃତ ହେଉଛି । ନୃତ୍ୟ ଓ ନାଟକ ଏ ଦୁଇ ଆଙ୍ଗିକ ମଧ୍ୟରେ ଥିବା ସୀମାରେଖା ଅଧିକ ଅସ୍ପଷ୍ଟ ହେବାରେ ଲାଗିଛି । ଯେତେବେଳେ ମୋ ନିଜର ସର୍ଜନା କଥା ଉଠେ ଗୋଟିଏ ଆଙ୍ଗିକରେ କାମ କଲେ ଆଙ୍ଗିକଟି ସତେ ଯେପରି ଚାଲେଞ୍ଜ ଦିଏ । ମୋର କଥକଳୀ ପ୍ରଶିକ୍ଷଣ ଏ ଦୁଇ ଆଙ୍ଗିକକୁ ଏପରି ସମନ୍ୱିତ କରିଦେଇଛି ଯେ ଏହାକୁ ପୃଥକ କରିବା ସମ୍ଭବ ନୁହେଁ । ନୃତ୍ୟର ଏକ ପ୍ରବାହ ରହିଛି । ସମଗ୍ର ଶରୀର ଏକ ବିଷୟକୁ ଧାରଣ କରେ ଓ ଏହାକୁ ଅଭିବ୍ୟକ୍ତ କରେ । ଶରୀର ଓ ମସ୍ତିଷ୍କ ଏକ ପ୍ରତୀୟମାନ ହୁଏ । ଅନ୍ୟପକ୍ଷରେ ଥିଏଟର୍ ଏହି ଅବାରିତ ଧାରାକୁ ଗୋଟିଏ ମୁହୂର୍ତ୍ତରେ ଆଘାତରେ

ବ୍ୟାହତ କରେ । ଏଇ ମୁହୂର୍ତ୍ତ ଗୋଟିଏ କ୍ରିୟା ବା ବିଚାର ଅଥବା ଜୀବନରୁ ଉଦ୍ଧୃତ ଏକ ବିଶେଷ ପରିସ୍ଥିତି ହୋଇପାରେ ଯାହା ନୃତ୍ୟଠାରୁ ଅଧିକ ପ୍ରତ୍ୟକ୍ଷ ଓ ତୀକ୍ଷ୍ଣ ହୋଇଥାଏ । କ୍ଷଣକପାଇଁ ଶରୀରଠାରୁ ମସ୍ତିଷ୍କ ପୃଥକଭାବେ କାର୍ଯ୍ୟ କରେ । ମସ୍ତିଷ୍କ ଚିନ୍ତାମଗ୍ନ ହେଇଯାଏ, ଜୀବନ୍ତ ହେଇଉଠେ । ସେଇ କ୍ଷିପ୍ର, ତୀକ୍ଷ୍ଣ କ୍ରିୟାଠାରୁ ଶରୀର ନୃତ୍ୟାବସ୍ଥାକୁ ଫେରିଆସେ, ଏହା ଏକ ମୁହୂର୍ତ୍ତ ନୁହେଁ ବରଂ ଏକ ପ୍ରବାହ ସଦୃଶ । ଏ ଦୁଇ ଆଙ୍ଗିକ ପରସ୍ପର ସଂଘର୍ଷରତ ଥା'ନ୍ତି, ପରସ୍ପରକୁ ଚାଲେଞ୍ଜ ଦିଅନ୍ତି ଏବଂ ପ୍ରକାରାନ୍ତରେ ବିଷୟଟିକୁ ପରସ୍ତ ପରସ୍ତ କରି ଉନ୍ମୋଚିତ କରିବାରେ ସାହାଯ୍ୟ କରନ୍ତି । ଜଣେ ବିଭିନ୍ନ ପ୍ରକାରର ଭାବାଭିବ୍ୟକ୍ତି ଓ ଜୀବନର ସାର ନିର୍ଯ୍ୟାସ ପ୍ରାପ୍ତିର ବିବିଧ ଧାରା ଉପଲବ୍ଧ କରିପାରିବ । ସ୍ଥୂଳ ଭାବରେ କୁହାଯାଇପାରେ ଯେ ମନର ଅବସ୍ଥା ବା ସ୍ଥିତିକୁ ନୃତ୍ୟ ଏକ ଶରୀର ପ୍ରଦାନ କରିଥାଏ (ଠିକ୍ ଯେପରି ସଙ୍ଗୀତ କରିଥାଏ) ଏବଂ ନାଟକ ପ୍ରଦାନ କରିଥାଏ ଜୀବନ ।

କଳାର ଏ ଦୁଇ ଆଙ୍ଗିକ ସହିତ କାମ କରି ତୁମେ ଏପରି ଏକ ମୂଲ୍ୟାୟନରେ ପହଞ୍ଚିବ ଯାହା ତୁମେ ଆରମ୍ଭରେ କେବେ ବି କଳ୍ପନା କରିନଥିବ । ସଆଦତ୍ ହସନ୍ ମାଣ୍ଟୋଙ୍କର 'ଖୋଲ୍ ଦୋ' ନାଟକର ଉଦାହରଣ ନିଆଯାଉ – ଦେଶ ବିଭାଜନ ପୂର୍ବର ସାଂପ୍ରଦାୟିକ ଦଙ୍ଗାରେ ଜଣେ ବାପା ତା'ଝିଅକୁ ଖୋଜୁ ଥିବାର ଘଟଣା ବର୍ଣ୍ଣିତ । ମୁଁ ୫୫ ମିନିଟ୍‌ର ଏକ ନୃତ୍ୟ ପ୍ରସ୍ତୁତ କଲି – ଯେଉଁଥିରେ  ବାପାର ଖୋଜିବା ଏତେ ଗଭୀର ଓ ମାର୍ମିକ ଯେ ଅବଶେଷରେ ବାପାଟି ତା'ନିଜ ଶରୀର, ଆଙ୍ଗୁଠି, ମୁଣ୍ଡ ହଲେଇବା ଓ ହସ ମଧ୍ୟରେ ଝିଅଟିକୁ ପାଉଛି । ମୁଁ ଉପଲବ୍ଧ କଲି ଯେ ମୁଁ ଗୋଟେ କାହାଣୀ (ଥିଏଟର୍) କହୁନାହିଁ କି କେବଳ ଶରୀର ଭିତର ଦେଇ ତା'ର ମର୍ମଦାହୀ ଯନ୍ତ୍ରଣା (ନୃତ୍ୟର ଖୁବ୍ ନିକଟବର୍ତ୍ତୀ) କହୁନାହିଁ । ମୋର ଏହି ବ୍ୟାଖ୍ୟା ନୃତ୍ୟ ଓ ନାଟକର ମଝିଆଁମଝି କାହିଁକି ବରଂ ଏକ ମଧୁର ସମନ୍ୱୟ କୁହାଯାଇପାରେ ।

ମୋର ନାଟ୍ୟ ପ୍ରସ୍ତୁତିର ପ୍ରଣାଳୀ ହେଲା ସର୍ବପ୍ରଥମେ ମୁଁ ଗୋଟେ ବିଷୟ ନିର୍ବାଚନ କରେ, ଯାହା ମତେ ଛୁଇଁଥାଏ ବା ତା'ର ଏପରି ସ୍ତର ରହିଥାଏ ଯାହା ଠିକ୍ ଧରିହେଉନଥାଏ ମାତ୍ର (ଦର୍ଶକକୁ) ବାନ୍ଧି ରଖୁଥାଏ । ସାଧାରଣତଃ ଗୋଟେ ଶୂନ୍ୟ ଘରେ ମୁଁ କୌଣସି ଗୀତ ବଜାଇଦିଏଁ, ତାପରେ କିଛି ସମୟର ଏକାଗ୍ରତାପରେ ମୁଁ ଶରୀର ଚାଳନା ଓ ଅଭିନୟ ମାଧ୍ୟମରେ ସେଇ କାହାଣୀର ବିଚାରକୁ ଆଧାର କରି ଗୋଟିଏ କଳା ଜଗତ ସୃଷ୍ଟିକରେ । ଏକ ତାତ୍‌କ୍ଷଣିକ ଅଭିନୟ ଧାରା କିଛି ଦିନପାଇଁ ଚାଲେ । ସଙ୍ଗୀତର ପ୍ରକାରଭେଦଗତ ପ୍ରକୃତି ନାଟକର ଶୈଳୀକୁ ବହୁ ପରିମାଣରେ ପ୍ରଭାବିତ କରେ । ମୁଁ ତା'ର ପ୍ରତିଲିପି କରେ, ସଂପାଦନା (ଯଦି ପାଠ୍ୟଥାଏ) ଆଦି କିଛିଦିନ ଧରି କରେଁ । ମୁଁ ସଂପାଦନା କରେ ଏବଂ ତାତ୍‌କ୍ଷଣିକ ଅଭିନୟରୁ ବିଭିନ୍ନ ଅଂଶ ଯୋଡ଼ି ନାଟ୍ୟ ପ୍ରସ୍ତୁତ କରେ । ସାଧାରଣତଃ ମୁଁ ପରେ ବହୁତ କମ୍ ଯୋଡ଼େ ।

ମୋ ପାଇଁ ନାଟ୍ୟ ପ୍ରସ୍ତୁତିର ଧାରା ନିତିଦିନିଆଁ ଜଗତଠୁଁ ସଂପୂର୍ଣ୍ଣ ବିପରୀତ । ଏ ଜଗତରେ ଶରୀର ନେତୃତ୍ୱ ନିଏ । ଯାର ଗତିବିଧିକୁ ମସ୍ତିଷ୍କ ଅନୁଧାନ କରେ ଓ ଅର୍ଥ

ନିଷ୍ପନ୍ନ କରେ ଏବଂ ତା'ପରେ ଶରୀର ପରବର୍ତ୍ତୀ ପଦକ୍ଷେପ ନିଏ । କାହିଁକି ନା ଅନେକ ସମୟରେ ମୁଁ ଏକ ପ୍ରକାର ସମ୍ମୋହିତ ଅବସ୍ଥାରେ ଥାଏ । ଆଉ ମୋ ମସ୍ତିଷ୍କ ସମସ୍ତ ବିଚାର ଓ ରୂପକଳ୍ପ ଆଦିକୁ ତନ୍ନତନ୍ନ କରି କର୍ଷଣ କରି ତାକୁ ପରବର୍ତ୍ତୀ ପ୍ରକ୍ରିୟା ସହିତ ସାମିଲ କରାଏ । ଏ ଅବସ୍ଥାରେ ଠିକ୍ ସ୍ୱପ୍ନପରି ସଚେତନ ଅବସ୍ଥାରେ ଯେଉଁ ଚିନ୍ତା ଆଦୌ ମୁଣ୍ଡକୁ ଜୁଟେନି ତାହା ଆସିଯାଏ । ଏହି ଅବସ୍ଥାରେ ସବୁକିଛି ଭିନ୍ନ – ରଙ୍ଗ, ରୂପକଳ୍ପ, ତାଳ–ଲୟ, ଅଭିନୟର ପ୍ରତ୍ୟେକ ପର୍ଯ୍ୟାୟ ଏବଂ ପ୍ରତ୍ୟେକଟିର ନିଜସ୍ୱ ଯୌକ୍ତିକତା ମଧ୍ୟ ପ୍ରତୀୟମାନ ହୁଏ । କଥକଳୀରେ ଯେମିତି ହାତ ଶବ୍ଦର କାର୍ଯ୍ୟ କରିଦେଉଥିଲା ସେମିତି ପ୍ରାଥମିକ ସ୍ତରର ନାଟ୍ୟ ପ୍ରସ୍ତୁତି ଗୁଡ଼ିକ ଶବ୍ଦହୀନତା ଅଭିମୁଖୀ ଥିଲେ । ଶରୀରର ବିଭିନ୍ନ ଅଙ୍ଗ–ପ୍ରତ୍ୟଙ୍ଗ ପୃଥକଭାବେ କାର୍ଯ୍ୟକରିବାକୁ ପ୍ରଶିକ୍ଷିତ ହୋଇଥିବାରୁ ମୋର କଳ୍ପନା ଶକ୍ତି କେବେ ପଦପାତ ମାଧ୍ୟମରେ ତ ପର ମୁହୂର୍ତ୍ତରେ ଆଖି ମାଧ୍ୟମରେ ରୂପ ନେଉଥିଲା । ଅବିରତ ପଦପାତ ଯୋଗୁଁ ବିସ୍ମୃତ କଥା ବି ସ୍ମୃତିପଟକୁ ଚାଲିଆସେ । କଥକଳୀ ନୃତ୍ୟ ପ୍ରଶିକ୍ଷଣର ସର୍ବାଧିକ ମୂଲ୍ୟବାନ ବିଷୟ ଏହି ଯେ ଅଭିନେତା ପକ୍ଷରେ ଶରୀରର ସମସ୍ତ ଅଙ୍ଗ ସହିତ ପ୍ରତ୍ୟେକ ଅଙ୍ଗକୁ ସ୍ୱତନ୍ତ୍ରଭାବରେ ଅଭିବ୍ୟକ୍ତିଶୀଳ କରିବାରେ ଏହା ସମର୍ଥ । ଏଥିରେ ଏକ ଅଙ୍ଗ ଅନ୍ୟଟିର ସ୍ଥାନ ମଧ୍ୟ ନେଇପାରେ ।

ଅଭିଜ୍ଞତା ଓ ପ୍ରଭାବର ସଂପୂର୍ଣ୍ଣ ଧାରାକୁ ଏକ କଳାତ୍ମକ ଅଭିବ୍ୟକ୍ତି ଦେବାରେ ଏହି ପ୍ରକ୍ରିୟା ସହାୟକ ହୋଇଛି । ଏହା ମତେ ପଥପ୍ରାନ୍ତ ଥିଏଟରରୁ ନୃତ୍ୟ–ନାଟିକା, ହାସ୍ୟ ନାଟକରୁ ପ୍ରଦର୍ଶନ କଳା ପର୍ଯ୍ୟନ୍ତ ପହଞ୍ଚିବାରେ ସହାୟକ ହୋଇଛି । ବ୍ୟାପକ ଦୃଷ୍ଟିରୁ ଏ ସବୁଥିରେ ଏକ ସାମାଜିକ ଚେତନା ପ୍ରତିଫଳିତ ଯାହା ମୁଁ ମୋ ଛାତ୍ର ଜୀବନରେ ଆହରଣ କରିଛି । ଏହା ମୋର ଯାତ୍ରାପଥକୁ ସୁଗମ କରିବା ସହିତ ଏହାର ଭାଷା ନିର୍ମାଣ କରିଛି ।

ମୋର ଦ୍ୱିତୀୟ ନାଟ୍ୟ ପ୍ରସ୍ତୁତି ବ୍ରେକେଟ୍‌ଙ୍କର କ୍ଷୁଦ୍ରଗଳ୍ପ 'ଦି ଜବ୍' ଉପରେ ଆଧାରିତ । ଏହା ଏକ ସତ୍ୟ ଘଟଣା ଅବଲମ୍ବନରେ ରଚିତ । ଜଣେ ମହିଳା ନିଜକୁ ଓ ତାଙ୍କର ଦୁଇ ପୁଅଙ୍କୁ ଜୀବିତ ରଖିବାପାଇଁ ବାରବର୍ଷଧରି ପୁରୁଷ ବେଶ ଧାରଣ କରି ରହିଥିଲେ । ମୁଁ ମୋ ପାଇଁ ଦୁଇଟି କାର୍ଯ୍ୟ ସ୍ଥିର କରିନେଲି । ମତେ ଏକା ସାଙ୍ଗରେ କହିବା ଓ ଚାଲିବା ଦୁଇଟିଯାକ କରିବାକୁ ହେବ ଯାହା ସ୍ତ୍ରୀଲୋକମାନେ କପଡ଼ା ଧୋଇବା, ମସଲା ବାଟିବା, ଗୁଣ୍ଡ କରିବା, ସ୍ନାନ କରିବା ଏବଂ ଅଟା ଚକଟିବା ଆଦି ବେଳେ ଘରେ ବ୍ୟବହାର କରିଥାନ୍ତି । ଏହା ସହିତ କାମ କରିବାର ଅଭିନୟ କରିବା ଭିତରେ ମୁଁ ଦେଖିବାକୁ ଚାହୁଁଥିଲି ଯେ ପ୍ରକୃତରେ ଗଳ୍ପର ବିଭିନ୍ନ ଅଂଶ ନିଜକୁ ମୋ ନିକଟରେ ଉନ୍ମୋଚିତ କରୁଛନ୍ତି କି ନାହିଁ ! ମୁଁ ଏ ବିଷୟଟିକୁ ଠିକ୍ ସେମିତି ରୂପ ଦେଲି ଯେମିତି ମୁଁ ସେ ସବୁ ଜିନିଷସହିତ ଅଭିନୟ କରିଥିଲି । ସମୟ ସମୟରେ ଏହା ସଫଳ ହେଇଛି ଏବଂ ଅନ୍ୟ କେତେକ ସମୟରେ ନୁହେଁ । ଯେତେବେଳେ ଏହା ପ୍ରଭାବଶାଳୀ ହୁଏନି ସେତେବେଳେ ମୁଁ ବ୍ରେକେଟ୍‌ଙ୍କର ବିଷୟଟିକୁ କଣ୍ଠସ୍ଥ କରେଁ ଏବଂ ଶବ୍ଦ ଓ ଅଭିନୟକୁ ସମନ୍ୱିତ କରି ଏପରି ଏକ ଛନ୍ଦରେ ପ୍ରକାଶ କରେଁ ଯେ ଗୋଟିଏ ଅନ୍ୟଟି ଉପରକୁ ଲମ୍ଫ ପ୍ରଦାନ କରେ । ଉଦାହରଣ ସ୍ୱରୂପ

ଅଟା ଚକଟିବା ଅଭିନୟ ସମୟରେ ଅଟା ଚକଟିବା ସହିତ ମହିଳାଟି ତା'ର ଗୁପ୍ତତଥ୍ୟଟିକୁ ଗୁପ୍ତ ରଖିବାର ସଂଘର୍ଷ କରୁଛି, ଯାହାକୁ ମୁଁ ଏଥିରେ ଦେଖେଇବାର ପ୍ରୟାସ କରିଛି । ଏଇ ସଂଘର୍ଷ ମଧ୍ୟରେ ମହିଳାଟି ଜୀଇଁ ରହିବା ଓ କାମ କରିବା ଚାଲୁ ରଖିଛି ।

ଗୋଟିଏ ଧାରଣା ବା ଭାବନାଦ୍ୱାରା ଅନୁପ୍ରେରିତ ନାଟ୍ୟ ପ୍ରସ୍ତୁତି ଥିଲା ଡିପାର୍ଚର୍ସ, ଯାହା ପ୍ରକୃତରେ ଶବ୍ଦର ବିବିଧ ପ୍ରକାରର ପ୍ରତିଧ୍ୱନି ମାତ୍ର । ଥରେ ମୁଁ ଘରୁ ବେଶ୍ କିଛିଦିନ ପାଇଁ ବାହାରକୁ ଯିବା ସମୟରେ ମାତ୍ର ଦୁଇ ଘଣ୍ଟା ପୂର୍ବରୁ ମୋର ମନେ ପଡ଼ିଲା ଯେ ମୁଁ ଯିବାପାଇଁ ମୋର ନିଜିଷପତ୍ର କିଛି ସଜାଡ଼ି ନାହିଁ । କିନ୍ତୁ ମୋ ଅନୁପସ୍ଥିତିରେ ଘରଟି ଯେମିତି ରହିବା ମୁଁ ଚାହେଁ, ସେହି ଅନୁଯାୟୀ ସଜାଡ଼ିବାରେ ସବୁ ବ୍ୟତୀତ କରିଛି ଯେମିତି ସଜାଡ଼ିଲେ ପରିବାରକୁ ସୁବିଧା ଓ ଆରାମଦାୟକ ହେବ ମୁଁ ସେମିତି ସଜାଡ଼ିଛି । ଶେଷ ମୁହୂର୍ତ୍ତରେ ଶୀଘ୍ର ଶୀଘ୍ର ସୁଟ୍‌କେଶରେ ଯେମିତି ସେମିତି ଦିଖଣ୍ଡ ଲୁଗା ଭର୍ତ୍ତି କରିଦେଲି କିନ୍ତୁ ପରେ ବୁଝିପାରିଲି ଯେ ଯାହା ମୁଁ ଆଣିଛି ସେ ସବୁମଧ୍ୟରୁ ଅଧିକାଂଶ ସେ ଯାତ୍ରା ପାଇଁ ଅନାବଶ୍ୟକ । ଏହି ଘଟଣା ମୋତେ ଚିନ୍ତାର ଖୋରାକ ଯୋଗାଇ ଦେଲା ଯେ ଆମେ ଆମ ସହିତ କ'ଣ ନେବାକୁ ଚାହାଁନ୍ତି ଏବଂ କ'ଣ ଆମ ପଛରେ ଛାଡ଼ିଯାଆନ୍ତି । ଆମେ ଜୀବନରେ ଆମର ଭାବନା, କାର୍ଯ୍ୟ ତଥା ପ୍ରବୃତ୍ତି ଆଦିଠାରୁ ନାନାଭାବରେ ବିଦାୟ ନିଅନ୍ତି ପୁଣି ଆମେ ବଦଳିଯାଇଛନ୍ତି ବୋଲି କେତେ ପରେ ହୃଦୟଙ୍ଗମ କରିପାରନ୍ତି । କିନ୍ତୁ ଆମେ ଠିକ୍‌ଭାବେ କହିପାରନ୍ତି ନାହିଁ କିପରି ଓ କେବେ ! ଏହା ଆମ ସମୟର ଏକ ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ ଯେ ଲକ୍ଷଲକ୍ଷ ଲୋକଙ୍କର ନୂଆ ସ୍ଥାନରେ ନୂଆ ଘର ତିଆରି କରିବାର ଅବଧାରିତ ଲକ୍ଷ୍ୟ ନିମିତ୍ତ ଏ ସମସ୍ତ ପ୍ରସ୍ଥାନ ।

ଆଜି ଏକାଧାରରେ ମୁଁ ପୂର୍ଣ୍ଣତା ଓ ଶୂନ୍ୟତା ଅନୁଭବ କରୁଛି । ବାସ୍ତବରେ ଶୂନ୍ୟ କରିବା ଓ ପୂର୍ଣ୍ଣକରିବା ଏକ ଚିରନ୍ତନ ଅବସ୍ଥା । ଯେତେ ଅଧିକ କାମକରିବ ମନେ ହେବ ତୁମେ ସେତେବେଶୀ ଶୂନ୍ୟ ହେଇଯାଉଛି ତଥାପି ଅଧିକରୁ ଅଧିକ ସମ୍ଭାବନା ଉଦ୍‌ଭୂତ ହେଉଛି । ପ୍ରଚୁର ସ୍ଥାନ ଓ ପ୍ରଚୁର ସମ୍ଭାବନା । ସିନେମାର ଅନ୍ଧାରୁଆ ହଲ୍ ବ୍ୟକ୍ତିଗତ ବାର୍ତ୍ତାଳାପ, ଥିଏଟର୍‌ର ସୂତ୍ରପାତ ହୋଇପାରେ, କିମ୍ବା ୧୦୪ ମହଲା ବିଶିଷ୍ଟ WTC ଟାୱାରର ୫୦,୦୦୦ ଲୋକଙ୍କ ବିଷୟରେ ପରିକଳ୍ପନା କରୁଥିବା ପିଲାମାନେ, ଗୋଟିଏ ପରିତ୍ୟକ୍ତ କପଡ଼ା ମିଲ୍, ଗୋଟେ କଫି ହାଉସ୍, ଗୋଟେ ଘର, ଗୋଟେ ପଡ଼ିଆ, ଗୋଟେ କାରଖାନା, ଗୋଟେ ଶୌଚାଳୟ ଆଉରି ମଧ୍ୟ ସଡ଼କ ଓ ପ୍ରେକ୍ଷାଳୟ ସବୁକିଛି । ଥିଏଟର୍ ପୂର୍ବ ପ୍ରସ୍ତୁତି ଓ ନାଟ୍ୟାଭ୍ୟାସ ସହିତ ଅଥବା ବିନା ପ୍ରସ୍ତୁତିରେ କୌଣସି ବିଚାର ଅନୁପ୍ରାଣୀତ ହୋଇପାରେ । ଏହା କଳାର ଅନ୍ୟ ଯେ କୌଣସି ଆଙ୍ଗିକ ସିନେମା, ଫଟୋଗ୍ରାଫି, ନୃତ୍ୟ, ସଙ୍ଗୀତକୁ ନିଜ ସହିତ ସାମିଲ କରେଇ ନିଏ । କହିବା ଅନାବଶ୍ୟକ ଟେକ୍ନୋଲୋଜିରୁ ଆରମ୍ଭ କରି ଯେଉଁ ଧାରାରେ ଚିନ୍ତାକରୁ ଓ ଜଗତକୁ ଯେଉଁ ଦୃଷ୍ଟିରେ ଦେଖୁଁ ତା'ର ପରିବର୍ତ୍ତନ କରିପାରେ ଯଦିଓ ପ୍ରକୃତରେ ପୃଥିବୀକୁ ପରିବର୍ତ୍ତନ କରେନାହିଁ ।

ଥିଏଟର୍ ଏବଂ ବିଶେଷଭାବରେ ଏକକ ପ୍ରଦର୍ଶନ ମହିଳା କଳାକାରଙ୍କ ନିମନ୍ତେ ଗୋଟେ ଚାଲେଞ୍ଜ ଓ ସେଥିରୁ ମୁକ୍ତି ମଧ୍ୟ । ମହିଳା କଳାକାର/ନିର୍ଦ୍ଦେଶିକାଗଣ ତାଙ୍କର ଜୀବନ୍ତ ନୂଆ ଭାଷା ଓ ଶୈଳୀପାଇଁ ପ୍ରଚୁର ଚର୍ଚ୍ଚିତ । ଅବଶ୍ୟ ମହିଳାଗଣ କିଛି ବି ଦେଖାଇକି ଯେପରି ନାରୀ ନିର୍ଯ୍ୟାତନାର ଏକ ଅଶ୍ରୁମୋଚନକାରୀ କଳାତ୍ମକଦୃଶ୍ୟ ଦେଖାଇ ଦର୍ଶକର ଅସଂଖ୍ୟ ହାତତାଳି ପାଇବାରେ ସମର୍ଥ ହେଉଛନ୍ତି । କ୍ରମାଗତ ଆତ୍ମ ଅନ୍ୱେଷଣ ଜାରି ରଖିଥିବାଯୋଗୁଁ ଏବଂ ଜଗତ ଓ ତୁମ ମଧ୍ୟରେ ଥିବା ଅଦୃଶ୍ୟଡ଼ୋର ସର୍ବଦା ଉଦ୍‌ବିଗ୍ନଥିବା କାରଣରୁ ସତେଜ ଓ ସ୍ପନ୍ଦିତ ଅବସ୍ଥାରେ ଅଛି । ଏଣୁ ମହିଳାମାନଙ୍କର ସୃଜନଶୀଳତାର ପଟ୍ଟଭୂମି ପରିବର୍ତ୍ତିତ ହୋଇଯାଇଛି । ଯଦି ସେ ସୂତ୍ରଟି ଆପଣଙ୍କ ହାତରୁ ଖସିଯାଏ ତ ମହିଳାଭାବରେ ଆପଣ ଶିକାର ହେବେ । ଦୁନିଆଁ ଆପଣଙ୍କୁ ସେହି ଦୃଷ୍ଟିରେ ଦେଖିବ ।

ତୁମେ ନିଜକୁ ପୃଥିବୀଠୁଁ ଦୂରେଇ ନେଇପାର (କାରଣ ନାଟ୍ୟପ୍ରସ୍ତୁତିର ଇତିହାସ ଆମ ପ୍ରତି କ'ଣ କରିଛି, ଆମକୁ ପରିତ୍ୟାଗ କରିଛି ।) ତା'କୁ ଉପହାସ କରିପାର । ତୁମେ ନାରୀଭାବରେ ନିଜ ଉପରେ ମଧ୍ୟ ହସିପାର । ମହିଳାମାନେ ତାଙ୍କର ନିତିଦିନିଆ ଜୀବନରେ ସୁଦୀର୍ଘ, ଉତ୍ତପ୍ତ ଅପରାହ୍ନରେ ଖଟିଆ ଉପରେ ବସି ବ୍ୟଙ୍ଗ ବିଦ୍ରୂପ, ଥଟ୍ଟା ମଜା କରିବାରେ ଓସ୍ତାଦ । ଆମେ ଯେଉଁ ପ୍ରକାର ଅସୁବିଧାଜନକ ଅବସ୍ଥାରେ ଅଛନ୍ତି ସେଥିରେ ଭଲ କି ହସିବା ହିଁ ପରିବର୍ତ୍ତନର ଇଞ୍ଜିନ୍‌କୁ ସଞ୍ଚାଳିତ କରିବ । ଆମେମାନେ ବହୁ ସ୍ତର, ଆନ୍ଦୋଳନ, ରୂପକଳ୍ପ, ଦୃଷ୍ଟି ଓ ଆଦର୍ଶ ମଧ୍ୟଦେଇ ଗତିକରିଛେ । ବହୁ ମହିଳାଙ୍କର ଲିଖିତ ଅଲିଖିତ ଜୀବନ ବୃତ୍ତାନ୍ତ ସବୁକିଛି ସେ ଚାଲେଞ୍ଜର ଅଂଶବିଶେଷ ।

ମୁଁ ଯେଉଁ ସ୍ତରଭିତର ଦେଇ ଗତି କରିଛି, ଯାହା କିଛି କରିଛି, ସବୁ କିଛି ବିଶ୍ଳେଷଣ କଲେ ମନେହୁଏନି ଯେ ମୁଁ ସେମିତି କିଛି କରିପାରିଛି ବୋଲି । ମୁଁ ଭାବେ ବାସ୍ତବରେ ମୋର ଗତିପଥକୁ ଅଧିକ ସ୍ପଷ୍ଟଭାବରେ ନିର୍ଦ୍ଦେଶ କରିବାରେ ମତେ ଯଦି ବହୁତ ପୂର୍ବରୁ କେହି ସାହାଯ୍ୟ କରିଥାନ୍ତା ! ସଂଯୋଗବଶତଃ ଯେଉଁ ସୁଯୋଗ ମିଳିଛି, ମୁଁ ତା'ଉପରେ ନିର୍ଭର କରିଛି । ଅତି ସହଜରେ ମୁଁ ମୋ ସ୍ଥାନର ସୀମା ନିରୂପଣ କରିପାରିବି । ମୋର ମନେହୁଏ ମୁଁ ନିଜକୁ ଅଧିକ ଶୃଙ୍ଖଳିତ କରିବା ଦରକାର ଥିଲା । କୈଶୋରରେ ମତେ ଯେଉଁ ସୁଯୋଗ ଓ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଦିଆଯାଇଥିଲା ମୁଁ ତାର ଅଧିକ ଉପଯୋଗ କରିପାରିଥାନ୍ତି । କୌଣସି ପୁରୁଷ ବା ମୋ ବାପା ଯଦି ମୋର କୈଶୋରାବସ୍ଥାରେ ଏକ ନିର୍ଣ୍ଣାୟକର ଭୂମିକା ନେଇଥାନ୍ତେ, କେତେ ଭଲ ହେଇଥାନ୍ତା । ମୁଁ ମାତ୍ରାଧିକ ପରିମାଣରେ ଏକ ମହିଳା ଜଗତର ସୃଷ୍ଟି । ମୁଁ ଗୋଟେ ଅଧିକ ସହଜ, ସରଳ ସ୍ୱାଭାବିକ ଝିଅଭାବରେ ବଢ଼ିଥାନ୍ତି କି ! ମୁଁ ନିଜକୁ ଆଉ ଅଧିକ ଭଲ ପାଇପାରନ୍ତି କି ? ମୋର ମନେହୁଏ ମୋପାଖରେ କିଛି ବି ଅବ୍ୟକ୍ତ ଚିନ୍ତାନଥାନ୍ତା କି, ନିଜ ପାଖରେ ନିଜେ ଅସହଜ ଅନୁଭବଜନିତ ଭୟ, ନିଜ ଉପରେ ପ୍ରତ୍ୟୟ ଆସୁନଥିବା ଭାବ ନଥାନ୍ତା କି !

କଳ୍ପନା ଲାଜମୀ (ଜନ୍ମ – ୧୯୫୪) ଜଣେ ପୁରସ୍କୃତ ହିନ୍ଦୀ ଚଳଚ୍ଚିତ୍ର ନିର୍ମାତା ଏବଂ ଥିଏଟର୍ ବ୍ୟକ୍ତିତ୍ୱ । ସେ ଅନେକ ବୃତ୍ତଚିତ୍ର, ଟେଲିଭିଜନ ଧାରାବାହିକ ଏବଂ ଚଳଚ୍ଚିତ୍ର ନିର୍ମାଣ କରିଛନ୍ତି । ତାଙ୍କର ବିଶିଷ୍ଟ ପ୍ରସ୍ତୁତି ମଧ୍ୟରେ ଡି.ଜି.ମୁଭି ପାଇଓନିଅର୍, ଧୀରେନ୍ ଗାଙ୍ଗୁଲିଙ୍କ ଜୀବନ – ବୃତ୍ତିଚିତ୍ର (୧୯୭୮), ଫିଚର୍ ଫିଲ୍ମ, 'ଏକ ପଲ୍ (୧୯୮୬), ରୁଦାଲୀ (୧୯୯୩), ଦରମିୟାନ୍ (୧୯୯୭), ଏବଂ ଦମନ (୨୦୦୧), ଟି.ଭି. ଧାରାବାହିକ, ଲୋହିତ କିନାରେ (୧୯୮୮), ଡନ୍ (୧୯୯୭), ଏବଂ ଗ୍ଲିମ୍ପସେସ୍ ଅଫ୍ ଦି ମିଷ୍ଟି ଇଷ୍ଟ (୧୯୯୭), ୧୯୯୪ରେ 'ରୁଦାଲୀ' ସିନେମାର ଉତ୍କୃଷ୍ଟ ନିର୍ଦ୍ଦେଶନା ପାଇଁ ଲାଜମୀଙ୍କୁ ଭି.ଶାନ୍ତାରାମ ପୁରସ୍କାର ଦିଆଯାଇଥିଲା ।

୧୮

# କ୍ୟାମେରା ପୃଷ୍ଠପଟରେ

## କଳ୍ପନା ଲାଜମୀ

ବିକାଶ, ସ୍ୱଚ୍ଛଳତା ଓ କଳା ସହିତ ପରିଚିତି ଦୃଷ୍ଟିରୁ ମୋ ପିଲାଦିନ ଅତ୍ୟନ୍ତ ଆରାମରେ କଟିଥିଲା । ବିଶେଷ ଭାବରେ ଏହା ମୋ ମା ଲଳିତା ଲାଜମୀଙ୍କ ଯୋଗୁ ଘଟିଥିଲା । କାରଣ ସେ ଜଣେ ବିଖ୍ୟାତ ଚିତ୍ରଶିଳ୍ପୀ ଏବଂ ମତେ ସେ ପିଲାଦିନୁ କବିତା, ଚିତ୍ରକଳା, ନୃତ୍ୟ, ସିନେମା ଏବଂ ନାଟ୍ୟ ଜଗତ ସହ ପରିଚିତ କରେଇଥିଲେ । ମୋର ସ୍ୱର୍ଗତା ଆଇ ବାସନ୍ତୀ ପାଦୁକୋଣେଙ୍କର ମୋ ସ୍ୱପ୍ନକୁ ଗଢ଼ିବାରେ ଓ ମୋ ନିକଟରେ ସାହିତ୍ୟ ଜଗତର ଦ୍ୱାର ଉନ୍ମୁକ୍ତ କରିବାରେ ଏକ ପ୍ରମୁଖ ଭୂମିକା ଥିଲା । ସେ ଜଣେ ମହାନ୍ କୁଶଳୀ କଥକ, ବିଚକ୍ଷଣ ଓ ଆକର୍ଷଣୀୟ ବ୍ୟକ୍ତିତ୍ୱ ସଂପନ୍ନ ମହିଳା ଥିଲେ । ସେ ନିଜେ ନିଜେ ପଢ଼ି ଶିଖିଥିଲେ । ସେ ଭାରତର ୯ଟି ପ୍ରମୁଖ ଭାଷା କହି ଓ ଲେଖି ପାରୁଥିଲେ । ତାଙ୍କର ଗପ କହିବାର ଚାତୁରୀ ବଡ଼ ବିସ୍ମୟକର ଥିଲା । ମହାଭାରତ, ରାମାୟଣ, ପଞ୍ଚତନ୍ତ୍ର ଏବଂ ଭାରତର ସମସ୍ତ ଐତିହାସିକ, ପୌରାଣିକ ଏବଂ ଲୋକଗଳ୍ପର ଜଗତ ଭିତରକୁ ସେ ମତେ ନେଇଯାଉଥିଲେ । ସେ ହିଁ ମତେ ପଢ଼ି ଶିଖେଇଥିଲେ । କେବଳ ଯାହା ପରବର୍ତ୍ତୀ ଜୀବନରେ ମୋ କାମରେ ଲାଗିଲା । ଇଂରାଜୀ ଭାଷା ଓ ସାହିତ୍ୟ ନୁହେଁ ବଙ୍ଗଳା ସାହିତ୍ୟ ପ୍ରତି ମୋର ରୁଚି ଜାଗ୍ରତ କରାଇଥିଲେ । ମୋର ପିଲାଦିନ ସୁରକ୍ଷାର ବଳୟ ମଧ୍ୟରେ ସ୍ୱାଧୀନ ଥିଲା । ମୋ ବାପା ଅତ୍ୟନ୍ତ ମାର୍ଜିତ ଓ ଶାଳୀନ ବ୍ୟକ୍ତି ଥିଲେ । ଯିଏ କି ମତେ ପ୍ରାଚ୍ୟ ଦୃଷ୍ଟିକୋଣ ଓ ପାଶ୍ଚାତ୍ୟ ଶିକ୍ଷା ଦେଇ ଗୋଟିଏ କୁନି ଗୋରୀ ମେମ୍‌ସାହେବରେ ପରିଣତ କରିଥିଲେ । ମୋ ବାପା ମା' ଯେଉଁ ଆର୍ଥିକ ସଂକଟ ମଧ୍ୟ ଦେଇ ଗତି କରୁଥିଲେ ତାହା ମତେ କିମ୍ବା ମୋ ସାନଭାଇକୁ ଥରେ ହେଲେବି ଜାଣିବାକୁ ଦେଇନଥିଲେ । ବହି, କମିକ୍ସ, ପୋଷାକପତ୍ର, କନଭେଣ୍ଟ ସ୍କୁଲରେ ଶିକ୍ଷା, ନାଟକରେ ଅଭିନୟ କରିବାପାଇଁ ଅନୁମତି, ଡିବେଟ୍‌ରେ ଭାଗନେବା, ବନ୍ଧୁମାନଙ୍କ ସହିତ ମିଶିବାରେ କୌଣସି ପ୍ରତିବନ୍ଧକ ନଥିଲା, ତେଣୁ ମତେ ଗୋଟିଏ ସ୍ୱପ୍ନିଳ ଶୈଶବ ମିଳିଥିଲା ।

ତା'ପରବର୍ତ୍ତୀ ଜୀବନ କଥାକୁ ଆସେ । ଏ ସମୟରେ ମୁଁ ମୋ ମା'ଙ୍କ ମାମୁ ପୁଅ ଭାଇ ଶ୍ୟାମ ବେନେଗାଲଙ୍କ ଦ୍ୱାରା ଗଭୀର ଭାବରେ ପ୍ରଭାବିତ ହେଲି । ସେ ମୋର ସେଇ ଯୁବ ସମୟର ଜଗତରେ ଜଣେ ପୋଷ୍ୟ ପିତା ଭାବେ ଆର୍ବିଭାବ ହେଲେ । ଏହିପରି ଭାବେ ଦୃଶ୍ୟ ଜଗତ (ସିନେମା) ମଧ୍ୟକୁ ମୋର ପ୍ରଥମ ପ୍ରବେଶ ଘଟିଲା । ତାଙ୍କରି

ମାଧ୍ୟମରେ ମୁଁ ୱାଲ୍ଟ ଅଫ ଡିସ୍‌ନେ, ପେରି ଦ ସ୍କୁଇରାଲ୍, ଖ୍ରୀଷ୍ଟମାସ ପାର୍ଟି, ବ୍ୟବସାୟିକ ବିଜ୍ଞାପନ ଓ ରେଡ଼ିଓର ବିଜ୍ଞାପନ ଦୁନିଆ ଦେଖିଲି । ଏହା ଏକ ଯାଦୁ, ଆଲୋକ, ବର୍ଣ୍ଣ ଏବଂ ନାଟକର ଜଗତ ଥିଲା । ଯାହା ମତେ ଅଙ୍କୁଶ ସଦୃଶ ବାନ୍ଧିରଖିଲା ।

ସାରସ୍ୱତ ବ୍ରାହ୍ମଣମାନେ ମୂଳତଃ କାଶ୍ମୀରରୁ ଆସି କେଇ ଶହ ବର୍ଷ ତଳେ ବମ୍ବେ ଓ କର୍ଣ୍ଣାଟକରେ ବସବାସ କରିବାକୁ ଲାଗିଲେ । ସଂପ୍ରଦାୟ ଭାବରେ ଏମାନେସବୁ ବ୍ୟବସାୟୀ ହେବା ଅପେକ୍ଷା ଚାକିରି କରିବାପାଇଁ ଅଧିକ ଯୋଗ୍ୟ । ଏମାନେ ବଡ଼ ନିଷ୍ଠାପର, ସଚ୍ଚୋଟ ଓ କଳାତ୍ମକ ଅଭିରୁଚି ସଂପନ୍ନ ସଂପ୍ରଦାୟ । ତାଙ୍କ ସଂପ୍ରଦାୟର ଖ୍ୟାତି ସଂପନ୍ନ ବ୍ୟକ୍ତିପାଇଁ ସେମାନେ ଗର୍ବିତ ହୁଅନ୍ତି ଏବଂ ସବୁବେଳେ ତାଙ୍କ ଜାତିଭାଇ ମଧ୍ୟରୁ କାହାର ପ୍ରତିଭା ଥିଲେ ତାକୁ ଉତ୍ସାହିତ କରନ୍ତି । ଝିଅଟିଏ ହେଇଥିବା ସତ୍ତ୍ୱେ ମୁଁ ବଡ଼ ଭାଗ୍ୟବାନ ଥିଲି ଯେ ମୋର ନିଜ ପରିବାର ଓ ଆତ୍ମୀୟସ୍ୱଜନମାନଙ୍କଠୁ ଆବଶ୍ୟକୀୟ ସମସ୍ତ ସାହାଯ୍ୟ, ସମର୍ଥନ ଓ ପ୍ରେରଣା ମତେ ମିଳିଥିଲା ।

ମୁଁ ସ୍କୁଲରେ ପଢୁଥିବାବେଳେ ହିଁ ପ୍ରଥମେ ନାଟକରେ ଅଭିନୟ କରିବା ଆରମ୍ଭ କଲି । ମେହେର ଓ୍ୱକିଲ୍‌ଙ୍କ ନିର୍ଦ୍ଦେଶନାରେ ଏହା ହୋଇଥିଲା । କିନ୍ତୁ ଏହା ଏକ ବାଳିକା ବିଦ୍ୟାଳୟ ହୋଇଥିବାରୁ ମତେ ସବୁବେଳେ ପୁଅ ଭୂମିକା ଦିଆଯାଉଥିଲା । କଲେଜ୍‌ରେ ଇଂରାଜୀ ଥିଏଟର୍‌ରେ ପର୍ଲ ପଦମ୍‌ସୀ ଏବଂ ହିନ୍ଦୀରେ ପଣ୍ଡିତ ସତ୍ୟଦେବ ଦୁବେଙ୍କ ପାଖରେ କାମ କଲି । ଉଭୟ ମୋର ପୂର୍ଣ୍ଣ ବ୍ୟକ୍ତିତ୍ୱ ଗଠନରେ ସହାୟକ ହୋଇଛନ୍ତି । ଏହା ଉଭୟ ମଞ୍ଚର ପଶ୍ଚାତ୍‌ପଟ୍ଟ ମଞ୍ଚ ଓ ସମ୍ମୁଖ ମଞ୍ଚରେ, ଅଭିନୟରେ, ପ୍ରଯୋଜନା, ରୂପ-ସଜ୍ଜା, ଆଲୋକ ବ୍ୟବସ୍ଥାରୁ ଲାଭ କରିଥିବା ଉତ୍ତମ ଭିତ୍ତିଗତ ଜ୍ଞାନ, ସିନେମା ପ୍ରତି ଥିବା ମୋର ରୁଚିକୁ ସାକାର କରିବାରେ ସହାୟକ ହେଲା । ୧୯୭୪ ମସିହାରେ ସେଣ୍ଟ ଜେଭିୟର୍ କଲେଜରେ ମୋର ଶେଷବର୍ଷ । ଏଇ ବୟସର ଅଧିକାଂଶ କିଶୋରଙ୍କ ପରି ମୁଁ ବି ଜୀବନର ଚଉମୁହାଁଣିରେ ଠିଆ ହେଇ କ'ଣ କରିବି ଭାବିପାରୁନଥିଲି । ମୁଁ ଶ୍ୟାମ ବେନେଗାଲ୍‌ଙ୍କ ସହିତ ପରାମର୍ଶ କରିବାରୁ ସେ କହିଲେ ଯେ ସିନେମା ଜଗତରେ ଯୋଗଦେଲେ ମୁଁ ଥିଏଟର୍ ଅପେକ୍ଷା ଅଧିକ ଭାବ ବ୍ୟକ୍ତକରିପାରିବି କାରଣ ସିନେମା ଅଧିକ ପ୍ରଭାବଶାଳୀ, ସୁଦୂର ପ୍ରସାରୀ ମାଧ୍ୟମ ଓ ଅନ୍ୟ ସମସ୍ତ ଅଭିନୟ କଳାକୁ ଅତିକ୍ରମ କରିଯାଏ । ସେ ଯାହା କହିଲେ ସେଥିରୁ ମତେ ଏକ ମାର୍ଗ ଦର୍ଶନ ମିଳିଗଲା ଓ ମୁଁ ଆଉ କେବେ ପଛକୁ ଫେରି ଚାହିଁନି ।

ମୋର କୌଣସି ଔପଚାରିକ ପ୍ରଶିକ୍ଷଣ ନ ଥିଲା । ଶ୍ୟାମ ନିଜେ ଯୁବକ ଓ ଏ କ୍ଷେତ୍ରରେ ନୂତନ ଥିଲେ ଏବଂ ଜଣେ ସ୍କୁଲ ଶିକ୍ଷକ ସଦୃଶ କାର୍ଯ୍ୟ କରୁନଥିଲେ । କୌଣସି ଔପଚାରିକ ଜ୍ଞାନ ବା ଅନୁଭୂତି ନଥାଇ ମୁଁ ସେ ଜଗତ ମଧ୍ୟକୁ ଲମ୍ଫ ପ୍ରଦାନ କଲି ଏବଂ ଆରମ୍ଭରେ ସେ କାମ ମତେ ଅସମ୍ଭବ ମନେହେଲା । ସେବେଠାରୁ ଏ ବିରାଟ ସଂଘର୍ଷ ଚାଲୁରହିଛି । ଭାବ ପ୍ରକାଶଶୈଳୀ ପ୍ରଶିକ୍ଷଣ ଏବଂ କଳ୍ପନାବୋଧର ତାତ୍ପର୍ଯ୍ୟପୂର୍ଣ୍ଣ ଗତିବିଧି

ବୁଝିବାପରି ବୟସ ମୋର ହେଇନଥିଲା । ମୋ ଭିତରେ ଏକ ସୃଜନଶୀଳତା ସୃଷ୍ଟି କରିବା ପରିବର୍ତ୍ତେ ମୁଁ ପ୍ରଥମ ଦଶ ବର୍ଷଧରି ଗୋଟିଏ ଉତ୍ସାହୀ ଛାତ୍ର ପରି ବ୍ୟବହାର କରୁଥିଲି । ପ୍ରତ୍ୟେକ କାର୍ଯ୍ୟ ସମ୍ପାଦନ ପରେ ମୁଁ ସାବାସି ଚାହୁଁଥିଲି । ମାସକୁ ମତେ ୩୫୦ଟଙ୍କା ଦରମା ମିଳୁଥିଲା । ମୁଁ ସବୁଠୁ ତଳ ପାହାଚରୁ ଅର୍ଥାତ୍ ଫିଲ୍ମ କ୍ୟାନ୍ ବୋହିବା, ପୋଷାକପତ୍ର ସଜାଡ଼ିବା, ତାକୁ ଇସ୍ତ୍ରୀ କରିବା, କଳା ଓ ପୋଷାକ ବିଭାଗ ସହିତ ଖବର ଦେଣନେଣ କରିବା, ଅଭିନେତାମାନଙ୍କ ପାଖରେ ଲେଖା ପହଞ୍ଚେଇବା ଏବଂ ଅତ୍ୟନ୍ତ ଆଗ୍ରହର ସହିତ ସଂପାଦନା କକ୍ଷରେ ପ୍ରବେଶ କରିବାର ସୁଯୋଗକୁ ଅପେକ୍ଷା କରିବା ଆଦିରୁ କାମ ଆରମ୍ଭ କରିଛି । ଦୁର୍ଭାଗ୍ୟବଶତଃ ମତେ କେବେ ବି ପଟକଥା ଲେଖିବା ବା ସର୍ଜନାତ୍ମକ ସଂପାଦନ କାର୍ଯ୍ୟ କରିବାର ସୁଯୋଗ ମିଳିନଥିଲା । ପଛକୁ ଫେରି ଚାହିଁଲେ ମତେ ଲାଗେ ବସ୍ତୁତଃ ମୁଁ ଜଣେ ସହ ନିର୍ମାତା ଥିଲି ଯାହା ଉପରେ ସହ-ନିର୍ଦ୍ଦେଶିକାର ଛାପା ମରାଯାଇଥିଲା । ମୁଁ ଭାବୁଛି ଗୋଟେ ଫିଲ୍ମ ସ୍କୁଲରେ ପଢ଼ିଥିଲେ ମତେ ଫିଲ୍ମ ସମ୍ବନ୍ଧୀୟ ସର୍ବାଙ୍ଗୀନ ଶିକ୍ଷା ମିଳିଥାନ୍ତା ଏବଂ ମୁଁ ମୋ ପେଶାରେ ଯଥେଷ୍ଟ ଆଗରୁ ଚଳଚ୍ଚିତ୍ର ସଂପର୍କରେ ସଂପୂର୍ଣ୍ଣ ଜ୍ଞାନ ଲାଭ କରିପାରିଥାନ୍ତି ।

ମୋର ଅନ୍ୟାନ୍ୟ ରୁଚି ମଧ୍ୟରୁ ପଢ଼ିବାକୁ ମତେ ଗଭୀର ଭାବେ ଭଲଲାଗେ । ମତେ ଥିଏଟର ଏବଂ ନୃତ୍ୟ ଦେଖିବାକୁ ଭଲଲାଗେ । ସବୁପ୍ରକାର ସିନେମା – ମୁଖ୍ୟଧାରା ସମ୍ବଳିତ, ଲୋକପ୍ରିୟ, ଅଣ୍ଡରଗ୍ରାଉଣ୍ଡ, ସ୍ୱାଧୀନ, ବ୍ରିଟିଶ୍, ହଲିଉଡ୍, ୟୁରୋପୀୟ, ଚୀନୀ, ଅଷ୍ଟ୍ରେଲିଆନ୍ ଏବଂ ହିନ୍ଦୀ ଦେଖିବାକୁ ଭଲପାଏ । ମୋର ଜୀବଜନ୍ତୁଙ୍କ ପ୍ରତି ବଡ଼ ଦୁର୍ବଳତା ଅଛି । ମୋର ବମ୍ବେ ଓ ଆସାମ ଘରେ ଦଶଟି କୁକୁର ଅଛନ୍ତି । ସେମାନଙ୍କ ସାଙ୍ଗରେ ଥିବାବେଳେ ମତେ ପରମ ପ୍ରଶାନ୍ତି ଓ ଆନନ୍ଦ ମିଳେ। ମୋର କ୍ଷୁବ୍ଧ, ଅଶାନ୍ତ ମନକୁ ଶାନ୍ତ କରିବାରେ ସେ ମତେ ସାହାଯ୍ୟ କରନ୍ତି ଏବଂ ମତେ ଅକଳ୍ପନୀୟ ସ୍ନେହ ଓ ଆନୁଗତ୍ୟ ମିଳେ ।

କୌଣସି ଅନ୍ୟକଳା ବା ପରିବେଷଣଗତ କଳା ତୁଳନାରେ ମୁଁ ଯେଉଁ କ୍ଷେତ୍ରରେ କାମ କରୁଛି, ସେଥିରେ ଏକ ଲାଭ ଅଛି । ତା'ହେଲା ତାତ୍‌କ୍ଷଣିକ ପ୍ରସିଦ୍ଧି ଲାଭ ଓ ଲୋକଙ୍କ ପ୍ରଶଂସନୀୟ ଦୃଷ୍ଟିର ବିନ୍ଦୁ ହେଇଉଠିବା । ଗୋଟିଏ ବିରାଟ ଜନସମୁଦାୟ ନିକଟରେ ପହଞ୍ଚିପାରିବାର କ୍ଷମତା ସିନେମାର ରହିଛି । କିନ୍ତୁ ସେଥିରେ ବି ଭୟଙ୍କର ଖାଇ ରହିଛି । କାରଣ ତୀକ୍ଷ୍ଣ ସୂକ୍ଷ୍ମ ବିଶ୍ଳେଷଣ, ସମାଲୋଚନା ସହିତ ତୋଷାମଦ ଓ ପ୍ରଶଂସା (ସହିତ) ମିଶ୍ରିତ ସମାଲୋଚନା ତୁମକୁ ଗୋଟିଏ ମିଥ୍ୟା କଳ୍ପଲୋକ ତଥା ସୁରକ୍ଷାର ଜଗତରେ ପହଞ୍ଚାଇଦେବେ, ତୁମ ଭିତରେ ଗୋଟେ ସ୍ୱପ୍ନିଳ ରାଜ୍ୟ ସୃଷ୍ଟି କରିଦେବେ । ପୁଣି ସମାନ କ୍ରୂରତାର ସହିତ ତୁମକୁ ଅସ୍ୱୀକାର କରି ହତାଶାର ଗଭୀରତା (କୂପ) ଭିତରକୁ ଠେଲିଦେବେ । ତେଣୁ ଜଣକୁ ଏ କ୍ଷେତ୍ରରେ ଖ୍ୟାତି ଓ ଲାଞ୍ଛନା, ସ୍ୱୀକୃତି ଓ ପ୍ରତ୍ୟାଖ୍ୟାନ, ପ୍ରଶଂସା ଓ ସମାଲୋଚନା ମଧ୍ୟରେ ଭାରସାମ୍ୟ ରକ୍ଷାକରିବାକୁ ପଡ଼ିବ ।

ମୋ ପରବର୍ତ୍ତୀ ପିଢ଼ି ଅତ୍ୟନ୍ତ ଭାଗ୍ୟବାନ୍ କାରଣ ମୋ ପୂର୍ବରୁ ବହୁତ ସ୍ୱଳ୍ପସଂଖ୍ୟକ ମହିଳା ସିନେମା ନିର୍ମାତା ଥିଲେ । ସଂପ୍ରତି ମହିଳାମାନଙ୍କର ଗୋଟିଏ ମହାପ୍ରବାହ ଦେଖାଦେଇଛି, ବିଶେଷଭାବରେ ଦୂରଦର୍ଶନ କ୍ଷେତ୍ରରେ । ସେମାନଙ୍କର ଆମ ତୁଳନାରେ ଅଧିକ କମ୍ପ୍ୟୁଟର ଓ ମାସ୍ କମ୍ୟୁନିକେସନଜନିତ ଜ୍ଞାନ ଅଛି । ମୋର କେବଳ ଏତିକି କାମନା ଯେ ପରବର୍ତ୍ତୀ ପିଢ଼ି ଅଧିକ ଅଙ୍ଗୀକାରବଦ୍ଧ ହୁଅନ୍ତୁ । ପ୍ରାପ୍ତିର ପ୍ରଲୋଭନ ପରିତ୍ୟାଗ କରି ଜଣେ ଭଲ ସିନେମା ନିର୍ମାତା ହେବାରେ ମନ ଦିଅନ୍ତୁ ।

ବଚେନ୍ଦ୍ରୀ ପାଲ (ଜନ୍ମ – ୧୯୫୪), ବିଶିଷ୍ଟ ପର୍ବତ ଆରୋହୀମାନଙ୍କ ମଧ୍ୟରୁ ଅନ୍ୟତମ । ସେ ଭାରତର ପ୍ରଥମ ମହିଳା ଯିଏ କି ୧୯୮୪ ମସିହାରେ ଏଭେରେଷ୍ଟ ଶୃଙ୍ଗ ଆରୋହଣ କରିଛନ୍ତି । ସେ ଭାରତର ପ୍ରାୟ ସମସ୍ତ ପର୍ବତ ଆରୋହଣ କରିଛନ୍ତି । ସେ ୧୯୯୭ ମସିହାରେ ଅରୁଣାଚଳ ପ୍ରଦେଶରୁ ସିଆଚୀନ ପ୍ରଥମ ମହିଳା ଟ୍ରାନ୍‌ସ ହିମାଳୟ ଯାତ୍ରା, ୧୯୯୪ରେ ହରିଦ୍ୱାରରୁ କଲିକତା ପର୍ଯ୍ୟନ୍ତ ଗ୍ରେଟ୍ ଇଣ୍ଡିଆନ୍ ଓମେନ୍‌ସ ରାଫ୍ଟିଂ ଭଏଜ୍ ସହିତ ନାନା ଦୁଃସାହସିକ ଅଭିଯାନ ଏବଂ କଠିନ ପର୍ବତାରୋହଣ ଆଦିର ନେତୃତ୍ୱ ନେଇଛନ୍ତି । ସେ ୧୯୮୬ ମସିହାରେ ୟୁରୋପର ମାଉଣ୍ଟ ବ୍ଲାଙ୍କ ଆରୋହଣ କରିଥିଲେ ଏବଂ ୧୯୯୩ ମସିହାରେ 'ଭାରତ-ନେପାଳ ମହିଳା ଏଭେରେଷ୍ଟ ଶୃଙ୍ଗ ଆରୋହଣ ଅଭିଯାନର ନେତୃତ୍ୱ ନେଇ ସାତୋଟି ବିଶ୍ୱ ରେକର୍ଡ ସୃଷ୍ଟି କରିଥିଲେ । ସେ ଏକ୍ସପ୍ଲୋରର୍‌ସ କ୍ଲବ, ନିୟୁର୍କ; ରୟାଲ୍ ଜେଓଗ୍ରାଫିକଲ୍ ସୋସାଇଟି, ୟୁ . କେ; ଏବଂ ଇଣ୍ଡିଆନ୍ ମାଉଣ୍ଟନିୟରିଂ ଫେଡେରେସନ୍, ଦିଲ୍ଲୀ; ଆଦି ସହିତ ଅନ୍ୟାନ୍ୟ ଅନେକ ସଂସ୍ଥାର ସଦସ୍ୟ । ସେ ଅନ୍ୟୂନ ୧୨ଟିରୁ ଅଧିକ ସମ୍ମାନଜନକ ପୁରସ୍କାର ଯଥା – ୧୯୮୫ରେ ପଦ୍ମଶ୍ରୀ, ୧୯୮୯ ମସିହାରେ ଅର୍ଜୁନ ପୁରସ୍କାର, ୧୯୯୪ ମସିହାରେ ନ୍ୟାସନାଲ୍ ଆଡଭେଞ୍ଚର ପୁରସ୍କାର, ପର୍ବତ ଆରୋହଣରେ ଶ୍ରେଷ୍ଠତା ପାଇଁ ସ୍ୱର୍ଣ୍ଣପଦକ ଏବଂ ୧୯୯୫ ମସିହାରେ ଯଶ୍ ଭାରତୀ ପୁରସ୍କାର ଆଦି ପାଇଛନ୍ତି । ତାଙ୍କର ନାମ ଗିନିଜ୍ ବୁକ୍ ଅଫ୍ ଓ୍ୱାର୍ଲ୍ଡ ରେକର୍ଡ (୧୯୯୦), ଲିମ୍‌କା ବୁକ୍ ଅଫ ରେକର୍ଡସ (୧୯୯୭)ରେ ସ୍ଥାନିତ । ସେ ଏଭେରେଷ୍ଟ : 'ମାଇଁ ଜର୍ଣ୍ଣି ଟୁ ଦ ଟପ୍' ଗ୍ରନ୍ଥର ଲେଖିକା ।

## ୧୯

# ସର୍ବୋଚ୍ଚ ଶିଖରରେ

## ବଚେନ୍ଦ୍ରୀ ପାଲ

ଗଢ଼ୱାଲର ଉତ୍ତରକାଶୀ ନିକଟରେ ନାକୁରୀ ବୋଲି ଏକ ଛୋଟ ସୁନ୍ଦର ପାହାଡ଼ିଆ ଗାଁରେ ମୋର ଜନ୍ମ । ପାଖରେ କୁଳୁକୁଳୁ ନାଦରେ କ୍ରୀଡ଼ାରତ ଭାଗୀରଥୀ ପ୍ରବାହିତ । ମୋର ପିତାମାତା କଠିନ ପରିଶ୍ରମୀ ଥିଲେ ଏବଂ ନିଜ ଭିତରେ ସନ୍ତୁଷ୍ଟ ରହୁଥିଲେ । ଆମେ ଖୁବ୍ ଗରିବ ଥିଲୁ । ନିତିଦିନିଆ ଗୁଜୁରାଣ ମେଣ୍ଟାଇବା ବି ଆମ ପକ୍ଷେ କଠିନ ଥିଲା । ତଥାପି ମୋ ବାପା ମର୍ଯ୍ୟାଦା ଓ ଆତ୍ମସମ୍ମାନର ସହ କିପରି ବଞ୍ଚିବାକୁ ହୁଏ ତାହା ଆମକୁ ଶିଖେଇଥିଲେ । ଏହି ମୂଲ୍ୟବୋଧ ହିଁ ଆଜିପର୍ଯ୍ୟନ୍ତ ଆମ ପରିବାରର ସବୁଠାରୁ ବଡ଼ ସଂପଦ ହେଇ ରହିଛି । ତତ୍ ସହିତ ଧର୍ମର ସାର ନିର୍ଯ୍ୟାସ କରୁଣା ବୋଲି ମୋ ବାପା ମା ବିଶ୍ୱାସ କରୁଥିଲେ ଓ ନିଷ୍ଠାର ସହିତ ପାଳନ କରୁଥିଲେ । ସେମାନେ ବଡ଼ ଉଦାର ଓ ହୃଦୟବାନ ମଣିଷ ଥିଲେ । ସାମ୍ନା ରାସ୍ତାଦେଇ ଚାଲିଯାଉଥିବା ଗାଁ ଲୋକଙ୍କୁ ଘରକୁ ଡାକି ଚା ପିଏଇ ଛାଡୁଥିଲେ । ଘରକୁ କେହି ସାଧୁସନ୍ଥ ପଣ୍ଡିତ ଆସିଲେ ଧାନଚାଉଳ ଆଦି ଦାନ କରୁଥିଲେ । ଏ ସମସ୍ତ ଆଦର୍ଶ ଏତେ ଗଭୀର ଭାବରେ ମତେ ପ୍ରଭାବିତ କରିଥିଲା ଯେ ଏହା ଦ୍ୱାରା ଘରେ ହେଉ ବା କର୍ମକ୍ଷେତ୍ରରେ ହେଉ ବା ସମାଜରେ ମୋ ସଂସ୍ପର୍ଶରେ ଆସୁଥିବା ଲୋକଙ୍କୁ ମୁଁ ଯେପରି ଆପଣାର କରିପାରୁଥିଲି ସେପରି ସେମାନଙ୍କ ଜୀବନରେ ପରିବର୍ତ୍ତନ ଆଣି ପାରୁଥିଲି ।

ଆମ ପରିବାରରେ ମୁଁ ତୃତୀୟ ସନ୍ତାନ ଥିଲି । ପ୍ରଥମେ ଝିଅ, ପୁଅ ତା ପରେ ଝିଅ ପୁଣି ଝିଅ, ପୁଅ । ମୁଁ ଟିକେ ବିଦ୍ରୋହୀ ସ୍ୱଭାବର ଥିଲି ମୂଳରୁ ମୋ ଭିତରେ ଏକ ବିଦ୍ରୋହୀ ସ୍ୱଭାବ ଥିଲା । କ୍ରମେ ମୋ ଭିତରେ ପ୍ରଶ୍ନ କରିବାର ପ୍ରବଣତା ବୃଦ୍ଧି ପାଇବାରେ ଲାଗିଲା ଏବଂ ମୁଁ ଝିଅମାନଙ୍କର ପାରମ୍ପରିକ ବଂଚିବା ଶୈଳୀରେ ସନ୍ତୁଷ୍ଟ ରହିପାରୁନଥିଲି । ମୋ ବଡ଼ଭାଇ ବଚ୍ଛନ ସବା ସାନ ଭାଇ ରାଜୁଙ୍କୁ ପର୍ବତାରୋହଣ ପାଇଁ ଉତ୍ସାହିତ କରୁଥିବା ଲକ୍ଷ୍ୟକରି ମୁଁ ଭାବିଲି ମୁଁ କାହିଁକି ନୁହେଁ ? ଯା ସହିତ ମୁଁ ଦେଖିଲି ସବୁବେଳେ ସବୁଥିରେ ମୋ ଭାଇମାନେ ଅଗ୍ରାଧିକାର ପାଆନ୍ତି ଏବଂ ସମସ୍ତ ସୁଯୋଗ ସୁବିଧାର ଦ୍ୱାର ସେମାନଙ୍କ ପାଇଁ ଉନ୍ମୁକ୍ତ । ଏହି ତାରତମ୍ୟ ମତେ କେବଳ ପୁଅମାନେ ଯାହା କରନ୍ତି ତା' କରିବା ପାଇଁ ନୁହେଁ ସେମାନଙ୍କଠୁଁ ଭଲ କରିବାପାଇଁ ଦୃଢ଼ ପ୍ରତିଜ୍ଞ କଲା ।

ପାହାଡ଼ିଆ ଲୋକଙ୍କର ଏକ ସାଧାରଣ ଧାରଣା ଥିଲା ଯେ ପର୍ବତ ଆରୋହଣ କ୍ରୀଡ଼ାଭାବରେ ତାଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । ସେମାନେ ଭାବନ୍ତି ଜନ୍ମତଃ ସେମାନେ ପର୍ବତାରୋହଣକାରୀ । କାରଣ ଜୀବିକାପାଇଁ ଏପରିକି ଦୈନନ୍ଦିନ କର୍ମ ପାଇଁ ପ୍ରତ୍ୟେକ ଦିନ ସେମାନଙ୍କୁ ପାହାଡ଼ ଚଢ଼ିବାକୁ ଓ ଓହ୍ଲେଇବାକୁ ପଡ଼ିଥାଏ । ଅନ୍ୟପକ୍ଷରେ ଛାତ୍ରୀ ଅବସ୍ଥାରେ କିନ୍ତୁ ବିଦେଶୀଙ୍କୁ ପିଠିରେ ଜିନିଷପତ୍ର ଲଦି ଆମ ଗାଁ କଡ଼ଦେଇ ଯିବାବେଳେ ମୁଁ କୌତୂହଳର ସହିତ ସେମାନଙ୍କୁ ନିରୀକ୍ଷଣ କରେ ଓ ଆଶ୍ଚର୍ଯ୍ୟ ହେଇ ଭାବେ କୁଆଡ଼େ ଯାଉଛନ୍ତି ଏମାନେ ସବୁ । ଏମିତିକି ମୁଁ ସେମାନଙ୍କୁ ଘରକୁ ଡାକି ତାଙ୍କ ଯାତ୍ରା ସଂପର୍କରେ ଅଧିକ ଜାଣିବାପାଇଁ କଥାବାର୍ତ୍ତା କରେ । ଅନେକପରେ ଯେତେବେଳେ ମୁଁ ନିଜେ ଏ କାମ ଆରମ୍ଭ କଲି ସେତେବେଳେ ଏହାର ସଂପୂର୍ଣ୍ଣ ତାତ୍ପର୍ଯ୍ୟ ଉପଲବ୍ଧି କଲି । ବିଦେଶୀମାନେ କଷ୍ଟ ସ୍ୱୀକାର କରି ସୁଦୀର୍ଘପଥ ଅତିକ୍ରମ ପୂର୍ବକ ପର୍ବତ ଆରୋହଣର ସାମାଜିକ, ସାଂସ୍କୃତିକ ଏବଂ ବୈଜ୍ଞାନିକ ଦିଗରେ ଶିକ୍ଷା ଲାଭ କରିବାସହିତ ପ୍ରକୃତିର ଭୀମକାନ୍ତ ଦୃଶ୍ୟମଧ୍ୟରେ ଶାନ୍ତି ଅନ୍ୱେଷଣ ନିମନ୍ତେ ହିମାଳୟକୁ ଆସନ୍ତି ।

ସ୍କୁଲ ଓ କଲେଜ ଜୀବନ ପାର୍ବତ୍ୟାଞ୍ଚଳ ମଧ୍ୟରେ କଟିଥିବାରୁ ବହିର୍ଜଗତ ଓ କ୍ରୀଡ଼ା ପ୍ରତି ମୋର ଏକ ସ୍ୱାଭାବିକ ଶ୍ରଦ୍ଧା ଥିଲା । ମୁଁ ଭାଗନେଉଥିବା ସମସ୍ତ କ୍ରୀଡ଼ା ପ୍ରତିଯୋଗିତାରେ କୃତିତ୍ୱ ଅର୍ଜନ କରିବା ସହିତ ଅନେକ ପୁରସ୍କାର ଜିତି ଗୌରବର ସହିତ ଘରକୁ ଫେରୁଥିଲି । କ୍ରୀଡ଼ାଗତ ସଫଳତା ଯୋଗୁଁ ଧୀରେ ଧୀରେ ହେଲେ ମଧ୍ୟ ନିଶ୍ଚିତ ଭାବରେ ଲୋକଙ୍କଠାରୁ ମଧ୍ୟ ସ୍ୱୀକୃତି ଲାଭ କଲି । ଗୋଟିକ ପରେ ଗୋଟିଏ ସଫଳତା ମୋର ଆତ୍ମବିଶ୍ୱାସ ଓ ମର୍ଯ୍ୟାଦା ବୃଦ୍ଧିକଲା । ମୁଁ ବାହାରର ସାଂଗଠନିକ କାର୍ଯ୍ୟ ପରିଚାଳନାରେ ବି ବେଶ୍ ଦକ୍ଷ ଥିଲି ଏବଂ ଏସବୁ କାର୍ଯ୍ୟକ୍ରମ ଭିତରେ ଯୁବ ସମାଜକୁ ସଂପୃକ୍ତ କରିବା ପାଇଁ ଯେତେ କଷ୍ଟ ହେଉ ପଛେ ନେତୃତ୍ୱ ନେବା ଥିଲା ମୋର ସହଜାତ ଗୁଣ । ଏହା କେବଳ ଆତ୍ମ ପ୍ରକାଶ ପାଇଁ ସୁଯୋଗ ଅପେକ୍ଷାରେ ଥିଲା । ଏ ସୁଯୋଗ ଏଭେରେଷ୍ଟ ଆରୋହଣ ପରେ ଆସିଲା ଯେତେବେଳେ କି ଟାଟା ଇସ୍ପାତ କମ୍ପାନୀ ଦୁଃସାହସିକ ଅଭିଯାନ ମୂଳକ କ୍ରୀଡ଼ା ନିମନ୍ତେ ଏକ ସଂପୂର୍ଣ୍ଣ ନୂତନ ବିଭାଗ ଖୋଲି ମତେ ତାଙ୍କର ସମସ୍ତ ଦୁଃସାହାସିକ ଅଭିଯାନ କାର୍ଯ୍ୟକ୍ରମର ମୁଖ୍ୟଭାବେ ନିଯୁକ୍ତ କଲେ ।

ଏମ୍.ଏ. ବି.ଏଡ୍ ସରିବା ପରେ ମଧ୍ୟ ଘର କାମରେ ସାହାଯ୍ୟ କରିବା ପାଇଁ ସୁଉଚ୍ଚ ପାର୍ବତ୍ୟାଞ୍ଚଳରୁ ଜାଳେଣିକାଠ କିମ୍ବା ଘାସ ଆଣିବାରେ ମୋର କୁଣ୍ଠା ନଥିଲା । ଏ ବିରଳ ଉପହାର ମୁଁ ବାପା ମାଙ୍କଠୁଁ ପାଇଥିଲି ଯାହା ମତେ ଶିକ୍ଷାର ପ୍ରକୃତ ତାତ୍ପର୍ଯ୍ୟ ବିଷୟରେ ଅବଗତ କରାଇଥିଲା । ଏବେ ମଧ୍ୟ ମୋର ସେଥିରେ ବିଶ୍ୱାସ ଅଛି । ଘରେ ହେଉ ବା ବାହାରେ ହେଉ ଯେଉଁଠି ଥାଏ ନା କାହିଁକି ସାରାଦିନର ଖଟଣିପରେ ମୁଁ ସର୍ବଦା ଆନନ୍ଦ ଓ ଆତ୍ମ ସନ୍ତୋଷ ପାଇଥାଏଁ ।

ଶିକ୍ଷିତ ବେକାର ହୋଇଥିବା ଯୋଗୁଁ ଏ ସମୟଟି ଥିଲା ମୋର ତିକ୍ତତମ ପରୀକ୍ଷାର ସମୟ । ତଥାପି ଉଡ଼ାଜାହାଜରେ ବସି ଆକାଶରେ ଉଡ଼ିବା, କାର୍‌ରେ ଯତ୍ରତତ୍ର ଭ୍ରମଣ

କରିବା କିମ୍ବା ବିଖ୍ୟାତ ଲୋକଙ୍କୁ ସାକ୍ଷାତ କରିବା ସ୍ୱପ୍ନରୁ ମୁଁ ସେତେବେଳେ ମଧ୍ୟ ନିବୃତ୍ତ ହୋଇନଥିଲି । ସମ୍ଭବତଃ କୌଣସି ଦୈବୀକୃପାରୁ ସେମିତି ସୁଯୋଗ ଆସିଲା ଏବଂ ମୁଁ ଉତ୍ତର କାଶୀର ପ୍ରାରମ୍ଭିକ ପର୍ବତ ଆରୋହଣ ପାଠ୍ୟକ୍ରମରେ ଯୋଗଦେଲି । ମୋର ସେହି ଶିକ୍ଷାକାଳୀନ କୃତିରେ ମୁଁ ନିଜେ ମଧ୍ୟ ବିସ୍ମିତ ହୋଇ ଯାଇଥିଲି । ଆମର ଉପାଧ୍ୟକ୍ଷ ଜଣେ ବିଖ୍ୟାତ ପର୍ବତ ଆରୋହଣକାରୀ କର୍ଣ୍ଣେଲ୍ ପ୍ରେମଚନ୍ଦ ବେଶ୍ ଦୃଢ଼ତା ସହକାରେ ଘୋଷଣା କଲେ, ''ଏ ଜଣେ ଏଭେରେଷ୍ଟ ପ୍ରତିଭା – ଅର୍ଥାତ ଏଭେରେଷ୍ଟ ଆରୋହଣରେ ତାଲିକାଭୁକ୍ତ ହେବାପରି ଯୋଗ୍ୟତା ।'' ଏହାପରେ ମୁଁ ଆଉ ପଛକୁ ଫେରି ଚାହିଁନି । ଆଡ଼ଭାନସ୍ଡ ପର୍ବତାରୋହଣ ପାଠ୍ୟକ୍ରମ ମୁଁ ଯଥେଷ୍ଟ କୃତିତ୍ୱ ସହକାରେ ଶେଷକଲି । ଏହା ଥିଲା ମୋ ପାଇଁ ଆତ୍ମାବିଷ୍କାରର ଏକ ପ୍ରକୃଷ୍ଟ ସମୟ । ମୁଁ ସେତେବେଳେ ମୋର ପ୍ରକୃତ ଅନ୍ତର୍ନିହିତ ଶକ୍ତି ତଥା ସହଜାତ ପ୍ରତିଭା ବିଷୟରେ ଅବଗତ ହେଲି ।

ଭାରତୀୟ ଏଭେରେଷ୍ଟ ଅଭିଯାନ ପାଇଁ ସର୍ବସମ୍ମତି କ୍ରମେ ନିର୍ବାଚିତ ହେବାପରେ ଶାରୀରିକ ସାମର୍ଥ୍ୟ ଓ ପର୍ବତାରୋହଣ ଦକ୍ଷତା ବୃଦ୍ଧି ନିମନ୍ତେ ନିଜ ଉଦ୍‌ଭାବିତ କୌଶଳ ଅବଲମ୍ବନ କରି ପ୍ରସ୍ତୁତିରେ ଲାଗିପଡ଼ିଲି । ଆମର ନିତିଦିନିଆ ଘରକଣା ପାଇଁ ଆମକୁ ବିଡ଼ା ବିଡ଼ା ଘାସ ଓ ଜାଳେଣି କାଠ ସୁଉଚ୍ଚ ପର୍ବତରୁ ବୋହି ଆଣିବାକୁ ପଡୁଥିଲା । ମୁଁ ଆମଘର ନାକୁରୀରୁ ପଥର ବୋଝମାନ ପର୍ବତର ସେଇ ଉଚ୍ଚସ୍ଥାନ ଉପରକୁ ବୋହି ନେଉଥିଲି । ମୋର ଭାରସାମ୍ୟ ବୃଦ୍ଧି କରିବା ଓ ପର୍ବତର ଉଚ୍ଚତାଜନିତ ଭୟ କଟିବା ପାଇଁ ମୁଁ ଇଚ୍ଛାକୃତ ଭାବେ ଅଧିକ ତୀଖ, ଦୁର୍ଗମ ଓ ସଂକୀର୍ଣ୍ଣ ପଥ ତଥା ବଡ଼ ବଡ଼ ପଥର ବାଛି ତା' ଉପରେ ଚଢ଼ି ଯାଉଥିଲି । ସେଠି ପଥର ବୋଝ ଗଦା କରିଦେଇ ଫେରିଲାବେଳକୁ ଘାସ ଓ ଜାଳେଣି କାଠ ଆଦି ନେଇଆସେ । ମୋର ଏ ପଥରବୁହା ଦେଖି ମୋ ବାପା ମଜାରେ ଅନ୍ୟମାନଙ୍କୁ କହନ୍ତି, ''ଜାଣିଛ, ବଚ୍ଛେନ୍ଦ୍ରୀ ପାହାଡ଼ ଉପରେ ନିଜ ପାଇଁ ଗୋଟିଏ ଘର ତିଆରି କରୁଛି ସେଥିପାଇଁ ଏ ପଥର ବୁହା ।'' ଏମିତି ଭାବରେ ମୁଁ ଘରକାମସହିତ ଶରୀର ସାମର୍ଥ୍ୟରକ୍ଷା ବିଧିକୁ ଯୋଡ଼ିଦେଲି । ପରବର୍ତ୍ତୀ ସମୟରେ ଏହା ମୋ ପାଇଁ ଏକ ଆଶୀର୍ବାଦରେ ପରିଣତ ହେଲା ।

ମୋ ପର୍ବତ ଆରୋହଣ କ୍ୟାରିଅର୍ ଯେଉଁଭଳି ଭାବରେ ଗଠିତ ହେଉଥିଲା ସେଥିରେ ମୁଁ ଖୁବ୍ ଖୁସି ଥିଲି । କିନ୍ତୁ ଏହା ଦ୍ୱାରା ମୋର କିମ୍ବା ଆମ ପରିବାରର ଆର୍ଥିକ ଅବସ୍ଥା ସୁଧୁରୁ ନ ଥିଲା । ତାପରେ ୧୯୮୩ ମସିହା ଫେବୃଆରୀ ମାସରେ ନ୍ୟାସନାଲ ଆଡ଼ଭେଞ୍ଚର ଫାଉଣ୍ଡେସନର ନିର୍ଦ୍ଦେଶକ ବ୍ରିଗେଡ଼ିଅର୍ ଜ୍ଞାନ ସିଂ, ଏନ୍ ଆଇଏମ୍‌ର ଶିକ୍ଷକମାନଙ୍କ ନିମନ୍ତେ ଗୋଟିଏ ଦୁଃସାହସିକ ଅଭିଯାନର ପାଠ୍ୟକ୍ରମ ଚାଲୁ କରେଇବାପାଇଁ ଉତ୍ତରକାଶୀ ଆସିଲେ । ସେ ମତେ ମିଶେଇ ଆଉ ସାତଜଣ ସ୍ଥାନୀୟ ଶିକ୍ଷିତ ମହିଳାଙ୍କୁ ଛାତ୍ରବୃତ୍ତି ପାଇଁ ବାଛିଲେ । ସେଇ ବରିଷ୍ଠ, କିନ୍ତୁ ସହାନୁଭୂତିଶୀଳ ପର୍ବତ ଆରୋହୀଙ୍କ ନିକଟରେ ମୋ ବାପା ମା, ପରିବାରର ଆର୍ଥିକ ଚାପ କମାଇବା ପାଇଁ ମତେ ବାହାକରିଦେବାକୁ ଚାହୁଁଛନ୍ତି ବୋଲି ଖୋଲି କହିଲି । ଆମମାନଙ୍କ ମଧ୍ୟରୁ ଯେଉଁମାନେ ଗରିବ, ତାଙ୍କର ଆଗ୍ରହ ଓ ପର୍ବତ

ଆରୋହଣଜନିତ ଦକ୍ଷତାକୁ ଦୃଷ୍ଟିରେ ରଖି ସେମାନଙ୍କର ଜୀବିକା ଅର୍ଜନ ନିମନ୍ତେ କିଛିଗୋଟେ ଉପାୟ କରିବାକୁ ଅନୁରୋଧ କଲି ।

ତା'ପରଦିନ ସକାଳେ ବ୍ରିଗେଡ଼ିୟର ଜ୍ଞାନ ସିଂ ଆମକୁ ''ଭାଗୀରଥୀ ସେଭେନ୍ ସିଷ୍ଟରସ୍ ଆଡ଼ଭେଞ୍ଚର କ୍ଲବ'' ପାଇଁ ପ୍ରାର୍ଥୀ ପତ୍ର ପୂରଣ କରିବାକୁ କହିଲେ । ସେ ଆମକୁ ବୁଝେଇଦେଲେ ଯେ ଦୁଃସାହସିକ ଅଭିଯାନ କରିବାକୁ ଆଗ୍ରହୀ ମହିଳାମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ଏହା ମହିଳାମାନଙ୍କର ଏକ ଅନନ୍ୟ ସଙ୍ଗଠନ ହେବ । ସେ ପ୍ରତିଶ୍ରୁତି ଦେଲେ ଯେ ଟ୍ରେନିଂ ପ୍ରାପ୍ତ ମହିଳାମାନଙ୍କର ଆର୍ଥିକ ଦୁଶ୍ଚିନ୍ତାର ଦାୟିତ୍ୱ ଏହି ଅନୁଷ୍ଠାନ ବହନ କରିବ । ଆମର ମନୋବଳ ଆକାଶଛୁଆଁ ହେଇଗଲା ଏବଂ ଆମେ ଗଭୀର ଆନ୍ତରିକତାର ସହିତ ଟ୍ରେନିଂ ନେବାରେ ଲାଗିଲୁ ।

ଆମ ରହଣିର ଶେଷ ଆଡ଼କୁ ବ୍ରିଗେଡ଼ିୟର ଆମ ପାଇଁ ପିତୃପ୍ରତିମ ହେଇଯାଇଥିଲେ । ମୋ ପ୍ରସ୍ତାବ କ୍ରମେ ଆମେ ତାଙ୍କୁ ''ଛୋଟେ ଚାଚା'' ଡାକିବା ଆରମ୍ଭ କରିଦେଇଥିଲୁ । ୧୯୮୩ ମସିହା ଫେବୃଆରୀ ୨୮ ତାରିଖରେ ଯେତେବେଳେ ଛୋଟେ ଚାଚା ଉତ୍ତରକାଶୀ ଛାଡ଼ିଲେ, ଆମ ସମସ୍ତଙ୍କ ଆଖିରେ ଲୁହ ଆସିଯାଇଥିଲା । କିନ୍ତୁ ସେ ଆମର ଦୁଃସାହସିକ ଅଭିଯାନ କାର୍ଯ୍ୟକ୍ରମ ଚାଲୁ ରଖିବାରେ ସାହାଯ୍ୟ କରିବାପାଇଁ ତିନିମାସ ମଧ୍ୟରେ ଫେରିଆସିବେ ବୋଲି ପ୍ରତିଶ୍ରୁତି ଦେଲେ । ସେ ଜୁନ୍ ୧ରେ ତାଙ୍କ ପ୍ରତିଶ୍ରୁତି ମୁତାବକ ଝିଅମାନଙ୍କ ପାଇଁ ଦୁଇଟି ଦୁଃସାହସିକ ଅଭିଯାନ କୋର୍ସ କରେଇବାପାଇଁ ୨୫ଟି କ୍ୟାମ୍ପ ଓ ଆରୋହଣ ସାମଗ୍ରୀସହିତ ଆସି ପହଞ୍ଚିଲେ । ସେମାନଙ୍କ ଦ୍ୱାରା ଡେଖିଲାଠାରେ ଗୋଟେ ଟେଣ୍ଟେଜ୍ କ୍ୟାମ୍ପ ବସେଇବା ବ୍ୟବସ୍ଥା କଲେ ।

ଜାମ୍‌ସେଦପୁରରୁ ପ୍ରଥମ ଦଳରେ ୧୩ଜଣ ଓ ମେଘାଳୟ ସିଲଂରୁ ଦ୍ୱିତୀୟ ଦଳରେ ୧୫ଜଣ ଖୁବ୍ ପ୍ରାଣୋଚ୍ଛଳ ଖାସି ଝିଅ ଆସିଥିଲେ । ପ୍ରତ୍ୟେକ ଦଳରେ କେତେକ ସ୍ଥାନୀୟ ଝିଅଙ୍କୁ ବୃତ୍ତିଦେଇ, ମିଶେଇ ୨୦ କରାଗଲା । ମତେ ସେ କୋର୍ସର ନିର୍ଦ୍ଦେଶକ ଏବଂ ବିଜୟା ପନ୍ତକୁ ଉପନିର୍ଦ୍ଦେଶକ କରାଗଲା । କ୍ୱାର୍ଟର ମାଷ୍ଟର ଓ ଡାକ୍ତରୀ ସହାୟିକା ପଦ ଆଦିରେ ଅନ୍ୟ ସାତ ଭଉଣୀଙ୍କୁ ପାଳିକରି ନିଯୁକ୍ତି ଦିଆଗଲା । କୋର୍ସରେ ଆମମାନଙ୍କ କାର୍ଯ୍ୟନିମନ୍ତେ ଆମମାନଙ୍କୁ ଏକ ପାରିଶ୍ରମିକ ଦିଆଯାଉଥିଲା । ଛୋଟଚାଚା ଅଫିସ୍ କାଗଜପତ୍ର ହିସାବ ଆଳରେ ଦ୍ୱିତୀୟ କୋର୍ସର ସଂପୂର୍ଣ୍ଣ ଦାୟିତ୍ୱ ଆମକୁ ସମ୍ଭାଳିବାକୁ କହିଲେ । ମୁଁ ପ୍ରଥମେ ପ୍ରଥମେ ଡରିଯାଉଥିଲି କିନ୍ତୁ ଦାୟିତ୍ୱ ପଡ଼ିବାସାଙ୍ଗକୁ ମୋର ଆତ୍ମବିଶ୍ୱାସ ବଢ଼ିଲା ଓ ସମସ୍ତକାର୍ଯ୍ୟ ସୁଚାରୁ ରୂପେ ଚାଲିଲା । ଯେତେବେଳେ ପିଲାମାନେ ଛୋଟ ଚାଚାଙ୍କ ଆଗରେ ପାହାଡ଼ ଚଢ଼ିବା ସମୟରେ ବଚ୍ଛେନ୍ଦ୍ରୀ ଦିଦି ସହିତ କି କି ଥଟ୍ଟା, ମଜା, ହସ କୌତୁକ ହେଲା କହୁଥାନ୍ତି ମୁଁ ଏକ ଅପୂର୍ବ ଆନନ୍ଦ ଓ ପ୍ରାପ୍ତି ଅନୁଭବ କରୁଥାଏ ।

୧୯୮୪ ମସିହାର ଭାରତୀୟ ଏଭେରେଷ୍ଟ ଅଭିଯାନ ଥିଲା ପ୍ରଥମ ମିଳିତ ଅଭିଯାନ । ଭାରତୀୟ ମହିଳାମାନଙ୍କୁ ଏଭେରେଷ୍ଟ ଶୃଙ୍ଗ ଆରୋହଣ କରିବା ଆହ୍ୱାନକୁ ସାମ୍ନା କରିବାର ସୁଯୋଗ ଦେବାଥିଲା ଏହାର ମୁଖ୍ୟ ଉଦ୍ଦେଶ୍ୟ । ଆମ ଦଳରେ ମତେ

ମିଶେଇ ସାତଜଣ ମହିଳା ଥିଲେ । ଅନ୍ୟମାନଙ୍କ ତୁଳନାରେ ଏଇଟା ମୋର ପ୍ରଥମ ପ୍ରମୁଖ ଅଭିଯାନ ଥିଲା। ସେମାନଙ୍କ ମଧ୍ୟରୁ ପ୍ରାୟ ଅନେକେ ପୋଖତ ପର୍ବତ ଆରୋହୀ ଥିଲେ । ମିଳିତ ଦଳର କିଛି ନିଜସ୍ୱ ସହଜାତ ସମସ୍ୟା ଥିଲା । ଆମମାନଙ୍କ ଭିତରେ ଥିବା ଲୋକଙ୍କର ରୁଚି ଓ ଅରୁଚି ସୃଷ୍ଟି ହେଉଥିଲା ଯାହାଫଳରେ କେତେକଙ୍କର ଶକ୍ତି ଅଯଥା କାର୍ଯ୍ୟରେ ଅପଚୟ ହେଉଥିଲା । ମୁଁ ନୂଆ ଓ ଅନଭିଜ୍ଞ ହେଇଥିବା ଯୋଗୁଁ ମୋର ଏକମାତ୍ର ଚିନ୍ତା ଥିଲା ପର୍ବତାରୋହଣ, ଯାହାକି ପ୍ରତ୍ୟେକ ଦିନ ଜୀବନ ଓ ମୃତ୍ୟୁ ମଧ୍ୟରେ ସଂଘର୍ଷ । ସେ ଯାହାହେଉ ଏଭେରେଷ୍ଟ ଶୃଙ୍ଗର ଶୀର୍ଷଦେଶ ଆରୋହଣର ଘଡ଼ିସନ୍ଧି ମୁହୂର୍ତ୍ତରେ ମୋର ବି ତିକ୍ତ ଅନୁଭୂତି ହେଇଛି ଏବଂ ମୋର ସମସ୍ତ ଦକ୍ଷତା ଓ ଦୃଢ଼ତା ଦେଇ ମୁଁ ଏହାକୁ ଅତିକ୍ରମ କରିଛି ।

୧୯୮୪ ମସିହା ମେ ୧୫-୧୬ ତାରିଖ ବୁଦ୍ଧ ପୂର୍ଣ୍ଣିମା ଦିନ ମୁଁ ଲୋସେର ଏକଦମ୍ ଢାଲୁ କଠିନ ବରଫାବୃତ ସ୍ଥାନରେ ଏକ ରଙ୍ଗୀନ ନାଇଲନ୍ ତମ୍ବୁ ପକେଇ ତିନି ନମ୍ବର କ୍ୟାମ୍ପରେ ଥାଏଁ । ସେ କ୍ୟାମ୍ପରେ ଆଉ ଅନ୍ୟ ଦଶଜଣ ଥାନ୍ତି । ଲପ୍‌ସାଙ୍ଗ ସେରିଙ୍ଗ ଓ ମୁଁ ଗୋଟିଏ ତମ୍ବୁରେ ରହୁଥାଉଁ । ଏନ୍.ଡ଼ି. ସେର୍‌ପା ଓ ଅତି ବଳିଷ୍ଠ ଓ ଖୁବ୍ ଉଚ୍ଚକୁ ଉଠିପାରୁଥିବା ଆଠଜଣ ସେର୍‌ପା କୁଲି ଅନ୍ୟଏକ ତମ୍ବୁରେ ଥିଲେ । ମୋର ବେଶ୍ ଭଲ ନିଦ ହେଇଥାଏ । ରାତ୍ରିପ୍ରାୟ ୧୨.୩୦ଟାରେ ଏକକାଳୀନ ମୋ ମୁଣ୍ଡରେ ଏକ କଠିନ ବସ୍ତୁର ବଜ୍ର ପ୍ରହାର ସହିତ ଏକ ବିରାଟ ବିସ୍ଫୋରଣ ଶବ୍ଦରେ ଭୟଭୀତ ହୋଇ ଉଠିପଡ଼ିଲି । ଏକ ଶୀତଳ ଓ ଖୁବ୍ ଓଜନିଆ ଜିନିଷ ମୋ ଦେହଉପରେ ଚଢ଼ି ମତେ ଦଳିମଛି ଦେବାପରି ମୁଁ ଅନୁଭବ କଲି । ମୁଁ ନିଃଶ୍ୱାସ ନେଇ ପାରୁନଥିଲି ।

କ'ଣ ହେଲା ? ଲୋସେ ଗ୍ଲାସିଅର୍‌ର ଗୋଟାଏ ଦୀର୍ଘ ବରଫ ଖଣ୍ଡ ଠିକ୍ ଆମ କ୍ୟାମ୍ପ ମୁଣ୍ଡ ଉପରେ ଖଣ୍ଡ ଖଣ୍ଡ ହେଇ ଭାଙ୍ଗିପଡ଼ିଥିଲା । ପାହାଡ଼ରୁ ପ୍ରସ୍ତର ଖଣ୍ଡସହିତ ତୁଷାର ଓ ବରଫ ମିଶି ପର୍ବତ ଦେହରେ ତଳକୁ ଖସିଆସି ଏକ ବରଫ ସ୍ତୂପରେ ପରିଣତ ହେଇଯାଇଥିଲା । ଏକ ବିରାଟ ପ୍ରସ୍ତର ଖଣ୍ଡ ସଦୃଶ ବରଫ, ଚୂର୍ଣ୍ଣବିଚୂର୍ଣ୍ଣ ବରଫ ଖଣ୍ଡସହିତ ଜମିଯାଇଥିବା ତୁଷାର ଇତ୍ୟାଦି ଏକ ଭୟଙ୍କର ଘର୍ଘର ନାଦକରି ପାଖରେଥିବା ପାହାଡ଼ର ଢାଲୁ କ୍ଷେତ୍ରରେ ଗୋଟିଏ ଏକ୍‌ସ୍‌ପ୍ରେସ୍ ଟ୍ରେନ୍ ବେଗରେ ଆସି ଗଦାହେଇ ପଡୁଥିଲା । ଆମ କ୍ୟାମ୍ପ ଠିକ୍ ତାରି ତଳେ ହେଇଥିବାରୁ ଧ୍ୱସ୍ତ ବିଧ୍ୱସ୍ତ ହେଇଗଲା । ପ୍ରକୃତପକ୍ଷେ ସମସ୍ତେ ଆହତ ହୋଇଥିଲେ ମଧ୍ୟ ଆଶ୍ଚର୍ଯ୍ୟଜନକ ଭାବରେ କେହି ନିହତ ହୋଇନଥିଲେ । ଲପ୍‌ସାଙ୍ଗ କୌଣସି ମତେ ତାଙ୍କ ସୁଇସ୍ ଆର୍ମି ଛୁରୀ ସାହାଯ୍ୟରେ ଆମ ତମ୍ବୁକୁ କାଟି ବାହାରିବାରେ ସକ୍ଷମ ହେଲେ ଏବଂ ତତ୍‌କ୍ଷଣାତ୍ ଉଦ୍‌ବିଗ୍ନଭାବରେ ମତେ ରକ୍ଷାକରିବା ଉଦ୍ୟମରେ ଲାଗିପଡ଼ିଲେ । ବିଳମ୍ବ ମାନେ ସୁନିଶ୍ଚିତ ମୃତ୍ୟୁ । ବିରାଟ ବିରାଟ ବରଫ ଖଣ୍ଡଗୁଡ଼ିକୁ ଉଠେଇ, ଠେଲି ବାହାର କରିବା ସହିତ ମୋ ଚାରିପାଖରେ କଠିନ ହୋଇଯାଇଥିବା ବରଫକୁ ତାଡ଼ି, କାଟି ମତେ ସେ ବରଫ ସମାଧି ମଧ୍ୟରୁ ଟାଣି ବାହାର କରିବାରେ ସମର୍ଥ ହୋଇଥିଲେ ।

ଆମର ରନ୍ଧନଶାଳା ବ୍ୟତୀତ ଅନ୍ୟକୌଣସି ତମ୍ବୁ ଆଉ ଠିଆ ଅବସ୍ଥାରେ ନଥିଲା । ଲୋପସାଙ୍ଗ ଓ ମୁଁ ଖୁବ୍ କଷ୍ଟର ସହିତ ଗୁରୁଣ୍ଡି ଗୁରୁଣ୍ଡି ସେ ତମ୍ବୁ ପର୍ଯ୍ୟନ୍ତ ଚଢ଼ି ପହଞ୍ଚିଲାବେଳକୁ ଏନ୍.ଡ଼ି. ୱାକିଟକିରେ ଦୁଇନମ୍ବର କ୍ୟାମ୍ପର ଦଳୀୟ ମୁଖ୍ୟଙ୍କ ସହିତ କଥାବାର୍ତ୍ତା ହେଉଥାନ୍ତି । ଏନ୍.ଏସ୍. ସେର୍‌ପା କହିଲେ ତାଙ୍କର କେତୋଟି ପଂଜରା ହାଡ଼ ଭାଙ୍ଗିଯାଇଛି; ଅନ୍ୟ ଜଣେ ସେର୍‌ପାଙ୍କର ଗୋଡ଼ ଭାଙ୍ଗିଯାଇଥିଲା ଓ ବାକିମାନେ ମଧ୍ୟ ବେଶ୍ ପରିମାଣରେ ଆହତ ହୋଇଥିଲେ । କିନ୍ତୁ ଏନ୍.ଡି. ଦୁଇ ନମ୍ବର କ୍ୟାମ୍ପର ମୁଖ୍ୟଙ୍କୁ ଆଶ୍ୱାସନା ଦେଇ କହିଲେ ଯେ ସବୁକିଛି ଧ୍ୱଂସ ହୋଇଯାଇ ନାହିଁ । ଏବେ ମଧ୍ୟ ଏ ଅଭିଯାନର ସଂଘର୍ଷ କରିବାର ଶକ୍ତି ରହିଛି ।

ଏତେବେଳକୁ ଆମଭିତରୁ ଅଧିକାଂଶ ରନ୍ଧନଶାଳା ତମ୍ବୁ ଭିତରେ ବା ପାଖରେ ଜମା ହେଇସାରିଥାନ୍ତି । ମୋ ଫାଷ୍ଟଏଡ୍ ବାକ୍ସରୁ ମୁଁ ପ୍ରତ୍ୟେକଙ୍କୁ ବ୍ୟଥା ଉପଶମ ପାଇଁ ଔଷଧ ଦେଲି ଓ ଗରମ ପାନୀୟ ପ୍ରସ୍ତୁତ କଲି । ସମସ୍ତଙ୍କ କାମରେ ଆସିପାରିଥିବାରୁ ମତେ ଆଚ୍ଛାଦିତ କରିରଖିଥିବା ଅବସାଦର ବାଦଲ କୁଆଡ଼େ ଅପସରିଗଲା ।

ଯେତେବେଳେ ପୁରୁଷ ଆରୋହୀମାନେ କୌଣସି ଶାରୀରିକ କ୍ଷତି ବା ମାନସିକ ଆଘାତଯୋଗୁଁ କ୍ୟାମ୍ପକୁ ଫେରିବାକୁ ସ୍ଥିରକଲେ ସେତେବେଳେ ଆମ ଦଳୀୟ ମୁଖ୍ୟ (ମୁଁ ଚଢ଼ାଳି ଦଳରେ ଏକମାତ୍ର ମହିଳା ହୋଇଥିବାରୁ) ମତେ ପଚାରିଲେ ଯେ ଶୃଙ୍ଗ ଆରୋହଣ ପାଇଁ ମୁଁ ଆଉଥରେ ଚେଷ୍ଟା କରିବି କି ? ମୁଁ ଉତ୍ତର ଦେଲି, 'ହଁ ସାର୍, ନିଶ୍ଚୟ !' ପ୍ରକୃତରେ ଏ ଘଟଣାଟି ଘଟିଯିବାପରେ ମୁଁ ଅଧିକ ଆତ୍ମବିଶ୍ୱାସୀ ହେଇଉଠିଥିଲି । ଏ ସିଦ୍ଧାନ୍ତ ଥିଲା ମୋ ଜୀବନର ଏକ ସନ୍ଧିକ୍ଷଣ । ମୁଁ ମନେମନେ ଭାବିଲି ମୃତ୍ୟୁଠାରୁ ତ ଆଉ ଅଧିକ କିଛି ଖରାପ ଘଟିବନି । ଈଶ୍ୱର ମୋ ଜୀବନ ରକ୍ଷାକରି ସମ୍ଭବତଃ ମତେ ମୋର ଲକ୍ଷ୍ୟସ୍ଥଳ ଏଭେରେଷ୍ଟ ଯାତ୍ରା ଅବ୍ୟାହତ ରଖିବାପାଇଁ ପ୍ରେରଣା ଦେଇଛନ୍ତି । ମତେ ଲାଗିଲା ସତେଯେପରି ଏକ ନୂତନ ଶକ୍ତି ମୋ ଭିତରେ ପୁନଃ ସଂଚାରିତ ହୋଇ ମତେ ଆଶ୍ଚର୍ଯ୍ୟଜନକ ଭାବେ ଉଦ୍ଦୀପ୍ତ କରିଦେଲା । ସେଇ ସମୟରେ ମୁଁ ମୋର ଅନ୍ତର୍ନିହିତ ନାରୀ ଶକ୍ତିର ପରିଚୟ ପାଇଲି, ଯେଉଁ ଶକ୍ତି ମତେ ଏଭେରେଷ୍ଟ ଆରୋହଣ ଯାତ୍ରା ଅବ୍ୟାହତ ରଖିବାପାଇଁ ଅନୁପ୍ରେରିତ କଲା ।

ମେ ୨୨ତାରିଖରେ ଆମର ପୁନର୍ଗଠିତ ଆରୋହୀଦଳ ଦକ୍ଷିଣ କୋଲ ଅଭିମୁଖେ ଯାତ୍ରା ଆରମ୍ଭ କଲା । ଚାରି ନମ୍ବର କ୍ୟାମ୍ପ ଦକ୍ଷିଣ କୋଲରେ ଥିଲା ଯାହା କି ଆମର ଏଇ ଶୃଙ୍ଗ ଆରୋହୀ ଦଳଙ୍କର ବି ଶୀର୍ଷ କ୍ୟାମ୍ପ । ମୋର ଶାରୀରିକ ସାମର୍ଥ୍ୟ ଓ କାର୍ଯ୍ୟ କ୍ଷମତାଯୋଗୁଁ ଶୀର୍ଷଦଳରେ ମୁଁ ଏକମାତ୍ର ମହିଳା ଥିଲି । ବିଶେଷ ଭାବରେ ଭାରତୀୟ ମହିଳାଙ୍କୁ ଏଭେରେଷ୍ଟ ଆରୋହଣ କରିବାର ସୁଯୋଗ ଦେବା ଉଦ୍ଦେଶ୍ୟରେ ଏହି ଚତୁର୍ଥ ଭାରତୀୟ ଏଭେରେଷ୍ଟ ଆରୋହଣ ଅଭିଯାନ ପରିଚାଳିତ ହେଉଥିବାରୁ ଦଳର ମୁଖ୍ୟଙ୍କର ସମସ୍ତ ଆଶା ଭରସାର ମୁଁ କେନ୍ଦ୍ରବିନ୍ଦୁ ଥିଲି । ଯା ମଧ୍ୟରେ ମୁଁ ମୋର ଅନ୍ତର୍ନିହିତ ଶକ୍ତିର

ପରିଚୟ ପାଇସାରିଥାଏ ଓ ମୋର ସମସ୍ତ ଶକ୍ତି ଏଥିରେ ବିନିଯୋଗ କରିବାକୁ ସିଦ୍ଧାନ୍ତ ନେଇସାରିଥାଏ । ଅନ୍ୟମାନଙ୍କ ମଧ୍ୟରେ ମୁଁ ହିଁ ସର୍ବପ୍ରଥମେ ପହଞ୍ଚିଲି ଦକ୍ଷିଣ କୋଲରେ । ମୁଁ ଜାଣିପାରୁଥିଲି ଯେ ଅନ୍ୟ ସଦସ୍ୟମାନେ ଏବେ ମଧ୍ୟ ତିନି ନମ୍ବର କ୍ୟାମ୍ପରୁ ଚାରିନମ୍ବର କ୍ୟାମ୍ପ ମଧ୍ୟରେ ଥିବା ପର୍ବତର ତୀଖ, ଢାଲୁ ଅଞ୍ଚଳ ଆରୋହଣ କରିବାରେ ଲାଗିଥିବେ ।

ମୁଁ ତା'ପରଦିନ ଭୋର ଚାରିଟାରେ ଉଠିପଡ଼ିଲି । ବାହାରେ ଚାରିଆଡ଼ ଶାନ୍ତ ନିସ୍ତବ୍ଧ ଥିଲା । ଦି ଚାରୋଟି ବିସ୍କୁଟ ଆଉ ଖଣ୍ଡେ ଚକୋଲେଟ୍‌ର ହାଲ୍‌କା ଜଳଖିଆ ସହିତ ଅଳ୍ପ କିଛି ବରଫ ତରଳେଇ ଚା ତିଆରି କରି ମୁଁ ଖାଇଲି । ଆଗରୁ କେବେ ଏତେ ଉଚ୍ଚକୁ ଉଠିନଥିବାରୁ, ଆଉରି ଚଢ଼ିବାର ଭାବନାରେ ମୁଁ ଉତ୍ତେଜନା ଅନୁଭବ କରୁଥିଲି । ତମ୍ବୁ ଭିତରେ ମୁଁ କୌଣସି ମତେ ଜାକିଜୁକି ହୋଇ ବଡ଼କଷ୍ଟରେ ବରଫ ପାହାଡ଼ ଚଢ଼ା ଜୋତା ପିନ୍ଧିନେଲି । ସେଠି ବାୟୁର ସ୍ୱଚ୍ଛତାସହିତ ଅମ୍ଳଜାନ ପରିମାଣ କମ୍‌ଥିବାରୁ ଦେହ ଓ ମନର ଭାରସାମ୍ୟ ରଖିବା କଠିନ ହେଇ ପଡୁଥିଲା । ୧୮,୦୦୦ ଫୁଟ ଉଚ୍ଚତାରେ ବାୟୁରେ ଅମ୍ଳଜାନର ପରିମାଣ ସ୍ୱାଭାବିକତାଠାରୁ ଅଧା କମ୍ ଥାଏ । ୨୬,୦୦୦ ଫୁଟ ଉଚ୍ଚତାରେ ଯେଉଁଠି ମୁଁ ରାତିଟି ଅତିବାହିତ କଲି, ସେଠି ଅମ୍ଳଜାନର ପରିମାଣ ଆଉରି କମ୍ ଥିଲା । ଏ ଉଚ୍ଚତାରେ ଶାରୀରିକ ଶକ୍ତିର ଦ୍ରୁତ ଅବନତି ଘଟେ ଆଉ ଜଣେ ଦକ୍ଷିଣ କୋଲ ଭଳି ସ୍ଥାନରେ ଅତିବେଶୀରେ ଅଳ୍ପ କେଇଟା ଦିନ ବଞ୍ଚି ରହିପାରେ । ସେଥିପାଇଁ କୁହାଯାଏ ଯେ ଦକ୍ଷିଣ କୋଲ କିମ୍ବା ତା'ଉପରକୁ ଚଢ଼ିବା, ଆରୋହଣ ନୁହେଁ, ସେ ଉଚ୍ଚାରେ ବଞ୍ଚିରହିବା ହିଁ ବଡ଼ କଥା । କାରଣ ସେଠି ତାପମାତ୍ରା ୦°ରୁ ୩୦°-୪୦° ସେଲ୍‌ସିୟସ୍ କମ୍ ଥିବାରୁ ପ୍ରଚଣ୍ଡ ଥଣ୍ଡା ସହିତ ଘାତକ ସମ ବରଫର ହେମାଳ ପବନ ବେଳେବେଳେ ଘଣ୍ଟାକୁ ୧୦୦ କି.ମି. ବେଗରେ ବହୁଥାଏ । ତା'ଉପରେ ପିଠିରେ ବୋଝଲଦି ବରଫର ତୀଖତୀଖ ଖଣ୍ଡାଦାଢ଼ରୂପୀ କାଛ ଉପରେ ଚାଲିବା ସତରେ ପ୍ରାଣାନ୍ତକ ।

ବରଫ ପାହାଡ଼ ଚଢ଼ା ଜୋତା ପିନ୍ଧି ପ୍ରାୟ ସକାଳ ୫.୩୦ ବେଳକୁ ମୁଁ ତମ୍ବୁ ବାହାରକୁ ଆସି ଦେଖେଁ ସେର୍‌ପା ସରଦାର ଆଙ୍ଗ ଦୋର୍‌ଜି ବାହାରେ ଠିଆ ହୋଇଛନ୍ତି । ଆଉ କେହି କେଉଁଠି ନଥାନ୍ତି । ମୋ ମନରେ ଅନ୍ୟ ପୁରୁଷ ଆରୋହୀଙ୍କ ଆଚରଣ ପ୍ରତି ସନ୍ଦେହ ଥିଲା । ଏ ଆରୋହଣ ଅଭିଯାନ ମଧ୍ୟରେ ଘଟିଥିବା କେତେକ ଘଟଣାରୁ ମୋର ଅନୁଭୂତି ହୋଇଥିଲା ଯେ ମୋର ଯଦି ଏଭେରେଷ୍ଟ ଶୃଙ୍ଗରେ ପହଞ୍ଚିବାର ଥାଏ ତେବେ ମତେ ହିଁ ଦୃଢ଼ ଓ ଦୁଃସାହସିକ ପଦକ୍ଷେପ ନେବାକୁ ପଡ଼ିବ । ମୋତେ ମୋ ନିଜର ଆରୋହଣ ନିପୁଣତା ତଥା ଦକ୍ଷତାଉପରେ ବିଶ୍ୱାସ ରଖି ଆଗେଇ ଯିବାକୁ ହେବ । ତେଣୁ ଶାରୀରିକ, ମାନସିକ, ଆବେଗିକ ତଥା ଆତ୍ମିକ ସ୍ତରରେ ମୁଁ ମଧ୍ୟ ପ୍ରସ୍ତୁତ ହେଇଯାଇଥିଲି । ଦୁର୍ଗା ଶକ୍ତିର ପ୍ରତୀକ । ତେଣୁ ମୁଁ ମା' ଦୁର୍ଗାଙ୍କର ଗୋଟିଏ ଛୋଟିଆ ମୂର୍ତ୍ତି ସେଇ ଶୃଙ୍ଗ ଦେଶରେ ସ୍ଥାପନ କରିବାପାଇଁ ସାଙ୍ଗରେ ଆଣିଥିଲି । ଏମିତି ପ୍ରତିକୂଳ ପରିସ୍ଥିତି ଓ ସ୍ଥାନରେ ଜଣେ ଐଶ୍ୱରିକ କୃପା ଲୋଡ଼ିବା ସ୍ୱାଭାବିକ ।

ବରଫମୟ ତୀଖ ଢାଲୁଗୁଡ଼ିକ ଯେପରି କାଚ ଫର୍ଦ୍ଦପରି କଠିନ ସେପରି ଭଙ୍ଗୁର । ଆମକୁ କୁରାଢ଼ୀରେ ବରଫ ହାଣିବାକୁ ପଡୁଥିଲା ଓ ଖୁବ୍ ଜୋର୍‌ରେ ଗୋଇଠା ମାରିବାକୁ ପଡୁଥିଲା ଯାହାଫଳରେ ବରଫ ଜୋତାର ଆଗଦାନ୍ତ ବରଫ ଭିତରକୁ ପଶି ତାକୁ ଶକ୍ତଭାବରେ ଧରି ରଖିବ । ସେ ବିପଦ ସଂକୁଳ ପଥରେ ମତେ ଖୁବ୍ ଧୀରେ ସତର୍କତାର ସହିତ ପ୍ରତ୍ୟେକ ପାଦ ପକେଇବାକୁ ପଡୁଥିଲା । ଦୋର୍‌ଜି ଏକ ନିର୍ଦ୍ଦିଷ୍ଟ ଗତିରେ ଚାଲିଥାନ୍ତି, କିନ୍ତୁ ତାଙ୍କ ସହିତ ପାଦ ମିଳାଇ ଚାଲିବାରେ ମୋର କୌଣସି ଅସୁବିଧା ହେଉନଥିଲା । ଦୁଇଘଣ୍ଟାରୁ କମ୍ ସମୟ ମଧ୍ୟରେ ଆମେ ସେ ଶୀର୍ଷ କ୍ୟାମ୍ପରେ ପହଞ୍ଚିଗଲୁ । ଆଙ୍ଗ୍ ଦୋରଜି ପଛକୁ ଚାହିଁ ମୁଁ କ୍ଳାନ୍ତ କି ନୁହେଁ ବୋଲି ପଚାରିଲେ । ତାଙ୍କୁ ଆନନ୍ଦିତ ଓ ଆଶ୍ଚର୍ଯ୍ୟାନ୍ୱିତକରି ମୁଁ ଉତ୍ତର ଦେଲି, 'ନା' । ସେ କହିଲେ ଯେ ଯା ପୂର୍ବ ଆରୋହୀଦଳ ଏହି ଶୀର୍ଷ କ୍ୟାମ୍ପରେ ପହଞ୍ଚିବାକୁ ଚାରିଘଣ୍ଟା ସମୟ ନେଇଥିଲେ । ପୁଣି କହିଲେ ଆମେ ଯଦି ବର୍ତ୍ତମାନର ଗତି ବଜାୟ ରଖିପାରୁ ଶୀର୍ଷ ଦେଶରେ ମଧ୍ୟାହ୍ନ ଗୋଟାଏ ସୁଦ୍ଧା ପହଞ୍ଚିଯିବା । ଦକ୍ଷିଣ ଶିଖର ପରେ ପରେ ପବନର ବେଗ ବଢ଼ିବାକୁ ଲାଗିଲା । ସେଇ ଉଚ୍ଚତାରେ ଦ୍ରୁତ ବାୟୁ ପ୍ରବାହ ଯୋଗୁଁ ଘୂର୍ଣ୍ଣିବାୟୁ ମାଡ଼ରେ ତୁଷାର ଅଦୃଶ୍ୟ କ୍ଷୁଦ୍ର କଣିକାରେ ପରିଣତ ହୋଇଯାଉଥାଏ । ଅନେକ ସମୟରେ ତୁଷାରମୟ, ହାଡ଼ଥରା ହିମଶୀତଳ ପବନ ଆଡ଼କୁ ପିଠିକରି ମୁଁ ଜାକିଜୁକି ହୋଇ ରହିଯାଉଥିଲି ।

ଶୈଳଶ୍ରେଣୀର ତୀକ୍ଷ୍ଣ ଅସିଧାର ସଦୃଶ ତୀଖଉପରେ ସିଧା ଠିଆହେବା ଭୟଙ୍କର, ଦୁଇ ପାର୍ଶ୍ୱରେ ପଡ଼ିଯିବାର ନିଶ୍ଚିତତା । ପଡ଼ିଯିବା ବିପଦରୁ ରକ୍ଷା ପାଇବାପାଇଁ ବରଫ କୁରାଢ଼ୀରେ ଖୁବ୍ ଗଭୀର ଓ ଜୋର୍ ଚୋଟମାରି ତା' ବେଣ୍ଟ ସହିତ ମୋ ଅଣ୍ଟାକୁ ଗୋଟିଏ ବେଲ୍ଟରେ ବାନ୍ଧି ଦେଉଥିଲି । ଦକ୍ଷିଣ ଶିଖର ଓ 'ହିଲାରୀ'ଙ୍କ ଷ୍ଟେପ' ନାମରେ ଖ୍ୟାତ ଶୀର୍ଷଦେଶର ମଧ୍ୟାଞ୍ଚଳକୁ ଚଢ଼ିବାପାଇଁ କେତୋଟି କୌଶଳ ଅବଲମ୍ବନ କରିବାକୁ ପଡ଼େ । ଆଙ୍ଗ୍ ଦୋର୍‌ଜି ଏବଂ ଲାତୁ ସେତେବେଳକୁ ସେଇ ଅଞ୍ଚଳରେ ପହଞ୍ଚି ସାରିଲେଣି । ମୁଁ ତଥାପି ସେଇ ଶୈଳଶ୍ରେଣୀର ଭୂଲମ୍ବ ଉଚ୍ଚତା ଅତିକ୍ରମ କରିବାରେ ଲାଗିଥିଲି । ଆଙ୍ଗ୍ ଦୋର୍‌ଜିଙ୍କୁ ଶୀର୍ଷ ଦେଶକୁ ଆରୋହଣ କରିବା ଭଙ୍ଗୀରେ ଦେଖିଲି । ଲକ୍ଷ୍ୟସ୍ଥଳ ନିକଟ ଜାଣି ମୁଁ ଶିହରିତ ହେଇଉଠିଲି । ପୁନଃ ପ୍ରାଣଶକ୍ତି ସତେ ଯେମିତି ସାରା ଶରୀରରେ ସଂଚାରିତ ହୋଇଗଲା ଓ ମୁଁ ମାତ୍ର କେତୋଟି ସେକେଣ୍ଡ ମଧ୍ୟରେ ପାହାଡ଼ର ଶୀର୍ଷଦେଶରେ ପହଞ୍ଚିଗଲି । ସୂର୍ଯ୍ୟତାପ ଯୋଗୁଁ ବରଫ ସେଠି ନରମ ଥିଲା । ପୂର୍ବାପେକ୍ଷା ଏଠି ଆରୋହଣ ସହଜ ଥିଲା ।

ଆମେ କିଛି ସମୟପାଇଁ ସେଇ ବରଫ ଗଦାଉପରେ କଷ୍ଟେ ମଷ୍ଟେ ଚାଲିଲୁ । ତାପରେ କ୍ରମଶଃ ଶୀର୍ଷଆଡ଼କୁ ଚଢ଼ିବାକଷ୍ଟ ଉଲ୍ଲେଖନୀୟ ଭାବେ କମିଗଲା । କେତେ ପାଦ ପରେ ମୁଁ ଦେଖିଲି ଯେ ପ୍ରାୟ ଦୁଇମିଟର ପରେ ଆଉ ଉଠାଣି ନାହିଁ । ସେଇ ଢାଲୁ ଆକସ୍ମିକ ଭାବରେ ଅତିମାତ୍ରାରେ ତୀଖ ହୋଇ ନିମ୍ନାଭିମୁଖୀ ହୋଇଛି । ଏହା ଦେଖି ମୁଁ ସ୍ତବ୍ଧ ହେଇ ରହିଗଲି ।

୧୯୮୪ ମସିହା, ମେ ୨୩ ତାରିଖ ଅପରାହ୍ଣ ୧.୦୭ ମିନିଟ୍‌ରେ ମୁଁ ପ୍ରଥମ ଭାରତୀୟ ମହିଳା ଏଭେରେଷ୍ଟ ଶୃଙ୍ଗଉପରେ ପଦପାତ କଲି । ଏଭେରେଷ୍ଟ ଶୃଙ୍ଗର ଶୀର୍ଷଦେଶରେ ଦୁଇଜଣ ପାଖାପାଖି ଠିଆ ହେବାପାଇଁ ମଧ୍ୟ ଯଥେଷ୍ଟ ସ୍ଥାନ ନ ଥାଏ । ଆମର ସବୁପାର୍ଶ୍ୱରେ ହଜାର ହଜାର ମିଟର ବିସ୍ତୃତ ଗଭୀର ଢାଲୁ ଯୋଗୁଁ ନିଜକୁ ନିରାପଦ ରଖିବା ଆମର ପ୍ରଥମ ଚିନ୍ତା ଥିଲା । ତେଣୁ ଆମର ବରଫ କୁରାଢ଼ୀରେ ବରଫହାଣି ଲଙ୍ଗର ପକେଇବା ସଦୃଶ ନିଜକୁ ନିରାପଦରେ ପ୍ରଥମେ ରଖିଲୁ । ସେ କାମ ଶେଷ ହେବାପରେ ମୁଁ ନତଜାନୁହୋଇ ବରଫ ଉପରେ ମଥାପାତି ସାଗରମାଥ କପାଳରେ ଚୁମ୍ବନ ଦେଲି । ଠିଆନହୋଇ ସେମିତି ଅବସ୍ଥାରେ ମୋ ପିଠି ବ୍ୟାଗ୍‌ରୁ ଦୁର୍ଗା ମା'ଙ୍କର ମୂର୍ତ୍ତି ଓ ହନୁମାନ ଚାଳିଶା ବାହାର କରି ଟିକିଏ ପ୍ରାର୍ଥନା କରି ସେଇ ବରଫ ଉପରେ ରଖିଲି । ଆନନ୍ଦର ଏଇ ବିଶେଷ ମୁହୂର୍ତ୍ତରେ ମୋ ମନ ସ୍ୱାଭାବିକଭାବେ ବାପା ମା'ଙ୍କ ଆଡ଼କୁ ଚାଲିଗଲା । ସେମାନେ ହିଁ ମତେ ସଂଘର୍ଷ କରିବାର ତାତ୍ପର୍ଯ୍ୟ ଓ କଠିନ ପରିଶ୍ରମର ମୂଲ୍ୟ ବିଷୟରେ ଶିକ୍ଷା ଦେଇଥିଲେ ।

ମୁଁ ଉଠିବା ମାତ୍ରକେ ମଥାନତ କରି ଆଙ୍ଗ୍ ଦୋର୍‌ଜିଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କଲି ଯିଏ କି ଦଉଡ଼ି ସାହାଯ୍ୟରେ ପଥ ଅତିକ୍ରମ କରିବାରେ ସହାୟକ ଥିଲେ ଓ ମତେ ଉତ୍ସାହିତ କରି ଲକ୍ଷ୍ୟସ୍ଥଳରେ ପହଞ୍ଚାଇଲେ । ମୁଁ ତାଙ୍କୁ ତାଙ୍କର ଦ୍ୱିତୀୟଥର ଅମ୍ଳଜାନ ବିହୀନ ଏଭେରେଷ୍ଟ ଆରୋହଣ ପାଇଁ ଅଭିନନ୍ଦନ ଜଣାଇଲି । ସେ ମତେ କୁଣ୍ଢେଇ ପକେଇ ମୋ କାନରେ ଚୁପ୍‌ଚୁପ୍ କରି କହିଲେ, ''ତୁମେ ଭଲ ପର୍ବତ ଆରୋହଣ କରୁଛ - ବହୁତ ଖୁସିତ ଦିଦି ?''

ସେତେବେଳକୁ ଚାରିଜଣଙ୍କର ଏଭେରେଷ୍ଟ ଆରୋହଣ କରିସାରିବାର ସମ୍ବାଦ ଆମ ଦଳୀୟ ମୁଖ୍ୟଙ୍କୁ ଜଣାଇ ଦିଆଯାଇଥାଏ । ତାପରେ ୱାକିଟକିଟି ମୋ ହାତକୁ ଆସିଲା । କର୍ଣ୍ଣେଲ୍ ଖୁଲାର ଆମ ସଫଳତାରେ ଖୁବ୍ ଆନନ୍ଦିତ ଥିଲେ । ସେ ମତେ ଅଭିନନ୍ଦନ ଜଣେଇ ସାରିବାପରେ କହିଲେ, ''ତୁମର ଏ ଅନନ୍ୟ ସଫଳତା ପାଇଁ ମୁଁ ତମ ବାପାମାଙ୍କୁ ଅଭିନନ୍ଦନ ଜଣେଇବାକୁ ଚାହେଁ ।'' ସେ ପୁନଶ୍ଚ କହିଲେ ଯେ ସାରାଦେଶ ମୋ ସଫଳତାରେ ଗର୍ବିତ ଓ ମୁଁ ବର୍ତ୍ତମାନ ଏପରି ଏକ ଜଗତକୁ ଫେରିବି ଯାହା ମୁଁ ଛାଡ଼ି ଆସିଥିବା ଜଗତଠାରୁ ସଂପୂର୍ଣ୍ଣ ଭିନ୍ନ ।

ଆମେ ଆରୋହୀଗଣ ପରସ୍ପରକୁ ଆଲିଙ୍ଗନ କରି ପରସ୍ପରର ପିଠି ଥାପୁଡ଼େଇ ସାବାସି ଦେଲୁ । ନେପାଳ, ଭାରତ ତଥା ମୋ ପାଇଁ ସେଭେନ୍ ସିଷ୍ଟରସ୍ ଏବଂ ଟିସ୍‌କୋ ପତାକା ଉତ୍ତୋଳନ କରାଯାଇ ଫଟୋ ଉଠାହେଲା । ଆମେ ୪୩ ମିନିଟ୍ ସେଇ ଶୀର୍ଷଦେଶରେ ବିତେଇଲୁ । ସୁଉଚ୍ଚ ବିରାଟ ବିରାଟ ଲାସେ, ନୁପ୍‌ସେ ଏବଂ ମାକାଲୁ ଶୃଙ୍ଗ ଆଦି ଆମ ଏଇ ପର୍ବତ ତୁଳନାରେ କ୍ଷୁଦ୍ର ମନେହେଉଥାଏ । ସେଇ ଶୀର୍ଷସ୍ଥାନ ନିକଟସ୍ଥ ଗୋଟିଏ ଖୋଲା ସ୍ଥାନରୁ ନମୁନା ସ୍ୱରୂପ କେତୋଟି ପଥର ସଂଗ୍ରହ କଲି ।

ଏଭେରେଷ୍ଟ ଆରୋହଣରୁ ବିଜୟୀ ହୋଇ ଫେରିବାପରେ ଘୂର୍ଣ୍ଣିବାୟୁ ପରି ବିବିଧ ପ୍ରକାରର କାମ – ନାନାଦି ଅଭ୍ୟର୍ଥନା, ରାତ୍ରୀଭୋଜନ, ବିଭିନ୍ନ ସମ୍ମାନିତ ପଦାଧିକାରୀ ତଥା ସମସ୍ତ ପ୍ରୋଟୋକଲଙ୍କ ସହିତ ସାକ୍ଷାତ ଇତ୍ୟାଦି କାର୍ଯ୍ୟକ୍ରମରେ ବ୍ୟସ୍ତ ରହିଲି । ଟାଟା ଇସ୍ପାତ କମ୍ପାନୀ ଗୋଟେ କାର୍ ମୋ ବ୍ୟବହାରପାଇଁ ସର୍ବଦା ପ୍ରସ୍ତୁତ ରଖିବା ସହିତ ଗୋଟିଏ ପଞ୍ଚ ତାରକା ବିଶିଷ୍ଟ ହୋଟେଲ୍‌ରେ ରହିବା ବ୍ୟବସ୍ଥା କରିଥିଲେ । ଦେଶର ବିଭିନ୍ନ ସ୍ଥାନକୁ ଯିବା ବ୍ୟବସ୍ଥା ଭାରତୀୟ ବାୟୁଯାନ ସେବାସଂସ୍ଥାଦ୍ୱାରା ନିରୂପିତ ହୋଇଥିଲା । ଅନେକ ବିଶିଷ୍ଟ ବ୍ୟକ୍ତିଙ୍କ ମଧ୍ୟରେ ଭାରତର ରାଷ୍ଟ୍ରପତି, ଜେ.ଆର୍.ଡି. ଟାଟା, ରାଜୀବ ଗାନ୍ଧୀ ଏବଂ ଇନ୍ଦିରା ଗାନ୍ଧୀ ଆଦିଙ୍କ ସହ ସାକ୍ଷାତ କରିବାର ସୁଯୋଗ ହେଲା । ଶ୍ରୀମତୀ ଇନ୍ଦିରାଗାନ୍ଧୀ ମୋ ଆଡ଼କୁ ଚାହିଁ ସ୍ନେହରେ କହିଲେ, "ଆମେ ଏ ଦେଶରେ ଶହଶହ ବଚ୍ଛେନ୍ଦ୍ରୀ ଚାହୁଁ ।" ଗ୍ରାମ୍ୟ ମହିଳାମାନଙ୍କ ମଧ୍ୟରେ ସେ ଦୁଃସାହସିକ ଅଭିଯାନ ପାଇଁ ଏକ ଖେଳୁଆଡ଼ ମନୋଭାବ ବୃଦ୍ଧିକରିବାପାଇଁ ମତେ ଉତ୍ସାହିତ କଲେ, ଯେଉଁ ନାରୀମାନେ କଠିନ ପରିଶ୍ରମ କରନ୍ତି ସତ ମାତ୍ର ତାକୁ ଏକ ଖେଳୁଆଡ଼ ଢଙ୍ଗରେ ସଂପନ୍ନ କରନ୍ତି ନାହିଁ । ଏଭେରେଷ୍ଟ ଆରୋହଣ ପରେ ପରେ ଯୁବ ଓ ମହିଳା ସଂପ୍ରଦାୟ ମଧ୍ୟରେ ଏହି ପ୍ରକାର ଦୁଃସାହସିକ ମାନସିକତା ବୃଦ୍ଧିକରେଇବା ମୋ ଜୀବନର ଲକ୍ଷ୍ୟବୋଲି ମୁଁ ମନେ ମନେ ସଂକଳ୍ପ କରିଲି ।

ମୋର ଏଭେରେଷ୍ଟ ଶୃଙ୍ଗ ଆରୋହଣ ଯାତ୍ରା ଅନ୍ୟ ନାରୀମାନଙ୍କ ନିମନ୍ତେ ଏକ ନୂତନ ମାର୍ଗର ଉତ୍ସାହପ୍ରଦ ଘଟଣା ଥିଲା । ମୋର ପିତାମାତା, ମୋ ପରିବାର, ଆତ୍ମୀୟ ସ୍ୱଜନ, ପାର୍ବତ୍ୟାଞ୍ଚଳର ସାଧାରଣ ଜନତା ମୋ କୃତିତ୍ୱ ଯୋଗୁଁ ବାହାରେ ପରିଚିତ ହେବାସହିତ କ୍ରୀଡ଼ା ଓ ଜୀବିକାଭାବେ ଏହାର ଗୁରୁତ୍ୱ ଅନୁଭବ କଲେ । ଜନ ସାଧାରଣ ଓ ଭାରତ ସରକାରଙ୍କ ତରଫରୁ ଯେଉଁ ଅଫୁରନ୍ତ ଶ୍ରଦ୍ଧା, ସମ୍ମାନ ତଥା ସ୍ୱୀକୃତି ବୃଷ୍ଟି ହେଲା ତାହା ସେମାନେ ସମସ୍ତେ ସ୍ୱଚକ୍ଷୁରେ ଦେଖିଲେ । ୧୯୮୪ ମସିହାରେ ମୋ ଏଭେରେଷ୍ଟ ଆରୋହଣ ଘଟଣା ପରେ ପରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଉତ୍ତରକାଶୀ ପରିଦର୍ଶନରେ ଆସିଥିଲେ । ଗରୱାଲ୍‌ର ଜନସାଧାରଣଙ୍କୁ ବିଶେଷ ଭାବେ ମହିଳାମାନଙ୍କୁ ଗର୍ବର ସହିତ ସେମାନଙ୍କର କର୍ମ ଦକ୍ଷତା ସ୍ମରଣ କରାଇ ମତେ ଦେଶ ଓ ନାରୀଜାତିର ଗର୍ବର କାରଣ ବୋଲି ଦର୍ଶାଇ ହିମାଳୟ ପୁତ୍ରୀ ବୋଲି ଅଭିହିତ କଲେ ।

ଟାଟା ଇସ୍ପାତ କମ୍ପାନୀରେ କାମକରିବା ମୋ ପାଇଁ ଏକ ସୌଭାଗ୍ୟ ଥିଲା । କାରଣ ସେମାନେ ମତେ ସମସ୍ତ ପ୍ରକାର ସୁବିଧା ସୁଯୋଗ ଯୋଗାଇ ଦେଇଥିବା ଫଳରେ ମୁଁ ଜନସାଧାରଣଙ୍କ ନିକଟତର ହେଇପାରୁଥିଲି ଏବଂ ସେମାନେ ମତେ ପ୍ରତ୍ୟେକ ଦିଗରୁ କ୍ଷମତା ପ୍ରଦାନ କରିଥିଲେ । ଭାରତ ସରକାର, କ୍ରୀଡ଼ା ଓ ଯୁବ କଲ୍ୟାଣ ବିଭାଗ ମଧ୍ୟ ସମସ୍ତ ପ୍ରକାର ସାହାଯ୍ୟ ସହଯୋଗ ଦେଇ ମତେ ଉତ୍ସାହିତ କରୁଥିଲେ । ନେତୃତ୍ୱ ଦେବାର ଯେଉଁ ସହଜାତ ଅନ୍ତର୍ନିହିତ ଶକ୍ତି ମୋର ଥିଲା ତାହା ଟାଟା ଇସ୍ପାତ କଂପାନୀ ଦ୍ୱାରା

ନାନାଭାବରେ ବିକଶିତ ହେବାର ସୁଯୋଗ ଲାଭକଲା । ମୁଁ ହିମାଳୟର ବିଭିନ୍ନ ଶୃଙ୍ଗ ଆରୋହଣ ଅଭିଯାନର ଆୟୋଜନ ତଥା ନେତୃତ୍ୱ ଦେବାର ସମସ୍ତ ସୁଯୋଗ ପାଇବାସହିତ ନିରାପଦରେ ଓ ସଫଳତା ସହକାରେ ସମାପନ କଲି ।

ଯା'ହେଉ ମହିଳା ଏଭେରେଷ୍ଟ ଅଭିଯାନରେ କେତେକ ବିଫଳକାମ ପୁରୁଷ ପର୍ବତାରୋହୀଙ୍କର ମୋପ୍ରତି ବିରୋଧ ଦେଖି ମୁଁ ଦୁଃଖିତ ହେଇପଡ଼ିଥିଲି । ଏହା ଏକ ପୁରୁଷପ୍ରଧାନ କ୍ରୀଡ଼ାହୋଇଥିବାରୁ, କୌଣସି ମହିଳାଙ୍କର ଏ କ୍ଷେତ୍ରରେ ପ୍ରବେଶକୁ ସେମାନେ ଆଦୌ ଅନୁମୋଦନ କରୁନଥିଲେ । ମହିଳାମାନଙ୍କର ସାମର୍ଥ୍ୟ ଓ ଉଚ୍ଚାକାଂକ୍ଷା ବିଶେଷଭାବେ ସେମାନଙ୍କର ନେତୃତ୍ୱ ଦେବା ଓ ଅଭିଯାନ ପରିଚାଳନା କରିବା ପ୍ରତି ତାଙ୍କର ସାମାନ୍ୟ ବି ଶ୍ରଦ୍ଧା ବା ସମ୍ମାନବୋଧ ନ ଥିଲା । ସେମାନଙ୍କର ତଥାକଥିତ ଭ୍ରାତୃତ୍ୱଭାବ ଓ ନେତିବାଚକ ଆଚରଣଦ୍ୱାରା ମୁଁ ପରାଂମୁଖ ନହୋଇ ବରଂ ଅଧିକ ଦୃଢ଼ପ୍ରତିଜ୍ଞ ହେଲି । କାରଣ ଭାରତ-ନେପାଳ ମହିଳା ଏଭେରେଷ୍ଟ ଆରୋହଣ ଅଭିଯାନର ନେତୃତ୍ୱ ନେଇ ଏଭେରେଷ୍ଟ ଶୃଙ୍ଗର ବେସ୍ କ୍ୟାମ୍ପରେ ପହଞ୍ଚିବା ପୂର୍ବରୁ ମତେ ଦିଲ୍ଲୀର ବହୁ ପର୍ବତ ଆରୋହଣ କରିବାକୁ ଥିଲା । ଭାରତୀୟ ପର୍ବତ ଆରୋହଣ କ୍ଷେତ୍ରରେ ଏହି ଅଭିଯାନ ଏକ ମାଇଲ୍ ଖୁଣ୍ଟ ସୃଷ୍ଟି କରିବା ସହିତ ସାତୋଟି ବିଶ୍ୱରେକର୍ଡ଼ ସୃଷ୍ଟି କରିଥିଲା । ସାତଜଣ ମହିଳାଙ୍କ ସମେତ ସର୍ବମୋଟ ଅଠରଜଣ ବ୍ୟକ୍ତି ଏହି ଶୃଙ୍ଗ ଆରୋହଣ କରିଥିଲେ । ସଂଖ୍ୟା ଦୃଷ୍ଟିରୁ ଏ ଯାବତ୍ ଆଠଜଣ ଭାରତୀୟ ମହିଳା ଏଭେରେଷ୍ଟ ଆରୋହଣ କରିଛନ୍ତି । ମହିଳାଙ୍କ ଏଭେରେଷ୍ଟ ଶୃଙ୍ଗ ଆରୋହଣ କ୍ଷେତ୍ରରେ ଭାରତ ରେକର୍ଡ଼ ସୃଷ୍ଟି କରିଛି ।

ଏହି ସବୁ ପରମ୍ପରାଚ୍ୟୁତ ଦୁଃସାହସିକ ଅଭିଯାନ ପରିଚାଳନା ମୂଳରେ ମୋର ମୁଖ୍ୟ ଉଦ୍ଦେଶ୍ୟ ଥିଲା ମହିଳାମାନଙ୍କ ମଧ୍ୟରେ ଥିବା ଅନ୍ତର୍ନିହିତ ଶକ୍ତିର ବହିପ୍ରକାଶ ଘଟାଇବା । ସେମାନଙ୍କୁ ଭିନ୍ନ ଏକ କ୍ଷେତ୍ରରେ ଏପରିକି ସବୁଠାରୁ ବିଷମ ପରିସ୍ଥିତିରେ ରଖି କାର୍ଯ୍ୟ ପରିଚାଳନା କରିବା ଓ ନେତୃତ୍ୱ ନେବା ଆଦି ଦିଗରେ ପୁରୋଭାଗରେ ରଖି ପ୍ରଦର୍ଶନ କରିବା ଥିଲା ମୋର ଲକ୍ଷ୍ୟ । ସେମାନେ ଯେକୌଣସି ପ୍ରତିଦ୍ୱନ୍ଦ୍ୱିତାର ସମ୍ମୁଖୀନ ହୋଇପାରନ୍ତି ଏବଂ ପ୍ରତିକୂଳ ଅବସ୍ଥାକୁ ଖୋଲାଆଡ଼ଭାବରେ ଗ୍ରହଣ କରିବା ସଙ୍ଗେ ସଙ୍ଗେ କଠିନ ପରିସ୍ଥିତିକୁ କୌଶଳ କ୍ରମେ ସମାଧାନ କରିବାସହିତ ଜନସାଧାରଣଙ୍କୁ ବିପଦ ସଂକୁଳ ଅବସ୍ଥାରେ ସଠିକ୍ ସମୟରେ ସମ୍ଭାଳି ପାରନ୍ତି ବୋଲି ଦେଖାଇବାଥିଲା ମୋର ଆନ୍ତରିକ ଇଚ୍ଛା । ଏହି ସବୁ କାର୍ଯ୍ୟ ଭିତର ଦେଇ ସେମାନଙ୍କ ମଧ୍ୟରେ ଥିବା ନାରୀଶକ୍ତିକୁ ଜାଗ୍ରତ କରାଇବା ମୋର ଲକ୍ଷ୍ୟ ଥିଲା ଯାହା ବାସ୍ତବରେ ତାଙ୍କ ଭିତରେ ରହିଛି ।

ମହିଳାମାନଙ୍କର କାର୍ଯ୍ୟ ଦକ୍ଷତା, ମର୍ଯ୍ୟାଦା ତଥା ଭାବମୂର୍ତ୍ତି ନିର୍ମାଣ କରିପାରେ ବୋଲି ମୁଁ ଦୃଢ଼ଭାବରେ ବିଶ୍ୱାସ କରେ। ଯଦି ନାରୀମାନଙ୍କୁ ଦୁର୍ବଳ ଭାବରେ ପ୍ରଦର୍ଶନ କରାଯାଏ ତେବେ ଏହାର ପରିମାଣ ଦେଶ ଉପରେ ପ୍ରତିଫଳିତ ହେବା ଅବଶ୍ୟମ୍ଭାବୀ । ଯଦି ନାରୀଜାତି ସୁସ୍ଥ, ସମ୍ମାନାସ୍ପଦ ଓ ସମୃଦ୍ଧି ସଂପନ୍ନ ହୋଇଥାଏ ତେବେ ଦେଶ ମଧ୍ୟ ସେହିପରି ହେବାସହିତ ଦ୍ରୁତ ପ୍ରଗତିଶୀଳ ହୁଏ । ଯେଉଁଠି ନାରୀମାନେ ଦାରିଦ୍ର୍ୟ ସୀମାରେଖା

ତଳେ ଶୋଷଣର ଶୀକାର ହୋଇ ଏକ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ବଞ୍ଚିବାରୁ ବଞ୍ଚିତ ସେଇଠି ସେମାନଙ୍କୁ ସୁଯୋଗ ଦେବା ଆଳରେ ଶୋଷଣ କରିବା କିମ୍ବା ସେମାନଙ୍କ ଅଣସଂଗଠିତ ପରିଶ୍ରମର ଉଚ୍ଚପ୍ରଶଂସା କରାଯିବା ଅନୁଚିତ ।

ଯୁବ ସଂପ୍ରଦାୟମଧ୍ୟରେ ଦୃଢ଼ତା, ସାହସ ଏବଂ ସାଧାରଣ ଜ୍ଞାନର ବୀଜ ବପନ କରି ସମାଜରେ ଏକ ନୂତନ ସାହସିକ, ରୋମାଞ୍ଚକର ସଂସ୍କୃତି ସୃଷ୍ଟି କରିବାର ସବୁପ୍ରକାର ସୁବିଧା ସୁଯୋଗ ମତେ ଯୋଗାଇଦେଲେ ଟାଟା ଇସ୍ପାତ କମ୍ପାନୀ । ପିଲାମାନେ ଭବିଷ୍ୟତର ଆଲୋକ ବର୍ତ୍ତିକା ସଦୃଶ । ତେଣୁ ମୁଁ ମୋର ସକଳ ପ୍ରଚେଷ୍ଟା ବିଶେଷଭାବେ ସେମାନଙ୍କ ବ୍ୟକ୍ତିତ୍ୱ ଓ ଚରିତ୍ରଗଠନ ଦିଗରେ ବିନିଯୋଗ କରୁଛି । ମୁଁ ଜଣେ ସଫଳ ବ୍ୟକ୍ତିବୋଲି ବ୍ୟକ୍ତିଗତଭାବେ ମନେକରେଁ । ମୋ କାର୍ଯ୍ୟରୁ, ମୁଁ ଯେଉଁ ଆନନ୍ଦ ପାଇଛି ତାକୁ ଖୁବ୍ ଆକର୍ଷଣୀୟ, ତାତ୍ପର୍ଯ୍ୟପୂର୍ଣ୍ଣ ଏବଂ ସମ୍ବେଦନଶୀଳ ମାର୍ଗରେ ଅନ୍ୟମାନଙ୍କ ସେବାରେ ବିନିଯୋଗ କରିପାରିଛି । ମୋ ମତରେ ବ୍ୟକ୍ତିତ୍ୱ ମୂଲ୍ୟାୟନର ଏହା ହିଁ ପ୍ରକୃତ ମାପକାଠି । ସେ ପ୍ରସଙ୍ଗରେ ଏହି ଉଦ୍ଧୃତିଟି ଦେଇପାରେଁ – ''ତୁମ ସଫଳତା ଦ୍ୱାରା ଅନ୍ୟମାନେ କେତେବେଶି ଉପକୃତ ହେଇଛନ୍ତି ତାହାହିଁ ତୁମର ପ୍ରକୃତ ମୂଲ୍ୟାୟନ ।''

ଶୁଭା ମୁଦ୍‌ଗଲ (ଜନ୍ମ-୧୯୫୯) ସମକାଳୀନ ଭାରତର ସୁପ୍ରସିଦ୍ଧ ହିନ୍ଦୁସ୍ଥାନୀ ଗାୟିକା ଏବଂ ସଙ୍ଗୀତକାରମାନଙ୍କ ମଧ୍ୟରୁ ଅନ୍ୟତମ । ଜଣେ ସଙ୍ଗୀତକାର ଭାବରେ ତାଙ୍କର ମଧ୍ୟଯୁଗୀୟ, ରହସ୍ୟବାଦୀ ଓ ସୁଫୀ କବିତା ସହିତ ବୈଷ୍ଣବ ପୁଷ୍ଟିମାର୍ଗୀ କବିଙ୍କର ଅଶ୍ରୁତ ବା ବିରଳ କବିତା ତଥା କବୀର, ନାମଦେବ, ଅମୀର ଖସ୍ରୁ ଓ ନାଥପନ୍ଥୀଙ୍କର ନିର୍ଗୁଣ କବିତା ଏବଂ ଅନ୍ୟ ସୁଫୀ କବିତାର ସଂଗ୍ରହ ରହିଛି । ତାଙ୍କ ସଙ୍ଗୀତ ରଚନାରେ ବହୁ ନର୍ତ୍ତକୀ (ଅଦିତି ମଙ୍ଗଳଦାସ, ପ୍ରେରଣା ଶ୍ରୀମାଲୀ, ସୋନାଲ ମାନସିଂହ), ନୃତ୍ୟ ନାଟିକା (ମୀରା, ପରିକ୍ରମା, କୃଷ୍ଣ କଥା), ବୃତ୍ତଚିତ୍ର, ଟେଲିଭିଜନ ଧାରାବାହିକ ଓ ସିନେମା (ମୀରା ନାୟାର୍‌ଙ୍କର କାମସୂତ୍ର : ଏ ଟେଲ୍ ଅଫ୍ ଲଭ୍ ଏବଂ ରାଜନ ଖୋସଲାଙ୍କର 'ଡ୍ୟାନ୍‌ସ ଅଫ ଦ ୱଇଣ୍ଡ') ଆଦି ରୂପ ପାଇଛି । ତାଙ୍କର ଲୋକପ୍ରିୟ ରଚନାଗୁଡ଼ିକ ସଙ୍ଗ୍‌ସ ଅଫ ଦ ସିଜିନ୍ସ (୧୯୯୨), ଅଲୀ ମୋରେ ଅଙ୍ଗନା (୧୯୯୬), ଅବ୍ କେ ସାୱନ୍ (୧୯୯୯), ମନ୍‌କେ ମଞ୍ଜୀରେ (୨୦୦୦) ଏବଂ ସୂର୍ଯ୍ୟ ଉପାସନା (୨୦୦୧) । ସେ ସୁର ସିଙ୍ଗାର ସଂସଦ ତରଫରୁ ସୁରମଣି ସମ୍ମାନ (୧୯୮୨), ଆଧାର ଶିଳା ସମ୍ମାନ (୧୯୯୬), ୩୪ତମ ଚିକାଗୋ ଅନ୍ତରାଷ୍ଟ୍ରୀୟ ଚଳଚ୍ଚିତ୍ର ଉତ୍ସବ (୧୯୯୮)ରେ ସଙ୍ଗୀତରେ ବିଶେଷ ପାରଦର୍ଶିତା ନିମନ୍ତେ ଗୋଲ୍ଡ ପ୍ଲେକ୍ ପୁରସ୍କାର ଏବଂ ଭାରତ ସରକାରଙ୍କଠାରୁ ପଦ୍ମଶ୍ରୀ ଉପାଧି (୨୦୦୦) ଲାଭ କରିଛନ୍ତି ।

## ୨୦

# ସଙ୍ଗୀତ ସର୍ଜନା

### ଶୁଭା ମୁଦ୍‌ଗଲ

ପ୍ରାୟ ଷାଠିଏ ବା ସତୁରୀ ବର୍ଷ ପୂର୍ବରୁ ମୋ ଆଇ ତାଙ୍କ ବାପାଙ୍କ ପାଖରେ ଭାରତୀୟ ସଙ୍ଗୀତ ଶିଖିବାର ପ୍ରବଳ ଇଚ୍ଛା ପ୍ରକାଶ କରିଥିଲେ । ୧୯୦୦ ମସିହାରେ ତାଙ୍କର ଜନ୍ମ । ତାଙ୍କର ଅତି ଉଦାର ପରିବାର ତାଙ୍କୁ ଅଧ୍ୟୟନ ପାଇଁ ପ୍ରୋତ୍ସାହିତ କଲା ଯାହା ଫଳରେ ସେ ସୁଶିକ୍ଷିତ ହେଇପାରିଲେ, ନିଜ ପସନ୍ଦରେ ବିବାହ କରି (ପ୍ରାପ୍ତ ବୟସର) ପରବର୍ତ୍ତୀ ଜୀବନରେ ଜଣେ ରୋଜଗାରକ୍ଷମ କର୍ମଜୀବୀ ମହିଳା ହୋଇପାରିଲେ । ମାତ୍ର ସଙ୍ଗୀତ ଶିକ୍ଷା କଥା ଉଠିବାବେଳକୁ ବହୁତ ଖୋସାମତ ଓ ଅନୁରୋଧପରେ ଯାଇ ତାଙ୍କ ବାପା ଜଣେ ମିଶନାରୀ ଶିକ୍ଷକଙ୍କଠାରୁ ପିଆନୋ ଶିଖିବା ବ୍ୟବସ୍ଥା କରିଦେଲେ । କାରଣ ସେ ସମୟରେ ଭାରତୀୟ ଶାସ୍ତ୍ରୀୟ ସଙ୍ଗୀତକୁ ସମ୍ଭ୍ରାନ୍ତ, ଭଦ୍ର ମହିଳାମାନଙ୍କ ନିମନ୍ତେ ଏକ ଉପଯୁକ୍ତ ସଉକ ବୋଲି ମନେ କରାଯାଉନଥିଲା । ତାଙ୍କ ବାପାଙ୍କୁ ଏକମତ କରାଇନପାରିବା ଯୋଗୁଁ ତାଙ୍କୁ ସ୍ୱାଧୀନ ଭାବରେ ବଞ୍ଚିବା ଓ ଆଲ୍‌ହାବାଦର କ୍ରାଷ୍ଟୱେଟ୍ କଲେଜରେ ଗଣିତ ଶିକ୍ଷକ ଭାବରେ କାମ କରିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିଲା । ତା'ପରେ ସେ ଭାରତୀୟ ଶାସ୍ତ୍ରୀୟ ସଙ୍ଗୀତର ଉଭୟ ଗାୟନ ଓ ବାଦନ ଶିଖିଲେ । ମୁଁ ତାଙ୍କୁ ପ୍ରକୃତରେ କେବେ ଗାଇବାର କି ବଜେଇବାର ଶୁଣିନି । ମାତ୍ର ମୋ ମା'ଙ୍କ ପାଖରେ ଗୋଟେ ପୁରୁଣା ଆଲବମ୍ ଅଛି – ଯେଉଁଥିରେ ଆଇଙ୍କର ସିତାର, ଦିଲ୍‌ରୁବା, ସାରଙ୍ଗି ଓ ଅନ୍ୟାନ୍ୟ ଭାରତୀୟ ବାଦ୍ୟଯନ୍ତ୍ର ସହିତ ବିଭିନ୍ନ ଭଙ୍ଗୀର ସୁନ୍ଦର ଫଟୋ ଅଛି । ବହୁତ ପରେ ସେ ସ୍ଥିର କଲେ ଯେ ତାଙ୍କର ତିନି ଝିଅଯାକ (ତାଙ୍କ ଭିତରେ ମୋ ମା'ବଡ଼) ଅଭିନୟ କଳା କ୍ଷେତ୍ରରେ ପ୍ରଚୁର ସୁଯୋଗ ପାଆନ୍ତୁ । ସେମାନଙ୍କୁ ଭାରତୀୟ ଶାସ୍ତ୍ରୀୟ ସଙ୍ଗୀତ ଓ ନୃତ୍ୟରେ ଶିକ୍ଷାଲାଭ କରିବାପାଇଁ ଉତ୍ସାହିତ କଲେ । ତାଙ୍କର ପ୍ରତ୍ୟେକ ଝିଅ ଭାରତୀୟ ଶାସ୍ତ୍ରୀୟ ସଙ୍ଗୀତ ଓ ନୃତ୍ୟରେ ନିପୁଣ ହେଲେ କିନ୍ତୁ ସେମାନେ ସମସ୍ତେ ବିଭିନ୍ନ ଶିକ୍ଷା ଅନୁଷ୍ଠାନରେ ଶିକ୍ଷାବୃତ୍ତିକୁ ଜୀବିକା ଭାବରେ ପସନ୍ଦ କଲେ । ଯଦିଓ ସେମାନେ ସଙ୍ଗୀତକୁ ସଉକ ଭାବରେ ଶିଖିବାକୁ ପ୍ରୋତ୍ସାହିତ ହୋଇଥିଲେ, ତଥାପି ମୋ ଆଇ ତାଙ୍କ ଝିଅଙ୍କର ସଙ୍ଗୀତକୁ ବୃତ୍ତିଭାବରେ ଗ୍ରହଣ କରିବାର ଇଚ୍ଛାକୁ ଅନୁମୋଦନ କରିନଥିବେ । ତାଙ୍କ ଜୀବିକା ନିର୍ବାଚନ ମୂଳରେ ଏହା ଏକ କାରଣ ଭାବରେ କାମ କରିଥିବା ସମ୍ଭବ ।

କେଇ ଦଶକ ପରେ ମୋ ମା' ମତେ ପରାମର୍ଶ ଦେଲେ ଯେ ମୁଁ ସ୍ନାତକ ହେବାପରେ ଗୋଟେ ବର୍ଷ ଛୁଟି ନେଇ ସଙ୍ଗୀତ ଶିଖେଁ । ତା'ପରେ ସଙ୍ଗୀତକୁ ପୂର୍ଣ୍ଣଭାବରେ ମୋର ବୃତ୍ତି ରୂପେ ଗ୍ରହଣ କରିବାକୁ ଚାହେଁ କି ନା ସେ ନିଷ୍ପତ୍ତି ନିଏଁ । ପ୍ରାୟ ମାସକ ଭିତରେ ମୁଁ ସିଦ୍ଧାନ୍ତ ନେଇଗଲି । ଏଥିରେ ମୋ ବାପା ମା'ଙ୍କର ପୂର୍ଣ୍ଣ ସହମତି ଓ ସମର୍ଥନ ଥିଲା । ଆମ ପରିବାରର ମୁଁ ପ୍ରଥମ ସଂପୂର୍ଣ୍ଣ ପେଶାଦାର ସଙ୍ଗୀତଜ୍ଞ ହେବାକୁ ବାହାରିଲି । ଗୋଟେ ସମୟ ଥିଲା ଯେତେବେଳେ ପରିବାରର ଅନୁମୋଦନ ପାଇଁ ଲଢ଼ି ମୋ ଆଈ ଅକ୍ଷମ ହୋଇଥିଲେ । ଅବଶ୍ୟ ଭାରତୀୟ ଶାସ୍ତ୍ରୀୟ ସଙ୍ଗୀତର ଗାୟକଙ୍କ ନାମରେ ଯେଉଁ ସାମାଜିକ ଅପବାଦ ଥିଲା ତା'ଯୋଗୁଁ ମୋ ଆଈଙ୍କୁ ତାଙ୍କ ବାପାଙ୍କଠୁଁ ଭାରତୀୟ ସଙ୍ଗୀତ ଶିଖିବା ପାଇଁ ଅନୁମତି ମିଳିନଥିଲା । ମାତ୍ର ଅର୍ଦ୍ଧଶତାବ୍ଦୀ ପରେ ମୁଁ କେବଳ ମୋ ପରିବାରର ସକ୍ରିୟ ସମର୍ଥନ ଏବଂ ପ୍ରୋତ୍ସାହନ ପାଇନଥିଲି ବରଂ ମୁଁ ଯଥେଷ୍ଟ ସୌଭାଗ୍ୟବତୀ ଯେ ମତେ ସମଗ୍ର ଦେଶର ସଙ୍ଗୀତପ୍ରେମୀଙ୍କଠାରୁ ସ୍ୱୀକୃତି ଓ ଶ୍ରଦ୍ଧା ମିଳିଛି ।

ଅତୀତରେ ଭାରତୀୟ ସଙ୍ଗୀତ କ୍ଷେତ୍ରରେ ମହିଳାମାନଙ୍କ ସଂପର୍କରେ ଯେମିତି ଏକ ଇତର ସ୍ତରର ଧାରଣା ଥିଲା ବୋଲି କୁହାଯାଇପାରେ । ପେଶାଦାର ମହିଳା ସଙ୍ଗୀତଜ୍ଞମାନଙ୍କ ପ୍ରତି ଅଧିକାଂଶ ସମୟରେ ପକ୍ଷପାତିତା ଆଚରଣ କରାଯାଇଥିବା ଦେଖାଯାଏ । ସଙ୍ଗୀତର ଛାତ୍ରମାନେ ପକ୍ଷପାତିତାର ଅନେକ ଦୃଷ୍ଟାନ୍ତ ପଢ଼ିଥିବେ ଯେପରି ଗୋଟେ ଅଞ୍ଚଳର ଜଣେ ବାସିନ୍ଦା ରାଜ୍ୟ ଅଧିକାରୀଙ୍କ ନିକଟରେ ପିଟିସନ୍ ଦେଇଥିଲେ ଯେ ତାଙ୍କ ପଡ଼ୋଶୀରେ ଜଣେ ତୱାଇଫଙ୍କୁ ଘର କିଣିବାର ଅନୁମତି ଦିଆନଯାଉ । କାରଣ ତା'ଦ୍ୱାରା ତାଙ୍କ ସାମାଜିକ ସମ୍ମାନ କ୍ଷୁଣ୍ଣ ହେବ । କେବଳ ଜନସାଧାରଣ ନୁହଁନ୍ତି ଶ୍ରେଷ୍ଠ ସଙ୍ଗୀତଜ୍ଞ ଓ ଗୁରୁମାନେ ବି ତୱାଇଫଙ୍କ ପ୍ରତି ଭେଦଭାବ ଦର୍ଶାନ୍ତି । ଏହା ବିଗତ ୫୦/୬୦ ବର୍ଷର କଥା ଯେତେବେଳେ କି ତୱାଇଫ ପରମ୍ପରାସହିତ ସଂଯୁକ୍ତ ମହିଳାଙ୍କ ବ୍ୟତୀତ ଅନ୍ୟ ମହିଳାମାନେ ଭାରତୀୟ ସଙ୍ଗୀତ ଅଧ୍ୟୟନ କରିବାକୁ ଉତ୍ସାହିତ କରାଗଲେ । ତଥାପି ମହିଳାମାନଙ୍କର ସଙ୍ଗୀତକୁ ବୃତ୍ତିଭାବରେ ଗ୍ରହଣ କରିବାକୁ ସାମାଜିକ ସ୍ୱୀକୃତି ଅନେକ ପରେ ମିଳିଲା । ଠୁମ୍ରୀର ସୁପ୍ରସିଦ୍ଧ ବ୍ୟାଖ୍ୟାକାର ଓ ଗାୟିକା ନୈନାଦେବୀଙ୍କର ମୁଁ ଶିଷ୍ୟା ଥିଲି । ସେ ଯେତେବେଳେ ଅଲ୍ ଇଣ୍ଡିଆ ରେଡ଼ିଓରେ ପେଶାଦାର ଭାବେ ଗାଇବା ଆରମ୍ଭ କଲେ ସେତେବେଳେ ସେ ଛଦ୍ମନାମ ଧାରଣ କଲେ । ସେ ତାଙ୍କ ସ୍ୱାମୀଙ୍କର ସଂଭ୍ରାନ୍ତ ପରିବାରକୁ ଅପମାନିତ ନ କରିବାପାଇଁ ତାଙ୍କ ପାରିବାରିକ ନାଁ ନିଲିନା ରିପ୍‌ଜିତ୍ ସିଂହ ବଦଳରେ ନୈନା ଦେବୀ ଗ୍ରହଣ କଲେ ।

ମୁଁ ନିଶ୍ଚିତ ଯେ ମୋ ବାପା, ମା ଯେତେବେଳେ ମୁଁ ସଙ୍ଗୀତକୁ ବୃତ୍ତି ଭାବେ ଗ୍ରହଣ କରେ ବୋଲି ମନସ୍ଥ କରି ଉତ୍ସାହିତ କଲେ ସେତେବେଳେ ମୋ ନିଜ ପୈତୃକ ସହରର ବହୁଲୋକ ଅବାକ୍ ଓ ଭୀତତ୍ରସ୍ତ ନ ହେଇ ଥିଲେ ବି କିଂକର୍ତ୍ତବ୍ୟବିମୂଢ଼ ହେଇ ଯାଇଥିବେ । ଆଲ୍‌ହାବାଦରେ ସେ ସମୟରେ ଜଣେ ଲୋକର ପିଲାର ସ୍କୁଲ ଶିକ୍ଷାର ପୂର୍ଣ୍ଣାଙ୍ଗ ପ୍ରାପ୍ତି ପାଇଁ

ସଙ୍ଗୀତ ଶିକ୍ଷା କରିବା ଏକ ପ୍ରଥା ସଦୃଶ ଥିଲା । କିନ୍ତୁ ଗୋଟେ କିଶୋରୀକୁ ସଙ୍ଗୀତକୁ ପେଶାଭାବରେ ଗ୍ରହଣ କରିବାକୁ ଅନୁମତି ଦେବା ପୁଣି ତା'ଠୁଁ ଖରାପ କଥା ତାକୁ ଉତ୍ସାହିତ କରିବା କେଉଁଠି ଶୁଣାନଥିଲା । ସାମାଜିକ ଅସ୍ୱୀକୃତି ଯୋଗୁଁ ମୋ ବାପା ମା କେବେବି ନିରାଶ ହେବାର କୌଣସି ଚିହ୍ନ ମୁଁ ଅବ୍ୟକ୍ତ ବା ଅନ୍ୟ କୌଣସି ଭାବରେ ଦେଖିଥିବା ମୋର ମନେପଡୁନି । ସଙ୍ଗୀତ ଶିକ୍ଷା କରିବାର କୋଡ଼ିଏ ବର୍ଷର ବହୁ ଦୁର୍ଗମତା ମଧ୍ୟରେ ଥରଟିଏ ବି କେବେ ସେମାନଙ୍କର ସମର୍ଥନ ଊଣା ହେଇନି ।

ଆଲ୍ହାବାଦରେ ଥିବା ସମୟରେ ହିଁ ଆଉରି ଅନେକ ଝିଅ ମୋ ସାଙ୍ଗରେ ସଙ୍ଗୀତ ଶିଖୁଥିଲେ । ସେମାନଙ୍କ ମଧ୍ୟରୁ ଅନେକଙ୍କର ଜଣେ ସୁଯୋଗ୍ୟ ଓ ସଫଳ ସଙ୍ଗୀତଜ୍ଞ ହେବାର ଜନ୍ମଗତ ଲକ୍ଷଣ ଓ ପ୍ରତିଭା ଥିଲା । ସେ ଯାହାହେଉ ତାଙ୍କ ଭିତରୁ ମାତ୍ର ଜଣେ ସଙ୍ଗୀତକୁ ପେଶାଭାବରେ ଗ୍ରହଣ କଲେ । ଅନ୍ୟମାନେ ଅପେକ୍ଷାକୃତ ଅଧିକ ପାରମ୍ପରିକ ଯଦିଓ ସମାନ ପରିମାଣରେ ମହତ୍ତ୍ୱପୂର୍ଣ୍ଣ ଗୃହିଣୀ ଭୂମିକା ଗ୍ରହଣ କରିବାକୁ ପସନ୍ଦ କଲେ ବା ଗ୍ରହଣ କରିବାକୁ ବାଧ୍ୟ ହେଲେ । ସେମାନେ ହୁଏତ ସେମାନଙ୍କ ପସନ୍ଦରେ ଖୁସିଥିବେ ଏବଂ ସେମାନେ ଏଥିଲାଗି ପସ୍ତଉଥିବେ ଭାବିବାଟା ମୋର ଧୃଷ୍ଟତା ହେବ । ମାତ୍ର ପ୍ରାୟତଃ ସଙ୍ଗୀତ ସମ୍ମିଳନୀ ପରେ ଜଣେ ଅଧେଙ୍କ ସହିତ ଆକସ୍ମିକ ଦେଖା ହେଇଯାଏ । ସେମାନେ ବଡ଼ ଉତ୍କଣ୍ଠାର ସହିତ ମତେ ଅଭିନନ୍ଦନ ଜଣାନ୍ତି । କହନ୍ତି – ଆମେ ତ ଘର ସଂସାରର ଜଞ୍ଜାଳ ଭିତରେ ଏମିତି ଫସିଯାଇଛୁ ଯେ ସଙ୍ଗୀତ ସାଧନା କରିବା ସମ୍ଭବ ହେଉନି, କିନ୍ତୁ ତୁମକୁ ଗାଇବାର ଦେଖିଲେ ଖୁସି ହେଇଯାଉଁ ।

ଭାରତୀୟ ସଙ୍ଗୀତ ଶିକ୍ଷାକୁ କୌଣସି ପାରମ୍ପରିକ ପାଠ୍ୟକ୍ରମ ମଧ୍ୟରେ ଆବଦ୍ଧ କରାଯାଇପାରେନା । ତେଣୁ ଏହା ଜୀବନବ୍ୟାପୀ ଶିଖିବାର ବିଦ୍ୟା ବା କଳା । ସଙ୍ଗୀତର ସମସ୍ତ ଛାତ୍ରଙ୍କପାଇଁ ସେ ପୁରୁଷ ହେଉ କି ନାରୀ, ସଙ୍ଗୀତ ଶିକ୍ଷା କେବଳ ତାଲିମ ମଧ୍ୟରେ ସୀମିତ ନୁହେଁ । ଏହା ଏପରି ଏକ ବିଦ୍ୟା ଯେଉଁଥିରେ ଛାତ୍ର ଧୀରେ ଧୀରେ ରାଗ ଓ ତାଳର ରହସ୍ୟ ଭେଦକରେ । ଠିକ୍ ଯେମିତି ସାପ ଓ ନିଶୁଣି ଖେଳରେ ଖୁବ୍ ଆସ୍ତେ ଜାଣିବାକୁ ନଦେଇ ନିଶବ୍ଦରେ ବର୍ତ୍ତମାନ ଉନ୍ନତିର ଶିଖରକୁ ଉଠିଲଣିତ ଅପ୍ରତ୍ୟାଶିତ ଓ ଦୟନୀୟ ଭାବେ ତଳକୁ ଖସିଲଣି । ତାଲିମ କାଳରେ ଭାରତୀୟ ସଙ୍ଗୀତ ସାମ୍ରାଜ୍ୟରେ ଆଧିପତ୍ୟ ସ୍ଥାପନ କରିଥିବା ପ୍ରଥା, ପରମ୍ପରା, ଶିଷ୍ଟାଚାର ତଥା ଅଲିଖିତ ପ୍ରୋଟୋକଲ୍ ଶିଖିବାକୁ ହୁଏ । ଅଧିକନ୍ତୁ ମହିଳାମାନଙ୍କ ଉପରେ କିଛି ଅତିରିକ୍ତ ବିଷୟ ଲଦିଦିଆଯାଏ ଯାହାଫଳରେ କେତେ ଜଣଙ୍କର ଭ୍ରାନ୍ତି ଦୂର ହେଇଯାଇ ତାଙ୍କ ଜୀବନରେ ଘୋର ହତାଶ ବା ନୈରାଶ୍ୟ ସୃଷ୍ଟି କରେ । ଗୁରୁ-ଶିଷ୍ୟ ପରମ୍ପରା ଅନୁସାରେ ଜଣେ ଶିଷ୍ୟକୁ ବ୍ୟକ୍ତିଗତଭାବେ ଜଣେ ଗୁରୁଙ୍କ ପାଖରୁ ଦୀର୍ଘକାଳ ଅନେକ ସମୟରେ ସାରାଜୀବନ ଶିଖିବାକୁ ହୋଇଥାଏ । ଗୁରୁଙ୍କ ବର୍ଦ୍ଧିତ ପରିବାରର ଜଣେ ସଦସ୍ୟ ଭାବେ ସେଠାରେ ରହିବାକୁ ପଡ଼େ । ବିଦ୍ୟାର ପ୍ରତିଦାନରେ ଗୁରୁଦକ୍ଷିଣା ସ୍ୱରୂପ ଛାତ୍ରଙ୍କଠାରୁ ଆନୁଗତ୍ୟ ଓ ସେବା ଚିରକାଳ ଆଶା

କରାଯାଏ । ଏହା ଏକ ଅତି ଘନିଷ୍ଠ ଅନ୍ତରଙ୍ଗ ସଂପର୍କ ଯାହା ସମୟେ ସମୟେ ଭୟଙ୍କର ଅନ୍ତରଙ୍ଗତାରେ ପରିଣତ ହେଇଯାଏ । ଏବଂ ଏହା ମହିଳା ଶିଷ୍ୟ ବା ଛାତ୍ରୀମାନଙ୍କ ପାଇଁ ଅନେକ ଥର ଗୋଟେ ଭୀଷଣ ଆଘାତରେ ପରିଣତ ହୁଏ । ଆମ ସଂସ୍କୃତିରେ ଯେଉଁଠି ଗୁରୁ-ଶିଷ୍ୟ ପରମ୍ପରାକୁ ପବିତ୍ର ଜ୍ଞାନ କରାଯାଏ । ତେଣୁ ସେଠି ଏକଥା ପ୍ରକାଶ କରିବା ଅପମାନଜନକ, ଅଧର୍ମ ହେବ ଯେ ଗୁରୁମାନେ ଶିଷ୍ୟମାନଙ୍କର ଶୋଷଣ କରିବାପରି ଅଧମ କାର୍ଯ୍ୟ ମଧ୍ୟ କରିପାରନ୍ତି । ଗୁରୁମାନଙ୍କର ଏପରି ସ୍ଖଳନ ସଂପର୍କରେ ଫୁସଫାସ ହୁଅନ୍ତି, ମାତ୍ର ସର୍ବସାଧାରଣରେ ହଟଚମଟ ହେବା ଭୟରେ କ୍ୱଚିତ କେହି ଖୋଲାଖୋଲି କହନ୍ତି । ମାତ୍ର ଆମେମାନେ ଜାଣନ୍ତି ଯେ ଭାରତୀୟ ସଙ୍ଗୀତ କ୍ଷେତ୍ରରେ ମହିଳାମାନେ ଯାହାଙ୍କୁ ଗୁରୁ ରୂପେ ଦେଖି ଆସିଛନ୍ତି ପିତୃତୁଲ୍ୟ ଶ୍ରଦ୍ଧା ଓ ସମ୍ମାନ ଜଣାଇ ଆସିଛନ୍ତି ସେମାନଙ୍କୁ ପଶୁରେ ପରିଣତ ହେବାର, ଦୁର୍ବଳ ମୁହୂର୍ତ୍ତରେ ଯୌନ ଶୋଷଣ କରିବାର ମାନସିକ ଆଘାତ ଓ ଅତ୍ୟାଚାରକୁ ସହ୍ୟ କରିଛନ୍ତି । ଏହା ଗୋଟିଏ ଦୃଷ୍ଟିରୁ ବାଳ ଯୌନ ନିର୍ଯ୍ୟାତନା ସଦୃଶ ଭୀଷଣ ଘୃଣ୍ୟ ଓ ଭୟଙ୍କର । ବାଳଯୌନ ନିର୍ଯ୍ୟାତନାପରି ସମାଜ ଏହାକୁ ବି ଘଣ୍ଟ ଘୋଡ଼େଇ ଦିଏ । ମୁଁ ବହୁ ଭାବିଚିନ୍ତି ଏ ବିଷୟକୁ ମୋ ଲେଖା ଅନ୍ତର୍ଭୁକ୍ତ କରିଛି । ମୋର ଏଇ ବିଶ୍ୱାସ ଯେ ମୋର ନିର୍ଭୀକ ଓ ସ୍ୱଷ୍ଟୋକ୍ତିକୁ ଚାଞ୍ଚଲ୍ୟ ସୃଷ୍ଟିକରିବାର ଇଚ୍ଛା ବୋଲି ବ୍ୟାଖ୍ୟା କରାଯିବ ନାହିଁ । ମହିଳା ସଙ୍ଗୀତଜ୍ଞମାନଙ୍କର ସ୍ଥିତି ଯେତେ ଅସୁରକ୍ଷିତ ହେଉନା କାହିଁକି ଏ ଶୋଷଣରୁ ନିଜକୁ ରକ୍ଷା କରିବାର ଚାଲେଞ୍ଜ ସେମାନେ ନେବା ଉଚିତ୍ ।

ନାରୀ ଜୀବନରେ ମାତୃତ୍ୱ ସର୍ବାଧିକ ତାତ୍ପର୍ଯ୍ୟପୂର୍ଣ୍ଣ ଘଟଣା । ଏହା ଗଭୀରଭାବେ ପୂର୍ଣ୍ଣତା ଆଣିଦିଏ ଓ ଅଦ୍‌ଭୁତ ଭାବେ ତୃପ୍ତିଦାୟକ ଯାହାକୁ ବର୍ଣ୍ଣନା କରିବାପାଇଁ ମୋର ଭାଷାଜ୍ଞାନ ସୀମିତ । ଏହା ସହିତ ଏକ ଶାରୀରିକ ଓ ମାନସିକ ପରିବର୍ତ୍ତନ ମଧ୍ୟ ଘଟେ । ଯାହାକୁ ସମ୍ଭାଳିବା କଷ୍ଟକର । ମୋର ଏକମାତ୍ର ପୁତ୍ର ଧବଳର ଜନ୍ମ ୧୯୮୪ ମସିହା ଜୁନ୍ ମାସରେ । ମୁଁ ସେଇବର୍ଷ ଫେବୃୟାରୀ-ମାର୍ଚ୍ଚ ପର୍ଯ୍ୟନ୍ତ କେବେ କେମିତି ସଙ୍ଗୀତ ପରିବେଷଣ କରୁଥିଲି । ତା'ପରେ ମୁଁ ମୋ ବାପାମାଙ୍କ ଘରର ଯତ୍ନ ଓ ଆରାମର ବଳୟ ଭିତରକୁ ଗଲି, ଯେଉଁଠି ମୋ ପୁଅର ଜନ୍ମ । ତା'ଜନ୍ମ ପରେ ପରେ ହିଁ ମୋ ବାପା ମା' ମୋ ରିଆଜ ପାଇଁ ସବୁପ୍ରକାର ବ୍ୟବସ୍ଥା କରିଦେଲେ । ପରେ ସଙ୍ଗୀତ ପରିବେଷଣ କାର୍ଯ୍ୟକ୍ରମରେ ଉପସ୍ଥିତ ରହିଲେ ସେମାନେ ପୁଅର ଦେଖାଶୁଣା କଲେ । ଧବଳ ଜନ୍ମ ହେବାର ମାତ୍ର ୬ ମାସ ପରେ ମୁଁ ସଙ୍ଗୀତ ପରିବେଷଣ ବୃତ୍ତିରେ ପୁନର୍ବାର ଲାଗି ପଡ଼ିଲି । ମୋ ଭିତରେ କୌଣସି ଅପରାଧବୋଧ କିମ୍ବା ମନରେ କୌଣସି ଦୁଶ୍ଚିନ୍ତା ନଥିଲା । କାରଣ ମୁଁ ଭଲଭାବରେ ଜାଣିଥିଲି ସେ ତା'ଅଜା ଆଈଙ୍କର ସ୍ନେହ ଓ ଯତ୍ନ ଭିତରେ ରହିଛି । କିନ୍ତୁ ସବୁ ମହିଳା ସଙ୍ଗୀତଜ୍ଞଙ୍କ ଏପରି ସୌଭାଗ୍ୟ ନଥାଏ । ଦେଶର ଜଣେ ପ୍ରସିଦ୍ଧ ନାୟିକାଙ୍କ ଉପରେ ନିର୍ମିତ ବୃତ୍ତଚିତ୍ରରେ ସେ ୪ ଦିନର ଶିଶୁକୁ ଛାଡ଼ି ସମବେତ ନୃତ୍ୟ ପରିବେଷଣ

ନିମିତ୍ତ ଯିବା କଥା ମନେ ପକେଇ କଇଁ କଇଁ ହେଇ କାନ୍ଦିବାର ଦେଖାଇଲା । କାରଣ ବିଶ୍ରାମ ଓ ନଷ୍ଟସ୍ୱାସ୍ଥ୍ୟ ଫେରି ପାଇବାପରି ବିଳାସପାଇଁ ତାଙ୍କର ସାମର୍ଥ୍ୟ ନଥିଲା । ସେ ଥିଲେ ଏକ ବିରାଟ ପରିବାରର ଉପାର୍ଜ୍ଜନକ୍ଷମ ଏକମାତ୍ର ବ୍ୟକ୍ତି । ଆଗାମୀ ମାସରେ ସମସ୍ତଙ୍କ ପାଇଁ ଭୋଜନ ଚିନ୍ତା ବଡ଼, ତେଣୁ ତା ଜନ୍ମରେ କୌଣସି ଉତ୍ସବ ବି ହୋଇନଥିଲା । ଯା ମାନେ ତାଙ୍କର ତତ୍‌କ୍ଷଣାତ୍ କାମକୁ ଫେରିଯିବା କଥା । ମୁଁ କେବେ ବି ବୃତ୍ତଚିତ୍ରର ସେ ମୁହୂର୍ତ୍ତକୁ ଭୁଲିପାରେନି । ମୋ ମାତୃତ୍ୱ ସମୟର ସ୍ମୃତି ଠିକ୍ ବିପରୀତ । ଉତ୍ସବ ଅନୁଷ୍ଠାନ, ଅଭିନନ୍ଦନ-ଉପହାର, ମୋ ପ୍ରତି ସଦିଚ୍ଛା ଥିବା ପରିବାରର ଲୋକମାନଙ୍କର ବିଶ୍ରାମ ଓ ଆରାମ ନେବା ପାଇଁ ପରାମର୍ଶ ସହିତ ମୋ ଆରୋଗ୍ୟ ଲାଭ ଉଦ୍ଦେଶ୍ୟରେ ଆଈଙ୍କର ଅପର୍ଯ୍ୟାପ୍ତ ଓ ବିଶେଷ ଭାବେ ନିର୍ମିତ ଲଡ଼ୁ ପଠେଇବା ମନେପଡ଼େ ।

ଅନ୍ୟ ମହିଳା ସଙ୍ଗୀତଜ୍ଞମାନେ ଯେତେବେଳପର୍ଯ୍ୟନ୍ତ ତାଙ୍କ ପିଲା ବଡ଼ ହେଇ ବସାରୁ ଉଡ଼ିବା ଶିଖିନାହାନ୍ତି ସେତେଦିନ ପର୍ଯ୍ୟନ୍ତ ସଙ୍ଗୀତ ସାଧନାକୁ ପଛ କରିଦେବାଟା ଉଚିତ୍ ମନେ କରିଛନ୍ତି । ପିଲାମାନଙ୍କୁ ପାଳିପୋଷି ବଡ଼ କରିବାର ଦାୟିତ୍ୱ ମାଙ୍କ ଉପରେ ନ୍ୟସ୍ତ, ସେଥିପାଇଁ ଯଦି ତାଙ୍କୁ ତାଙ୍କ କ୍ୟାରିଅର୍ ଓ ରୁଚିକୁ ବଳି ଦେବାକୁ ପଡ଼େ, ପଡୁ । ଜଣେ ବାପାଠୁଁ ତା'ପରିବାର ଭରଣପୋଷଣ ଦାୟିତ୍ୱ ନେବା ଆଶା କରାଯାଏ, ମାତ୍ର ମାଠୁଁ ତାର ସର୍ବସ୍ୱ ତ୍ୟାଗକରି ପିଲାଙ୍କୁ ବଡ଼ କରିବା ଆବଶ୍ୟକ ମନେକରାଯାଏ । ଜଣେ ମହିଳାଠୁଁ ନିଶ୍ଚିତ ଭାବେ ଏହା ଆଶା କରାଯାଏନି ଯେ ସେ ଦୀର୍ଘ ସମୟ ପର୍ଯ୍ୟନ୍ତ ତାନ୍‌ପୁରା ଟ୍ୟୁନିଙ୍ଗ୍ କରିବେ, ସମସ୍ତ ପ୍ରକାର ଆଳାପ ଓ ତାନ ଅଭ୍ୟାସ କରିବେ, ସଙ୍ଗୀତ ପୁସ୍ତକ ପଢ଼ିବେ, ଆଉ ସବୁଠୁଁ ଖରାପ କଥା ହେଲା ଯେ ଦୂରସ୍ଥାନମାନଙ୍କୁ ଯାଇ ଗୀତ ଗାଇବେ, ତାଙ୍କପିଲା ଓ ପରିବାରର ଅନ୍ୟ ସଦସ୍ୟମାନଙ୍କୁ ନିଜେ ନିଜ ବ୍ୟବସ୍ଥା କରିବାପାଇଁ ଛାଡ଼ି ଚାଲିଯିବେ । ପ୍ରତ୍ୟେକଦିନ, ସପ୍ତାହର ୫/୬ଦିନ ଯାକ ଘରଛାଡ଼ି କାମକୁ ଯାଉଥିବା ବାପାଙ୍କୁ କେହି ପଚାରିବାର ଶୁଣିନି ଯେ ତାଙ୍କ ଅନୁପସ୍ଥିତିରେ ତାଙ୍କ ପିଲାଙ୍କର କ'ଣ ହେବ ? ଜଣେ ବାପା ତା' ଅନୁପସ୍ଥିତିରେ ପିଲାଙ୍କୁ ପାଳିପାରେ, ମା ନୁହଁ ? ମୋର ସଙ୍ଗୀତକୁ ପୋଶା ଭାବରେ ଗ୍ରହଣ କରିବାର ବହୁବର୍ଷ ମଧ୍ୟରେ ମତେ ସବୁବେଳେ ପଚରାଯାଇଛି ଯେ ମୁଁ କିପରି ଜଣେ ମା'ର ଦାୟିତ୍ୱ ଓ ସଙ୍ଗୀତ ବୃତ୍ତିପ୍ରତି ଥିବା ଦାୟିତ୍ୱ ପାଳନ କରିବାରେ ସମର୍ଥ ହେଉଛି । ଆଶ୍ଚର୍ଯ୍ୟ କଥା ଯେ ପ୍ରଶ୍ନକର୍ତ୍ତାମାନେ ସବୁବେଳେ ପ୍ରାୟ ମହିଳା ଆଉ ତାଙ୍କ ପ୍ରଶ୍ନକୁ ଚାହିଁ ମୋ ଉତ୍ତର (କହେ ମୋ ପୁଅ ତା'ବାପାର ହେପାଜତରେ ଆରାମରେ ଅଛି) ତାଙ୍କୁ ଅବାକ୍ କରିଦିଏ । ଆରମ୍ଭର କୌତୂହଳ ସ୍ଥାନରେ ଦେଖାଦିଏ ସନ୍ଦେହ ଓ ବୈରତା । ତାଙ୍କ ଚାହାଁଣିରେ ଫୁଟିଉଠେ ଯେ ମୁଁ ଗୋଟେ ଖରାପ ମା । ପରମ୍ପରା ଓ ପ୍ରଚଳିତ ପ୍ରଥା ବିରୋଧରେ ଯିବା କେବେ ବି ସହଜ କଥା ନୁହେଁ, ସମାଜର ଚାପ ଆଗରେ ବଶ୍ୟତା ସ୍ୱୀକାର କରିବା ସ୍ୱାଭାବିକ । ସଙ୍ଗୀତର ନିଶା ଏବଂ ମୋ ପରିବାରର ସମର୍ଥନ ମୁଁ ବାଛିଥିବା ରାସ୍ତାରେ ଚାଲିବାରେ ମତେ ଚାଲିବାକୁ ସାହାଯ୍ୟ କରିଛି । ମୋ ପୁଅ ସ୍ଥିର କରୁ ଯେ ପ୍ରକୃତରେ ମୁଁ ଗୋଟେ ଖରାପ ଓ ଉଦାସୀନ ମା କି ନୁହେଁ ।

ମୋ ଆଈ ସମୟଠାରୁ ଭାରତର ମହିଳା ସଙ୍ଗୀତଜ୍ଞମାନେ ଅନେକ ରାସ୍ତା ଆଗେଇଯାଇଛନ୍ତି । ମାତ୍ର ଆଜିବି ସେ ପଥରେ କଳଙ୍କ, ଅନ୍ଧବିଶ୍ୱାସ ଓ ପକ୍ଷପାତିତାର ଦାଗ ଦେଖାଯାଇପାରେ, ସେଥିପାଇଁ ବେଶି ଦୂରକୁ ଯିବାକୁ ପଡ଼ିବନି । ବଲିଉଡ୍, ତଓ୍ୱାଇଫ୍ ପରମ୍ପରାର ସିନେମା ସଂସ୍କରଣ ପରିବେଷଣ କରିବାରେ ଲାଗିଛି, ଯେଉଁଥିରେ ସାଧାରଣତଃ ଉଚ୍ଚାଟନ ମୂଳକ ନୃତ୍ୟ-ଗୀତ ମାଧ୍ୟମରେ ତଓ୍ୱାଇଫମାନଙ୍କୁ ଚତୁର, ଲୋଭୀ, ଧୂର୍ତ୍ତ ମହିଳାଭାବରେ ପ୍ରଦର୍ଶିତ କରାଯାଇଥାଏ, ଯେଉଁମାନେ ସଂଭ୍ରାନ୍ତ ପୁରୁଷମାନଙ୍କୁ ତାଙ୍କର ବୈବାହିକ ଜୀବନଠୁଁ ଦୂରେଇ ଦିଅନ୍ତି । ଶାସ୍ତ୍ରୀୟ ସଙ୍ଗୀତ ଜଗତରେ ଆଜିବି ତଓ୍ୱାଇଫ୍ ପରମ୍ପରାର ମହିଳାମାନଙ୍କୁ ସଙ୍ଗୀତ ପ୍ରେମୀମାନେ ସମ୍ମାନ ଦିଅନ୍ତି ଓ ଗଭୀର ଶ୍ରଦ୍ଧା ଜ୍ଞାପନ କରନ୍ତି; ମାତ୍ର ସେମାନେ ସମସ୍ତେ ପ୍ରାୟ ଏ ପରମ୍ପରାସହିତ ସେମାନଙ୍କର ସଂପର୍କକୁ ଅସ୍ୱୀକାର କରନ୍ତି । ସେମାନଙ୍କ ମଧ୍ୟରୁ କେତେକ ଅପ୍‌ସରାମାନଙ୍କର ବଂଶଧର ବୋଲି କହନ୍ତି (ସ୍ୱର୍ଗର ପୌରାଣିକ ଗାୟିକା ଓ ନର୍ତ୍ତକୀ) । ଅନ୍ୟମାନେ ନିଜ ଅତୀତକୁ ଘୋଡ଼େଇ ପକାନ୍ତି ଅଥବା ନିଜ ପାଇଁ ଗୋଟେ ସଂଭ୍ରାନ୍ତ ପରିବାରର ଇତିହାସ ମନରୁ ଫାନ୍ଦିପକେଇ କହନ୍ତି । ଯେଉଁମାନେ ସଙ୍ଗୀତର ଏ ପରମ୍ପରାକୁ ଭବିଷ୍ୟତ ସମାଜପାଇଁ ଜୀବିତ ରଖିଲେ ସେହି ତଓ୍ୱାଇଫ ପରମ୍ପରାର ଅଦ୍‌ଭୁତ ପ୍ରତିଭାଶାଳୀ ମହିଳାମାନଙ୍କୁ ଶ୍ରଦ୍ଧାଞ୍ଜଳି ଦେବାପରିବର୍ତ୍ତେ ଅନ୍ୟାୟ, ଭ୍ରାନ୍ତ ଧାରଣା ଏବଂ ତୁଚ୍ଛ କୁସଂସ୍କାରର ବାଧବାଧକତାରେ ସେମାନଙ୍କର ବଂଶଧରମାନେ ତାଙ୍କର ଅତୀତକୁ ଭୁଲିବାର ପ୍ରୟାସ କରୁଛନ୍ତି ।

ମୋର ନିଜ ଅଭିଜ୍ଞତାରୁ ମୁଁ କହିପାରେଁ ଯେ ମୋ କାନ୍ଧ ପଦ୍ମଶ୍ରୀ ସମ୍ମାନ ଦ୍ୱାରା ସୁଶୋଭିତ, ହେଲେ ମଧ୍ୟ ଦିଲ୍ଲୀର ଆବାସିକ ଇଲାକାରେ ଘରଭଡ଼ା ନେବାକୁ ଗଲାବେଳେ ମୋର ବିଶ୍ୱସନୀୟତାର ପ୍ରମାଣ ଦେବା କଷ୍ଟସାଧ୍ୟ ଥିଲା, ଯଦିଓ ଦିଲ୍ଲୀରେ ବିଗତ ୧୯ବର୍ଷ ଧରି ମୋର ଘର । ଅବଶ୍ୟ ଏହା ଅସ୍ୱୀକାର କରାଯାଇପାରିବନି ଯେ ଜଣେ ପୁରୁଷ ସଙ୍ଗୀତଜ୍ଞଙ୍କ ପକ୍ଷରେ ମଧ୍ୟ ଦିଲ୍ଲୀର ସନ୍ଦେହୀ ଘରମାଲିକ ଆଗରେ ନିଜର ବିଶ୍ୱସନୀୟତାର ପ୍ରମାଣ ଦେବା ବି କଠିନ । ଏଠିତ 'କମ୍ପାନୀ ଲିଜ୍' କୌଣସି ବ୍ୟକ୍ତିର ବିଶ୍ୱସନୀୟତାର ପ୍ରମାଣପତ୍ର । ତୁମେ ଯଦି ଜଣେ ମହିଳା ହେଇଥିବ, ପେଶାରେ ପୁଣି ଚାକିରି ତାହେଲେ ତୁମର ବିଶ୍ୱାସନୀୟ ପରିସର ଦିଗଟି ଶୂନ୍ୟ । ତେବେ ଦିଲ୍ଲୀର ଘରମାଲିକମାନେ ଯେ କେବଳ ମହିଳା ସଙ୍ଗୀତଜ୍ଞଙ୍କୁ ସନ୍ଦେହ କରନ୍ତି ତା'ନୁହେଁ । ବିଶେଷଭାବରେ ଯେଉଁ ମହିଳା ସଙ୍ଗୀତଜ୍ଞମାନେ ତାଙ୍କ ଅଧିକାର ଲଙ୍ଘନହେଲେ ସ୍ୱର ଉତ୍ତୋଳନ କରନ୍ତି ସେମାନେ ବିବାଦୀୟ ଓ ଉଗ୍ର ପ୍ରକୃତିର ବୋଲି ଆଖ୍ୟାୟିତ ହେବାର ବିପଦର ସମ୍ମୁଖୀନ ହୁଅନ୍ତି । କେତେବର୍ଷତଳେ କପିରାଇଟ୍‌କୁ ନେଇ ହେଇଥିବା ବିବାଦ ସଂପର୍କରେ ଗୋଟିଏ ସମ୍ବାଦପତ୍ର ଲେଖିଥିଲା ଯେ ମୋ ନାଁର ମଧ୍ୟଭାଗ 'ବିବାଦସ୍ପଦ' । ଭାରତୀୟ ସଙ୍ଗୀତର ବହୁଧା ବିଭକ୍ତ ଜଗତରେ ସାଥୀ ସଙ୍ଗୀତଜ୍ଞ, ତଥା ଭାରତୀୟ ସଙ୍ଗୀତର ଆୟୋଜକ ଓ ପ୍ରୋତ୍ସାହକଗଣ ମତେ ସନ୍ଦେହ ଦୃଷ୍ଟିରେ ଦେଖିଥିବେ । କାରଣ ଅତି ସହଜ, ମୁଁ ମୋ ଅଧିକାର ପାଇଁ ସ୍ୱର ଉତ୍ତୋଳନ କରିବାର ସିଦ୍ଧାନ୍ତ ନେଲି । ମୁଁ ଯଦି ଜଣେ ପୁରୁଷ ହେଇଥାନ୍ତି ତେବେ ମୋର

ପ୍ରୟାସ ପାଇଁ ମତେ ପ୍ରଶଂସା କରାଯାଇଥାନ୍ତା । ମାତ୍ର ମହିଳା ହୋଇଥିବାରୁ ଏପ୍ରକାର କାର୍ଯ୍ୟକୁ ସନ୍ଦେହ ଦୃଷ୍ଟିରେ ଦେଖାଗଲା । ଏବଂ ବିଚାର କରାଗଲା, ମୁଁ କଳହପ୍ରିୟ ଓ ମୋର ନାରୀ ସୁଲଭ ଗୁଣନାହିଁ । ପ୍ରକୃତରେ କଳାକାରଙ୍କ ଅଧିକାର ବିଷୟ ଲିଙ୍ଗ ପ୍ରଶ୍ନର ଊର୍ଦ୍ଧ୍ୱରେ । ଏହା ପୁରୁଷ ବା ମହିଳା ସଙ୍ଗୀତଜ୍ଞ ପାଇଁ ସମାନଭାବେ ତାତ୍ପର୍ଯ୍ୟପୂର୍ଣ୍ଣ । ତେଣୁ ଏହା ନାରୀ ସୁଲଭ ହେଉ ବା ନହେଉ ସମର୍ଥିତ ହେବା ଆବଶ୍ୟକ ।

ମୁଁ ଆଉରି ମଧ୍ୟ କହିପାରେଁ ଯେ ଜଣେ ସଙ୍ଗୀତଜ୍ଞର ଜୀବନ ସେ ପୁରୁଷ ହେଉ କି ନାରୀ ହେଉ ରୋମାଞ୍ଚକର, ଚାଲେଞ୍ଜଯୁକ୍ତ, ଚାହିଦାଯୁକ୍ତ, ବହୁନୂତନ ତଥ୍ୟଯୁକ୍ତ ଏହା ଅନେକଙ୍କ ପାଇଁ ଆତ୍ମ ତୃପ୍ତିଦାୟକ ହୋଇପାରେ ଯେମିତି, ସେମିତି କେତେକଙ୍କ ପାଇଁ ଭୟଙ୍କର ବା ଗଭୀର ନୈରାଶ୍ୟଜନକ ବି ହେଇପାରେ । ଏହି ଲେଖାଟି ଭାରତର ମହିଳା ସଙ୍ଗୀତଜ୍ଞ ସମ୍ମୁଖୀନ ହେଉଥିବା ଚାଲେଞ୍ଜମଧ୍ୟରୁ କେତୋଟି ମଧ୍ୟରେ ସୀମିତ । ଆଉରି ବହୁବିଧ ଚାଲେଞ୍ଜ ରହିଛି ଯାହାର ସମ୍ମୁଖୀନ ପୁରୁଷ ଓ ମହିଳା ସଙ୍ଗୀତଜ୍ଞ ଉଭୟ ହେଉଛନ୍ତି । ତେଣୁ ମୋ କହିବାର ତାତ୍ପର୍ଯ୍ୟ ଆଦୌ ଏହା ନୁହେଁ ଯେ ପୁରୁଷମାନଙ୍କ ଅପେକ୍ଷା ମହିଳାମାନଙ୍କ ପାଇଁ ଭାରତୀୟ ସଙ୍ଗୀତ କ୍ଷେତ୍ର ଅଧିକ ଚାଲେଞ୍ଜପୂର୍ଣ୍ଣ ।

କର୍ଣ୍ଣମ ମାଲ୍ଲେଶ୍ୱରୀ (ଜନ୍ମ-୧୯୭୫) ଅନ୍ତଃରାଷ୍ଟ୍ରୀୟ ଭାରଉତ୍ତୋଳକ ଚମ୍ପିୟାନ୍ ପଦର ସମ୍ମାନ ପ୍ରାପ୍ତ ମହିଳା । ତାଙ୍କ ନାମ ମହିଳା ଭାରଉତ୍ତୋଳନର ସମାର୍ଥକ ଶବ୍ଦରେ ପରିଣତ ହୋଇଛି । ସେ ୧୯୯୦ରୁ ମାତ୍ର ୧୫ବର୍ଷ ବୟସରୁ ସ୍ୱର୍ଣ୍ଣପଦକ ଜିତି ଆସୁଛନ୍ତି । ଯା ମଧ୍ୟରେ ସେ ୨୫ଟି ରାଷ୍ଟ୍ରୀୟ ଓ ଅନ୍ତଃରାଷ୍ଟ୍ରୀୟ ସ୍ୱର୍ଣ୍ଣପଦକ ଜିତି ସାରିଛନ୍ତି । ଏହା ସହିତ ସେ ବିଶ୍ୱଚମ୍ପିୟାନ୍‌ସିପ୍‌ରେ ବହୁ ସ୍ୱର୍ଣ୍ଣ, ରୌପ୍ୟ ଏବଂ ବ୍ରୋଞ୍ଜ ପଦକ, ଏସୀୟ କ୍ରୀଡ଼ାରେ ରୌପ୍ୟ ପଦକ; ଏବଂ ରାଷ୍ଟ୍ରୀୟ ଚମ୍ପିଆନ୍‌ସିପ୍‌ରେ ଅସଂଖ୍ୟ ସିନିଅର୍ ଓ ଜୁନିଅର୍ ପଦକ ଜିତିଛନ୍ତି । ମାଲ୍ଲେଶ୍ୱରୀ ୧୯୯୮ରେ ପଦ୍ମଶ୍ରୀ ସମ୍ମାନ; ୧୯୯୬ରେ ରାଜୀବ ଗାନ୍ଧୀ ଖେଳ ରତ୍ନ ପୁରସ୍କାର; ୧୯୯୬ରେ ଶିରୋମଣି ପୁରସ୍କାର, ୧୯୯୪ରେ ଅର୍ଜୁନ ପୁରସ୍କାର ଲାଭ କରିଛନ୍ତି । ସେ ୨୦୦୦ ମସିହାରେ ଅଲମ୍ପିକ ଖେଳରେ ପଦକ ଜିତିଥିବା ପ୍ରଥମ ଭାରତୀୟ ମହିଳା ଓ ଅଲମ୍ପିକ ପଦକ ଜିତିଥିବା ଏକମାତ୍ର ଭାରତୀୟ ବ୍ୟକ୍ତି ଥିଲେ ।

# ୨୧

# ବିଜୟ ଅଭୀପ୍ସା

## କର୍ଣ୍ଣମ ମାଲ୍ଲେଶ୍ୱରୀ

ମୋ ନାଁ ମାଲ୍ଲେଶ୍ୱରୀ । ତେଲୁଗୁରେ ପ୍ରଥମାର୍ଦ୍ଧ ମଲ୍ଲୀର ଅର୍ଥ ମଲ୍ଲୀଫୁଲ, ଦ୍ୱିତୀୟାର୍ଦ୍ଧର ଅର୍ଥ ଈଶ୍ୱର । ପ୍ରତ୍ୟେକ ବାପା ଚାହାଁନ୍ତି କି ତାଙ୍କ ପିଲା ତା ନାଁର ମର୍ଯ୍ୟାଦା ରଖୁ । ଭଗବାନ ଜାଣନ୍ତି ମୋ ବାପାମା ଏ ନାଁ କାହିଁକି ବାଛିଲେ । ବାସ୍ତବରେ ମୁଁ କେବେ ଏ ବିଷୟରେ ଭାବିନି । ମୁଁ ବାସ୍ ଏହାକୁ ମୋର ପରିଚିତି ଭାବରେ ଆନନ୍ଦରେ ଗ୍ରହଣ କରି ନେଇଛି । ପ୍ରକୃତରେ ମୁଁ ଭାବୁକ ପ୍ରକୃତିର ନୁହେଁ ବରଂ ମୂଳରୁ ମୁଁ କାମଖୋର୍ ।

୧୯୭୫ ମସିହା ଜୁନ୍ ୧ ତାରିଖରେ ଆନ୍ଧ୍ରପ୍ରଦେଶର କୁଡପ୍ପା ଜିଲ୍ଲାର ନନ୍ଦଲୁରୁ ଗ୍ରାମରେ ମୋ ଜନ୍ମ । ମୋ ବାପା କେ. ମନୋହର ରେଳବିଭାଗର ସୁରକ୍ଷାବଳର କନେଷ୍ଟବଳ ଥିଲେ । ଶ୍ରୀକାକୁଳମରେ ଆମର ବଡ଼ ପରିବାର – ୩ ଭଉଣୀ ଓ ଗୋଟେ ଭାଇକୁ ନେଇ ଆମେ ରହୁଥିଲୁ । ମୋର ସରଳ ଜୀବନ, ସେଠି ଖେଳକୁଦ, ଖାନାପିନା, ମଉଜ ମସ୍ତିରେ କଟୁଥିଲା । ଆମେ ପରସ୍ପର ସହିତ ବେଶ୍ ମିଳିମିଶି ଚଳୁଥିଲୁ । ଆଜି ଭାବିଲେ ଲାଗୁଛି ଭାରଉତ୍ତୋଳନ ଆମ ପରିବାରର ଖେଳ ସଦୃଶ ଥିଲା । ମୋର ସବା ବଡ଼ ଭଉଣୀ ନର୍‌ସମ୍ମା ରାଷ୍ଟ୍ରୀୟ ଚମ୍ପିଆନ୍ ଥିଲେ, କୃଷ୍ଣା କୁମାରୀ ଜୁନିଅର୍ ବିଶ୍ୱ ଚମ୍ପିଆନ୍ ଏବଂ ସବା ସାନଭଉଣୀ କଲ୍ୟାଣୀ ସବ୍‌ଜୁନିଅର୍ ବିଶ୍ୱଚମ୍ପିଆନ୍ ବିଜେତା ଥିଲେ ।

ଆମର ସବା ବଡ଼ ଭଉଣୀ ଅସଲରେ ଏସବୁ ଆରମ୍ଭ କଲେ । ସ୍କୁଲରେ ସଟ୍‌ପୁଟ୍ ହେଉ ବା ଜାଭ୍‌ଲିନ୍ ଥ୍ରୋ ହେଉ ତୁମେ ଯେ କୌଣସି ଖେଳର ନାଁ ନେବ, ସେ ସେଥିରେ ଭାଗନେବ ଓ ସବୁଥିରେ ଜିତିବ । ହରିଆଣାକୁ ଆସିବା ପୂର୍ବରୁ ମୁଁ ଏ ଶବ୍ଦ ଜାଣିନଥିଲି, ପ୍ରକୃତରେ ସେ 'ତାଗଡ଼ା' ଥିଲେ । ବାସ୍ତବରେ ମୋ ଭଉଣୀ ଯେତେବେଳେ ସ୍କୁଲରେ କ୍ରୀଡ଼ା ଇତ୍ୟାଦିରେ ବ୍ୟସ୍ତଥିଲେ ମୁଁ ସଂପୂର୍ଣ୍ଣଭାବରେ ପଢ଼ାରେ ନିମଗ୍ନ ଥିଲି । ହଠାତ୍ ଆମେ ଦେଖିଲୁ ଯେ ସେ କିଛି ଦୂରରେ ଥିବା 'ଜିମ୍' ବା ବ୍ୟାୟାମଶାଳା ଯାଉଛନ୍ତି । ସେ ବ୍ୟାୟାମଶାଳା ବହୁତ ଦିନ ବନ୍ଦ ରହିବାପରେ ସେ ସମୟରେ ଖୋଲା ହେଲା ଆଉ ମୋ ଭଉଣୀ ସେଠି ଜୋର୍‌ସୋର୍‌ରେ ଭାର ଉତ୍ତୋଳନ କରୁଛନ୍ତି । ମୁଁ ଭାବୁଛି ଏହା ତାଙ୍କ ତାଗଡ଼ାପଣର ଆଉ ଏକ ନମୁନା ।

ମୁଁ ଆଜ୍ଞାଧୀନ କର୍ତ୍ତବ୍ୟପରାୟଣ ସାନଭଉଣୀ ପରି ସାଇକେଲ୍ ଚଳେଇ ତାଙ୍କ ସାଙ୍ଗରେ ବ୍ୟାୟାମଶାଳା ଯିବା ଆରମ୍ଭ କଲି । ପ୍ରାୟ ୫/୬ କି.ମି. ସାଇକେଲ ଚଳେଇ ଆମେ ସେଠାରେ ପହଞ୍ଚୁ । ମୁଁ ହିଁ ଅସଲରେ ତାଙ୍କୁ ଭାର ଉତ୍ତୋଳନରେ ସାହାଯ୍ୟ କରେ । ସେଠି ସେ ଏକମାତ୍ର ଝିଅ ଥିଲେ ତେବେ ସେଠି କେହି କିଛି ମନେ କରୁନଥିଲେ । ମୁଁ ନିଜେ ସେତେବେଳେ ବହୁତ ପତଳା ଥିଲି । ମୁଁ ଦେଖେ ମୋ ଭଉଣୀ କେମିତି ଖର ନିଶ୍ୱାସ ଛାଡ଼ି ଓଜନ ଉଠାନ୍ତି । ତା'ପରେ ତା'ଦଳର ସମସ୍ତ ଝିଅ ସେଠି ଯୋଗଦେଲେ । ଆରମ୍ଭରେ ଆମେ ପ୍ରତ୍ୟେକଦିନ ଖରାରେ ସାଇକେଲ ଚଳେଇ କୁଆଡ଼େ ଯାଉଛୁ ସେ ବିଷୟରେ ମୋ ବାପାଙ୍କର କୌଣସି ଧାରଣା ନଥିଲା, କିନ୍ତୁ ମୋ ମା ଜାଣିଥିଲେ ଓ ଖୁବ୍ ଶୀଘ୍ର ବାପା ବି ଜାଣିଗଲେ । ମୋ ପଢ଼ାରେ ବ୍ୟାଘାତ ସୃଷ୍ଟିହେଲା, ତେବେ ଖୁବ୍ ବେଶି ନୁହେଁ । ସ୍କୁଲ ମୋ ଜୀବନର ୭ମ ଶ୍ରେଣୀପର୍ଯ୍ୟନ୍ତ କେବଳ ଏକ ଅଂଶ ଥିଲା ।

ସ୍କୁଲ ଆରମ୍ଭ ହୁଏ ୯ଟାରେ କିନ୍ତୁ ଆମର ପ୍ରାତ୍ୟହିକ କାର୍ଯ୍ୟକ୍ରମ ମୋଟାମୋଟି ଏମିତି ଆରମ୍ଭ ହୁଏ : ପ୍ରତ୍ୟେକ ଦିନ ସକାଳ ୫.୩୦ରୁ ୭.୩୦ମାନେ ବ୍ୟାୟାମଶାଳା ସମୟ । କେବଳ ସେତିକି ନୁହେଁ ସ୍କୁଲ ୪ଟାରେ ଛୁଟିହେବାପରେ ଆମେ ପୁଣି ସେଇଠିକି ଯାଉ । କ୍ରମଶଃ ମତେ ବି ସେ ନିଶା ଘାରୁଥିଲା, ମୋ ଭିତରେ ଏଥିପାଇଁ ଏକ ଗୁପ୍ତ ଅଭିଳାଷ ଅଙ୍କୁରିତ ହେଉଥିଲା ବୋଲି ସେତେବେଳେ ମୁଁ ଜାଣିପାରୁନଥିଲି । ସେଠାକାର ପ୍ରଶିକ୍ଷକ ଏନ୍.ଅପ୍ପାନା (ମୁଁ କେମିତି ସେ ନାଁ ଭୁଲିଯିବି !) ମୋର ଜୀର୍ଣ୍ଣଶୀର୍ଣ୍ଣ ଶରୀର ଆଡ଼କୁ ଚାହିଁ କହିଲେ, 'ତୁମେ କ'ଣ ଭାର ଉତ୍ତୋଳନ କରିବ, ଯାଅ, ଯାଅ ଘରେ ରୋଷେଇ କରିବ । ଏବେ ବି ମନେପଡ଼ିଲେ ମତେ ବହୁତ ବାଧେ । ମାନୁଛି, ସେତେବେଳେ ମୋ ବୟସ ୧୨ବର୍ଷ ଆଉ ମୁଁ ଟିକେ ପତଳା ବି ଥିଲି । ତେବେ ତାଙ୍କ କଥା ସତରେ ମତେ ବିରକ୍ତିକର ଲାଗିଲା ଓ ମୁଁ ତାକୁ ମନେ ମନେ ଚାଲେଞ୍ଜ ଦେଲି । ମତେ ଏମିତି କେମିତି ସେ ଏଡ଼େଇ ଯିବେ ? ମୁଁ କାହିଁକି ଭାର ଉତ୍ତୋଳନ କରିପାରିବିନି ?

ଯା ଭିତରେ ମୋ ଭଉଣୀ ରାଷ୍ଟ୍ରୀୟ ସ୍ତରର ପ୍ରତିଦ୍ୱନ୍ଦ୍ୱିତାକୁ ଯାଉଥିଲା, ଯାହା ମୋ ପାଇଁ ପ୍ରକୃତରେ ଗର୍ବର ବିଷୟ ଥିଲା । ସେମିତି ଏକ ସମୟରେ ମୁଁ ଥରେ ବ୍ୟାୟାମଶାଳାକୁ ଯାଇ ଏହାର ଚରମ ଦୁର୍ଦ୍ଦଶା ଦେଖିଲି । ଅତ୍ୟନ୍ତ ଦୟନୀୟ ଅବସ୍ଥା ବୋଲି ହିଁ କୁହାଯାଇପାରେ । ସାରା ଚଟାଣ ଉପରେ ଧୂଳିର ଏକ ଆସ୍ତରଣ । ପ୍ରକୃତରେ ମୁଁ ଅବସ୍ଥାର ସଂପୂର୍ଣ୍ଣ ସତ୍ୟ ଚିତ୍ରଣ ଦେଉନି । ବ୍ୟାୟାମଶାଳାର ଚାବି ଯାହାପାଖରେ ଥିଲା ସେ କହିଲା, 'ମୁଁ ତୁମକୁ ଚାବି ଦେଇପାରିବିନି । କାରଣ ସେଠି ଆଉ କେହି ନାହାନ୍ତି, ଯଦି କୌଣସି ବିରାଟ ଓଜନିଆ ଉପକରଣ ତୁମେ ପକେଇଦିଅ ତାହେଲେ ? ସବୁବେଳେ ତୁମକୁ ସାହାଯ୍ୟ କରିବାକୁ କେହିନଥିବେ । 'ମୁଁ ପାରିବି' ଏକଥା ନିଜ ପାଖରେ ଓ ଅନ୍ୟମାନଙ୍କ ନିକଟରେ ପ୍ରମାଣ କରିବାର ନିଷ୍ପତ୍ତି ସେତେବେଳକୁ ନେଇସାରିଥାଏ ।

ମୁଁ ଉଠେଇଲି, ମୋର ମନେହେଉଛି ସେଗୁଡ଼ିକ ୧୦-୧୫ କିଲୋଗ୍ରାମ ଓଜନର ବାରବେଲ ।

ଏତ ଆରମ୍ଭ ମାତ୍ର । ଯଥେଷ୍ଟ ହେଇଛି, ମୁଁ ସେମାନଙ୍କୁ ଦେଖେଇଦେବି ବୋଲି ଭାବିଲି । ମୁଁ ସ୍ଥିର କଲି ପଞ୍ଜାବ ଯାଇ ମୋ ଭଉଣୀ ଯେଉଁଠି ପ୍ରଶିକ୍ଷଣ ନେଉଛି, ସେଠି ତାକୁ ଦେଖା କରିବି । ମୁଁ ସେଠାକୁ ଗଲାପରେ ଆରମ୍ଭରେ ତ ମତେ ସବୁ ଅଜବ ଲାଗିଲା । କେହି ତେଲୁଗୁ କହୁନଥିଲେ ସମସ୍ତେ ଗୋଟେ ପ୍ରକାରର ଝଗଡ଼ା କଲାପରି ପଞ୍ଜାବୀ କହୁଥିବାର ଶୁଣିଲି ମାତ୍ର କିଛି ବୁଝିପାରିଲିନି । ମୁଁ ମୋ ଭଉଣୀ ସାଙ୍ଗରେ ଥିବାବେଳେ ତାଙ୍କ ରୁଷୀୟ ପ୍ରଶିକ୍ଷକ ମୋର ଭାର ଉତ୍ତୋଳନ କରିବାର ଉଦ୍ୟମକୁ ଦୂରରୁ ଲକ୍ଷ୍ୟ କରୁଥିଲେ । ମୋର ଅବଶ୍ୟ କୌଣସି ଧାରଣା ନ ଥିଲା କାହିଁକି ? ମୋ ପାଇଁ ବହୁତ ବଡ଼ କଥା ଥିଲା ଯେ ମୋ ଭଉଣୀ ମୁଖ୍ୟ ପ୍ରଶିକ୍ଷକଙ୍କ ସମ୍ମୁଖରେ ଆଗକୁ ଥିବା ଚୟନ-ପ୍ରତିଯୋଗିତା ପାଇଁ ଭାର-ଉତ୍ତୋଳନ କରୁଥିଲା । ବହୁତ ଶୀଘ୍ର ରୁଷୀୟ ପ୍ରଶିକ୍ଷକ ପାଖକୁ ଆସି ମୋ ବିଷୟରେ ପଚାରିଲେ, ''କ'ଣ ସେ ଅଭ୍ୟାସ କରେ କି ?'' ଭାର ଉତ୍ତୋଳନ ପରୀକ୍ଷା ପରେ ସେ, ମୁଁ କିପରି ଓ କେତେ ଓଜନ ଉଠେଇ ପାରୁଛି ତାଙ୍କୁ ଦେଖେଇବାକୁ କହିଲେ । ଆଜି ଯେତେବେଳେ ମୁଁ ସେ କଥା ଭାବେ ମୋ ଉଠାଇବା ପ୍ରଣାଳୀରେ କ'ଣ ବିଶେଷତ୍ୱ ଥିଲା, ତା'ମୋର ମନେପଡୁନି । ଯଦିଓ ମୁଁ ଖୁସିଥିଲି ଯେ ଜଣେ ଗୁରୁତ୍ୱପୂର୍ଣ୍ଣ ପ୍ରଶିକ୍ଷକ ମୋ ଭିତରେ କିଛି ଅନ୍ତର୍ନିହିତ ଶକ୍ତି ଲକ୍ଷ୍ୟ କରିପାରିଲେ ।

ତା'ପରର ୬ମାସର ପ୍ରବଳ ପ୍ରଶିକ୍ଷଣରୁ ମୁଁ ଯାହା ଉପଲବ୍ଧି କଲି, ଭାର ଉତ୍ତୋଳନ ହେଉଛି ଶକ୍ତି ଓ କୌଶଳ । କୌଶଳ ବା ଟେକ୍‌ନିକ୍ ଅଂଶର ଅର୍ଥ ହେଲା ତୁମେ ତୁମ ଶରୀରକୁ ଉପଯୁକ୍ତ ଭାବରେ ବ୍ୟବହାର କରି ଶିଖିବା, ଭାରକୁ ଠିକ୍‌ରେ ଖାପ୍ ଖୁଏଇବା ଓ ଭାରସାମ୍ୟ ରଖିବା । ଏହାଥିଲା ମୋପାଇଁ ନୂତନଚିନ୍ତା ଓ ରୋମାଞ୍ଚକର ଆବିଷ୍କାର । ତା'ପରେ ପଦକର ସୁଅ ଛୁଟିଲା । ୧୫ବର୍ଷ ବୟସରେ ୧୯୯୦ରେ ଜୁନିୟର୍ ରାଷ୍ଟ୍ରୀୟ (ଏହା ୨୦ ବର୍ଷ ବୟସ ପର୍ଯ୍ୟନ୍ତ, ସିନିଅର୍‌ମାନଙ୍କର ୨୦ବର୍ଷରୁ ଉପରକୁ) ଭାରଉତ୍ତୋଳନରେ ମୁଁ ପ୍ରଥମ ସ୍ୱର୍ଣ୍ଣପଦକ ଲାଭ କଲି । ସେତେବେଳେ ତିନିଜଣ ଥିଲେ । ନଅଟି ନୂଆ ରେକର୍ଡ ସେତେବେଳେ ସୃଷ୍ଟି ହେଇଥିଲା । ପୁନଶ୍ଚ ୧୩ ବର୍ଷ ବୟସରେ ଜଣେ ନିଜ ରାଜ୍ୟର ପ୍ରତିନିଧିତ୍ୱ କରିବା ! ପ୍ରତ୍ୟେକଟି ରେକର୍ଡ଼ ମୋ ଜୀବନରେ ଉତ୍ତେଜନାର ତରଙ୍ଗ ସୃଷ୍ଟି କରୁଥିଲା ।

ପ୍ରଥମ ଥରପାଇଁ ଘରଠୁଁ ଦୂରରେ ରହି ପଟିଆଲାରେ ଟ୍ରେନିଂ ନେବା ମୋପାଇଁ କଠିନ ଥିଲା । ଘରର ସୁଖସ୍ୱାଚ୍ଛନ୍ଦ୍ୟ କଠୋର ଟ୍ରେନିଂରେ ଭୁଲି ହେଇଗଲା କିନ୍ତୁ ମତେ ଏ ପରିବେଶ ବହୁତ ଭଲ ଲାଗୁଥିଲା । ଦେଶର ଚାରିଆଡୁ ଆସିଥିବା କ୍ରୀଡ଼ାବିତ୍‌ମାନଙ୍କ ତୁଳନାରେ ମୋ ପାଇଁ ସବୁ ଜିନିଷ ସହଜ ଥିଲା କାରଣ ମୋ ସହିତ ମୋ ଭଉଣୀ ଥିଲେ । ଆମର ଦିନଚର୍ଯ୍ୟା ଏମିତି ଥିଲା – ଭୋର ୫ଟାରୁ ଆମେ ପି.ଟି. କରିବା ଆରମ୍ଭ କରୁଥିଲୁ ଏବଂ ଏହା ରାତ୍ରି ଭୋଜନର କିଛି ସମୟପୂର୍ବରୁ ଶେଷ ହେଉଥିଲା । କ୍ୟାମ୍ପର ଦିନଚର୍ଯ୍ୟା ପ୍ରକୃତରେ ସୈନ୍ୟ ଜୀବନର ଅଭ୍ୟାସ ସଦୃଶ ଥିଲା । ୫.୩୦ରେ ଉଠିବା

ଘଣ୍ଟି, ୬-୮ ପର୍ଯ୍ୟନ୍ତ ପି.ଟି., ଯିଏ ଯେଉଁ କ୍ରୀଡ଼ା ବିଭାଗରେ ଭର୍ତ୍ତି ହେଇଥାଉନା କାହିଁକି ସମସ୍ତ କ୍ରୀଡ଼ାବିତ୍ ଏକାଠି ପି.ଟି. କରୁଥିଲେ । ୧୦ରୁ ଗୋଟାଏ ପର୍ଯ୍ୟନ୍ତ ପ୍ରଶିକ୍ଷଣ ତାପରେ ଦ୍ୱିପ୍ରହର ଭୋଜନ ଓ ବିଶ୍ରାମ । ଟ୍ରେନିଂର ପରପର୍ଯ୍ୟାୟ ଅପରାହ୍ନ ୪ରୁ ୬ ପର୍ଯ୍ୟନ୍ତ ଚାଲେ – ଏମିତି ପ୍ରତ୍ୟେକ ଦିନ କମ୍ ସେ କମ୍ ୯ଘଣ୍ଟା ଥିଲା ଟ୍ରେନିଂ ସମୟ । ସେମାନେ ଆମକୁ ଭାବିବାକୁ ବି ସମୟ ଦେଉନଥିଲେ ।

କେତେକ ସମୟରେ ଲୋକ କହିଥାନ୍ତି ଯେ ମହିଳାମାନେ ଭାରଉତ୍ତୋଳନ କରିବା ଉଚିତ୍ ନୁହେଁ । ପିଠିରେ ବ୍ୟଥା ହେବ ଓ ଆଉରି କେତେ କ'ଣ ? ଏମିତିଆ ଚିନ୍ତା ମୋ ମୁଣ୍ଡକୁ ଥରେ ବି ଆସିନି । ମୁଁ ଭାବେ ତୁମେ କେତେ ଆନ୍ତରିକତାର ସହିତ କରୁଛ, ଯେଉଁ କାମ କରିବାକୁ ଯାଉଛ ତା'ଉପରେ ତୁମ କିପରି ଏକାଗ୍ରତା କେନ୍ଦ୍ରିତ କରୁଛ ଏବଂ କ'ଣ ତୁମେ ପାଇବାକୁ ଚାହୁଁଛ ତାହା ଗୁରୁତ୍ୱପୂର୍ଣ୍ଣ । ଅସଲ କଥା ହେଲା ଯେ ଭାର ଉତ୍ତୋଳନ ହେଉଛି ସବୁ କ୍ରୀଡ଼ାର ଜନନୀ । ପ୍ରତ୍ୟେକ କ୍ରୀଡ଼ାବିତ୍ ନିଜର ମାଂସପେଶୀ ଗଠନପାଇଁ, ତାକୁ ଠିକ୍ ରୂପରେ ରଖିବାପାଇଁ ଭାରଉତ୍ତୋଳନ କରିଥାନ୍ତି । ପ୍ରତ୍ୟେକ ବିଷୟର ୫୦ଭାଗ ହେଉଛି ଏହାକୁ ଠିକ୍ ଉପାୟରେ ଶିଖିବା । ମୁଁ ପ୍ରଶିକ୍ଷଣ ନେବା ସମୟରେ ହିନ୍ଦୀ ମାତ୍ର ୨ମାସ ଭିତରେ ଶିଖିଗଲି ।

ମତେ ବହୁତ ଆଶ୍ଚର୍ଯ୍ୟ ଲାଗିଲା ଯେତେବେଳେ ମତେ ପଚରାଗଲା ଯେ ତୁମକୁ କୌଣସି ପୁରୁଷଲୋକ ଉପହାସ କରୁଥିଲେ କି କିମ୍ବା ତୁମର ଉଚ୍ଚାରଣ ଶୈଳୀ ଅଥବା ମହିଳା ଭାରଉତ୍ତୋଳକଭାବରେ ତୁମ ଶରୀର ଗଠନ ଦେଖି କେହି ଥଟ୍ଟା ପରିହାସ କରୁଥିଲେ କି ନାହିଁ । ଆମେମାନେ ସମସ୍ତେ କ୍ରୀଡ଼ାବିତ୍ ଓ କଠିନ ପରିଶ୍ରମ କରୁଛୁ । ଯଦି ବା କେହି କିଛି କହିଥିବେ ମୋର କିଛି ମନେପଡୁନି କାରଣ କ୍ୟାମ୍ପର ପ୍ରତ୍ୟେକ ସହ-ପ୍ରତିଯୋଗୀ ସମପରିମାଣରେ ସହଯୋଗ କରୁଥିଲେ ।

ବେଳେବେଳେ ସାରାଦିନର ପରିଶ୍ରମପରେ ଶକ୍ତି ଏପରିଭାବରେ ନିଃଶେଷ ହେଇଯାଇଥାଏ ଯେ ରାତିରେ ବିଛଣାକୁ ଗଲାବେଳେ ଜୋତା ଖୋଲିବାକୁ ବି ଶକ୍ତିନଥାଏ । ଏତେବେଳେ ଦୁଇଟି କଥା ଘଟେ । ପ୍ରଥମଟି ତୁମେ ତୁମ ଜୋତା ପିନ୍ଧିକି ଶୋଇ ପଡ଼ିବ । ଅନ୍ୟଟି ତୁମେ ତୁମ ଦଳର ସମସ୍ତ ସାଥୀଙ୍କ ପ୍ରତି ସହାନୁଭୂତିଶୀଳ ହେଇଉଠିବ । ମୁଁ କେବେ ବି ଅନୁଭବ କରିନି ଯେ ଅନ୍ୟ ଦଳଗତ ଖେଳପରି ଭାରଉତ୍ତୋଳନ ନୁହେଁ, ବିଶେଷଭାବରେ ଏହା ଏକ ଏକକ କ୍ରୀଡ଼ା । ଖେଳରେ ମଜ୍ଜିଯାଇଥିବାବେଳେ ଏକାକୀତ୍ୱ ବୁଝାଯାଏନା । ମୁଁ ମୋ ଭାରଉତ୍ତୋଳନକୁ ନେଇ ସର୍ବାଧିକ ସୁଖୀବ୍ୟକ୍ତି । ମତେଯଦି କେବେ କେମିତି କିଛି ବାଧୁଥିଲା ତା'ବାପାମାଙ୍କ ବିଚ୍ଛେଦ ମୋର ଔପଚାରିକ ଶିକ୍ଷା, ଆଉ ସେସବୁ ଦିନର ତଥାକଥିତ ମଉଜମସ୍ତି ତ୍ୟାଗକରି ମୁଁ ଦେଶପାଇଁ ଭାର ଉତ୍ତୋଳନପରି ଗମ୍ଭୀର ବିଷୟକୁ ଆଗେଇ ନେଲି । ମାତ୍ର ଯେଉଁ ମୁହୂର୍ତ୍ତରେ ମୁଁ ଗୋଟେ ପଦକ ଜିତେ ମୋର ଏ ଜାତୀୟ ଭାବନା କୁଆଡ଼େ ମ୍ଳାନ ହେଇଯାଏ ।

ପ୍ରକୃତରେ ଆପଣ ଜାଣନ୍ତି କି ଭାରତରେ ଭାରଉତ୍ତୋଳନ ଏପରି ଏକ କ୍ରୀଡ଼ା ଯାହା ଦେଶପାଇଁ ଅନ୍ତରାଷ୍ଟ୍ରୀୟ ପ୍ରତିଦ୍ୱନ୍ଦ୍ୱିତା କ୍ଷେତ୍ରରେ ସର୍ବାଧିକ ଗୌରବ ଓ ପଦକ ହାସଲ କରିଛି ? ମୁଁ ୧୯୯୦ଠାରୁ ପ୍ରତ୍ୟେକ ବର୍ଷ ଅନ୍ତରାଷ୍ଟ୍ରୀୟ ସ୍ତରରେ, ବିଭିନ୍ନ ବିଶ୍ୱ ଏବଂ ଏସୀୟ ଭାରଉତ୍ତୋଳର୍ନ ପ୍ରତିଦ୍ୱନ୍ଦ୍ୱିତାରେ ଭାରତର ପ୍ରତିନିଧିତ୍ୱ କରିଛି । ମୁଁ ସେଥିରେ ଚତୁର୍ଥ ଓ ପଞ୍ଚମ ସ୍ଥାନ ଲାଭ କରି ପଦକ ବି ପାଇଛି ।

୧୯୯୪ ମସିହାରେ ତୁର୍କରେ ଆୟୋଜିତ ହୋଇଥିବା ବିଶ୍ୱ ଚମ୍ପିଆନ୍‌ସିପ୍‌ରେ ମୁଁ ଦୁଇଟି ସ୍ୱର୍ଣ୍ଣ ଓ ଗୋଟିଏ ବ୍ରୋଞ୍ଜ ପଦକ ଓ ୧୯୯୫ ମସିହାରେ ଚାଇନାରେ ୩ଟି ସ୍ୱର୍ଣ୍ଣପଦକ ଜିତିଲି । ସେଇବର୍ଷ କୋରିଆରେ ଆୟୋଜିତ ଏସୀୟ ଚମ୍ପିଆନ୍‌ସିପ୍‌ରେ ମୁଁ ୩ଟି ସ୍ୱର୍ଣ୍ଣପଦକ, ୧୯୯୬ରେ ଜାପାନରେ ଗୋଟିଏ ସ୍ୱର୍ଣ୍ଣପଦକ ଲାଭକଲି । ୧୯୯୦ ମସିହାରୁ ବର୍ତ୍ତମାନ ପର୍ଯ୍ୟନ୍ତ ୫୨ କିଲୋଗ୍ରାମ ବର୍ଗରେ; ତା'ପରେ ୧୯୯୨ରୁ ୫୪ କିଲୋଗ୍ରାମ ବର୍ଗରେ ମୁଁ ଲଗାତାର ରାଷ୍ଟ୍ରୀୟ ଚମ୍ପିଆନ୍ ପଦ ପାଇଆସୁଛି । ୬୯ କିଲୋଗ୍ରାମ ବର୍ଗରେ ଜଣେ ୨୫ ବର୍ଷୀୟ ମହିଳା ଭାଗନେବା ରୋମାଞ୍ଚକର ! ଯାର ପୂରା ବାହାଦୁରୀ ମୁଁ ମୋ ପ୍ରଶିକ୍ଷକଙ୍କୁ ଦେବି । ପର୍ଯ୍ୟାୟ କ୍ରମରେ ପଦକଲାଭ କରିବା ମୋପାଇଁ ମୂଲ୍ୟବାନ୍ କାରଣ ଏଥିରୁ ମୁଁ ମୋ ବିକାଶର ମୂଲ୍ୟାଙ୍କନ କରେ । ମୁଁ ମୋର ସେତେବେଳର (୫୪ କେ.ଜି.) ବର୍ଗ ଅନୁସାରେ ୧୧୩.୦ କେଜି ଓଜନ ଠିକ୍ ଭାବରେ (କ୍ଲିନ୍ ଆଣ୍ଡ ଜର୍କରେ) ଉତ୍ତୋଳନ କରି ବିଶ୍ୱଭାରଉତ୍ତୋଳନ ପଦବୀ ପାଇଲି; ତା'ସହିତ ଏକ ନୂଆ ରେକର୍ଡ ସୃଷ୍ଟି ହେଲା । (ମାଲ୍ଲେଶ୍ୱରୀ ଯିଏ ପ୍ରତିଦ୍ୱନ୍ଦ୍ୱିତାରେ ସ୍ୱର୍ଣ୍ଣପଦକ ଜିତିବାକୁ ଯାଇଥିଲା, ସେ ୧୯୯୩ ଡିସେମ୍ବରରେ ଚାଇନାର ଲଙ୍ଗ୍ ୟୁଲିଙ୍ଗ୍‌ଦ୍ୱାରା ସ୍ଥାପିତ ୧୧୨.୫ କେ.ଜି.ର ରେକର୍ଡ଼ ଭାଙ୍ଗିଦେଲା ।)

ସୁଦିନର ହାତଧରି କୁଦିନର କଳା ବାଦଲ ମୋ କ୍ୟାରିଅର୍ ଉପରେ ଘୋଟି ଆସିଲା । ୧୯୯୭ର ବିଶ୍ୱ ଚମ୍ପିଆନ୍‌ସିପ୍ ପାଇଁ ମୁଁ ପୂର୍ଣ୍ଣ ପ୍ରସ୍ତୁତ ଥିଲି, ମୋ ସାଧ୍ୟମତେ ପରିଶ୍ରମ କରିଥିଲି କିନ୍ତୁ ଠିକ୍ ଦୁଇଦିନ ପୂର୍ବରୁ ମୋ ପିଠିରେ ଆଘାତ ଲାଗିବାଯୋଗୁଁ ଜିତିବାର ସୁଯୋଗରୁ ବଞ୍ଚିତ ହେଲି । ଏଇ ଆଘାତ ସମୟର ଅଭ୍ୟାସବେଳେ ଅନ୍ୟ ଗୋଟିଏ ବିଷୟରେ ଜାଣିଲି ଯେ କିପରି କେତେକ ପ୍ରଶିକ୍ଷକ ତାଙ୍କ ନିଜ ସୁନାମପାଇଁ ଆମେ ପ୍ରତ୍ୟେକ ପ୍ରତିଯୋଗିତାରେ ଭାଗ ନେବା ଚାହାଁନ୍ତି । ଆମେ ଯେତେ ଗମ୍ଭୀରଭାବରେ ଆହତ ହେଇଥାଉଁ ନା କାହିଁକି । ମୁଁ କେବେ ମୋ ସହିତ ଏମିତି ଘଟିବାକୁ ଦେଇନି । ମାତ୍ର ମୁଁ ଜାଣେ ବହୁ ଭାରଉତ୍ତୋଳକ ଏମିତି ଭୋଗିଛନ୍ତି ।

ମୁଁ ଯାହା ଚୀନ୍‌ରେ ଦେଖିଲି, ଭାରତରେ ସମସ୍ତ ପ୍ରକାର କ୍ରୀଡ଼ା ସଂକ୍ରାନ୍ତୀୟ ସୁବିଧା, ସୁଯୋଗ ଓ ଉପକରଣ ରହିଥିବା ସତ୍ତ୍ୱେ ଗୋଟିଏ ଜିନିଷର ଅଭାବ ରହିଛି । ଚାଇନାରେ ପ୍ରତ୍ୟେକଙ୍କ ପାଇଁ ସ୍ୱତନ୍ତ୍ର ପ୍ରଶିକ୍ଷକ ଥିବା ସମୟରେ ଆମର ପୂରା ଦଳପାଇଁ ଜଣେ ପ୍ରଶିକ୍ଷକ ଥିଲେ । ଜଣେ ଶିକ୍ଷକକୁ ଯଦି କମ୍ ପିଲାଙ୍କର ଯତ୍ନ ନେବାକୁ ଥିବ ସେ ବେଶି ନିଷ୍ଠାର ଓ

ଗୁରୁତ୍ୱର ସହିତ କାମଟି କରିପାରିବେ, ବିଶେଷକରି ଆମଦେଶରେ ଯେଉଁଠି ପ୍ରତ୍ୟେକ କ୍ଷେତ୍ରରେ ରାଜନୀତି ହୁଏ । ବ୍ୟକ୍ତିଗତ ପ୍ରଶିକ୍ଷକ, ଜଣକର ପ୍ରଦର୍ଶନରେ ବହୁତ ପାର୍ଥକ୍ୟ ସୃଷ୍ଟି କରିପାରେ । ଶରୀରର ଅଙ୍ଗପ୍ରତ୍ୟଙ୍ଗ ଯାହା ଉପରେ ଅଯଥା ଚାପ ପଡୁଛି ତା'ଉପରେ ଧ୍ୟାନଦେବା, ତା'କୁ ଆରାମ ଦେବା ଓ ତା'ର ଆରୋଗ୍ୟ କରିବା, ସେ ଖେଳାଳିର ପ୍ରତ୍ୟେକ ବଳିଷ୍ଠ ଦିଗ ଓ ଦୁର୍ବଳ ଦିଗ ଜାଣିବା – ଏସବୁ ମିଶିଲେ ଏକାଗ୍ରତା ବୃଦ୍ଧିରେ ସହାୟକ ହୁଏ । ପ୍ରକୃତରେ ମୋର ଜଣେ ସହ–ଭାର–ଉତ୍ତୋଳକ ଆମର (କମନ୍) ପ୍ରଶିକ୍ଷକ ଦ୍ୱାରା କ୍ଷତିଗ୍ରସ୍ତ ହେବାଦେଖି ମୁଁ ଆଉ ଧୈର୍ଯ୍ୟ ଧରିପାରିଲିନି । ସେତେବେଳର କ୍ରୀଡ଼ାମନ୍ତ୍ରୀ ଉମାଭାରତୀ ଯେତେବେଳେ ଆସିଥିଲେ ଓ ଆମର ଅଗ୍ରଗତି ସଂପର୍କରେ ପଚାରିଲେ, ମୁଁ ତାନିନ୍‌ଙ୍କୁ ପ୍ରଶିକ୍ଷକଭାବେ ଚାହିଁଲି । ଏ ସେଇ ରୁଷୀୟ ପ୍ରଶିକ୍ଷକ ଯିଏ ମୁଁ ଯେତେବେଳେ ପ୍ରଥମେ ଆରମ୍ଭ କଲି ମତେ ଆବିଷ୍କାର କରିଥିଲେ ଓ ମୋତେ ଏଇ ରୂପ ନେବାରେ ସାହାଯ୍ୟ କରିଥିଲେ । ଉମାଭାରତୀ ମତେ ପଚାରିଲେ ଯେ କ'ଣ ତାଙ୍କ ଆସିବାଦ୍ୱାରା ଆଗାମୀ ଅଲମ୍ପିକରେ ଆମକୁ କୌଣସି ପଦକ ମିଳିବ ? କୌଣସି ଏକ ଅଜଣା କାରଣରୁ ଆତ୍ମବିଶ୍ୱାସର ସହିତ ମୁଁ କହିଲି, 'ହଁ, ମିଳିବ ।'

ଉଚ୍ଚ ଅଧିକାରୀଗଣ ଟ୍ରେନିଂ କେନ୍ଦ୍ରର ପ୍ରଶିକ୍ଷକଙ୍କ କଥା ଶୁଣନ୍ତି । ସେମାନେ ନିଜ ଛାତ୍ରମାନଙ୍କୁ ଉପରକୁ ଉଠେଇବାରେ ଓ ନିଜେ ବିଦେଶଯାତ୍ରା ଆୟୋଜନ କରିବାରେ ଲାଗିଥାନ୍ତି । ଏସବୁ ବିବାଦ ସତ୍ତ୍ୱେ ଆମେ ଅଲମ୍ପିକ କ୍ରୀଡ଼ାପାଇଁ ଗଲୁ, ଆପଣମାନେ ଏସବୁକଥା ସମସ୍ତ ଗଣମାଧ୍ୟମର କ୍ରୀଡ଼ା ବିଭାଗରୁ ଜାଣିଥିବେ । ପୂରା ଦଳମଧ୍ୟରୁ କେହି ଜଣେ ହେଲେ ବି ଭଲ ପ୍ରଦର୍ଶନ କଲେ ନାହିଁ ।

ଆମେ ଯେତେବେଳେ ଅନ୍ତରାଷ୍ଟ୍ରୀୟ ପ୍ରତିଯୋଗିତାକୁ ଯାଉଁ, ବିଶେଷ କରି ଝିଅମାନେ, ଆମେ ପରସ୍ପରକୁ ସାହାଯ୍ୟ ସମର୍ଥନ କରିଥାଉଁ । ମୁଁ ଯେତେବେଳେ ବ୍ୟକ୍ତିଗତ ଭାବରେ ଅଲମ୍ପିକପାଇଁ ନିର୍ବାଚିତ ହେଲି ମୋ ପ୍ରଶିକ୍ଷକ ଆସିପାରିଲେନି । ଏଠି ଆମମାନଙ୍କ ପାଇଁ ପ୍ରଶଂସକର ସମର୍ଥନ ନଥାଏ, ସେଠି ଆମ ବିଭାଗପାଇଁ ତ ଆଦୌ ନଥାଏ ତେଣୁ ତ ଆମ ପାଳି ସରିବାପରେ ବି ଆମେ ଛାଡ଼ିକି ଆସୁନା । ଆମପରେ ଯାହାର ଭାର ଉତ୍ତୋଳନ କରିବାର ଥାଏ, ତାକୁ ପ୍ରୋତ୍ସାହିତ କରିବାରେ ମନଦେଉଁ । ଏମିତି ଥିଲା ସେ ଅଲମ୍ପିକ କ୍ରୀଡ଼ା । ଅନ୍ୟ ପ୍ରତିଯୋଗିତାପରି ସମାନ ପ୍ରତିଯୋଗୀ ଏଠି ଥାନ୍ତି, କେବଳ ଗଣମାଧ୍ୟମ ଯୋଗୁଁ ଅତିରିକ୍ତ ପ୍ରଚାର ଘଟେ । କୌଣସି ଦେଶଦ୍ୱାରା ଆୟୋଜିତ ବିଶ୍ୱସ୍ତରୀୟ ପ୍ରତିଯୋଗିତାଠାରୁ ଏ କ୍ଷେତ୍ରରେ ବିଜୟ ଅଧିକ ପ୍ରସିଦ୍ଧି ଆଣିଦିଏ । ଅଲମ୍ପିକକୁ ଏତେ ଗୁରୁତ୍ୱ ଦିଆଯାଏ ଯେ ମୁଁ ଆଶ୍ଚର୍ଯ୍ୟ ହୁଏ ।

ମୁଁ ନିଜକୁ ନିଜ ସାମର୍ଥ୍ୟଠାରୁ ଅଧିକ କଲିନେଇ, ସ୍ୱର୍ଣ୍ଣପଦକ ହାସଲ କରିବା ଉଦ୍ଦେଶ୍ୟରେ ଯାଇଥିଲି । ୬୯ କେଜି ଓଜନ ବର୍ଗରେ ମୁଁ ଆଗରୁ ୨୪୭ କେଜି ଓଜନ ଉତ୍ତୋଳନ କରିଛି । ତେଣୁ ୨୪୦ କେ.ଜି. ଭାର ଉଠାଇବାପରେ ମୁଁ ୨୪୨ କେ.ଜି.ରୁ

ଧୀରେ ଧୀରେ ଭାର ବୃଦ୍ଧିକରିବା ପରିବର୍ତ୍ତେ ସିଧା ୨୪୭ କେ.ଜି. ଉଠାଇବାକୁ ଗଲି । ଦୁଇପଟ ଭାରର ଭାରସାମ୍ୟ ରଖି ପାରିଲିନି ଓ ସବୁ ଚେଷ୍ଟା ମାଟି ହୋଇଗଲା ।

ମୁଁ ଗୋଟିଏ ବ୍ରୋଞ୍ଜ ପଦକ ସହିତ ଘରକୁ ଫେରିଲି । ତେବେ ମୋ ପାଇଁ ଯେତେବେଳେ ଜାତୀୟ ସଙ୍ଗୀତ ବଜାହେଲା ମୁଁ ଭାବ ବିହ୍ୱଳ ହେଇଗଲି ।

୨୦୦୦ ମସିହା ସେପ୍ଟେମ୍ବର ୧୯ ତାରିଖ ଦିନ ଏହା ଘଟିଥିଲା । ମତେ କୁହାଗଲା ଯେ ମୁଁ ଭାରତର ପ୍ରଥମ ଅଲମ୍ପିକ ପଦକପ୍ରାପ୍ତ ମହିଳା । ଦେଶର ପ୍ରତ୍ୟେକ କୋଣ ଅନୁକୋଣର ଲୋକେ ମୋତେ ହାର୍ଦ୍ଦିକ ସ୍ୱାଗତ ଜଣେଇଲେ । ସର୍ବୋତ୍ତମ କୁନି ବିସ୍ମୟକର ଘଟଣା ସେଇଦିନ ଘଟିଥିଲା ଯେଉଁ ଦିନ ମୁଁ ପଦକ ଜିତିଥିଲି – ସେମାନେ ଆମକୁ ସିଡ୍‌ନି ବୁଲେଇ ଦେଖେଇବାକୁ ପ୍ରସ୍ତୁତ ଥିଲେ । ମୋର ସମସ୍ତ ବିଦେଶୀ ପ୍ରତିଯୋଗିତା ଭିତରେ ପ୍ରଥମଥର ପାଇଁ ଏମିତି ଘଟିଥିଲା । ମୋ ସ୍ୱାମୀ ସାଙ୍ଗରେ ଥିବାରୁ ଏହା କୌଣସି ମଧୁଚନ୍ଦ୍ରିକା ସଦୃଶ ଥିଲା । ସେଠାକାର ସ୍ଥାନୀୟ ଭାରତୀୟମାନେ ଆମକୁ ଅଭିନନ୍ଦନ ଜଣାଇଲେ । ହାଇଦ୍ରାବାଦରେ ରାଜ୍ୟସରକାର ମଧ ଖୁବ୍ ଜାକଜମକର ସହିତ ସ୍ୱାଗତ କଲେ। ବିମାନବନ୍ଦରରେ ମୋର ସ୍ୱାଗତ ଉତ୍ସବପରେ ମୁଁ ରାଜ୍ୟପାଳ ଏବଂ ମୁଖ୍ୟମନ୍ତ୍ରୀ ଚନ୍ଦ୍ରବାବୁ ନାଇଡୁଙ୍କ ସହିତ ସାକ୍ଷାତ କଲି । ଗୋଟିଏ ଭାରଉତ୍ତୋଳନ ଏକାଡେମୀପାଇଁ ସମ୍ଭାବ୍ୟ ସ୍ଥାନ ନିରୂପଣନେଇ ବାର୍ତ୍ତାଳାପ ହେଲା । ଟ୍ୟାଙ୍କବନ୍ଧରୁ ଆରମ୍ଭ କରି ଲାଲ୍‌ବାହାଦୂର ଷ୍ଟାଡ଼ିଅମ୍ ପର୍ଯ୍ୟନ୍ତ ଜନସାଧାରଣଙ୍କ ଶୋଭାଯାତ୍ରାରୁ ମୁଁ ଜାଣିଲି ସେମାନେ ମତେ ନେଇ କେତେ ଗୌରବାନ୍ୱିତ । ମୁଁ ମୋ ବାପାମାଙ୍କ ପାଇଁ ଗର୍ବ ଅନୁଭବ କରୁଥିଲି ଯେଉଁମାନେ ବହୁ ତ୍ୟାଗ ସ୍ୱୀକାରକରି ମତେ ଏହା କରିବା ପାଇଁ ସୁବିଧା ସୁଯୋଗ ଦେବାସହିତ ଅନୁମତି ଦେଲେ ।

ଏହି ବିଜୟ ଶୋଭାଯାତ୍ରାରେ ଛାତ୍ର, ଅଫିସର ତଥା ସାଧାରଣ ଜନତା ସାମିଲ ହେଇଥିଲେ । ଏହାପରେ ଅଭିନନ୍ଦନ ଉତ୍ସବ ଅନୁଷ୍ଠିତ ହେଲା, ଯେଉଁଥିରେ ରାଜ୍ୟସରକାର ଜୁବ୍‌ଲି ହିଲ୍‌ସର ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ୨୫ଲକ୍ଷ ଟଙ୍କାର ଜମିଦେବାର ଘୋଷଣା କଲେ, ଆଉ ୨୫ଲକ୍ଷ ଟଙ୍କାର ଚେକ୍ ହାଇଦ୍ରାବାଦରେ ଘରନିର୍ମାଣପାଇଁ ଉପହାର ଦେଲେ । ପ୍ରସ୍ତାବିତ ଭାରଉତ୍ତୋଳନ ଏକାଡେମୀ ପାଇଁ ଦଶଲକ୍ଷ ଟଙ୍କା ଚେକ ବି ଦେଲେ । ଜନସାଧାରଣଙ୍କ ଅଭିନନ୍ଦନ ସମାରୋହରେ ତତ୍‌କାଳୀନ ଲୋକସଭା ବାଚସ୍ପତି ଶ୍ରୀଯୁକ୍ତ ଜି.ଏମ୍.ସି. ବାଲ୍‌ୟୋଗୀ, ବିଧାନ ସଭା ବାଚସ୍ପତି ପ୍ରତିଭା ଭାରତୀ, ଅଖିଳ ଭାରତୀୟ ଅଲମ୍ପିକ ସଂଘର ଅଧ୍ୟକ୍ଷ ଶ୍ରୀ ସୁରେଶ କଲମାଡ଼ୀ ଏବଂ ଅନ୍ୟାନ୍ୟ ଅନେକ ମହତ୍ତ୍ୱପୂର୍ଣ୍ଣ ବ୍ୟକ୍ତି ଯୋଗ ଦେଇଥିଲେ । ପରେ ଭାରତର ମାନନୀୟ ରାଷ୍ଟ୍ରପତିବି ମତେ ସମ୍ମାନିତ କଲେ । ଆଜି ଚନ୍ଦ୍ରବାବୁ ନାଇଡୁଙ୍କଠୁଁ ଆରମ୍ଭ କରି ଅଭୟ ଚୌତାଲାଙ୍କ ପର୍ଯ୍ୟନ୍ତ ମତେ ପ୍ରୋତ୍ସାହିତ କରୁଛନ୍ତି । ମୁଁ ଭାବୁଛି ଏହା ହିଁ ମୋ ତ୍ୟାଗର ପ୍ରକୃତ ଫଳ । ଅର୍ଥ ଯେ କେହି ବି ଉପାର୍ଜ୍ଜନ କରିପାରେ ମାତ୍ର ଦେଶର ସର୍ବୋଚ୍ଚ ମହତ୍ତ୍ୱପୂର୍ଣ୍ଣ ବ୍ୟକ୍ତିଙ୍କଠାରୁ ସମ୍ମାନ, ମତେ ସେଇସବୁ ପୁରୁଣା 'ବହୁତ ତ୍ୟାଗ ହେଇଗଲା' ସଂପର୍କିତ ସଂଶୟଉପରେ ପୁନର୍ବିଚାର

କରିବାକୁ ବାଧ୍ୟ କରୁଛି । ବଳାଗଣ୍ଠି, କଚଟି, କହୁଣୀ, ଆଣ୍ଠୁ, ପିଠିର ଆଘାତ ଓ ପ୍ରୟାସର ପ୍ରକୃତ ମୂଲ୍ୟ ମତେ ମିଳିଛି ।

ମୁଁ ଗୋଟିଏ ନିମ୍ନ ମଧ୍ୟବିତ୍ତ ପରିବାରର ଜୀର୍ଣ୍ଣଶୀର୍ଣ୍ଣ ଝିଅଟିଏ ଯିଏ ପ୍ରଶିକ୍ଷଣକୁ କେବଳ ଦୈନନ୍ଦିନ ଜୀବନଚର୍ଯ୍ୟାରେ ପରିଣତ କରିଥିଲା । ବାହାର ଦୁନିଆର ବିଳମ୍ବିତ ରାତିର ଜଗତ, ସିନେମା ଦେଖିବା, ପିକ୍‌ନିକ୍ କରିବା, କଲେଜ ଜୀବନ, କୈଶୋରର ଲଗାମଛଡ଼ା ଉଦ୍ଦାମ ଜୀବନ କିଛି ବି ଜାଣିନି, ତଥାପି ମୁଁ ଉନ୍ମୁକ୍ତ ଓ ଚିନ୍ତାମୁକ୍ତ ଅନୁଭବ କରୁଛି କାରଣ ପ୍ରଶିକ୍ଷଣ ମୋ ଜୀବନର ଏକ ଅଭିନ୍ନ ଅଙ୍ଗରେ ପରିଣତ ହୋଇଯାଇଛି ।

ମୋପରି ଝିଅ, ଯାହାର ବିବାହ ପ୍ରତି କୌଣସି ଆକର୍ଷଣ ନଥିଲା ତାକୁ ଜଣେ ଭାର ଉତ୍ତୋଳକ ସାଥୀ ମିଳିଗଲେ । ମୋ ସ୍ୱାମୀ ନିଜେ ଜଣେ ଭାର ଉତ୍ତୋଳକ ଥିଲେ । ଆମେ ସାଙ୍ଗ ହେଇ ପଟିଆଲାରେ ବା ନେହ୍ରୁ ଷ୍ଟାଡ଼ିଅମ୍‌ରେ ପ୍ରଶିକ୍ଷଣ ନେଇଥିଲୁ ? ବୋଧେ ଦୁଇଟିଯାକ ସ୍ଥାନରେ । ୧୯୯୭ରେ ଆମ ବିବାହର ମାତ୍ର ଦୁଇଦିନ ପରେ ମତେ ପ୍ରଶିକ୍ଷଣ କ୍ୟାମ୍ପକୁ ଯିବାକୁ ପଡ଼ିଲା । କୌଣସି ମଧୁଚନ୍ଦ୍ରିକା ବା କିଛି ହେଇନି । ମୁଁ କିଛି ମନେ କରିନି ଏବଂ ମୋ ସ୍ୱାମୀ ଏହାକୁ ଅତି ଚମତ୍କାରଭାବରେ ଗ୍ରହଣ କରିନେଲେ । ଜଣେ ବିଶ୍ୱସ୍ତରୀୟ ଭାରଉତ୍ତୋଳକର ସମସ୍ତ ହାନିଲାଭ ବ୍ୟାପାର ସେ ସବିଶେଷ ଜାଣନ୍ତି ଓ ସହଯୋଗ କରନ୍ତି । ଆମେ ଯମୁନା ନଗରରେ ରହୁଥିଲୁ ଯାହା ପଟିଆଲାରୁ ମାତ୍ର ୨ ଘଣ୍ଟା ରାସ୍ତା । ତେଣୁ ସପ୍ତାହ ଶେଷରେ ମୋ ସ୍ୱାମୀ ଗାଡ଼ି ଚଳେଇ ଚାଲିଆସୁଥିଲେ ଓ ଆମେ ଦୁହେଁ ଏକାଠି ରବିବାର ବିତଉଥିଲୁ । ଏମିତି ବି ସମୟ ଆସିଛି, ନୂଆ ବାହାହେଇଥିବା ପତ୍ନୀଭାବରେ ମତେ ଅପରାଧୀ ଲାଗିଛି । ତାଙ୍କ ଖାଇବା ପିଇବା ସଂପର୍କରେ ଫୋନ୍ କରି ପଚାରି ବୁଝିଲେ, ସେ କହନ୍ତି, 'ଜମା ବ୍ୟସ୍ତ ହୁଅନି, ମୁଁ ନୁଡୁଲ୍‌ସ ତିଆରି କରି ଖାଇଦେଇଛି ।'

ମୁଁ ପ୍ରକୃତରେ ମୋ ସ୍ୱାମୀଙ୍କ ମହତ୍ତ୍ୱ ବୁଝି ପାରିଛି । ତାଙ୍କ ସମର୍ଥନ ମତେ ଉଚିତ୍ ଦିଗ ଓ ପ୍ରଶିକ୍ଷଣ ନେବାରେ ସାହାଯ୍ୟ କରିଛି, ବହୁତ କମ୍ ଲୋକ ଏତେ ଭାଗ୍ୟବାନ୍ ଥାନ୍ତି । ତାଙ୍କର ବିଜ୍‌ନେସ୍ ଅଛି । ମୁଁ ଜଣେ ଭାରି ଧାର୍ମିକଲୋକ । ଯଦିଓ ମୁଁ କୌଣସି ପ୍ରକାର କିଛି ଲମ୍ବା ଚଉଡ଼ା ପୂଜା କରେନି କି ପ୍ରତ୍ୟେକ ଦିନ ସେମିତି କିଛି କରେନି । ମୁଁ ପ୍ରତ୍ୟେକ ଦିନ ଗଣେଶଙ୍କ ପାଖରେ ଧୂପଟିଏ ଜାଳେଁ । ୟା ଭିତରେ ବହୁତ ଦିନ ହେଇ ଗଲାଣି ମୁଁ ଗୋଟିଏ ତେଲୁଗୁ ସିନେମା ଦେଖିନି । ବର୍ତ୍ତମାନ ପଞ୍ଜାବ ଓ ହରିଆଣାରେ ବସବାସ କରୁଥିବାରୁ ମୁଁ ଅମିତାଭ ବଚ୍ଚନଙ୍କ ପ୍ରଶଂସକ ପାଲଟିଯାଇଛି । ମତେ ଟେଲିଭିଜନ ଦେଖିବାକୁ ବି ଭଲଲାଗେ । ମତେ ହାସ୍ୟରସମୂଳକ କାର୍ଯ୍ୟକ୍ରମ ଭଲ ଲାଗେ ବିଶେଷ କରି ସାରାଦିନର ହାଡ଼ଭଙ୍ଗା ପରିଶ୍ରମ ପରେ । ମୁଁ ଅଫିସ୍ ଅଫିସ୍, ହମ୍ ସାଥ୍ ସାଥ୍ ହେଁ ଦେଖିବାକୁ ବସିଯାଏଁ । କ୍ରିକେଟ କିମ୍ବା କାନ୍ଦୁରା ଧାରାବାହିକ ତ ଜମାନୁହେଁ । ବେଳେବେଳେ ମୋ ପାଖକୁ ଆସିଥିବା ଚିଠି ମତେ ପଢ଼ିବାକୁ ଭଲଲାଗେ । ମୁଁ ହୃଦୟଙ୍ଗମ କରୁଛି ଯେ ମୋ ଶିକ୍ଷକମାନେ ହିଁ ସବୁଠୁ ବେଶି ପ୍ରେରଣାଦାୟକ ଚିଠି ପଠେଇଛନ୍ତି ।

ତେବେ ମୁଁ ମୋ ନିଜ ଜୀବନରେ ବି ଦେଖିଛି ଲୋକ ବିନା ଦୋଷରେ ବି ତୁମକୁ ବଦନାମ କରିଦେବେ । ଥରେ ଇଣ୍ଡିଆ ଟୁ ଡେ'ର ଜଣେ ପତ୍ରକାର ମୁଁ ବିଅର୍ ଓ ତେଲଭଜା ଖାଦ୍ୟ ଖାଇବାକୁ ଭଲପାଏ କହି ବଦନାମ୍ କରିବାକୁ ଚେଷ୍ଟା କରିଥିଲେ । ଅଥବା ଜଣେ ଭାରଉତ୍ତୋଳକକୁ ଅନ୍ୟ ଜଣକ ବିରୁଦ୍ଧରେ ଲଢ଼େଇ କରେଇ ବଦନାମ କରନ୍ତି । ମୁଁ ବୁଝିପାରୁଛି ଏସବୁ ଆରୋପକୁ ଦେହକୁ ନେବା କଥାନୁହେଁ । ଆପଣଙ୍କର ଲକ୍ଷ୍ୟ, ଆପଣଙ୍କୁ ଭଲପାଉଥିବା ଲୋକଙ୍କର ସମର୍ଥନ ଏବଂ ଆପଣ କେତେ କଠୋର ପରିଶ୍ରମ କରିବାକୁ ଚାହୁଁଛନ୍ତି ତା'ଉପରେ ସ୍ୱଷ୍ଟ ଧାରଣା ଆବଶ୍ୟକ, ଏସବୁ ଉପରେ ଗୁରୁତ୍ୱ ଦେବା ହିଁ ସବୁଠାରୁ ମୂଲ୍ୟବାନ । ଯେତେବେଳେ ମୁଁ ଦେଖେଁ ୧୬ରୁ ୨୦ବର୍ଷ ବୟସ୍କ ଝିଅମାନେ କେବଳ ରେଷ୍ଟୁରାଣ୍ଟ ଓ କଲେଜ୍ କ୍ୟାଣ୍ଟିନ୍‌ରେ ଏଣେ ତେଣେ ନିରୁଦ୍ଦେଶ୍ୟ ଭାବେ ଘୂରୁଥାନ୍ତି ତ ମତେ ଲାଗେ ଜଣେ ନିଜ ଜୀବନରେ କିଛି ନକରିବାଟା ଅକ୍ଷମଣୀୟ ।

ଏସବୁ ପୁରସ୍କାର ପରେ ମୁଁ ବେଶ୍ ସ୍ୱଚ୍ଛଳ ଭାବେ ଧନୀ । ମୁଁ କେବେ ସ୍ୱପ୍ନରେ ବି ଭାବିନଥିଲି ଏସବୁ ସୁଖ ସୁବିଧା ଓ ବିଳାସ ମୁଁ ହାସଲ କରିପାରିବି ବୋଲି । ବର୍ତ୍ତମାନ ମୁଁ ମାଆ ହେଇସାରିବାପରେ ମୋର ଗୋଟେ ପରିପୂର୍ଣ୍ଣ ସଂସାର । ମୋର ଶ୍ୱଶୁର ଘର ତରଫର ଲୋକ, ମୋ ସ୍ୱାମୀ, ମୋର ଛୋଟ ଛୁଆ, ପଟିଆଲାରେ ଖୁବ୍ ନିକଟରେ ଥିବା ମୋର ବିରାଟ ବ୍ୟାୟାମଶାଳା ସବୁ ଅଛି । ମୁଁ ୨୦୦୪ରେ ହେବାକୁ ଥିବା ଅଲମ୍ପିକରେ ପ୍ରାଣପଣେ ଭଲକରିବାକୁ ଚେଷ୍ଟା କରିବା ପାଇଁ ପ୍ରତିଜ୍ଞାବଦ୍ଧ । ତା'ପରେ ମତେ ଏକାଡେମୀ ସ୍ଥାପନ କରିବାକୁ ଯଚାହେଉଥିବା ପ୍ରସ୍ତାବକୁ ଗ୍ରହଣ କରି ମୁଁ ଅନ୍ୟମାନଙ୍କୁ ବିଶେଷକରି ମହିଳାମାନଙ୍କୁ ପ୍ରଶିକ୍ଷଣ ଦେବାର ଲକ୍ଷ୍ୟ ପୋଷଣ କରୁଛି । ବର୍ତ୍ତମାନ ଶ୍ରୀକାକୁଲମ୍ ଓ ମଣିପୁରରେ ଅନେକଙ୍କର ପ୍ରବଳ ଆଗ୍ରହ ଦେଖାଦେଇଛି । କାରଣ କୁଞ୍ଜରାଣୀ ମଣିପୁରର । ପ୍ରତିଭା ଦୃଷ୍ଟିରୁ ଆମର କ୍ରୀଡ଼ାଜଗତ ପରିପୂର୍ଣ୍ଣ, ଏବଂ ଭାରତରେ ମିଳୁଥିବା ସୁବିଧା ସୁଯୋଗ ମଧ୍ୟ ବିଶ୍ୱର ଅନ୍ୟଭାଗ ସହିତ ତୁଳନୀୟ । କମ୍ ବୟସର ଝିଅ ଯେଉଁମାନେ ଭାରଉତ୍ତୋଳନରେ ଆଗ୍ରହୀ ସେମାନଙ୍କ ପାଇଁ ମୋର ପରାମର୍ଶ ହେଲା – ଏଥିପାଇଁ ଦଶବର୍ଷ ବୟସରୁ ଆରମ୍ଭ କରିବା ସର୍ବୋତ୍ତମ, ଦ୍ୱିତୀୟତଃ ପ୍ରତ୍ୟେକ ରାଜ୍ୟରେ କ୍ରୀଡ଼ା ପ୍ରଶିକ୍ଷଣ କେନ୍ଦ୍ରଗୁଡ଼ିକରେ ଭାରଉତ୍ତୋଳନ ପ୍ରଶିକ୍ଷକ ରହିବା ଅନିବାର୍ଯ୍ୟ ।

ଏ ମଲ୍ଲୀ ସଫଳତାର ସୁବାସ ଆଘ୍ରାଣ କରିଛି । ସେ ଆଉରି ଉଚ୍ଚକୁ କ୍ଷୀପ୍ରଗତିରେ ଓ ଦୃଢ଼ତା ସହକାରେ ଜଣେ ଉତ୍ତମ ଅଲମ୍ପିକ କ୍ରୀଡ଼ାବିତ୍‌ର ଉତ୍ସାହ ଉଦ୍ଦୀପନାସହିତ ଆରୋହଣ କରିବାକୁ ଚାହେଁ । ତାପରେ ନିଜକୁ ଅନ୍ୟମାନଙ୍କ ସେବାରେ ସମର୍ପଣ କରିବି ।

ଏବେ ମୋ ନାଁ ସାର୍ଥକ ହେଲାପରି ଲାଗୁଛି ।

*ତିଶା ଶ୍ରୀବାସ୍ତବଙ୍କ ସହ ସାକ୍ଷାତ୍‌କାର ଉପରେ ଆଧାରିତ*



*ସେଇ ସାହସିନୀମାନେ* ବିଗତ ପ୍ରାୟ ପଚାଶ ବର୍ଷ ମଧ୍ୟରେ ଦେଶର ସାମାଜିକ-ସାଂସ୍କୃତିକ ପରିମଣ୍ଡଳରେ କେତେକ ପ୍ରତିନିଧିସ୍ଥାନୀୟ ମହିଳାଙ୍କ ସଶକ୍ତ ଓ ସକ୍ରିୟ ଭୂମିକାର ଅନ୍ତରଙ୍ଗ ଉପସ୍ଥାପନ । ସଂକଳିତ ସଂକ୍ଷିପ୍ତ ଆତ୍ମକଥନଗୁଡ଼ିକ ଭିତରେ ସେମାନଙ୍କ ଜୀବନାନୁଭୂତି ସହିତ ସ୍ୱାଧୀନତା ପରବର୍ତ୍ତୀ ଭାରତବର୍ଷର ସାମାଜିକ ପୃଷ୍ଠଭୂମି ଓ ସାଂସ୍କୃତିକ ଦିଗନ୍ତର ଆଭାସ ମିଳେ । ଯାବତୀୟ ସଂଘର୍ଷ ଭିତରେ ସେମାନେ କେବଳ ନିଜସ୍ୱ ଲକ୍ଷ୍ୟପୂରଣରେ ଅଗ୍ରସର ହୋଇନାହାନ୍ତି, ଅନ୍ୟ ମହିଳାମାନଙ୍କ ପାଇଁ ମଧ୍ୟ ପଥ ଦେଖାଇଛନ୍ତି । ଉଲ୍ଲିଖିତ ମହିଳାମାନଙ୍କ ଜୀବନକଥା ଦେଇ ପୁସ୍ତକଟି ଆମ ଦେଶର ସବୁ ମହିଳାଙ୍କ ସ୍ୱପ୍ନ ଓ ସଂଘର୍ଷକୁ ସୂଚାଇଦେଇଛି ।

ପୁସ୍ତକଟିର ସଂପାଦିକା **ରୀତୁ ମେନନ** ଦୀର୍ଘକାଳ ଧରି ପ୍ରକାଶନ କ୍ଷେତ୍ରରେ କାର୍ଯ୍ୟ କରିଆସୁଛନ୍ତି । ୧୯୮୪ରେ ସ୍ଥାପିତ ଭାରତର ପ୍ରଥମ ନାରୀବାଦୀ ପ୍ରକାଶନ ସଂସ୍ଥା 'Kali for Women'ର ସେ ସହ-ସଂସ୍ଥାପିକା ।

ଅନୁବାଦିକା **ସବିତା ପ୍ରଧାନ** ବିଶ୍ୱଭାରତୀ, ଶାନ୍ତିନିକେତନର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗରେ ପ୍ରଫେସର ଭାବରେ କାର୍ଯ୍ୟ କରୁଛନ୍ତି । ଓଡ଼ିଆ ଭାଷାତତ୍ତ୍ୱ ଗବେଷଣା ଓ ସାହିତ୍ୟ-ସମାଲୋଚନା କ୍ଷେତ୍ରରେ ସେ ସୁପରିଚିତା ।

Women Who Dared *(Odia)*







ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ